# ଆଧୁନିକ ଓଡ଼ିଆ କାବ୍ୟଧାରାରେ ବାସ୍ତବବାଦୀ ଚେତନା

## ୧୯୩୮-୧୯୭୦

ଇନ୍ଦୁ ମିଶ୍ର

# ଆଧୁନିକ ଓଡ଼ିଆ କାବ୍ୟଧାରାରେ ବାସ୍ତବବାଦୀ ଚେତନା

## (୧୯୩୮—୧୯୭୦)

[ ଉତ୍କଳ ବିଶ୍ୱବିଦ୍ୟାଳୟଙ୍କ ଅଧୀନରେ ପିଏଚ୍. ଡ଼ି. ଡିଗ୍ରୀପ୍ରାପ୍ତ ସନ୍ଦର୍ଭ ]

**ଡକ୍ଟର ଇନ୍ଦୁ ମିଶ୍ର**

**ବିଦ୍ୟାପୁରୀ**

ADHUNIKA ODIA KABYADHARABE
BASTABABADI CHETANA (1938—1970)
By Dr. INDU MISHRA
Publishers : Vidyapuri, Cuttack 753002
1989

ପ୍ରଥମ ପ୍ରକାଶ, ଏପ୍ରିଲ ୧୯୮୯

ପ୍ରକାଶକ :
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରକ
ଶ୍ରୀ ଦିଗମ୍ବର ରାଉତ
ମେସର୍ସ ପ୍ରିଣ୍ଟେକ୍ସ
ବାଦାମବାଡ଼ି, କଟକ ୭୫୩୦୦୯

ମୂଲ୍ୟ : ଟ ୬୦-୦୦

# ସୂଚୀପତ୍ର

# ପ୍ରାକ୍‌କଥନ

ରସୋଚ୍ଛ୍ୱାସମୟ କବିପ୍ରାଣର ସ୍ୱତଃସ୍ଫୂର୍ତ୍ତି ଅଭିବ୍ୟକ୍ତିକୁ ପ୍ରାଚ୍ୟ ଓ ପାଶ୍ଚାତ୍ତ୍ୟ କାବ୍ୟତତ୍ତ୍ୱବିତ୍‌ମାନେ କବିତା ଭାବରେ ଆଖ୍ୟାତ କରିଥାନ୍ତି । ପ୍ରତ୍ୟେକ ଦେଶର ରୋମାଣ୍ଟିକ କାବ୍ୟକୃତିରେ ଏହି ସିଦ୍ଧାନ୍ତ ସ୍ପଷ୍ଟ ପ୍ରତିଫଳିତ । କ୍ଲାସିକ କାବ୍ୟକଳାରେ କବି-ଚିତ୍ତର ରସବୋଧ ସହ ତାର୍କିକ ବିଚାର ଓ ମହତ୍ତ୍ୱର ଚିନ୍ତା ଅଙ୍ଗାଙ୍ଗୀଭାବେ ଜଡ଼ିତ, ମାତ୍ର ଯୁଗୋପଯୋଗୀ ଜୀବନବୋଧର ଯଥାଯଥ ରୂପାୟନ ବାସ୍ତବଧର୍ମୀ କାବ୍ୟ-ଧାରାର ପ୍ରଧାନ ଉପଜୀବ୍ୟ । ପ୍ରାଚ୍ୟ କାବ୍ୟଧାରାରେ ବାସ୍ତବବାଦୀ ଚେତନା ପ୍ରତିଫଳିତ ହେବା ପୂର୍ବରୁ ପାଶ୍ଚାତ୍ତ୍ୟ କାବ୍ୟଲୋକକୁ ଏହି ନୂତନ ଦର୍ଶନ ପ୍ରଭାବିତ କରିଥିଲା । ଅଷ୍ଟାଦଶ ଶତାବ୍ଦୀରେ ଶିଳ୍ପ ବିପ୍ଳବ, ଊନବିଂଶ ଶତାବ୍ଦୀରେ କାର୍ଲମାର୍କସଙ୍କର ବସ୍ତୁବାଦୀ ଚିନ୍ତାଦର୍ଶ, ଡ଼ାରଉଇନ୍‌ଙ୍କର ବିବର୍ତ୍ତନବାଦ ଓ ଫ୍ରଏଡ଼ଙ୍କର ମନୋବିଶ୍ଳେଷଣ ଇଉରୋପର ଚିନ୍ତାମାନସ ଓ ସାହିତ୍ୟାଦର୍ଶରେ ତୁମୁଳ ଆଲୋଡ଼ନ ସୃଷ୍ଟି କରିଥିଲା । ମଧ୍ୟ-ଯୁଗୀୟ ରୋମାଣ୍ଟିକ ଓ ମିଷ୍ଟିକ ଚିନ୍ତାଦର୍ଶର କଳ୍ପନା ବିଳାସ, ଅଳୀକ, ଅଲୌକିକ ଭାବବୋଧ ବାସ୍ତବ ଜୀବନର ରୁକ୍ଷ, କଣ୍ଟକିତ ଓ କଙ୍କରିଳ ଦର୍‌ବଳୟରେ ଶକ୍ତ ଆଘାତ ପାଇଥିଲା । ଅତୀନ୍ଦ୍ରିୟ କଳ୍ପନା ବିଳାସର ବିଭୋରତା ପରିବର୍ତ୍ତେ ଇନ୍ଦ୍ରିୟବେଦ୍ୟ ଜଗତର ଜ୍ୱାଳା ଓ ଯନ୍ତ୍ରଣା ସମ୍ପର୍କରେ ସଚେତନତା ପ୍ରକାଶ ପାଇଥିଲା । ଜୀବନର ବହିର୍ମୁଖୀ ଚାକଚକ୍ୟର ରୂପ-ଭଙ୍ଗିମା ଅନ୍ତରାଳରେ ଅନ୍ତର୍ନିହିତ ବାସ୍ତବତାର ଉଦ୍‌ଘାଟନ ପାଇଁ ଉଦାତ୍ତ ପ୍ରବଣତା ପ୍ରକଟିତ ହେଲା । ପୂର୍ବରୁ ଇଟାଲିର ବୋକାସିଓ ଗଳ୍ପ, ଭାରତର ପଞ୍ଚତନ୍ତ୍ର ଓ ହିତୋପଦେଶର ଈଶପ ଗଳ୍ପମାଳା ଆଦିରେ ସାମାଜିକ ଚେତନାର ଆଭାସ ରହିଥିଲେ ମଧ୍ୟ ଇଉରୋପର ଚିତ୍ରକଳା ଓ କଥା-ସାହିତ୍ୟ ମାଧ୍ୟମରେ ଏହା ଏକ ସ୍ୱତନ୍ତ୍ର ସାହିତ୍ୟିକ ସ୍ୱୀକୃତି ଲାଭକଲା । କ୍ରମଶଃ ଏହି ବାସ୍ତବବାଦୀ ଦର୍ଶନ ସାରସ୍ୱତ ଜଗତକୁ ଅନୁପ୍ରେରିତ କରି କବିତା ଭଳି ସୁକୁମାର କଳାକୁ ମଧ୍ୟ ପ୍ରଭାବିତ କରିପାରିଥିଲା । ଅବଶ୍ୟ ଚତୁର୍ଦ୍ଦଶ ଶତାବ୍ଦୀରୁ ଧର୍ମୀୟ ଓ ରାଜନୀତିକ ମୂଲ୍ୟବୋଧର ଅଧୋପତନ ତଥା ସାଧାରଣ କୃଷକ ସମାଜର କରୁଣଚିତ୍ର କାବ୍ୟ-କବିତାରେ ପ୍ରତିଫଳିତ ହୋଇଥିଲା । କିନ୍ତୁ ଅଷ୍ଟାଦଶ ଶତାବ୍ଦୀରେ ଶିଳ୍ପବିପ୍ଳବର ପ୍ରସାର ପରେ ହିଁ ପାଶ୍ଚାତ୍ତ୍ୟ କାବ୍ୟ ପରମ୍ପରାରେ ବାସ୍ତବବାଦୀ ଚିନ୍ତାଧାରା ତ୍ୱରାନ୍ୱିତ ହୋଇଥିଲା । ପଲ୍ଲୀର ପରିବର୍ତ୍ତନଶୀଳ ସ୍ୱରୂପ, ଶିଳ୍ପପ୍ରଧାନ ନଗର ସଭ୍ୟତାର ଆନ୍ତରିକତା ଶୂନ୍ୟ ଜୀବନ-ଚିତ୍ର କାବ୍ୟ-କବିତାରେ ରୂପାୟିତ ହୋଇଥିଲା । ପ୍ରଥମ ବିଶ୍ୱଯୁଦ୍ଧର ପରବର୍ତ୍ତୀ ପ୍ରତିକ୍ରିୟା ଇଉରୋପର ଜୀବନଧାରାରେ ଅଭୂତପୂର୍ବ

ପରିବର୍ତ୍ତନ ସୃଷ୍ଟି କରି ପୂର୍ବୋକ୍ତ ସ୍ଥିତିକୁ ବେଗବାନ କରିଥିଲା । ଗୋଷ୍ଠୀଗତ ଜୀବନ ତଥା ଗଣତନ୍ତ୍ର ପ୍ରତି ଥିବା ଆଶା ଓ ବିଶ୍ୱାସବୋଧ ଖଣ୍ଡିତ ହେଲା । ନଗର ସଭ୍ୟତାର କ୍ରମ-ବର୍ଦ୍ଧମାନ ବ୍ୟକ୍ତିବାଦୀ ଚେତନା ତଥା ମୂଲ୍ୟବୋଧର ଅବକ୍ଷୟ ପ୍ରତି କବିମାନଙ୍କ ଶାଣିତ କଟାକ୍ଷ ପ୍ରକାଶ କରିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର କାଳରେ ପାଶ୍ଚାତ୍ୟ ଚିନ୍ତାମାନସ ଅଧିକ ବିକ୍ଷୁବ୍ଧ ହେଲା । ଚେତନତତ୍ତ୍ୱ ତଥା ପରିଦୃଶ୍ୟମାନ ବିଶ୍ୱପ୍ରତି କବିମାନସ ବିମୁଖ ଓ ବୀତଶ୍ରଦ୍ଧ ହୋଇପଡ଼ିଲା । ଏଣୁ ମଗ୍ନଚୈତନ୍ୟର ଉଦ୍‌ଘାଟନ ପାଇଁ ଆଗ୍ରହ ପ୍ରକାଶ ପାଇଲା । ଏହି ସୂତ୍ରରେ ପାଶ୍ଚାତ୍ୟ କାବ୍ୟଧାରାରେ ଅତି-ବାସ୍ତବବାଦୀ ଚେତନାର ଅଭ୍ୟୁଦୟ ଘଟିଥିଲା ।

ପାଶ୍ଚାତ୍ୟ ଦେଶର ଏହି କାବ୍ୟିକ ନୂତନ ସ୍ୱର ଓ ବର୍ତ୍ତିବିଳାସ ବିଂଶ ଶତାବ୍ଦୀର ପ୍ରାକ୍ କାଳ ପର୍ଯ୍ୟନ୍ତ ଭାରତୀୟ ଜନମାନସ ନିକଟରେ ଅପରିଚିତ ରହିଥିଲା । ଭାରତ ପରି ଏକ ଆଧ୍ୟାତ୍ମିକତା ସର୍ବସ୍ୱ ଦେଶର ଆଦି-ସାହିତ୍ୟ ରହସ୍ୟବାଦୀ ଭାବନା ମଧ୍ୟ ଦେଇ ଆବର୍ତ୍ତିତ ହୋଇଥିଲା । ପ୍ରାଚ୍ୟ ଦର୍ଶନରେ ଜାଗତିକ ଜୀବନ ପରିବର୍ତ୍ତେ ଅତିଜାଗତିକ ଜୀବନାଦର୍ଶ ଥିଲା ଏକାନ୍ତ କାମ୍ୟ । ଅସତ୍ୟରୁ ସତ୍ୟ, ତମସାରୁ ଜ୍ୟୋତି ଓ ମୃତ୍ୟୁରୁ ଅମୃତାଭିମୁଖୀ ଚେତନାକୁ ଉତ୍ତରଣ ଥିଲା ସାହିତ୍ୟର ଉପଜୀବ୍ୟ ବସ୍ତୁ । ଏକ ଅତି ଜାଗତିକ, ଅତୀନ୍ଦ୍ରିୟ ବାସ୍ତବତା (Trancendental Reality) ଥିଲା ପ୍ରାଚ୍ୟ ଦର୍ଶନର ପ୍ରତିପାଦିତ ସତ୍ୟ । ମୃତ୍ୟୁ ଥିଲା ଅମୃତମୟ ପାରଲୌକିକ ରାଜ୍ୟକୁ ଉନ୍ନୀତ ହେବାର ସୋପାନ । ଐହିକ ଦୁଃଖ ଓ ଯନ୍ତ୍ରଣା ଥିଲା ସ୍ଥଳ ବିଶେଷରେ ପରମ ସୁଖ ଲାଭର ପୂର୍ବାଭାସ । ସଚ୍ଚିଦାନନ୍ଦ ପରମେଶ୍ୱରଙ୍କର ସ୍ୱରୂପ ଥିଲା ପରମ ଧ୍ୟେୟ ।

ଏହି ଦୃଷ୍ଟିରୁ ସଂସ୍କୃତ କାବ୍ୟ-ସାହିତ୍ୟ ରସତତ୍ତ୍ୱ ଦୃଷ୍ଟିରୁ ସମୁନ୍ନତ ହେଲେ ମଧ୍ୟ, ସାଧାରଣ ସମାଜ ଜୀବନର ପ୍ରତିଛବି ଉପସ୍ଥାପିତ କରିବାରେ ଏକାନ୍ତ ପରାଙ୍ମୁଖ । ଭାରତର ମଧ୍ୟଯୁଗୀୟ ସାହିତ୍ୟ ଅନେକାଂଶରେ ଦରବାରୀ ଭାବବିଳାସ, ବକ୍ରୋକ୍ତି, ଆଭରଣ ଓ ଆଭୂଷଣରେ ବିମଣ୍ଡିତ । ଶହ ଶହ ବର୍ଷଧରି ମୁସଲମାନ-ମାନଙ୍କର ବାଦଶାହୀ ଶାସନ ଏହାର ହେତୁ ଭାବରେ ଅବଧାରିତ । ଏଣୁ ବାସ୍ତବବାଦୀ ଚିନ୍ତାମାନସର ପ୍ରକଟନ ପାଇଁ ଭାରତୀୟ କବିମାନଙ୍କୁ ବ୍ରିଟିଶ ଶାସନର ଶେଷଭାଗ ପର୍ଯ୍ୟନ୍ତ ପ୍ରତୀକ୍ଷା କରିବାକୁ ପଡ଼ିଥିଲା ।

ଊନବିଂଶ ଶତାବ୍ଦୀର ଶେଷ ତଥା ବିଂଶ ଶତାବ୍ଦୀର ଆଦ୍ୟ ପାଦରେ, ଭାରତୀୟ କଥା-ସାହିତ୍ୟ ବାସ୍ତବବାଦୀ ଚେତନା ଉପରେ ଆଧାରିତ ଥିଲା । ମାତ୍ର ଜାତୀୟ ଚେତନା ଭିତ୍ତିକ ରୋମାଣ୍ଟିକ୍ ଆବେଗ ଥିଲା ସମକାଳୀନ କାବ୍ୟକୃତିର ମୁଖ୍ୟ ଆବେଦନ । ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିରୁ ଭାରତର ଆକୁମାରୀ ହିମାଚଳ ମୁକ୍ତି

ଆନ୍ଦୋଳନର ତୃପ୍ତ ଧ୍ୱନିରେ ପ୍ରତିଧ୍ୱନିତ ହୋଇଥିଲା । ସ୍ୱାଭିମାନ, ସ୍ୱଦେଶ ପ୍ରୀତି, ସ୍ୱରାଜ୍ୟଲାଭର ମନ୍ତ୍ର ଆହ୍ୱାନ କବି କଣ୍ଠରେ ଶତଝଙ୍କୃତ ହୋଇଥିଲା । ସମସ୍ତ ଦୁଃଖ, ଯନ୍ତ୍ରଣା ଓ ତ୍ୟାଗର ବନ୍ଦନମୟରେ ପରାଧୀନତାର ଶୃଙ୍ଖଳରୁ ମୁକ୍ତ ହେବା ପାଇଁ ଯୁବପ୍ରାଣରେ ତୀବ୍ର ଉଦ୍‌ବେଳନ ସୃଷ୍ଟି ହୋଇଥିଲା । ଅନ୍ୟ ପକ୍ଷରେ ଏହି ଶତାବ୍ଦୀର ତୃତୀୟ ଦଶନ୍ଧିରୁ ଓଡ଼ିଶାରେ ଇଂରାଜୀ ରୋମାଣ୍ଟିକ କାବ୍ୟ ଚେତନା ଓ ରବୀନ୍ଦ୍ର କାବ୍ୟମାନସ ପ୍ରଭାବିତ 'ସବୁଜ' ଶୀର୍ଷକ ଏକ ତରୁଣ ସାହିତ୍ୟକ ଗୋଷ୍ଠୀର ଅଭ୍ୟୁଦୟ ଘଟିଥିଲା । ରୁଷରେ ମାର୍କସବାଦର ଅପୂର୍ବ ସଫଳତା କ୍ରମଶଃ ଭାରତୀୟ କବିମାନସକୁ ତୀବ୍ର ଭାବରେ ଆଲୋଡ଼ିତ କରିଥିଲା । ଏଣୁ ନିଷ୍ପୀଡ଼ିତ ଜନସାଧାରଣଙ୍କର ସମସ୍ୟା-ସଂକଟ ପ୍ରତି ଓଡ଼ିଶାର ତରୁଣ କବିପ୍ରାଣରେ ସମ୍ବେଦନଶୀଳତା ଉଦ୍ରିକ୍ତ ହୋଇଉଠିଥିଲା । ଶ୍ରେଣୀହୀନ ସମାଜ ଗଠନ ପାଇଁ ବଳିଷ୍ଠ ଚେତନାବୋଧ ସେମାନଙ୍କ କାବ୍ୟକୃତିରେ ମୁଖ୍ୟ ସ୍ଥାନ ଲାଭ କରିଥିଲା ।

ସାହିତ୍ୟ ମାନବ ପ୍ରାଣର ଚିନ୍ତା-ଚେତନାର ବାହକ । ଭାଷାର ବିଭିନ୍ନ ଆବରଣରେ ଏହା ଆବୃତ୍ତ ହେଲେ ମଧ୍ୟ, ଏହାର ପ୍ରାଣଧାରା ଏକ ଓ ଅଭିନ୍ନ । ଭୌଗୋଳିକ ପରିସୀମାର ଭେଦଭାବ ମନୁଷ୍ୟ ସମାଜ ମଧ୍ୟରେ ପାର୍ଥକ୍ୟର ପ୍ରାଚୀର ସୃଷ୍ଟି କରିଥିଲେ ମଧ୍ୟ ସାହିତ୍ୟ, ସଂସ୍କୃତି ମାଧ୍ୟମରେ ଏହା ମଧ୍ୟରେ ଏକ ନିବିଡ଼ ଐକାତ୍ମ୍ୟବୋଧ ସୁବିଦିତ ଓ ସୁପ୍ରମାଣିତ । ବିଶେଷତଃ ଆଧୁନିକ ବିଜ୍ଞାନ ଓ ଯାନ୍ତ୍ରିକତାର କ୍ରମବର୍ଦ୍ଧିଷ୍ଣୁ ବିଜୟ ମନିଷକୁ ଆଜି ନିକଟରୁ ନିକଟତର ଓ ବୃହତ୍ତର ବିଶ୍ୱକୁ କ୍ଷୁଦ୍ରରୁ କ୍ଷୁଦ୍ରତର କରିବାରେ ସହାୟକ ହୋଇଛି । ଫଳତଃ ଦେଶ-ଦେଶାନ୍ତରର ଜ୍ଞାନ-ବିଜ୍ଞାନ, ଶିକ୍ଷା-ସଭ୍ୟତା ଓ ସଂସ୍କୃତି-ପରମ୍ପରା ଅନାହୂତ ଭାବରେ ନିଜ ଦ୍ୱାରଦେଶରେ ପହଞ୍ଚି ଯାଉଛି । ଏହି ଅନୁକ୍ରମରେ ପାଶ୍ଚାତ୍ୟ ବାସ୍ତବବାଦୀ କବିତାର ଧ୍ୱନି ଭାରତର କବିମାନସକୁ ଅନୁପ୍ରଣୋଦିତ କରିଛି ।

ଭାରତର ଜାତୀୟ ଆନ୍ଦୋଳନର ତୀବ୍ରତା ମଧ୍ୟରେ କେତେକ କ୍ରାନ୍ତଦର୍ଶୀ ଯୁବକ ଆନ୍ତର୍ଜାତୀୟ ସ୍ତରର ମାର୍କସବାଦୀ ଚିନ୍ତାଦର୍ଶ ଦ୍ୱାରା ଅନୁପ୍ରାଣିତ ହୋଇ ସାମାଜିକ ବିପ୍ଳବ କରିବା ପାଇଁ ଉଦ୍‌ଗ୍ରୀବ ହୋଇ ଉଠିଥିଲେ । ବିଂଶ ଶତକର ତୃତୀୟ ଦଶନ୍ଧିର ଅପରାର୍ଦ୍ଧରୁ ଏହି ବୈପ୍ଳବିକ କାବ୍ୟଧାରା ସାମଗ୍ରିକ ମାନବିକତାବୋଧ ଭିତ୍ତିରେ ଅଭିବ୍ୟକ୍ତ ଲାଭ କରିଥିଲା । ମାର୍କସବାଦ, ଭାରତୀୟ ରାଜନୀତିକୁ ବିଶେଷ ଭାବେ ପ୍ରଭାବିତ କରିପାରି ନଥିଲେ ମଧ୍ୟ ୧୯୩୮ ମସିହା ବେଳକୁ ଓଡ଼ିଆ କାବ୍ୟଧାରାରେ ମାର୍କସ୍‌ବାଦର ସ୍ୱର ବହୁଳ ଭାବରେ ଝଙ୍କୃତ ହୋଇଥିଲା । 'ଅଭିଯାନ' (୧୯୩୮), 'ଯାଦୁଘର' (୧୯୩୮), 'ରକ୍ତଶିଖା' (୧୯୩୯), 'ଛୁରିଟିଏ

ଲୋଢ଼ା' (୧୯୩୯), 'ଆଗାମୀ' (୧୯୪୬), 'କାଏ ଶଳା ସଇତାନ' (୧୯୪୪), 'ପାଣ୍ଡୁଲିପି' (୧୯୪୭) ଆଦି ବିଶିଷ୍ଟ କବିତା ତଥା କବିତା ସଂକଳନରେ ଏହି ପ୍ରଗତିବାଦୀ କାବ୍ୟସ୍ୱରର ଐକ୍ୟତାନ ସୁସ୍ପଷ୍ଟ ।

ଏହି ସମୟରେ ହିନ୍ଦୀ, ଉର୍ଦ୍ଦୁ, ବଙ୍ଗଳା, ଅସମୀୟା ଓ ତାମିଲ କାବ୍ୟ-ଲୋକରେ ପ୍ରଗତିବାଦୀ ଚିନ୍ତାଧାରାର ସମାନ୍ତରାଳ ପ୍ରବାହ ପରିଲକ୍ଷିତ ହୋଇଥିଲା । ଅବହେଳିତ ବର୍ଗରୁ ଚରିତ୍ର ଆହରଣ ତଥା ଶ୍ରେଣୀ-ବୈଷମ୍ୟ ବିରୋଧରେ ବୈପ୍ଳବିକ ଆହ୍ୱାନ ସେମାନଙ୍କ କାବ୍ୟ-କବିତାରେ ବିଶେଷ ଭାବରେ ପ୍ରାଧାନ୍ୟ ଲାଭ କରିଥିଲା ।

ପ୍ରଗତିବାଦୀ କାବ୍ୟ-ଚେତନା କେବଳ ମାର୍କସବାଦୀ ଚେତନା ମଧ୍ୟରେ ସୀମାବଦ୍ଧ ନୁହେଁ, ଅଧିକନ୍ତୁ ଜାତୀୟ ଜୀବନ, ସଂସ୍କୃତି ତଥା ସଭ୍ୟତାର ବିକାଶପାଇଁ ଉଦ୍ଦିଷ୍ଟ ଯେକୌଣସି କାବ୍ୟ-ସ୍ୱର ପ୍ରଗତିବାଦୀ ଚେତନା ପରିସରଭୁକ୍ତ ହୋଇପାରେ । ଏଣୁ ୧୯୩୮ ରୁ ୧୯୭୦ ମଧ୍ୟସ୍ଥ ପ୍ରଗତିବାଦୀ କାବ୍ୟ ପରମ୍ପରାର ମୂଲ୍ୟାୟନ କାଳରେ ବ୍ରିଟିଶ ଉପନିବେଶର ଶୋଷଣ ବିରୋଧରେ ଭାରତର ଜାତୀୟତାବାଦୀ ଆହ୍ୱାନ, ଦ୍ୱିତୀୟ ବିଶ୍ୱଯୁଦ୍ଧକାଳୀନ ନାଜିବାଦ ଓ ଫାସିବାଦ ବିପକ୍ଷରେ ସ୍ୱର ଉତ୍ତୋଳନ ତଥା ଗଡ଼ଜାତ ଶାସନ ବିରୁଦ୍ଧରେ ପ୍ରଜା ଆନ୍ଦୋଳନ କିପରି ଓଡ଼ିଶାର ପ୍ରଗତିବାଦୀ କାବ୍ୟ-କବିତାକୁ ପ୍ରଭାବିତ କରିଥିଲା, ତାହା ଆଲୋଚିତ ହୋଇଛି । ଏହା ବ୍ୟତୀତ ଉତ୍ତର-ସ୍ୱାଧୀନତା ଯୁଗର ବ୍ୟର୍ଥତା ପ୍ରତି କଟୁ କଟାକ୍ଷ ମାଧ୍ୟମରେ ସାମାଜିକ ଓ ରାଜନୀତିକ ସ୍ଥିତିର ବାସ୍ତବ ପରିଚୟ ପ୍ରଦତ୍ତ ହୋଇଛି ।

ବିଂଶ ଶତାବ୍ଦୀର ପଞ୍ଚମ-ଷଷ୍ଠ ଦଶନ୍ଧିରୁ ବାସ୍ତବବାଦର ଏକ ଭିନ୍ନଧର୍ମୀ ସ୍ୱର ଆଧୁନିକ ଓଡ଼ିଆ କବିତାରେ ପରିଦୃଷ୍ଟ ହୁଏ । ପ୍ରଗତିବାଦୀ କାବ୍ୟ ଚେତନା ଉପରେ ଏହି ନବ୍ୟ-ବାସ୍ତବବାଦୀ ଧାରାର ପ୍ରାଧାନ୍ୟ ବିସ୍ତାର ଉଲ୍ଲେଖନୀୟ । ଅପାରମ୍ପରିକ ରୂପସଜ୍ଜା ସହ ନୂତନ ଚିନ୍ତା-ଚେତନାର ପ୍ରୟୋଗ ଏହି ଧାରାରେ ଅନ୍ତଃଗର୍ଭିତ । ନଗର-ସଭ୍ୟତାର ବ୍ୟକ୍ତିବାଦୀ ଚେତନାର ଆତ୍ମକୈନ୍ଦ୍ରିକ ମନୋଭାବ ତଥା ଦ୍ୱିଧା-ବିଭକ୍ତ ବ୍ୟକ୍ତିତ୍ୱ ପ୍ରତି ଏଠାରେ ଶ୍ଳେଷଶାଣିତ ଦୃଷ୍ଟି ଅର୍ପିତ । ପ୍ରଗତିବାଦୀ କବିତାର ବାସ୍ତବବାଦ ଏହି ପର୍ଯ୍ୟାୟରେ ଏକ ନବରୂପରେ ପ୍ରତିଭାତ ।

ଏହି ଗବେଷଣାତ୍ମକ ନିବନ୍ଧରେ ନିମ୍ନଲିଖିତ ବିଷୟର ଗୁଡ଼ିକୁ ସନ୍ନିବେଶିତ କରାଯାଇଛି—

(କ) ୧୯୩୮ରୁ ୧୯୭୦ ମସିହା—ଓଡ଼ିଆ କାବ୍ୟଧାରାରେ ବାସ୍ତବବାଦୀ ଚେତନାର ପ୍ରକର୍ଷ କାଳ । ଏହି ନୂତନ କାବ୍ୟ ଚେତନା ଐତିହାସିକ ପୃଷ୍ଠପଟ୍ଟ ସହ ନିବନ୍ଧର ବିଭିନ୍ନ ପରିଚ୍ଛେଦରେ ଆଲୋଚିତ ।

(ଖ) ଚତୁର୍ଦ୍ଦଶ ଶତାବ୍ଦୀରୁ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ପାଶ୍ଚାତ୍ୟ ବାସ୍ତବବାଦୀ କାବ୍ୟଧାରା କ୍ରମାନୁସାରେ ସୂଚିତ ।

(ଗ) ଭାରତର ବିଭିନ୍ନ ପ୍ରାନ୍ତରେ ବିଶେଷ କରି ହିନ୍ଦୀ ଓ ବଙ୍ଗଳା କାବ୍ୟ ପରମ୍ପରାରେ ଏହି ଧାରାଟି କିପରି ସମାନ୍ତରାଳ ଭାବେ ପରିଚାଳିତ ହୋଇଛି, ତାହାର ସୂଚନା ପ୍ରଦତ୍ତ ।

(ଘ) ବାସ୍ତବବାଦ ମୂଳ ଚେତନା ସହ ପାଦ ମିଳାଇ କିପରି ବାରମ୍ବାର ନବରୂପରେ ଆବିର୍ଭୂତ ହୁଏ, ତାହା ଆଲୋଚିତ ।

(ଙ) ବାସ୍ତବବାଦର ବୈଶିଷ୍ଟ୍ୟ ଅଭିବ୍ୟକ୍ତି କୌଶଳ ସାଦୃଶ୍ୟତତ୍ତ୍ୱ (Corres-pondence Theory) ଓ ସମନ୍ୱିତ ତତ୍ତ୍ୱ (Coherence Theory) ସଂପର୍କରେ ସୂଚନା ପ୍ରଦର୍ଶିତ ।

ବାସ୍ତବବାଦର ସ୍ୱରୂପ ବିଚାର ପାଇଁ ଏହି ନିବନ୍ଧର ପ୍ରଥମ ପରିଚ୍ଛେଦ ଅଭିପ୍ରେତ । ଏଥିପାଇଁ ପାଶ୍ଚାତ୍ୟ ସମାଲୋଚକମାନଙ୍କର ମତକୁ ବିଭିନ୍ନ ସ୍ଥାନରୁ ଉଦ୍ଧାର କରାଯିବା ସଙ୍ଗେ ସଙ୍ଗେ ଏହାର ପରୀକ୍ଷା ଓ ଆଲୋଚନା ମଧ୍ୟ କରାଯାଇଛି । ପ୍ରସଙ୍ଗ କ୍ରମେ ବସ୍ତୁବାଦ (Materialism), ପ୍ରତ୍ୟକ୍ଷବାଦ (Positivism), ସ୍ୱଭାବବାଦ (Naturalism) ଓ ଅସ୍ତିତ୍ୱବାଦ ସହ ଏହାର ସମ୍ବନ୍ଧ ଓ ଏହାର ବିରୋଧ ଯୁକ୍ତିର ସୂଚନା ପ୍ରଦାନ କରାଯାଇଛି । ବାସ୍ତବବାଦର ଗତିଶୀଳତା ସଂପର୍କରେ ଆଲୋଚନା କଲାବେଳେ ଭାରତୀୟ କାବ୍ୟ ପରମ୍ପରାରେ ପ୍ରଚଳିତ ଥିବା ପ୍ରଗତିବାଦ ଓ ପ୍ରୟୋଗବାଦ ସହିତ ସଂଯୁକ୍ତ ହୋଇ କିପରି ବିବର୍ତ୍ତିତ ହେଲା ତାହା ସୂଚିତ । ପାଶ୍ଚାତ୍ୟ ପରମ୍ପରାରୁ ଏହି ନବାଗତ ଚିନ୍ତାଦର୍ଶ ଆହୃତ ହୋଇଥିଲେ ମଧ୍ୟ, ପ୍ରାଚ୍ୟ ପରମ୍ପରାରେ ଏହାର ସ୍ୱରୂପ କିପରି ଅନ୍ତଃଗର୍ଭିତ ଥିଲା ତାହା ଏହି ପରିଚ୍ଛେଦରେ ଆଲୋଚିତ । ଏହା ବ୍ୟତୀତ ଶଂସିତ ପରିଚ୍ଛେଦରେ ବାସ୍ତବବାଦର ବର୍ଗୀକରଣ ମଧ୍ୟ କରାଯାଇଛି । ବାସ୍ତବବାଦ ପ୍ରବୃତ୍ତି ଦୃଷ୍ଟିରୁ କିପରି ଜାତୀୟ ସମସ୍ୟା, ବ୍ୟଙ୍ଗ ଓ ମିଥ୍ ସହ ଜଡ଼ିତ ତାହାର ବିଚାର ପାଇଁ ପ୍ରଚେଷ୍ଟା କରାଯାଇଛି । ଅଭିବ୍ୟକ୍ତି ଦୃଷ୍ଟିରୁ ବାସ୍ତବବାଦୀ କବିତା ଦୁଇ ଭାଗରେ ବିଭକ୍ତ, ଯଥା—(କ) ଅନୁକରଣାତ୍ମକ (ଖ) ସୃଜନାତ୍ମକ । ଏହି ପ୍ରସଙ୍ଗ ଆଲୋଚନା କଲାବେଳେ ଆରିଷ୍ଟୋଟଲ, ପ୍ଲେଟୋ ଓ

ଡାମିଏନ୍ ଗ୍ରାଣ୍ଟଙ୍କ ମତକୁ ବିଶେଷ ଭାବେ ପ୍ରାଧାନ୍ୟ ଦିଆ ଯାଇଛି । ପରିଶେଷରେ ବାସ୍ତବବାଦୀ କବିତାର ଆଭିମୁଖ୍ୟ ଦର୍ଶାଇବା ପାଇଁ ଏହି ପରିଚ୍ଛେଦରେ ଉଦ୍ୟମ କରାଯାଇଛି ।

ଦ୍ୱିତୀୟ ପରିଚ୍ଛେଦର ଶୀର୍ଷକ ହେଲା ପାଶ୍ଚାତ୍ୟ କାବ୍ୟଧାରାରେ ବାସ୍ତବବାଦ । ପାଶ୍ଚାତ୍ୟ ଜଗତରେ ଚତୁର୍ଦ୍ଦଶ ଶତାବ୍ଦୀରୁ ବିଂଶ ଶତାବ୍ଦୀ ମଧ୍ୟରେ ଏହି ଧାରା ବିଭିନ୍ନ ଭାବରେ ବିକଶିତ । ଏହି ଦୀର୍ଘ ସମୟର କାବ୍ୟ ପରମ୍ପରାର ଅନୁଶୀଳନ ସହ ଏହାର ବିଭିନ୍ନ ପର୍ଯ୍ୟାୟ ଓ କ୍ରମ ପରିଣତିର ଆଲୋକପାତ ପାଇଁ ଏହି ପରିଚ୍ଛେଦଟି ଉଦ୍ଦିଷ୍ଟ । ସେଥିପାଇଁ କେବଳ ଇଂରାଜୀ ନୁହେଁ, ମାର୍କିନ୍ ତଥା ସୋଭିଏତ୍ କବିତାରେ ପ୍ରତିଫଳିତ ବାସ୍ତବବାଦୀ ଚିନ୍ତାଧାରାକୁ ତୁଳନାତ୍ମକ ଭାବେ ଉପସ୍ଥାପିତ କରାଯାଇଛି ।

ବାସ୍ତବବାଦୀ କାବ୍ୟ ଚେତନା ପାଶ୍ଚାତ୍ୟ ଜଗତରୁ ଉଦ୍‌ଭୂତ ହୋଇଥିଲେ ହେଁ ଭାରତର ବିଭିନ୍ନ ଭାଷାରେ ଏହା କିପରି ବିକଶିତ ହୋଇଛି, ତାହା ତୃତୀୟ ପରିଚ୍ଛେଦରେ ଆଲୋଚିତ । ଏହି ପରିଚ୍ଛେଦରେ ବଙ୍ଗଳା ଓ ହିନ୍ଦୀ କବିତାରୁ ବିଶେଷ ଭାବେ ଦୃଷ୍ଟାନ୍ତ ଦିଆଯାଇ ଏହାର ପ୍ରଗତିବାଦୀ ଓ ପ୍ରୟୋଗବାଦୀ ଚିନ୍ତାଧାରାକୁ ଓଡ଼ିଆ ବାସ୍ତବବାଦୀ କବିତାର ଆଲୋଚନା ପାଇଁ ପୃଷ୍ଠଭୂମି ରୂପେ ଗ୍ରହଣ କରାଯାଇଛି । ପ୍ରଗତିବାଦୀ ଓ ପ୍ରୟୋଗବାଦୀ ଚିନ୍ତାଧାରା କିପରି ସମତାଳରେ ଓ ସମତାନରେ ଭାରତୀୟ କାବ୍ୟ ବିଭବକୁ ପ୍ରଭାବିତ କରିଛି, ତାହା ଏହି ପର୍ଯ୍ୟାୟରେ ସୂଚିତ ।

ଓଡ଼ିଆ କାବ୍ୟଧାରାରେ ବାସ୍ତବବାଦର ସ୍ୱରୂପ ବିଶ୍ଳେଷଣ କରିବା ପାଇଁ ଆଧୁନିକ ଯୁଗର ପ୍ରାରମ୍ଭରୁ ୧୯୩୭ ପର୍ଯ୍ୟନ୍ତ ବିଭିନ୍ନ କାବ୍ୟ କବିତାକୁ ଗ୍ରହଣ କରାଯାଇ ତହିଁରେ ଅନ୍ତର୍ନିହିତ ଥିବା ବାସ୍ତବବାଦୀ ଭାବଧାରାକୁ ସମୀକ୍ଷା କରିବା ପାଇଁ ପ୍ରଚେଷ୍ଟା କରାଯାଇଛି । ଏଣୁ ଚତୁର୍ଥ ପରିଚ୍ଛେଦର ଶୀର୍ଷକ ହେଲା—ଆଧୁନିକ ଓଡ଼ିଆ କବିତାରେ ବାସ୍ତବବାଦର ପୃଷ୍ଠପଟ୍ଟ ।

୧୯୩୮ ରୁ ୧୯୭୦ ମଧ୍ୟବର୍ତ୍ତୀ କାଳରେ ରଚିତ ଓଡ଼ିଆ କବିତାରେ ପ୍ରତିଫଳିତ ହୋଇଥିବା ବାସ୍ତବବାଦୀ ଚିନ୍ତାଧାରାକୁ ଅନୁଧ୍ୟାନ କରିବାକୁ ହେଲେ, ଏହି ଦୀର୍ଘ ବତିଶ ବର୍ଷର ସାମାଜିକ ଓ ରାଜନୀତିକ ପୃଷ୍ଠପଟ୍ଟ ଆଲୋଚନା କରିବା ଯେତିକି ଆବଶ୍ୟକ, ଓଡ଼ିଆ କବିତାରେ ଏହି ସାମାଜିକ ଓ ରାଜନୀତିକ ଘଟଣା ପ୍ରବାହ କିଭଳି ପ୍ରତିଫଳିତ, ତା'ର ବିଶ୍ଳେଷଣ ତତୋଽଧିକ ଗୁରୁତ୍ୱପୂର୍ଣ୍ଣ । ସେଥିପାଇଁ ଏହି ତିନି ଦଶନ୍ଧି ମଧ୍ୟରେ ଓଡ଼ିଶାର ସାମାଜିକ ଓ ରାଜନୀତିକ ଚିନ୍ତାଦର୍ଶ ତଥା ଉତ୍‌ଥାନ-ପତନର ଚିତ୍ର ପଞ୍ଚମ ପରିଚ୍ଛେଦରେ ଆଲୋଚିତ । ଏହାର ଶିରୋନାମା ହେଉଛି—

'ପ୍ରଗତିବାଦୀ ଓଡ଼ିଆ କବିତାରେ ବାସ୍ତବବାଦୀ ଚେତନା' । ଏହି ପରିଚ୍ଛେଦର ବିଭିନ୍ନ ଉପ-ପରିଚ୍ଛେଦ ଗୁଡ଼ିକ ହେଉଛି—(କ) ଓଡ଼ିଆ କବିତାରେ ମାର୍କସବାଦର ପ୍ରଭାବ, (ଖ), ଗଡଜାତ ପ୍ରଜା ଆନ୍ଦୋଳନ, (ଗ), ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରତିକ୍ରିୟା, (ଘ) ଅଗଷ୍ଟ ବିପ୍ଳବର ଆହ୍ୱାନ, (ଙ) ଗାନ୍ଧିବାଦୀ ପ୍ରଗତିଶୀଳ ସମାଜର ଚିତ୍ର, (ଚ) ସ୍ୱାଧୀନତା ଲାଭ ଓ ସାଂପ୍ରଦାୟିକ ବିଦ୍ୱେଷ, (ଛ) ସୀମା କମିଶନ ରିପୋର୍ଟ ଜନିତ କ୍ଷୋଭ, (ଜ) ଭାରତ ଉପରେ ଚୀନ ଆକ୍ରମଣ, (ଝ) ଉତ୍ତର-ସ୍ୱାଧୀନତା ଯୁଗର ବେଦନା ।

ଷଷ୍ଠ ପରିଚ୍ଛେଦର ଶୀର୍ଷକ ହେଉଛି—ପ୍ରୟୋଗବାଦୀ କବିତାରେ ବାସ୍ତବବାଦୀ ଚେତନା । 'ପ୍ରୟୋଗବାଦ' ବାସ୍ତବବାଦର ପ୍ରତିଶବ୍ଦ ନୁହେଁ, ପକ୍ଷାନ୍ତରରେ ପ୍ରୟୋଗବାଦୀ କାବ୍ୟଧାରାରେ ବାସ୍ତବବାଦୀ ଚିନ୍ତାଧାରାର କେତେକ ନୂତନ ପ୍ରୟୋଗ ସଂଘଟିତ । ଏହି ଅନ୍ତର୍ନିହିତ ସଂଯୋଗ-ସୂତ୍ରର ପରୀକ୍ଷା-ନିରୀକ୍ଷା ପାଇଁ ଏହି ପରିଚ୍ଛେଦରେ ଚାରିଗୋଟି ଉପ-ପରିଚ୍ଛେଦ ସୃଷ୍ଟି କରାଯାଇଛି । ସେଗୁଡ଼ିକ ହେଉଛି—(କ) ଅପାରମ୍ପରିକ ଚରିତ୍ର ସଂଯୋଜନା, (ଖ) ନଗର-ସଭ୍ୟତାର ପ୍ରଭାବ, (ଗ) ପରିବର୍ତ୍ତିତ ପରିସ୍ଥିତିରେ ମିଥିକ ଚରିତ୍ର ଓ ପରିବେଶର ଭୂମିକା, (ଘ) ଶାସ୍ତ୍ରୀୟ ପାରମ୍ପରିକ ମୂଲ୍ୟବୋଧ ପ୍ରତି ବ୍ୟକ୍ତିମାନସର ଶ୍ଳେଷଶାଣିତ ଦୃଷ୍ଟିଭଙ୍ଗୀ ।

ସପ୍ତମ ପରିଚ୍ଛେଦରେ ପ୍ରଗତିବାଦୀ ତଥା ପ୍ରୟୋଗବାଦୀ କବିତାର ବାସ୍ତବଧର୍ମୀ ପ୍ରକାଶ-ବୈଚିତ୍ର୍ୟ ସୂଚିତ । ପ୍ରଗତିବାଦୀ ଓ ପ୍ରୟୋଗବାଦୀ କବିତାର ଅଭିବ୍ୟକ୍ତିଗତ ପାର୍ଥକ୍ୟ ଏହି ପରିଚ୍ଛେଦରେ ଆଲୋଚିତ । ପ୍ରତୀକ, ରୂପକଳ୍ପ, ଚିତ୍ରକଳ୍ପ, ଶବ୍ଦ ତଥା ଛନ୍ଦ ପ୍ରୟୋଗ କ୍ଷେତ୍ରରେ ଏହି କାବ୍ୟ ଚେତନାର ବୈଶିଷ୍ଟ୍ୟର ମୂଲ୍ୟାୟନ ପାଇଁ ପରିଚ୍ଛେଦଟି ଉଦ୍ଦିଷ୍ଟ ।

ଶଂସିତ ନିବନ୍ଧର କେତେକ ପରିଚ୍ଛେଦରେ ସମଧର୍ମୀ ଉପ-ଶୀର୍ଷକ ପ୍ରୟୋଗ କରାଯାଇଛି । ଉଦାହରଣ ସ୍ୱରୂପ ଦ୍ୱିତୀୟ ପରିଚ୍ଛେଦରେ ମାର୍କସୀୟ ବାସ୍ତବବାଦ ଉପ-ଶୀର୍ଷକ ପଞ୍ଚମ ପରିଚ୍ଛେଦରେ ପୁନଃ ପ୍ରଯୁକ୍ତ । ସେହିଭଳି 'ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରତିକ୍ରିୟା' ଉପ-ଶୀର୍ଷକ କିଞ୍ଚିତ ପରିବର୍ତ୍ତିତ ହୋଇ ଦ୍ୱିତୀୟ, ତୃତୀୟ ଓ ପଞ୍ଚମ ପରିଚ୍ଛେଦରେ ଲିଖିତ । ଏହି ଅନୁକ୍ରମରେ 'ସାମାଜିକ ବୈଷମ୍ୟ', 'ଅବହେଳିତ ବର୍ଗରୁ ଚରିତ୍ର ଆହରଣ', 'ମିଥିକ୍ ଚରିତ୍ରର ପ୍ରଗତିବାଦୀ ଦୃଷ୍ଟିଭଙ୍ଗୀ' ଆଦି ଉପ-ଶୀର୍ଷକ ଉଭୟ ତୃତୀୟ ଓ ପଞ୍ଚମ ପରିଚ୍ଛେଦରେ ପ୍ରଯୁକ୍ତ । ଏ ଜାତୀୟ ଉପସ୍ଥାପନା ଅନିଚ୍ଛାକୃତ ନୁହେଁ, ପକ୍ଷାନ୍ତରରେ ସ୍ୱେଚ୍ଛାପ୍ରଣୋଦିତ । ଆଲୋଚନାର ସୌକର୍ଯ୍ୟ ଦୃଷ୍ଟିରୁ ଏଭଳି

ସମାନ୍ତରାଳ ଉପ-ଶୀର୍ଷକର ପ୍ରୟୋଗ ଅବଶ୍ୟମ୍ଭାବୀ । ପାଶ୍ଚାତ୍ୟ, ସର୍ବ-ଭାରତୀୟ ତଥା ଓଡ଼ିଆ କାବ୍ୟ ଚେତନାରେ ବାସ୍ତବବାଦର ଧାରା କିଭଳି ସମାନ୍ତରାଳ ଭାବରେ ପ୍ରବାହିତ ତାହା ଏହି ଉପ-ଶୀର୍ଷକ ମାଧ୍ୟମରେ ଉପସ୍ଥାପିତ ହୋଇଛି ।

ଏହାବ୍ୟତୀତ ନିବନ୍ଧର ପରିଶିଷ୍ଟ (୧)ରେ ଅତିବାସ୍ତବବାଦ (Surrealism) ସମ୍ବନ୍ଧରେ କିଞ୍ଚିତ୍ ଆଲୋଚନା କରାଯାଇଛି । ଏହାର କାରଣ ଅତି-ବାସ୍ତବବାଦ ସମାଲୋଚନା ସାହିତ୍ୟର ଏକ ବିବଦମାନ ତତ୍ତ୍ୱ । କେତେକ ସମାଲୋଚକ ଏହାକୁ ରୋମାଣ୍ଟିକବାଦର ଏକ ପ୍ରଲମ୍ବନ ରୂପେ ସ୍ୱୀକୃତ ଦେଉଥିବା ବେଳେ ଅନ୍ୟ କେତେକ ସମୀକ୍ଷକ ଏହାକୁ ଅବଚେତନ ମନର ଏକ ନଗ୍ନ-ସତ୍ୟ ରୂପେ ଘୋଷଣା କରିଛନ୍ତି । ଏଣୁ ଅତି-ବାସ୍ତବବାଦକୁ ସ୍ୱତନ୍ତ୍ର ଭାବରେ ସମୀକ୍ଷା କରାଯାଇ ଏହା କିଭଳି ଏକ ଅବଚେତନ-ବାସ୍ତବବାଦ ତାହା ପରିଶିଷ୍ଟରେ ପ୍ରତିପାଦିତ କରିବାକୁ ଉଦ୍ୟମ କରାଯାଇଛି ।

ମୂଳ ନିବନ୍ଧରେ ୧୯୩୮-୭୦ ପର୍ଯ୍ୟନ୍ତ ଓଡ଼ିଆ କାବ୍ୟଧାରାରେ ବାସ୍ତବବାଦୀ ଚେତନା ସମ୍ପର୍କରେ ଆଲୋକପାତ କରାଯାଇଥିଲେ ମଧ୍ୟ ପୁସ୍ତକ ପ୍ରକାଶନ ସମୟରେ ଉତ୍ତର-ସତୁରୀ କାଳର ଓଡ଼ିଆ କବିତାରେ ବାସ୍ତବବାଦୀ ଚେତନାର ଏକ ସଂକ୍ଷିପ୍ତ ଆଲୋଚନା ପରିଶିଷ୍ଟ (୨)ରେ ପ୍ରଦତ୍ତ ହୋଇଛି । ୮ମ/୯ମ ଦଶନ୍ଧିର ଆଧୁନିକ କବିତାରେ ବାସ୍ତବବାଦୀ ଚେତନାର ରୂପରେଖ ନିର୍ଣ୍ଣୟ ଏହାର ଲକ୍ଷ୍ୟ ।

ବସ୍ତୁତଃ ଯୁଗ-ଚେତନାର ବିବର୍ତ୍ତନ ସହ ବାସ୍ତବବାଦୀ ଚେତନା ପରିବର୍ତ୍ତିତ ହେଉଥାଏ । ତହିଁରେ ବିଷୟବସ୍ତୁର ବହୁବିଧ ବୈଚିତ୍ର୍ୟ ପରିଲକ୍ଷିତ ହୁଏ । ମାତ୍ର ଏହି କାରଣରୁ ଏହାର ଏକ ସୁନିର୍ଦ୍ଦିଷ୍ଟ ସଂଜ୍ଞା ନିରୂପଣ କଷ୍ଟସାଧ୍ୟ । ସୁତରାଂ କାବ୍ୟିକ ବାସ୍ତବବାଦ ଏ ଯାବତ୍ ଏକ ଅବିସଂବାଦିତ ସତ୍ୟ, ତତ୍ତ୍ୱ ବା ତଥ୍ୟ ରୂପେ ଗୃହୀତ ହୋଇ ପାରିନାହିଁ । ଏଣୁ କେତେକ ସମୀକ୍ଷକଙ୍କ ମତରେ-'ବାସ୍ତବବାଦ ଏକ ପ୍ରତାରଣାମୂଳକ ଅବବୋଧ ରୂପେ ଅପଖ୍ୟାତ ।'(୧) ଏହା ସତ୍ତ୍ୱେ ବାସ୍ତବବାଦର କାଳସଚେତନତା ଏହାର ଭାବବସ୍ତୁକୁ ସଦାସର୍ବଦା ନିତ୍ୟ ନୂତନ ସ୍ୱାଦୁ ଓ ସ୍ୱଚ୍ଛତା

---

(୧)—Realism is a notoriously treacherous concept.
Mark Kinkead Weekes and Lan Gregor, William Golding : a critical study, London, 1967, p 12,

ପ୍ରଦାନ କରିଥାଏ । ବାସ୍ତବ ଜୀବନ ସତ୍ୟ ଜ୍ୱଳନ୍ତ ଅଗ୍ନିଶିଖା ସଦୃଶ ଲେଲିହାନ ହେଲେ ମଧ୍ୟ କବି ଚେତନା ଶୃଙ୍ଗାର ସହ ଏହାକୁ ଅଭିବ୍ୟକ୍ତ କରିବା ପାଇଁ ଅଙ୍ଗୀକାରବଦ୍ଧ । ଏହି ମର୍ମରେ ଲିଖିତ ଉର୍ଦ୍ଦୁ କବି ମୁଜାଫର ସାହିଙ୍କର ଏକ ଶେର୍ ଉଦ୍ଧାର କରାଯାଇ ପାରେ—

"ଦହକତି ଆଗ୍ ସମଝ୍‌କେ ହୋ ହରଫେ ହାକ୍ କୋ ଅଗର୍
ତୁ ଫିର ସ୍ୱେ ଆଗ୍ କୋ ଖୁସି ସେ ଜବାନ୍ ପର ରଖ୍‌ନା" (୨)

ଜୀବନର ଯାତ୍ରାପଥର ଘାତ-ପ୍ରତିଘାତ ତଥା ମର୍ମନ୍ତୁଦ ବେଦନା-ବିଧୁର ଅନୁଭୂତି ଉପରେ ମୁକ୍ତ ଭାଷା ଓ ମୁକ୍ତ ଛନ୍ଦର ନୂତନ ସ୍ୱାଦ ଓ ବ୍ୟଞ୍ଜନା ମଧ୍ୟରେ ଓଡ଼ିଆ କାବ୍ୟଧାରାରେ ବିକଶିତ ହୋଇଛି ତା'ର ମୂଲ୍ୟାୟନ ଏହି ନିବନ୍ଧର ପ୍ରତିପାଦ୍ୟ ବିଷୟ । ଓଡ଼ିଶାର ବାସ୍ତବବାଦୀ କବିମାନଙ୍କର ସାହିତ୍ୟ କୃତିର ପର୍ଯ୍ୟାୟକ୍ରମିକ ମୂଲ୍ୟାୟନ ପରିବର୍ତ୍ତେ ବାସ୍ତବବାଦର ବିଭିନ୍ନ ପ୍ରବୃତ୍ତି ଓଡ଼ିଶାର ପ୍ରତିନିଧିସ୍ଥାନୀୟ କାବ୍ୟ-ଚେତନାରେ କିଭଳି ପ୍ରତିଫଳିତ, ଶଂସିତ ନିବନ୍ଧ ତା'ର ଏକ ବିହଗାବଲୋକନ ମାତ୍ର ।

ଆଧୁନିକ ଓଡ଼ିଆ କବିତାରେ ବାସ୍ତବବାଦୀ ଚେତନା ସମ୍ପର୍କରେ ଅଧ୍ୟାପକ ଚନ୍ଦ୍ରମଣି ବେହେରା (କାବ୍ୟ ଓ କଳାକାର), ଡଃ ଦାଶରଥି ଦାସ (ଆଧୁନିକ କାବ୍ୟ ଜିଜ୍ଞାସା ଚୟନିକା), ଡଃ ନିତ୍ୟାନନ୍ଦ ଶତପଥୀ (ସବୁଜରୁ ସାଂପ୍ରତିକ) ପ୍ରମୁଖ ନିଜ ନିଜ ଗ୍ରନ୍ଥରେ ପ୍ରସଙ୍ଗ କ୍ରମେ ଇତସ୍ତତଃ ଆଲୋଚନା କରିଛନ୍ତି । ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗର ମୁଖପତ୍ର 'ସୃଷ୍ଟି ଓ ସମୀକ୍ଷା'ରେ ଏହି ସମ୍ପର୍କୀୟ ରଚନା ଦୁଇଟି ମୁଖ୍ୟତଃ ତତ୍ତ୍ୱଭିତ୍ତିକ । ଶ୍ରୀ ପ୍ରଫୁଲ୍ଲ କୁମାର ରଥ ତାଙ୍କର 'ବାସ୍ତବବାଦ' ପୁସ୍ତକରେ ବାସ୍ତବବାଦର ତାତ୍ତ୍ୱିକ ବିଚାର ସହ ବାସ୍ତବବାଦୀ ନାଟ୍ୟ-ସାହିତ୍ୟ ଓ କଥା-ସାହିତ୍ୟର ଆଲୋଚନା କରିଥିବାରୁ କାବ୍ୟ ବିଭାଗଟି ସ୍ୱାଭାବିକ ଭାବେ ଗୌଣ ହୋଇ ପଡ଼ିଛି । ଏଣୁ ସାମଗ୍ରିକ ଭାବେ କେବଳ କାବ୍ୟ-କବିତାରେ ବାସ୍ତବବାଦୀ ଚେତନାର ପ୍ରତିଫଳନ ସମ୍ପର୍କରେ ଏହି ଗବେଷଣାତ୍ମକ ନିବନ୍ଧର ଭୂମିକା ସହୃଦୟ ପାଠକ ସମାଜର ହୃଦ୍‌ବୋଧ ହେବ ବୋଲି ବିଶ୍ୱାସ । ନିବନ୍ଧଟିର ରଚନା କାଳରେ ବିଭିନ୍ନ ଇଂରାଜୀ, ବଙ୍ଗଳା ଓ ହିନ୍ଦୀ ଗ୍ରନ୍ଥ ସହ ଉପରୋକ୍ତ ଓଡ଼ିଆ ଭାଷାର ପୁସ୍ତକଗୁଡ଼ିକର ସାହାଯ୍ୟ ଆବଶ୍ୟକ ସ୍ଥଳେ ଗ୍ରହଣ କରାଯାଇଥିଲେ ମଧ୍ୟ ନିଜସ୍ୱ ମୌଳିକତା ରକ୍ଷା କରିବା ପାଇଁ ପ୍ରଯତ୍ନ କରାଯାଇଛି । ବାସ୍ତବବାଦର ବିଭିନ୍ନ ପାର୍ଶ୍ୱର

(୨)– 'ଇଣ୍ଡିଆନ ଲିଟରେଚର' (Indian Literature), ମାର୍ଚ୍ଚ-ଏପ୍ରିଲ ୧୯୮୭ ସଂଖ୍ୟାରୁ ଉଦ୍ଧୃତ)

ବିଶ୍ଳେଷଣ ତଥା ବିଷୟବସ୍ତୁର ସଜ୍ଜୀକରଣରେ ଏହା ସୁସ୍ପଷ୍ଟ । ପ୍ରବୃତ୍ତି ଭିତ୍ତିରେ ଆଲୋଚନା କରାଯାଇଥିବାରୁ ପ୍ରଗତିବାଦୀ ଓ ପ୍ରୟୋଗବାଦୀ କବିତାର ବିଭିନ୍ନ ପକ୍ଷ ଏଥିରେ ବିସ୍ତୃତ ଭାବେ ଆଲୋଚିତ । ତହିଁରୁ ଉଭୟ ବିଭାବର ଭାବଗତ ତଥା ରୂପଗତ ବୈଚିତ୍ର୍ୟ ମଧ୍ୟ ଉଦ୍‌ଘାଟିତ ।

ନିବନ୍ଧ ରଚନା କାଳରେ ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ଭାଷା ଓ ସାହିତ୍ୟର ବିଭାଗୀୟ ମୁଖ୍ୟ ପ୍ରଫେସର ଡକ୍ଟର କୃଷ୍ଣଚରଣ ସାହୁଙ୍କର ସୁଚିନ୍ତିତ ନିର୍ଦ୍ଦେଶନା ଓ ପ୍ରୋତ୍ସାହନ ମୋର ସାଧନାକୁ, ପଦେ ପଦେ ଅଭିସିଞ୍ଚିତ କରିଛି । ମୋର ବଡ଼ ଭଉଣୀ ଅଧ୍ୟାପିକା ସ୍ନିଗ୍ଧା ମିଶ୍ର (ଇଂରାଜୀ ବିଭାଗ) ପାଶ୍ଚାତ୍ୟ ବାସ୍ତବବାଦୀ କାବ୍ୟତତ୍ତ୍ୱ ସମ୍ବନ୍ଧରେ ମୋର ଅବଧାରଣାକୁ ପୁଷ୍ଟ ଓ ସ୍ପଷ୍ଟ କରିବାରେ ସହାୟତା କରିଛନ୍ତି । ଅଧ୍ୟାପିକା-ବାନ୍ଧବୀ ରୁମା ସରକାର ବଙ୍ଗୀୟ ବାସ୍ତବବାଦୀ କବିତା ବିଷୟରେ ମୋର ଜ୍ଞାନର ପରିସୀମାକୁ ସମ୍ପ୍ରସାରଣ କରିବା କ୍ଷେତ୍ରରେ ସ୍ମରଣୀୟା । ଅଧ୍ୟାପିକା ମନୀଷା ଦାସ (ସଂସ୍କୃତ ବିଭାଗ) ବେଦ ଉପନିଷଦ ଓ ପୁରାଣ ସାହିତ୍ୟର ଉଦାହୃତି ଗୁଡ଼ିକର ସଞ୍ଚୟନ କାର୍ଯ୍ୟରେ ସାହାଯ୍ୟ କରି ମୋତେ ବାଧିତ କରିଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ, ଶୈଳବାଳା ମହିଳା ମହାବିଦ୍ୟାଳୟ, ସେକେଣ୍ଡାରୀ ବୋର୍ଡ ହାଇସ୍କୁଲ ତଥା ଉତ୍କଳ ସାହିତ୍ୟ ସମାଜର ଗ୍ରନ୍ଥାଗାରଗୁଡ଼ିକ ଗବେଷଣା କାର୍ଯ୍ୟରେ ପ୍ରଭୂତ ସାହାଯ୍ୟ କରିଥିବାରୁ ସଂପୃକ୍ତ କର୍ମକର୍ତ୍ତାଗଣଙ୍କୁ ଏହି ଅବସରରେ ସାଧୁବାଦ ଜଣାଉଛି । ପରିଶେଷରେ 'ବିଦ୍ୟାପୁରୀ'ର ପରିଚାଳକ ଶ୍ରୀଯୁକ୍ତ ପୀତାମ୍ବର ମିଶ୍ର ସ୍ୱଳ୍ପ ସମୟ ମଧ୍ୟରେ ନିବନ୍ଧଟିକୁ ଗ୍ରନ୍ଥାକାରରେ ପ୍ରକାଶ କରିବାର ଦାୟିତ୍ୱ ବହନ କରିଥିବାରୁ ତାଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

ମୁଦ୍ରଣ ଜନିତ କେତେକ ତ୍ରୁଟି ଯୋଗୁଁ ପରିଶେଷରେ ଏକ ଶୁଦ୍ଧିପତ୍ର ଦିଆଯାଇଛି ।

ଇନ୍ଦୁ ମିଶ୍ର

## ପ୍ରଥମ ପରିଚ୍ଛେଦ

# ବାସ୍ତବବାଦ

### ବାସ୍ତବବାଦର ରୂପରେଖ

ବାସ୍ତବବାଦ (Realism) ଭାରତୀୟ ସାହିତ୍ୟ ପରମ୍ପରାର ଏକ ନବାଗତ ବିଭାବ । ସାହିତ୍ୟ କ୍ଷେତ୍ରରେ ଏହି ମତବାଦର ପ୍ରୟୋଗ ଓ ପ୍ରସିଦ୍ଧି ପାଶ୍ଚାତ୍ୟ ପରମ୍ପରାର ଏକ ଅବଦାନ । ଆଦର୍ଶବାଦ (Idealism) ଓ ରୋମାଣ୍ଟିକବାଦ (Romanticism) ବିରୋଧରେ ଏହି ମତବାଦର ସୃଷ୍ଟି । ବାସ୍ତବବାଦ ବସ୍ତୁଜଗତକୁ ମନ ଓ ଆତ୍ମାର ପ୍ରତିବିମ୍ବ ରୂପେ ଗ୍ରହଣ କରେ ନାହିଁ । ବାସ୍ତବବାଦୀମାନଙ୍କ ମତରେ ଜୀବନ ସୃଷ୍ଟି ଅଥବା ଚେତନାକଳ୍ପିତ ନୁହେଁ । ଏହା କେତେକ ଭୌତିକ ଉପାଦାନର ସମାହାର । ଏହାର ସ୍ୱରୂପ ଇନ୍ଦ୍ରିୟବୋଧ୍ୟ ଓ ସ୍ଥୂଳ । ସ୍ୱଭାବବାଦୀ ଦର୍ଶନ ପରି ମାନବ ଜୀବନ ଏଠାରେ ପ୍ରକୃତିପ୍ରେରିତ ନୁହେଁ, ପକ୍ଷାନ୍ତରେ ସାମାଜିକ ଆଭିମୁଖ୍ୟ ଦ୍ୱାରା ସଂବର୍ଦ୍ଧିତ । ପରଲୋକର ପରିକଳ୍ପନାରେ ଇହଲୋକରୁ ପଳାୟନ ବାସ୍ତବବାଦର ଲକ୍ଷ୍ୟ ନୁହେଁ । ଇହଲୋକର ପରିସର ମଧ୍ୟରେ ବାସ୍ତବତାର ସଂଧାନ ଏହାର ଧର୍ମ । ବସ୍ତୁ ସମ୍ପର୍କିତ ଭାବନାରୁ ଏହା ଉଦ୍‌ଭୂତ । କିନ୍ତୁ ଏହା ବସ୍ତୁକେନ୍ଦ୍ରିକ ମଧ୍ୟ ନୁହେଁ । କାରଣ ବସ୍ତୁର ସ୍ଥୂଳତ୍ୱ ମଧ୍ୟରେ ମାନବ ସମାଜକୁ ଏହା ସୀମାବଦ୍ଧ କରି ରଖେ ନାହିଁ । ସମାଜ ତଥା ବ୍ୟକ୍ତିର କଲ୍ୟାଣ ପାଇଁ ଏହି ଦର୍ଶନ ଏକ ଆଶାବାଦୀ ଦୃଷ୍ଟିଭଙ୍ଗୀର ବାହକ ଓ ପରିପୋଷକ । ଧର୍ମ ଓ ବର୍ଣ୍ଣଗତ ସଂକୀର୍ଣ୍ଣତା ତଥା ଆର୍ଥିକ ବୈଷମ୍ୟବୋଧରୁ ସମାଜକୁ ମୁକ୍ତ କରିବାପାଇଁ ଏହା ସତତ କ୍ରିୟାଶୀଳ ।

ବାସ୍ତବବାଦ ମଧ୍ୟଯୁଗୀୟ ବିସ୍ମୟକର ସୌନ୍ଦର୍ଯ୍ୟବୋଧ, ରୋମାଞ୍ଚ ଓ କଳ୍ପନା-ବିଳାସକୁ ସିଧା ସଳଖ ଅଗ୍ରାହ୍ୟ କରେ । ତାର ସାହିତ୍ୟର ସରସ୍ୱତୀ ନିରାଭରଣା । ମଧ୍ୟଯୁଗୀୟ କାବ୍ୟ-ସରସ୍ୱତୀଙ୍କ ଭଳି ସେ କଳ୍ପନା ଅଥବା ସୌନ୍ଦର୍ଯ୍ୟସଂଭୂତା ନୁହନ୍ତି । ସେ ସତ୍ୟ ସମ୍ଭବା । ବସ୍ତୁତ ବର୍ଣ୍ଣନାବିଳାସ ପରିବର୍ତ୍ତେ ବକ୍ତବ୍ୟ ପ୍ରକାଶନରେ ପରିମିତ-ବୋଧ ଓ ବିଷୟବସ୍ତୁର ବୈଜ୍ଞାନିକ ସୁଲଭ ନିରପେକ୍ଷ ଅବବୋଧ ହେଉଛି ବାସ୍ତବବାଦୀ କଳା ଓ ସାହିତ୍ୟର ବୈଶିଷ୍ଟ୍ୟ । ଏହାର ସତ୍ୟ କ୍ଲାସିକ ସାହିତ୍ୟର ସତ୍ୟପରି ଶାଶ୍ୱତ ନୁହେଁ । କ୍ଲାସିକ ସାହିତ୍ୟର ଘଟଣା ଓ ଚରିତ୍ର କାବ୍ୟିକ ବକ୍ତବ୍ୟର ଆବଶ୍ୟକତା

ଅନୁଯାୟୀ ନିୟନ୍ତ୍ରିତ । ପାରମ୍ପାରିକ ମୂଲ୍ୟବୋଧ ସହିତ କ୍ଲାସିକ ସାହିତ୍ୟ ଅନ୍ୱିତ । ଏଣୁ ତାହା ଅଲୌକିକ ଚିନ୍ତା ଓ ଲକ୍ଷ୍ୟରେ ଅଭିପ୍ରେତ । କିନ୍ତୁ ବାସ୍ତବବାଦୀ କଳା ଓ ସାହିତ୍ୟରେ ଆଟୋପ, ଆଡମ୍ବର ଅଥବା ପାରମାର୍ଥିକ ଶାସ୍ତ୍ରୀୟ ଗାମ୍ଭୀର୍ଯ୍ୟ ଅନାକାଂକ୍ଷିତ ଓ ତ୍ୟାଜ୍ୟ । ଏହା ସର୍ବଦା ଓ ସର୍ବଥା ସାମାଜିକ ଚେତନା ପ୍ରଣୋଦିତ । ସାମାଜିକ ଉପଯୋଗିତାବାଦୀ ଦୃଷ୍ଟିଭଙ୍ଗୀ ଏହି ମତବାଦର କେନ୍ଦ୍ରବିନ୍ଦୁ ।

ଆପାତତଃ ଅବାଞ୍ଛିତ ଓ ତୁଚ୍ଛ ମନେହେଉଥିବା ବିଷୟବସ୍ତୁର ମୂଲ୍ୟବୋଧ ପ୍ରତିପାଦନ କରିବା ବାସ୍ତବବାଦର ଏକ ବିଶେଷ ସ୍ୱାତନ୍ତ୍ର୍ୟ । ସମାଜର ଉପେକ୍ଷିତ ନିକୃଷ୍ଟ ଭଗ୍ନାଂଶ ମଧ୍ୟ ବାସ୍ତବବାଦୀ କଳାର ଉପାଦାନ ରୂପେ ଗୃହୀତ । ବ୍ୟକ୍ତି ପରିବର୍ତ୍ତେ ଗୋଷ୍ଠୀର ବିଜୟ ଏଠାରେ ସ୍ୱୀକୃତ । ରହସ୍ୟ ଓ ରୋମାଞ୍ଚକର କାଳ୍ପନିକ ପରିବର୍ତ୍ତେ ଏଠାରେ ସାଧାରଣ ଜନଜୀବନର ଚରିତ୍ରଚିତ୍ରଣ ଅଧିକ ମହତ୍ତ୍ୱପୂର୍ଣ୍ଣ । ଜୀବନର ସ୍ଥିତି ଏଠାରେ ପୂର୍ବନିର୍ଦ୍ଦିଷ୍ଟ ଅଥବା ପ୍ରାରବ୍ଧପ୍ରଲମ୍ବିତ ନୁହେଁ । ଏହା ଗତିଶୀଳ ଓ ଆପେକ୍ଷିକ । ପରିବର୍ତ୍ତିତ ସାମାଜିକ ଚେତନା ପରିପ୍ରେକ୍ଷୀରେ ଏହା ବିବର୍ତ୍ତିତ ଓ ପରିବର୍ତ୍ତିତ ।

ଈଶ୍ୱରକେନ୍ଦ୍ରିକ ନିରାକାର ସମାଜ ଉପରେ ବାସ୍ତବବାଦ ସାକାରତ୍ୱର ଆରୋପ କରେ । ଅର୍ଥାତ୍ ଅତୀନ୍ଦ୍ରିୟ ଚେତନାଧର୍ମୀ ସ୍ତରରେ ସମାଜକୁ ବିଶ୍ଳେଷଣ ନକରି ବସ୍ତୁଧର୍ମୀ ଭିତ୍ତିରେ ଅନୁଧ୍ୟାନ କରେ । ବାସ୍ତବବାଦୀ ଦାର୍ଶନିକମାନଙ୍କ ମତରେ ହେତୁବାଦ ବା ବିଶ୍ଳେଷଣଶୀଳତା ହିଁ ପ୍ରକୃତ ବାସ୍ତବବାଦ । ଜ୍ଞାନ ଅପେକ୍ଷା କର୍ମର ଭୂମିକା ଏଠାରେ ମହତ୍ତର । ସଂଘର୍ଷ, ଭୌତିକ ଜୀବନର ନାମାନ୍ତର । ଏହି ସଂଘର୍ଷକୁ ବାସ୍ତବବାଦୀ କଳାକାର ଚିନ୍ତା ଓ କଳ୍ପନାରେ ସୀମାବଦ୍ଧ ନରଖି ବାସ୍ତବ ଜୀବନ ଭୂମିରେ ତାକୁ ମୂର୍ତ୍ତିମନ୍ତ କରିବାକୁ ଚାହେଁ । ଘଟଣା ଓ ଚରିତ୍ରର ସମକାଳୀନ ସ୍ଥିତିର ବିନ୍ୟାସ ଏହାର ଲକ୍ଷ୍ୟ । ସାମାଜିକ ଜୀବନର ବିସ୍ତୃତ ଅଙ୍ଗନରୁ ଆବଶ୍ୟକୀୟ ସାମଗ୍ରୀ ଚୟନକରି ବାସ୍ତବବାଦୀ କଳାକାର ତହିଁରେ ନୂତନ ମୂଲ୍ୟବୋଧ ସଞ୍ଚାରିତ କରିଥାଏ । ବାସ୍ତବବାଦୀ ଦର୍ଶନ ଜୀବନର ସମକାଳୀନ ସ୍ଥିତି ଉପରେ କେବଳ ଗୁରୁତ୍ୱ ଆରୋପ କରୁଥିବା ସ୍ଥଳରେ ବାସ୍ତବବାଦୀ କଳା ଓ ସାହିତ୍ୟରେ ଜୀବନର ସ୍ଥିତି ଓ ସମ୍ଭାବନା—ଉଭୟ ବିଭବ ଉପରେ ସମାନୁପାତିକ ଭାବରେ ଗୁରୁତ୍ୱ ଦିଆଯାଇଥାଏ । ଉନ୍ନତ ବାସ୍ତବବାଦୀ କଳା ଓ ସାହିତ୍ୟ ଜୀବନର ଅବିକଳ ପ୍ରତିରୂପ ନୁହେଁ । ଦୃଶ୍ୟମାନ ବସ୍ତୁର କଳାତ୍ମକ ନିର୍ଯ୍ୟାସନିଃସୃତ ଚିନ୍ତାଧାରା ହିଁ ସୃଜନଶୀଳ କଳାକାର ଓ ବ୍ୟାବହାରିକ ଶିଳ୍ପୀର ବାସ୍ତବବାଦ ।

## ବାସ୍ତବ ସତ୍ୟର ସ୍ୱରୂପ ବିଚାର

ରୋମାଣ୍ଟିକ୍ କାବ୍ୟାଦର୍ଶ ଅନୁଯାୟୀ ସୌନ୍ଦର୍ଯ୍ୟ ହିଁ ସତ୍ୟ । ଇଂରାଜୀ ରୋମାଣ୍ଟିକ କବି କିଟ୍ସ (Keats)ଙ୍କ ଭାଷାରେ "ସୌନ୍ଦର୍ଯ୍ୟ ହିଁ ସତ୍ୟ, ସତ୍ୟ ହିଁ ସୌନ୍ଦର୍ଯ୍ୟ (୧) ।" ବାସ୍ତବବାଦୀମାନଙ୍କ ମତରେ "ସତ୍ୟ କେବଳ ବାସ୍ତବତା ପ୍ରତି ପ୍ରଯୁଜ୍ୟ (୨) ।" ଏହା ସଂପୂର୍ଣ୍ଣ ବସ୍ତୁନିଷ୍ଠ (Objective) ଅଥବା ସଂପୂର୍ଣ୍ଣ ବ୍ୟକ୍ତିନିଷ୍ଠ (Subjective) ନୁହେଁ, ମାତ୍ର ଉଭୟର ଏକ ଦ୍ୱନ୍ଦ୍ୱାତ୍ମକ ପ୍ରକ୍ରିୟାରୁ ସୃଷ୍ଟ । ଉଭୟ ବସ୍ତୁନିଷ୍ଠ ଓ ବ୍ୟକ୍ତିନିଷ୍ଠ ସତ୍ୟ ମଧ୍ୟରେ ସମ୍ବନ୍ଧ ଅତି ନିବିଡ଼ । ଏହି ସତ୍ୟର ଉପଲବ୍ଧି ସର୍ବଦା ନିରପେକ୍ଷ ନୁହେଁ । ଅଧିକନ୍ତୁ ଏହା ସାମାଜିକ ପୃଷ୍ଠପଟ୍ଟ ଓ ଅନୁସଙ୍ଗ ସାପେକ୍ଷ । କଳାକାରର ସତ୍ୟ ଉପଲବ୍ଧି ଦୃଶ୍ୟମାନ ପ୍ରମାଣସିଦ୍ଧ ବିଶ୍ୱର ସାକ୍ଷାତକାରରୁ ସୃଷ୍ଟ । ଏହି ସାକ୍ଷାତକାରର ଭିନ୍ନତାରୁ ବାସ୍ତବବାଦର ବିଭିନ୍ନ ପ୍ରକାରଭେଦର ଉତ୍ପତ୍ତି ।

ବ୍ୟକ୍ତିର ଜୀବନରେ ଦ୍ୱିବିଧ ସତ୍ୟ ବିଦ୍ୟମାନ । ପ୍ରଥମଟି ତାତ୍କାଳିକ ଅନୁଭୂତି ଲବ୍ଧ । ଦ୍ୱିତୀୟଟି ଅତୀତର ଅନୁଭୂତି ସଂଭୂତ । ଅତୀତର ସତ୍ୟ ପ୍ରାକ୍-ପରୀକ୍ଷିତ । ରୋମାଣ୍ଟିକ୍ କାବ୍ୟାଦର୍ଶରେ ଏହି ପ୍ରାକ୍-ପରୀକ୍ଷିତ ସତ୍ୟପ୍ରତି ମୋହମୁଗ୍ଧ ଦୃଷ୍ଟି ରହିଥାଏ । କିନ୍ତୁ ବାସ୍ତବବାଦୀର ସତ୍ୟ ବସ୍ତୁନିଷ୍ଠ ବିଚାରବୋଧ ସହ ଅନ୍ୱିତ । ସାମ୍ପ୍ରତିକ ସମସ୍ୟା ସହ ମୁକାବିଲା କରିବାପାଇଁ ଏହା ସଦା ତତ୍ପର । ଅଥଚ କୌତୂହଳର ବିଷୟ ଏହି ଯେ କବିର କାବ୍ୟକୃତିରେ ଏହି ଉଭୟ ସତ୍ୟ ସମୟେ ସମୟେ ଏକ ବିନ୍ଦୁରେ ସମ୍ମିଳିତ ହୋଇଯାଆନ୍ତି । ବାସ୍ତବବାଦୀ କଳାକୃତିରେ ଉପରୋକ୍ତ ଉଭୟ ସତ୍ୟର ସମନ୍ୱୟ ଏକାନ୍ତ କାମ୍ୟ ଓ ସାର୍ବଜନୀନ ଚେତନାବୋଧ ମାଧ୍ୟମରେ ସମାଜର ବିକାଶ ସାଧନ ଏହାର ଲକ୍ଷ୍ୟ । କାରଣ ପରିଦୃଶ୍ୟମାନ ଜଗତକୁ ସାମାଜିକ ଜୀବନର କ୍ରିୟା ପ୍ରକ୍ରିୟା ଭିନ୍ନ ଉପଲବ୍ଧି କରିବା ଅସମ୍ଭବ । ସାମାଜିକ ଜୀବନସହ ସଂଘର୍ଷ ଓ ସମନ୍ୱୟରୁ ବ୍ୟକ୍ତିର ଅନୁଭୂତି, ଜୀବନଧାରା ଓ ତତ୍ସମ୍ପର୍କୀୟ ବାସ୍ତବ ସତ୍ୟର ଉଦ୍ଭବ । ଏଣୁ ସାମାଜିକ ପ୍ରୟୋଗ ଭିନ୍ନ ଏହି ସତ୍ୟ ଅର୍ଥହୀନ । ସୁତରାଂ ଏହାର ପ୍ରୟୋଗାତ୍ମକ ଉପଲବ୍ଧିପାଇଁ କଳା ଓ ସାହିତ୍ୟର ଭୂମିକା ଗୁରୁତ୍ୱପୂର୍ଣ୍ଣ । କାରଣ କଳା ଓ ସାହିତ୍ୟ, ଦର୍ଶନ ଅପେକ୍ଷା ସାମାଜିକ ମୂଲ୍ୟବୋଧ ସମ୍ବନ୍ଧରେ, ଗଣମାନସକୁ ଅପେକ୍ଷାକୃତ ଅଧିକ ସଚେତନ କରିଥାଏ ।

ବାସ୍ତବବାଦ ମତରେ ବିଜ୍ଞାନଭଳି କଳା ଜୀବନ ସଂଗ୍ରାମରୁ ଉଦ୍ଭୂତ । ରୋମାଣ୍ଟିକ କବି କୋଲରିଜ Coleridge) ମତରେ, "କବିତା ଗଦ୍ୟର ଯଥାର୍ଥ-

ପ୍ରତ୍ୟାନୁଭୂତ ନୁହେଁ, ବିଜ୍ଞାନର ହିଁ ଯଥାର୍ଥ ପ୍ରତ୍ୟାନୁଭୂତ, (୩) ।" ବାସ୍ତବବାଦୀମାନଙ୍କ ମତରେ କଳା ସୁକୁମାର ଭାବନାର ସ୍ୱପ୍ନିଳ ବିଳାସ ନୁହେଁ, ବିଜ୍ଞାନ ଭଳି ଏହା ପରୀକ୍ଷା ଓ ପ୍ରୟୋଗ ସାଧ୍ୟ । କଳା ଓ ବିଜ୍ଞାନ ପରସ୍ପରର ପରିପୂରକ । ସୌନ୍ଦର୍ଯ୍ୟ ସୃଷ୍ଟି ପରିବର୍ତ୍ତେ ସତ୍ୟର ସଂପ୍ରସାରଣ ବାସ୍ତବବାଦୀ କଳାର ଲକ୍ଷ୍ୟ ।

## ପାଶ୍ଚାତ୍ୟ ସମୀକ୍ଷା ଶାସ୍ତ୍ରରେ ବାସ୍ତବବାଦ

ବାସ୍ତବବାଦ ସମ୍ବନ୍ଧରେ ଡାମିଏନ୍ ଗ୍ରାଣ୍ଟ୍, ଖ୍ରୀଷ୍ଟୋଫର୍ କଡଉଏଲ୍, ଆଲେକ୍‌ଜ୍ ପ୍ରେମିଂଜର, ଥୋମାସ୍ ହଡସନ୍, ଓ୍ୱାଲେସ୍ ଷ୍ଟିଭେନ୍‌ସ, ଜର୍ଜ ବେକର, ଭି. ଡି. ସୋଲପିଣ୍ଟୋ, ଜର୍ଜ ଲ୍ୟୁକସ୍ ପ୍ରମୁଖ ପାଶ୍ଚାତ୍ୟ ସମୀକ୍ଷକଗଣ ବିସ୍ତୃତଭାବେ ଆଲୋଚନା କରିଛନ୍ତି (୪) । ଏହା ବ୍ୟତୀତ ଆରିଷ୍ଟୋଟଲ୍ ଓ ପ୍ଲେଟୋ ସ୍ୱସ୍ୱ କାବ୍ୟତତ୍ତ୍ୱରେ ବାସ୍ତବବାଦ ପ୍ରସଙ୍ଗରେ ଅଭିମତ ପ୍ରଦାନ କରିଛନ୍ତି (୫) । ଡାମିଏନ୍ ଗ୍ରାଣ୍ଟ୍‌ଙ୍କ ଭାଷାରେ, "ବାସ୍ତବବାଦ ସଦାସର୍ବଦା ଆମ୍ଭମାନଙ୍କ ଏହାର ପ୍ରାଥମିକ କ୍ରିୟାପ୍ରକ୍ରିୟା ସମ୍ବନ୍ଧରେ ସୂଚନା ଦେଇଥାଏ । ବସ୍ତୁ (Resthing) ସମ୍ବନ୍ଧୀୟ ଭାବ ବା ଜ୍ଞାନ ହିଁ ବାସ୍ତବବାଦ (୬) ।"

ଥୋମାସ ହଡସନଙ୍କ ମତରେ, "ତାତ୍ତ୍ୱିକତା ଦୃଷ୍ଟିରୁ ବାସ୍ତବବାଦୀ ସାହିତ୍ୟିକ ଜୀବନକୁ ଅବିକଳ ଭାବେ ଚିତ୍ରିତ କରିବାକୁ ଗଲାବେଳେ ପୂର୍ବପରିକଳ୍ପିତ ଜୀବନ-ଦର୍ଶନର ଅନୁଭୂତିକୁ ବିଷୟବସ୍ତୁ ଉପରେ ଲଦି ଦେଇନଥାନ୍ତି । ସେମାନେ କାହାଣୀକୁ ନିଜ କଥା ନିଜେ କହିବାକୁ ଦେଇଥାନ୍ତି । କାରଣ ସେମାନଙ୍କ ମତରେ ଘଟଣା ସ୍ରୋତରେ ହିଁ ପ୍ରକୃତ ତଥ୍ୟ ନିହିତ ରହିଥାଏ (୭) ।" ହର୍ଣ୍ଣବାଇଙ୍କ ଭାଷାରେ, "ବାସ୍ତବବାଦ, ଆଦର୍ଶବାଦର ପରିପୋଷଣ କରେନାହିଁ, ଅଥବା କୁତ୍ସିତ ଓ ଯନ୍ତ୍ରଣାଦାୟକ ଜୀବନ-ସତ୍ୟକୁ ଉପେକ୍ଷା କରେନାହିଁ । ଅଧିକନ୍ତୁ ବାସ୍ତବ ଜୀବନ ଓ ତଥ୍ୟକୁ ନିଷ୍ଠାର ସହ ପ୍ରଦର୍ଶନ କରିଥାଏ (୮) ।" ରୁଷିଆର ବିଶିଷ୍ଟ ବାସ୍ତବବାଦୀ କଳାକାର ତୁର୍ଗେନିଭ କହିଛନ୍ତି—"ବାସ୍ତବବାଦ ସ୍ୱୟଂ ଏକ ଆତଙ୍କ, କିନ୍ତୁ ସତ୍ୟ ହେଉଛି ଆମର ପ୍ରାଣବାୟୁ ସ୍ୱରୂପ । କଳା ଏଭଳି ଏକ ଉଦ୍‌ଭିଦ ଯାହା ସମୟେ ସମୟେ ସମ୍ପୂର୍ଣ୍ଣ କାଳ୍ପନିକ ହୋଇମଧ୍ୟ ସାଧାରଣ ବାୟୁମଣ୍ଡଳ ଭିତରେ ହିଁ ଜନ୍ମ ଓ ବିକାଶ ଲାଭ କରିଥାଏ (୯) ।" ଓ୍ୱାଲେସ୍ ଷ୍ଟିଭେନ୍‌ସଙ୍କ କଳ୍ପନାତ୍ମକ ବିଶ୍ୱ ସମ୍ପୂର୍ଣ୍ଣ ଅନାକର୍ଷଣୀୟ ମନେହୁଏ । ତାଙ୍କ ମତରେ ବାସ୍ତବବାଦ ହିଁ ମାନବିକ ସମସ୍ୟାବଳୀର ଉତ୍ଥାପନ ପାଇଁ ଏକ ନିର୍ଭରଯୋଗ୍ୟ ପନ୍ଥା (୧୦) ।

ଆଲେକ୍‌ସ୍ ପ୍ରେମିଂଜରଙ୍କ ଭାଷାରେ "ବାସ୍ତବବାଦୀ କବିତା—

(କ) ବାସ୍ତବ ପରିସ୍ଥିତି ମଧ୍ୟରେ ସାଧାରଣ ଚରିତ୍ର ସମ୍ପୃକ୍ତର ନିରପେକ୍ଷର ବିନ୍ୟାସ କରିଥାଏ (ସମସ୍ତ ସମୟରେ ସମାଜର ନିମ୍ନସ୍ତରର ଚରିତ୍ର ଏଥିରେ ସ୍ଥାନ ପାଇଥାଏ) ।

(ଖ) କଷ୍ଟ କଳ୍ପିତ ରୂପକ ଓ ଚିତ୍ରକଳ୍ପାବଳୀକୁ ଏହା ପ୍ରତ୍ୟାଖ୍ୟାନ କରେ ।

(ଗ) ସହଜ କଥନ ଓ ସାବଲୀଳ ଗଦ୍ୟଧର୍ମୀ ଛନ୍ଦ ମାଧ୍ୟମରେ ବକ୍ତବ୍ୟକୁ ଅଭିବ୍ୟକ୍ତ କରିଥାଏ (୧୧) ।

କଳାରେ ବାସ୍ତବବାଦ ସାଧାରଣତଃ ଆଦର୍ଶବାଦର ଏକ ପ୍ରତ୍ୟନୀକ ରୂପେ ଗୃହୀତ । ବସ୍ତୁକୁ କାଳ୍ପନିକ ଭାବରେ ସର୍ବାଙ୍ଗସୁନ୍ଦର କରିବା ପରିବର୍ତ୍ତେ ଏହା ତା'ର ଯଥାଯଥ ପ୍ରତିରୂପ ଅଙ୍କନ କରେ (୧୨) ।

ବାସ୍ତବବାଦୀ ଦାର୍ଶନିକ ଡୁରାଣ୍ଟି କହିଛନ୍ତି, "ବାସ୍ତବବାଦ ସମସାମୟିକ ପୃଥିବୀର ସାମାଜିକ ବାତାବରଣର ଅବିକଳ, ପୂର୍ଣ୍ଣାଙ୍ଗ ତଥା ବିଶୁଦ୍ଧ ପ୍ରତିରୂପ । ଏହି ପ୍ରତିରୂପ ଯେତେଦୂର ସମ୍ଭବ ସରଳ ହେବା ବାଞ୍ଛନୀୟ, ଯାହାଦ୍ୱାରା ଯେକୌଣସି ବ୍ୟକ୍ତି ପକ୍ଷରେ ଏହା ସହଜବୋଧ ହୋଇପାରିବ (୧୩) ।"

ସ୍ୱଭାବବାଦୀ ଦାର୍ଶନିକ ଏମିଲ୍ ଜୋଲା ମଧ୍ୟ ବାସ୍ତବବାଦର ସ୍ୱରୂପ ସମ୍ବନ୍ଧରେ ଆଲୋଚନା କରିଛନ୍ତି । ସାହିତ୍ୟ ଜଗତରେ ଶାଶ୍ୱତବାଦ (Classicism), ରୋମାଣ୍ଟିକବାଦ (Romanticism) ଓ ବାସ୍ତବବାଦ (Realism) ନାମରେ ତିନୋଟି ପରଦା ରହିଛି । ଶାଶ୍ୱତବାଦର ପରଦା ବିଷୟବସ୍ତୁର ବିକାଶ ଓ ପ୍ରକାଶ ପାଇଁ ପ୍ରତିଫଳକ କାଚପଟ୍ଟିକା ସଦୃଶ । ମାତ୍ର ରୋମାଣ୍ଟିକବାଦର ପରଦାଟିର ପ୍ରତିଫଳନ ଅତି ଅସଲଗ୍ନ । ଜୋଲାଙ୍କ ଭାଷାରେ, "ବାସ୍ତବବାଦୀ ପରଦାଟି ଅତ୍ୟନ୍ତ ସୂକ୍ଷ୍ମ, ସ୍ୱଚ୍ଛ, ସ୍ଫଟିକ ସଦୃଶ । ବସ୍ତୁର ପ୍ରତିଛବି ଏହା ମଧ୍ୟଦେଇ ଅତିକ୍ରାନ୍ତ ହୋଇ ସ୍ୱକୀୟ ବାସ୍ତବତାରେ ନବରୂପରେ ପ୍ରତିଭାତ ହୋଇଥାଏ (୧୪) ।"

ପ୍ରାୟ ପ୍ରତ୍ୟେକ ସମାଲୋଚକ ବାସ୍ତବବାଦକୁ ବସ୍ତୁ-ସଂପର୍କିତ ଚେତନାର କଳାତ୍ମକ ପ୍ରତିଫଳକ ରୂପେ ସ୍ୱୀକୃତି ଦେଇଛନ୍ତି । ରୋମାଣ୍ଟିକ କଳା ଓ ସାହିତ୍ୟର ଉପେକ୍ଷିତ ଜୀବନ-ସତ୍ୟକୁ ବାସ୍ତବବାଦ କୁକ୍ଷିଗତ କରିଥାଏ । ସମାଲୋଚକ ଡାମିଏନ୍ ଗ୍ରାଣ୍ଟ ସେଥିପାଇଁ ବାସ୍ତବବାଦକୁ ସାହିତ୍ୟର ବିବେକବୋଧ (Conscience of literature) ରୂପେ ଅଭିହିତ କରିଛନ୍ତି । କଳାରୁ କଳ୍ପନାର ଅନ୍ତରଙ୍ଗକୁ ବିଚ୍ଛିନ୍ନକରି ବସ୍ତୁନିଷ୍ଠ ବିଶ୍ୱକୁ ନିରପେକ୍ଷ ଦୃଷ୍ଟିରେ ପର୍ଯ୍ୟବେକ୍ଷଣ କରିବାର ଅଭିପ୍ସାରୁ ବାସ୍ତବବାଦର ଅଭ୍ୟୁଦୟ ଘଟିଛି ।

## ଅଭ୍ୟୁଦୟର ପୃଷ୍ଠପଟ

ବସ୍ତୁର ବସ୍ତୁନିଷ୍ଠତାର ଦାର୍ଶନିକ ଏଷଣାରୁ ବାସ୍ତବବାଦର ସୃଷ୍ଟି ହୋଇ-ଥିଲେ ମଧ୍ୟ ଏହା ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଏକ ସାହିତ୍ୟିକ ଚିନ୍ତାଧାରା ରୂପେ ସ୍ୱୀକୃତି ଲାଭ କରିଥିଲା । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ପରିଲକ୍ଷିତ ହୋଇଥିବା କଳାର କଳ୍ପନା, ବ୍ୟକ୍ତିନିଷ୍ଠ ଜୀବନାନୁଭୂତି, ସୌନ୍ଦର୍ଯ୍ୟଚେତନା ଓ ବିଷାଦ-ବୋଧ ଆଦି କାବ୍ୟାଦର୍ଶ ଉକ୍ତ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବାସ୍ତବବାଦୀ ଚିନ୍ତାଧାରାରେ ରୂପାନ୍ତରିତ ହୋଇଯାଇଥିଲା । ଏହି ଚିନ୍ତାଧାରା ଉଭୟ କଥା ଓ କାବ୍ୟ ସାହିତ୍ୟର ସ୍ୱରକୁ ଝଙ୍କୃତ କରିଥିଲା ।

ଇଉରୋପୀୟ ପରମ୍ପରାରେ ଏହି ଚିନ୍ତାଧାରା ପ୍ରଥମେ ଚିତ୍ରକଳା ଓ ପରେ ପରେ ସାହିତ୍ୟ ଚେତନାରେ ପ୍ରତିଫଳିତ ହୋଇଥିଲା । ୧୮୫୫ ମସିହାରେ ଫରାସୀ ଚିତ୍ରଶିଳ୍ପୀ ଗୁସ୍ତାଭ୍ କୋରବେଟ୍ ଏକ ଚିତ୍ରକଳା ପ୍ରଦର୍ଶନୀରେ ନିଜକୁ ଜଣେ ବାସ୍ତବବାଦୀ ଚିତ୍ରଶିଳ୍ପୀ ରୂପେ ପ୍ରତିପାଦନ କରିଥିଲେ । ଚିତ୍ର ପ୍ରଦର୍ଶନୀର ଦ୍ୱାରଦେଶରେ "ଡୁ, ରିଅଲିଜିମ୍' (Du Realisme) ଶବ୍ଦ ଦୁଇଟି ସେ ସର୍ବପ୍ରଥମେ ଉଲ୍ଲେଖ କରିଥିଲେ । ଶିଳ୍ପ ବିପ୍ଲବୋତ୍ତର ଶ୍ରମିକ ସମ୍ପ୍ରଦାୟର ସମସ୍ୟାବଳୀ ଉପରେ ତାଙ୍କ ଚିତ୍ର-ଗୁଡ଼ିକ ଆଧାରିତ ଥିଲା । ଅବହେଳିତ ସମାଜର ଦୁଃଖ, ଯନ୍ତ୍ରଣା ତଥା ଦୈନନ୍ଦିନ ଜୀବନର ସାଧାରଣ ଅନୁଭୂତିସମୂହ ଏହି ଚିତ୍ର ପ୍ରଦର୍ଶନୀରେ ଦୃଷ୍ଟି ଆକର୍ଷଣ କରିଥିଲା ।

କେତେକ ସୁନିର୍ଦ୍ଦିଷ୍ଟ ସାମାଜିକ ଓ ଆର୍ଥିକ ପରିବର୍ତ୍ତନ ତଥା ବୈଜ୍ଞାନିକ ଆବିଷ୍କାର ଓ ଉଦ୍‌ଭାବନ ଫଳରେ କଳା ଓ ସାହିତ୍ୟରେ ବାସ୍ତବବାଦର ଅଭ୍ୟୁଦୟ ଘଟିଥିଲା । ସେଗୁଡ଼ିକ ମଧ୍ୟରୁ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି:—

(କ) ଶିଳ୍ପ ସଭ୍ୟତାର କ୍ରମ ବିସ୍ତାର,
(ଖ) ଶ୍ରମିକ ଆନ୍ଦୋଳନ,
(ଗ) ପୁଞ୍ଜିବାଦ ବିରୋଧରେ ମାର୍କସ୍ ଓ ଏଙ୍ଗେଲସ୍‌ଙ୍କ ଆହ୍ୱାନ,
(ଘ) ଡାରଉଇନ୍‌ଙ୍କ କ୍ରମବିବର୍ତ୍ତନବାଦ,
(ଙ) ଆଲୋକ ଚିତ୍ରର ଉଦ୍‌ଭାବନ,
(ଚ) ମନୋବିଜ୍ଞାନର ଭୂମିକା,
(ଛ) ରୁଷ ବିପ୍ଳବର ପ୍ରଭାବ ।

## (କ)—ଶିଳ୍ପ ସଭ୍ୟତାର କ୍ରମବିସ୍ତାର

ଅଷ୍ଟାଦଶ-ଊନବିଂଶ ଶତାବ୍ଦୀରେ ଇଂଲଣ୍ଡରେ ଶିଳ୍ପ ସଭ୍ୟତାର ବ୍ୟାପକ କ୍ରମ-ବିସ୍ତାର (୧୫) ଫଳରେ ପାରମ୍ପରିକ କୃଷିଭିତ୍ତିକ ସମାଜ ପରିବର୍ତ୍ତେ ନୂତନ ନଗରୀ

ସଭ୍ୟତାର ବିକାଶ ଘଟିଥିଲା । ଏହା ଫଳରେ ଇଂଲଣ୍ଡର ଭୌଗୋଳିକ, ଆର୍ଥିକ ଓ ସାମାଜିକ ଗଢ଼ଣରେ ଅଭୂତପୂର୍ବ ପରିବର୍ତ୍ତନ ସୃଷ୍ଟି ହେଲା । କୃଷିର ଶିଳ୍ପ ବ୍ୟାପକ ଭାବେ କ୍ଷତିଗ୍ରସ୍ତ ହେବାରୁ ପଲ୍ଲୀର ମେରୁଦଣ୍ଡ ଭଗ୍ନପ୍ରାୟ ହେଲା । ନଗରରେ ଶିଳ୍ପ ସଭ୍ୟତାର ବିକାଶ ଫଳରେ ବୁର୍ଜୁଆ ଗୋଷ୍ଠୀ ବିଶେଷ ଭାବେ ଲାଭବାନ ହେଲେ । କର୍ମ ସନ୍ଧାନ ପାଇଁ ପଲ୍ଲୀର ଯୁବଗୋଷ୍ଠୀ ନଗରାଭିମୁଖୀ ହେଲେ । ଜନସଂଖ୍ୟାର ବ୍ୟାପକ ଅଭିବୃଦ୍ଧି ହେତୁ ଶ୍ରମିକ ସମ୍ପ୍ରଦାୟ ଦୈନନ୍ଦିନ ଜୀବନଯାପନ କ୍ଷେତ୍ରରେ ବିଶେଷ ଅସୁବିଧାର ସମ୍ମୁଖୀନ ହେଲେ । ବେକାର ସମସ୍ୟା ସୃଷ୍ଟି ହେବା ଫଳରେ ସେମାନଙ୍କର ଆର୍ଥିକ ସ୍ଥିତି ଶୋଚନୀୟ ହୋଇ ପଡ଼ିଲା । ପୁଞ୍ଜିବାଦୀ ସମାଜଠାରୁ ସେମାନେ ଆର୍ଥିକ ଅଥବା ମାନସିକ ସହାୟତା ଲାଭ କରି ପାରିଲେ ନାହିଁ । ରାଜନୈତିକ କ୍ଷେତ୍ରରେ ସେମାନଙ୍କୁ ନ୍ୟାଯ୍ୟୋଚିତ ମର୍ଯ୍ୟାଦାରୁ ମଧ୍ୟ ବଞ୍ଚିତ କରାଗଲା । ଏହିଭଳି ସାମାଜିକ ବୈଷମ୍ୟ ଫଳରେ ଶ୍ରମିକ ସମ୍ପ୍ରଦାୟ ମଧ୍ୟରେ ତୀବ୍ର ଅସନ୍ତୋଷ ସୃଷ୍ଟି ହେଲା ।

### (ଖ)—ଶ୍ରମିକ ଆନ୍ଦୋଳନ

ସାମାଜିକ ବୈଷମ୍ୟ ପ୍ରସୂତ ତୀବ୍ର ଅଶାନ୍ତି ଓ ଅସନ୍ତୋଷକୁ କେନ୍ଦ୍ରକରି ଶ୍ରମିକ ଗୋଷ୍ଠୀ ମଧ୍ୟରେ ନବଜାଗରଣର ସୂତ୍ରପାତ ହୋଇଥିଲା । ଇଉରୋପର ବିଭିନ୍ନ ସ୍ଥାନରେ ଏଥିପାଇଁ ଭିନ୍ନ ଭିନ୍ନ ପଦକ୍ଷେପ ନିଆଯାଇଥିଲା (୧୬) । ଏହି ସମୟରେ ପୋଲାଣ୍ଡରେ ନିମ୍ନ ବର୍ଗର ଜନସଂଘ ତଥା ଶ୍ରମିକ ସଂପ୍ରଦାୟ ଜାର୍ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ (୧୭) । ଫ୍ରାନ୍ସରେ ଫରାସୀ ସାଧାରଣତନ୍ତ୍ର ଓ ଜର୍ମାନୀ ମଧ୍ୟରେ ସଂଘଟିତ ଯୁଦ୍ଧରେ, ଫରାସୀ ସାଧାରଣତନ୍ତ୍ର ପରାଜୟ ସ୍ୱୀକାର କଲା (୧୮) । କିନ୍ତୁ ସାଧାରଣ ଜନ-ଜୀବନର ଅସନ୍ତୋଷ-ବହ୍ନି ନିର୍ବାପିତ ହେଲା ନାହିଁ । ବିପ୍ଲବ ମାଧ୍ୟମରେ ସାମାଜିକ ସାମ୍ୟର ପ୍ରତିଷ୍ଠା ପାଇଁ ଜନସାଧାରଣ ସଂଘବଦ୍ଧ ଭାବେ ଉଦ୍ୟମ କଲେ । ଶ୍ରମିକ ଆନ୍ଦୋଳନ ତୀବ୍ରତର ରୂପରେ ଆତ୍ମପ୍ରକାଶ କଲା । ଫଳରେ କଳା ଓ ସାହିତ୍ୟରେ ଜନସାଧାରଣଙ୍କ ସମସ୍ୟା ସମ୍ବନ୍ଧରେ ଆଲୋଚନା କରିବାପାଇଁ କଳାକାର ଗୋଷ୍ଠୀ ସଚେତନ ହେଲେ । ଏହି ସଚେତନତା ଫଳରେ କଳା ଓ ସାହିତ୍ୟରୁ କଳ୍ପନା ଓ ସୌନ୍ଦର୍ଯ୍ୟବୋଧକ ରୋମାଣ୍ଟିକବାଦର ବିଲୟ ଘଟିଲା ।

### (ଗ)—ପୁଞ୍ଜିବାଦ ବିରୋଧରେ ମାର୍କସ୍ ଓ ଏଙ୍ଗେଲ୍‌ସଙ୍କ ଆହ୍ୱାନ

ଶିଳ୍ପ ବିପ୍ଳବୋତ୍ତର କାଳରେ ପୁଞ୍ଜିର କେନ୍ଦ୍ରୀକରଣ ସମାଜରେ ଦୁଇଟି ଶ୍ରେଣୀ ସୃଷ୍ଟି କରିଥିଲା । ଗୋଟିଏ ଶୋଷକ ଶ୍ରେଣୀ – ଉଭୟ ପୁଞ୍ଜିବାଦୀ ଓ ବୁର୍ଜୁଆ—ଏହି

ଶ୍ରେଣୀଭୁକ୍ତ । ଅପରଟି ଶୋଷିତ ଶ୍ରେଣୀ—ଶ୍ରମଜୀବୀ ଜନସାଧାରଣ ଏହି ଶ୍ରେଣୀର ଅନ୍ତର୍ଗତ । ସାମନ୍ତବାଦୀ ସମାଜର ଶୋଷଣର ସ୍ୱରୂପ ପୁଞ୍ଜିବାଦୀ ସମାଜରେ ଅଧିକ ଉଗ୍ରରୂପ ଧାରଣ କରିଥିଲା । ସମାଜବାଦୀ ଦାର୍ଶନିକ ମାର୍କସ ଓ ଏଙ୍ଗେଲ୍ସ ଏହି ଶୋଷକ ଶ୍ରେଣୀ ବିରୋଧରେ ତୀବ୍ରସ୍ୱର ଉତ୍ତୋଳନ କରିଥିଲେ । ଏଙ୍ଗେଲ୍ସ ଓ ମାର୍କସଙ୍କର ପତ୍ର ପତ୍ରିକାରେ ପ୍ରକାଶିତ ବହୁ ପ୍ରବନ୍ଧ ଓ ପୁସ୍ତକରେ ଏହି ସ୍ୱରର ସ୍ୱାକ୍ଷର ପରିଲକ୍ଷିତ ହୋଇଥିଲା (୯) । ଏହା ଫଳରେ ଫରାସୀ ବିପ୍ଳବ ପରେ କଳା ଓ ସାହିତ୍ୟରେ ରୋମାଣ୍ଟିକ ଚିନ୍ତାଧାରାର ଯେଉଁ ଉନ୍ମେଷ ଘଟିଥିଲା ତାହା ମ୍ଳାନ ହୋଇ ଆସିଲା । ଶତାବ୍ଦୀବ୍ୟାପୀ ପ୍ରତିଷ୍ଠିତ କ୍ଲାସିକ, ନିଓକ୍ଲାସିକର ଶାସ୍ତ୍ରୀୟଶୃଙ୍ଖଳା ବିରୋଧରେ ରୋମାଣ୍ଟିକ କବିଗଣ ସଂଗ୍ରାମ ଘୋଷଣା କରିଥିଲେ । କିନ୍ତୁ ଅଷ୍ଟାଦଶ ଶତାବ୍ଦୀୟ ଏହି ସାହିତ୍ୟିକ ଅଗ୍ରଦୂତ, ବାସ୍ତବବାଦୀ ସାହିତ୍ୟର ଅଭ୍ୟୁଦୟ ଫଳରେ ଖଣ୍ଡିତ ହୋଇଗଲା ।

### (ଘ) ଡାରଉଇନ୍‌ଙ୍କ ବିବର୍ତ୍ତନବାଦ (Theory of Evolution)

ଊନବିଂଶ ଶତାବ୍ଦୀରେ ବିଜ୍ଞାନର ବିକାଶ ଫଳରେ ମାନବ ତା'ର ସୃଷ୍ଟି ରହସ୍ୟ ସମ୍ପର୍କରେ ବହୁ ତଥ୍ୟ ଉଦ୍‌ଘାଟନ କଲା । ବୈଜ୍ଞାନିକ ଚାର୍ଲସ ଡାରଉଇନ୍‌ଙ୍କ ବିବର୍ତ୍ତନବାଦ ମାନବର ଜନ୍ମ ତଥା ମାନବ ଜାତିର ଜୈବିକ ବିକାଶ ସମ୍ବନ୍ଧରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଉପସ୍ଥାପିତ କଲା । ଡାରଉଇନ୍‌ଙ୍କ ମତବାଦ ଅନୁଯାୟୀ ସମଗ୍ର ମାନବ ଜାତିର ବିକାଶ ଏକ ପାର୍ଥିବ ପ୍ରକ୍ରିୟାର ବିବର୍ତ୍ତନର ପରିଣତି । ଡାରଉଇନ୍ ତାଙ୍କର 'ଅରିଜିନ୍ ଅଫ୍ ସ୍ପେସିସ୍' (Origin of Species)ରେ ଏହି ବିବର୍ତ୍ତନବାଦର ବିସ୍ତୃତ ଆଲୋଚନା କରିଥିଲେ । ପ୍ରାଚୀନ ଭାରତୀୟ ପରମ୍ପରାରେ ପ୍ରାଣୀ ଜଗତର କ୍ରମବିକାଶର ଧାରା ସମ୍ପର୍କରେ ସ୍ପଷ୍ଟ ସୂଚନା ଦିଆଯାଇଥିଲେ ମଧ୍ୟ ତାହା ଧାର୍ମିକ ଦୃଷ୍ଟିକୋଣରୁ ପରିବେଷିତ ହୋଇଥିଲା । ହିନ୍ଦୁମାନଙ୍କର ଦଶାବତାର ପରିକଳ୍ପନାକୁ କେହି କେହି ମାନବ ଜାତିର ବିବର୍ତ୍ତନର କ୍ରମବିକାଶ ରୂପେ ଗ୍ରହଣ କରିଥାନ୍ତି (୨୦) ।

କିନ୍ତୁ ଡାରଉଇନ୍ ଜୀବର ବିକାଶ କ୍ଷେତ୍ରରେ ସମ୍ପୂର୍ଣ୍ଣ ବସ୍ତୁଧର୍ମୀ ଧାରା ପ୍ରଦର୍ଶନ କରିଥିଲେ । ଏହି ସମ୍ପର୍କରେ ସେ ତିନଗୋଟି ଉପାଦେୟ ତଥ୍ୟ ଆବିଷ୍କାର କରିଥିଲେ । ସେ ଗୁଡ଼ିକ ହେଉଛି—(୧) ବଂଶ ପରମ୍ପରା (heredity), (୨) ବୈଚିତ୍ର୍ୟ (variation) ଓ (୩) ସ୍ଥିତିପାଇଁ ସଂଘର୍ଷ (struggle for existence)

### ୧ । ବଂଶ ପରମ୍ପରା

ଏହା ଏକ ରକ୍ଷଣଶୀଳ ଶକ୍ତି । ଡାରଉଇନ୍‌ଙ୍କ ମତରେ ଗୋଟିଏ ପ୍ରାଣୀର ବିବର୍ତ୍ତନ କାଳରେ ତାର ପୂର୍ବଜମାନଙ୍କର କେତେକ ପ୍ରବୃତ୍ତି, ତାହାକୁ ଉତ୍ତରାଧିକାର ସୂତ୍ରରେ ମିଳିଥାଏ । ବାସ୍ତବବାଦ ଅପେକ୍ଷା ପ୍ରକୃତିବାଦ ଏହି ତଥ୍ୟ ଦ୍ୱାରା ଅଧିକ ପ୍ରଭାବିତ ।

## ୨ । ବୈଚିତ୍ର୍ୟ

ଏହା ଏକ ସ୍ୱାଧୀନ ଶକ୍ତି । ଜାତିଗତ ସାଧାରଣ ସାମ୍ୟ ସତ୍ତ୍ୱେ ପ୍ରତ୍ୟେକ ବ୍ୟକ୍ତିର ଏକ ସ୍ୱତନ୍ତ୍ର ସତ୍ତା ରହିଥାଏ । ଯାହା ଗୋଟିଏ ବ୍ୟକ୍ତିକୁ ଅନ୍ୟ ଏକ ବ୍ୟକ୍ତିଠାରୁ ପୃଥକ ଭାବେ ଚିହ୍ନିତ କରାଏ । ଅସ୍ତିତ୍ୱବାଦୀ-ଦର୍ଶନ ଏହାଦ୍ୱାରା ପ୍ରଭାବିତ ।

## ୩ । ସ୍ଥିତି ପାଇଁ ସଙ୍ଘର୍ଷ

ଜୀବନ ଧାରଣ ପାଇଁ ପ୍ରତ୍ୟେକ ବ୍ୟକ୍ତିକୁ ସଙ୍ଘର୍ଷ କରିବାକୁ ପଡ଼ିଥାଏ । ବୈଜ୍ଞାନିକ ଡ଼ାରଉଇନଙ୍କର ଏକ ଉଲ୍ଲେଖନୀୟ ସିଦ୍ଧାନ୍ତ ଥିଲା—ଯୋଗ୍ୟତମର ଉଦ୍‌ବର୍ତ୍ତିନ (survival of the fittest) । ବାସ୍ତବବାଦୀ ଚିନ୍ତାଧାରା ଏହା ଦ୍ୱାରା ଅନୁପ୍ରାଣୋଦିତ ହୋଇଥିଲା ।

ମନୁଷ୍ୟ ଅଦୃଶ୍ୟ ଭାଗ୍ୟର କ୍ରୀଡ଼ନକ ନୁହେଁ । ଜୀବନଧାରଣ ପାଇଁ ସଂଗ୍ରାମ ଅବ୍ୟାହତ ରହିଲେ ସ୍ଥିତି ସୁଦୃଢ଼ ରହିପାରିବ । ଅନ୍ୟଥା ଦୁର୍ବଳ ଉପରେ ସବଳର ଆକ୍ରମଣର କ୍ରୂର ରଥଚକ୍ରତଳେ ଜୀବଜଗତର ବହୁ ପ୍ରଜାତି (species) ଭଳି ଶୋଷିତ କୃଷକ, ଶ୍ରମିକ ସମ୍ପ୍ରଦାୟର ବିଲୟ ଘଟିବ । ଡ଼ାରଉଇନ୍‌ଙ୍କର ଏହି ସିଦ୍ଧାନ୍ତ ଦଳିତ, ନିଷ୍ପେଷିତ ଶ୍ରେଣୀକୁ ଜୀବନଧାରଣ ପାଇଁ ସଂଗ୍ରାମ କରିବାକୁ ପ୍ରେରଣା ଦେଇଥିଲା ।

## (୪) ଆଲୋକଚିତ୍ର (Photography)ର ଉଦ୍ଭାବନ

ଊନବିଂଶ ଶତାବ୍ଦୀରେ ଆଲୋକଚିତ୍ରର ଉଦ୍ଭାବନ ଘଟିଥିଲା (୨୯) । ଆଲୋକଚିତ୍ରରେ ଏକ ବସ୍ତୁର ଅବିକଳ ପ୍ରତିରୂପ ଉଦ୍ଧାର କରାଗଲା । ଅବଶ୍ୟ କଳା ଓ ସାହିତ୍ୟରେ ଗୋଟିଏ ବସ୍ତୁର ଅବିକଳ ପ୍ରତିବିମ୍ବ ଉଦ୍ଧାର କରାଗଲେ, ତାହାର କଳା-ଧର୍ମ ହ୍ରାସ ପାଇବାର ସମ୍ଭାବନା ରହିଥାଏ । ବିଶିଷ୍ଟ ସାମାଜବାଦୀ ଔପନ୍ୟାସିକ ଜର୍ଜ ଇଲିୟଟ୍ (୧୮୧୯-୧୮୮୦) ଏ ଭଳି ସମ୍ଭାବନାକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ତାଙ୍କ ମତରେ ବାସ୍ତବବାଦୀ ସାହିତ୍ୟ, ଦର୍ପଣ ପ୍ରତିବିମ୍ବିତ ସମାଜର ଚିତ୍ର ସ୍ୱରୂପ । ବସ୍ତୁ ଓ ବ୍ୟକ୍ତି ସମ୍ବନ୍ଧରେ ତାଙ୍କ ମନର ଦର୍ପଣରେ ଯେଉଁ ଚିନ୍ତାଧାରା ପ୍ରତିଫଳିତ ହୁଏ, ତାହାକୁ ହିଁ ସେ ବିଶ୍ୱସ୍ତ ଭାବେ ପ୍ରକାଶ କରନ୍ତି । ଦର୍ପଣରେ ପ୍ରତିଫଳିତ ଦୃଶ୍ୟ ଭାବାତ୍ମକ ନ ହୋଇପାରେ । କେତେବେଳେ ଅବା ପ୍ରତିବିମ୍ବିତ ଛବିର ନଗ୍ନ ଭଙ୍ଗୀ ଦୃଷ୍ଟିକଟୁ ମନେ ହୋଇପାରେ । ଆଉ କେତେବେଳେ ଅବା ସେ ଛବିର ପ୍ରତିଫଳନ ଅସ୍ପଷ୍ଟ ମନେ ହୋଇପାରେ । କିନ୍ତୁ ନ୍ୟାୟାଳୟରେ ଶପଥ ପାଠ କରିଥିବା କାଠଗଡ଼ାର ଜଣେ ସାକ୍ଷୀ

ଭଳି ଦର୍ପଣରେ ଯାହା ଦେଖିଲେ ତାହାକୁ ଅବିକଳ ଭାବେ ପ୍ରକାଶ କରିବାକୁ ସେ ଅଙ୍ଗୀକାରବଦ୍ଧ ।

'ସୋସିଆଲିଷ୍ଟ ରିଅଲିଜମ୍ ଇନ୍ ଆର୍ଟ ଆଣ୍ଡ୍ ଲିଟରେଚର୍' (Socialist Realism in Art and Literature) ଗ୍ରନ୍ଥରେ କଳାର ଏହି ଚନ୍ଦ୍ର ମୁକୁର ଉପମାକୁ ସମାଲୋଚନା କରାଯାଇଛି । "ଦର୍ପଣ ସର୍ବଦା ତାର ସମ୍ମୁଖସ୍ଥ ବସ୍ତୁର ଶୀତଳ ପ୍ରତିଫଳନ ଧାରଣ କରେ । କିନ୍ତୁ କଳା ସର୍ବଦା ତାର ଆଧାରକୁ ନିର୍ବାଚନ କରେ, ସମୀକ୍ଷା କରେ ଓ ବାସ୍ତବତାକୁ ଏହାର ସୃଷ୍ଟି ସତ୍ତ୍ୱର ରୂପାୟନ ପାଇଁ ପୁନର୍ଗଠନ କରେ (୨୨) ।" କଳା ଓ ସାହିତ୍ୟ ଜୀବନର ଫଟୋଗ୍ରାଫ୍ ନୁହେଁ । ଆଲୋକଚନ୍ଦ୍ର ନିରୀକ୍ଷଣ କାଳରେ ତତ୍ତ୍ୱାଲୋଚନକାରୀଙ୍କର ମାନସଲୋକ ସହ ବସ୍ତୁ ସମ୍ପର୍କିତ ଚେତନାର କୌଣସି ସମ୍ବନ୍ଧ ରହିନଥାଏ, ପକ୍ଷାନ୍ତରେ କଳାର ଉନ୍ମେଷ କାଳରେ ବସ୍ତୁ ଓ ତତ୍ସମ୍ପର୍କିତ ଚେତନାସହ କଳାକାରମାନସ ଓତଃପ୍ରୋତ ଭାବରେ ସଶ୍ଳିଷ୍ଟ ହୋଇଥାଏ । ସର୍ଷ୍ଟି ଉଭୟର ଏହି ମୌଳିକ ପାର୍ଥକ୍ୟ ସତ୍ତ୍ୱେ ବାସ୍ତବବାଦୀ କଳା ଓ ସାହିତ୍ୟର ଉଦ୍‌ଭବ କ୍ଷେତ୍ରରେ ଆଲୋକ୍‌ଚନ୍ଦ୍ରର ଅବଦାନ ଅନସ୍ୱୀକାର୍ଯ୍ୟ । ବସ୍ତୁ ଜଗତର ନିରପେକ୍ଷ କଳନା ତଥା ବାସ୍ତବ ଜୀବନ-ଭୂମି ସହ କଳା ଓ ସାହିତ୍ୟର ପ୍ରତ୍ୟକ୍ଷ ସଂଯୋଜନା ପରିପ୍ରେକ୍ଷୀରେ ଆଲୋକ ଚନ୍ଦ୍ରର ପ୍ରେରଣା ସୁପ୍ରମାଣିତ ।

## (ଚ) ମନୋବିଜ୍ଞାନର ଭୂମିକା

କଳା ଓ ସାହିତ୍ୟ ବାସ୍ତବବାଦ ମନୋବିଜ୍ଞାନର ବିକାଶ ଦ୍ୱାରା ମଧ୍ୟ ପ୍ରଭାବିତ ହୋଇଛି । ମାକ୍‌ସିମ୍ ଗର୍କିଙ୍କ ଭାଷାରେ, "କଳାର ଚିତ୍ରଣରେ ଘଟଣା ଅପେକ୍ଷା, ଘଟଣାର ପୃଷ୍ଠପଟରେ ନିହିତ ଥିବା ମନୋବିଜ୍ଞାନ ପ୍ରତି କଳାକାର ଅଧିକ ବିଶ୍ୱସ୍ତ ରହିବା ବାଞ୍ଛନୀୟ (୨୩) ।" ସିଗ୍‌ମଣ୍ଡ ଫ୍ରଏଡ଼ଙ୍କ ସ୍ୱପ୍ନ-ବିଶ୍ଳେଷଣ (Dream Analysis) ମାଧ୍ୟମରେ ଆଧୁନିକ ମନୋବିଜ୍ଞାନର ବିକାଶ ସଂସାଧିତ । ମନୋବୈଜ୍ଞାନିକ ଫ୍ରଏଡ଼୍ ମନୁଷ୍ୟର ବୈଚିତ୍ର୍ୟମଣ୍ଡିତ ମନର ରହସ୍ୟ ଉଦ୍‌ଘାଟନ କରିବାକୁ ଯାଇ ଏହାକୁ ତିନିଗୋଟି ସ୍ତରରେ ବିଭକ୍ତ କରିଛନ୍ତି । ଯଥା—ଚେତନ (conscious), ଅବଚେତନ (sub-conscious), ଅଚେତନ (unconscious) । ମାନବର ଚେତନ ସତ୍ତାକୁ ନିୟନ୍ତ୍ରିତ କରେ, ତାର ସାମାଜିକ ସତ୍ତା (Ego) । କିନ୍ତୁ ଅବଚେତନ ସ୍ତରରେ ଗୁମ୍ଫିତ ହୋଇ ରହିଥାଏ ଅଜସ୍ର ଅବଦମିତ ପ୍ରବୃତ୍ତି । ଫ୍ରଏଡ଼ ଏହି ଅବଦମିତ ପ୍ରବୃତ୍ତିକୁ ଇଡ଼୍ (Id) ରୂପେ ସଂଜ୍ଞାୟିତ କରିଛନ୍ତି । ଅନ୍ୟ

ବାସ୍ତବବାଦୀ କବିତାକୁ ଏହି ମନୋବୈଜ୍ଞାନିକ ତଥ୍ୟ ଅନୁପ୍ରଣୋଦିତ କରିଛି । ଅବଚେତନ ଚିତ୍ତର ଅବଦମିତ ପ୍ରବୃତ୍ତିନିଚୟ ଅତିବାସ୍ତବବାଦୀ କବିତାରେ ଭିନ୍ନ ଭିନ୍ନ ଅନୁସଙ୍ଗ ମାଧ୍ୟମରେ କାବ୍ୟାୟିତ ହୋଇଛି ।

## (ଛ) ରୁଷ୍ ବିପ୍ଳବର ପ୍ରଭାବ

ପୃଥିବୀ ଇତିହାସରେ ରୁଷ ବିପ୍ଳବ ଏକ ଯୁଗାନ୍ତକାରୀ ଘଟଣା । ରୁଷୀୟ ଜନସାଧାରଣଙ୍କର ବହୁବର୍ଷର ପୁଞ୍ଜିଭୂତ ଅସନ୍ତୋଷରୁ ଏହାର ଉଦ୍‌ଭବ । ରୁଷର ଶାସକବର୍ଗ (ଜାର) ଜମିଦାର ଓ ଧର୍ମଯାଜକମାନଙ୍କର ଅତ୍ୟାଚାର ଦ୍ୱାରା ଲୋକେ ବହୁ କାଳ ଧରି ନିଷ୍ପେଷିତ ଓ ଉତ୍ପୀଡ଼ିତ ହୋଇଥିଲେ । ଟଲଷ୍ଟୟଙ୍କ ବୈପ୍ଳବିକ ରଚନାବଳୀ ଚିର ପ୍ରପୀଡ଼ିତ କୃଷକ ଓ ଶ୍ରମିକମାନଙ୍କ ମଧ୍ୟରେ ନୂତନ ଜାଗରଣ ସୃଷ୍ଟି କଲା । ଜାରଙ୍କ ଅତ୍ୟାଚାରର ପ୍ରତିରୋଧ କରିବାକୁ ରୁଷର ଜନସାଧାରଣ ବଦ୍ଧପରିକର ହେଲେ । ନିଷ୍ପେଷଣ ଓ ଉତ୍ପୀଡ଼ନର ମୁକାବିଲା କରିବା ପାଇଁ ରୁଷୀୟ ସମାଜବାଦୀ ଗଣତାନ୍ତ୍ରିକ ଦଳ (Russian Socialist Democratic Party) ଗଠିତ ହେଲା (୨୪) ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ରୁଷ-ଜାପାନ ଯୁଦ୍ଧରେ ରୁଷ ପରାସ୍ତ ହେଲା ଓ ଦେଶବ୍ୟାପୀ ଖାଦ୍ୟ ବସ୍ତ୍ରର ଅଭାବ ଘଟିଲା । ଚାରିଆଡ଼େ ବିଦ୍ରୋହ ବ୍ୟାପିବାକୁ ଲାଗିଲା । ଶ୍ରମିକମାନେ ଧର୍ମଘଟ କଲେ । ୧୯୦୫ ମସିହାରେ ପିଟରସ୍‌ବର୍ଗ ବା ପେଟ୍ରୋଗ୍ରାଡ଼ର ଶ୍ରମିକମାନେ ଗାପନ୍ (Gapon) ନାମକ ଏକ ଧର୍ମଯାଜକଙ୍କ ନେତୃତ୍ୱରେ ଜାର ଦ୍ୱିତୀୟ ନିକୋଲସଙ୍କ ସ୍ୱେଚ୍ଛାଚାରୀ ଶାସନର ବିଲୋପ ପାଇଁ ଦାବିପତ୍ର ଦେଲେ । ଏହି ବିଦ୍ରୋହ କଠୋର ହସ୍ତରେ ଦମନ କରାଗଲା ଏବଂ ଶହ ଶହ ନିରୀହ ଜନତାଙ୍କ ରକ୍ତରେ ପେଟ୍ରୋଗ୍ରାଡ଼ର ରାସ୍ତା ରଞ୍ଜିତ ହେଲା । ସୋଭିଏଟ୍ ଇତିହାସ ପୃଷ୍ଠାରେ ଏହା ଲାଲ ରବିବାର (Red Sunday) ନାମରେ ଅଭିହିତ (୨୫) । ସେହି ବର୍ଷ ଅକ୍ଟୋବରରେ ବିଦ୍ରୋହ ଘଟି ନିର୍ମମ ଭାବରେ ଅବଦମିତ ହୋଇଥିଲା । ବିଦ୍ରୋହୀମାନଙ୍କ ଦ୍ୱାରା ଗଠିତ ସୋଭିଏତ୍ କାଉନ୍‌ସିଲଗୁଡ଼ିକୁ ବେଆଇନ ଘୋଷଣା କରାଗଲା । ବିଦ୍ରୋହୀ ଶ୍ରମିକ ଓ କୃଷକ ସମାଜର ନେତା ଲେନିନ୍ ଦେଶ ଛାଡ଼ି ସୁଇଜରଲାଣ୍ଡରେ ଆଶ୍ରୟ ନେଲେ । ବିଦ୍ରୋହ ବ୍ୟର୍ଥ ହୋଇଥିଲେହେଁ ବାରମ୍ବାର ଏହାର ପୁନରାବୃତ୍ତି ଦ୍ୱାରା ଜାର ଶାସନ ବିରୁଦ୍ଧରେ ଜନମତ ବ୍ୟାପକ ଭାବରେ ଜାଗ୍ରତ ହେବାକୁ ଲାଗିଲା ।

୧୯୧୪ ମସିହାରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ରୁଷିଆକୁ ଜର୍ମାନୀ ବିରୁଦ୍ଧରେ ଏହି ଯୁଦ୍ଧରେ ବ୍ୟାପୃତ ହେବାକୁ ପଡ଼ିଲା । ପ୍ରାୟ ସତର ଲକ୍ଷ ରୁଷୀୟ

ଏହି ଯୁଦ୍ଧରେ ନିହତ ହେଲେ । ପଚିଶ ଲକ୍ଷ ଆହତ ହେଲେ । ରୁଷିଆ ପଞ୍ଚଷଠି ହଜାର ବର୍ଗ ମାଇଲ ଅଞ୍ଚଳ ହରାଇ ବସିଲା । ଖାଦ୍ୟାଭାବ ଯୋଗୁଁ ଶ୍ରମିକ ଅଶାନ୍ତି ଅଧିକ ବ୍ୟାପକ ଓ ବଳବତ୍ତର ହେଲା । ୧୯୧୭ ମସିହାରେ ପେଟ୍ରୋଗ୍ରାଡ଼ର ଶ୍ରମିକମାନେ ପୁଣି ଧର୍ମଘଟ କଲେ । ଚତୁର୍ଦ୍ଦିଗରେ ଅସନ୍ତୋଷର ବହ୍ନି ପ୍ରଜ୍ଜ୍ୱଳିତ ହେବା ଯୋଗୁଁ ଜାର ବାଧ୍ୟ ହୋଇ ସିଂହାସନ ତ୍ୟାଗ କଲେ । ବିପ୍ଳବୀ ନେତା କେରେନାସ୍କି ଏକ ଅସ୍ଥାୟୀ ସରକାର ଗଠନ କଲେ, କିନ୍ତୁ ରୁଷିଆର ରାଜନୀତିକ ତଥା ସାମାଜିକ ଅବସ୍ଥାରେ କୌଣସି ଉଲ୍ଲେଖନୀୟ ପରିବର୍ତ୍ତନ ଘଟି ପାରିଲା ନାହିଁ ।

ଏହିଭଳି ଏକ ସଙ୍କଟସନ୍ଧି ମୁହୂର୍ତ୍ତରେ ଲେନିନ୍ ନିର୍ବାସନରୁ ଫେରି ପେଟ୍ରୋଗ୍ରାଡ଼ ଶ୍ରମିକମାନଙ୍କର ନେତୃତ୍ୱ ନେଲେ । ତାଙ୍କର ବଳିଷ୍ଠ ଅଧିନାୟକତ୍ୱରେ ବିପ୍ଳବ ଶକ୍ତିଶାଳୀ ହେବାକୁ ଲାଗିଲା । ଜର୍ମାନ ଦାର୍ଶନିକ କାର୍ଲମାର୍କସଙ୍କ ଆଦର୍ଶରେ ଅନୁପ୍ରାଣିତ ଏହି ବିଦ୍ରୋହ ବିଶ୍ୱ ଇତିହାସରେ ସର୍ବହରା ବିପ୍ଳବ ରୂପେ ପରିଚିତ । ଅକ୍ଟୋବର ମାସରେ ଏହି ବିପ୍ଳବର ସୂତ୍ରପାତ ଘଟିଥିବାରୁ ଏହା ଅକ୍ଟୋବର ବିପ୍ଳବ ରୂପେ ମଧ୍ୟ ଅଭିହିତ (୨୭) । ଏହି ବିପ୍ଳବ ଫଳରେ ରୁଷିଆରୁ ସ୍ୱେଚ୍ଛାଚାରୀ ଜାର ଶାସନର ଅବସାନ ଘଟିଥିଲା ଓ ନୂତନ ସାମ୍ୟବାଦୀ ଶାସନ ପ୍ରବର୍ତ୍ତିତ ହେଲା ।

ସାହିତ୍ୟ ଓ କଳା ସମାଜ ଜୀବନର ବାହକ ହୋଇଥିବାରୁ ଏହି ବିପ୍ଳବ ସମୟରେ ରୁଷୀୟ କବିତାରେ ଏକ କ୍ରାନ୍ତିକାରୀ ଅଧ୍ୟାୟର ସୃଷ୍ଟି ହୋଇଥିଲା । ମାୟାକୋଭସ୍କି ଓ ସରକୋଭଙ୍କ ଭଳି ସାମ୍ୟବାଦୀ କବି ଚେତନାରେ ବିପ୍ଳବର ଅଗ୍ନିଦୀପ୍ତ ଆହ୍ୱାନ ଉଚ୍ଚକିତ ହେବା ସଙ୍ଗେ ସଙ୍ଗେ ଅବହେଳିତ ବର୍ଗର ଦୁଃଖ ଓ ଦୈନ୍ୟ ପ୍ରତି ସମ୍ବେଦନଶୀଳତା ପ୍ରକଟିତ ହେଲା । କାଳକ୍ରମେ ବିଶ୍ୱର ବିଭିନ୍ନ କଳା ଓ ସାହିତ୍ୟକୁ ଏହା ସମ୍ପ୍ରସାରିତ ହେଲା ।

**ପରିସର ଓ ପରିବ୍ୟାପ୍ତି**

ବାସ୍ତବବାଦ ସମ୍ବନ୍ଧରେ ଡାମିଏନ୍ ଗ୍ରାଣ୍ଟ ଉଲ୍ଲେଖ କରିଛନ୍ତି, "ବାସ୍ତବବାଦ ଶବ୍ଦ ଏକ ସମାଲୋଚନାତ୍ମକ ପରିଭାଷା । ଏହା ନିର୍ଦ୍ଦିଷ୍ଟ ଭାବେ ସ୍ୱତନ୍ତ୍ର, ପ୍ରସାରଣ ଯୋଗ୍ୟ ଓ ବ୍ୟାପକ ଅର୍ଥରେ ପ୍ରଯୁଜ୍ୟ ହେବା ଆବଶ୍ୟକ (୨୭)।" ବସ୍ତୁବାଦ (Materialism), ପ୍ରତ୍ୟକ୍ଷବାଦ (Positivism), ସ୍ୱଭାବବାଦ (Naturalism) ଓ ଅସ୍ତିତ୍ୱବାଦ (Existencialism) ସହିତ ବାସ୍ତବବାଦର ସୌସାଦୃଶ୍ୟ ଅନେକ ସମୟରେ ଓ ସ୍ଥଳରେ ଏହାର ସ୍ୱରୂପକୁ ସନ୍ଦିଗ୍ଧ କରିଦିଏ । ଏଣୁ ପ୍ରତ୍ୟେକ ବିଭାବର ସ୍ୱତନ୍ତ୍ର ଆଲୋଚନା କଲେ ବାସ୍ତବବାଦର ସ୍ୱରୂପ ସୁସ୍ପଷ୍ଟ ହେବ ।

## ୧—ବାସ୍ତବବାଦ ଓ ବସ୍ତୁବାଦ

ଦାର୍ଶନିକମାନଙ୍କ ମତରେ "ପ୍ରତ୍ୟେକ ପଦାର୍ଥ ବସ୍ତୁ-ଭିତ୍ତିକ ଅଥବା ବସ୍ତୁର ଏକ ପରିଣତି । ଦୃଶ୍ୟମାନ ଜଗତର ସ୍ଥିତି ଓ ପରିବର୍ତ୍ତନର ମୂଳ ସତ୍ତା ବସ୍ତୁ-କେନ୍ଦ୍ରିକ (୨୮) ।" ଭାବବାଦୀ ଦର୍ଶନ ବିରୋଧରେ ବସ୍ତୁବାଦ ଏକ ଆହ୍ୱାନ । ଫୁରିଏର୍, ସେଣ୍ଟ ସାଇମନ, ରବର୍ଟ ଓଏନ୍ ପ୍ରମୁଖ ଦାର୍ଶନିକ ବସ୍ତୁବାଦ ଭିତ୍ତିରେ ସପ୍ତଦଶ ଶତାବ୍ଦୀରେ ସମାଜବାଦ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ କରିଥିଲେ । ଏହି ସମାଜବାଦ, ସର୍ବହରାର ମୁକ୍ତି ପରିବର୍ତ୍ତେ ସାମଗ୍ରିକ ମାନବ ସଭ୍ୟତାର ପ୍ରମୁକ୍ତି ଉପରେ ଗୁରୁତ୍ୱ ଆରୋପ କରିଥିଲା । ମାତ୍ର ଏହି ମୁକ୍ତିର ରାଜ୍ୟ ଥୋମସ୍ ମୁର୍‌ଙ୍କର 'ଇଉଟୋପିଆ' (Utopia) ଭଳି ଏକ କଳ୍ପନାର ସ୍ୱର୍ଗ ସୃଷ୍ଟି କରିଥିଲା । ଅଷ୍ଟାଦଶ ଶତାବ୍ଦୀରେ ହିମୋକ୍ରିଟସ୍, ଡ଼ି. ଡ଼ଉଗ୍ରେଟ୍, ପି. ହାଲବାକ୍, ହେଲଭେଟିଅସ୍ ପ୍ରମୁଖ ବସ୍ତୁବାଦୀ ଦାର୍ଶନିକ ଧର୍ମ ଓ ରକ୍ଷଣଶୀଳତା ବିରୁଦ୍ଧରେ ଆହ୍ୱାନ ଦେଇଥିଲେ । କିନ୍ତୁ କାର୍ଲ ମାର୍କସ୍ ପ୍ରଥମ ଥର ପାଇଁ ବସ୍ତୁବାଦକୁ ଏକ ପ୍ରାୟୋଗିକ ଭୂମିକା ପ୍ରଦାନ କରିଥିଲେ । ତାଙ୍କର ଏହି ଦର୍ଶନ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ (dialectical materialism) ରୂପେ ପରିଚିତ ।

### (କ)—ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ (Dialectical materialism)

ଗ୍ରୀକ୍ ଭାଷା 'ଡାୟୋଲେଗ' ମୂଳରୁ 'dialectical' ଶବ୍ଦର ସୃଷ୍ଟି । ଏହାର ଆକ୍ଷରିକ ଅର୍ଥ ଦ୍ୱିସଂବାଦ ବା ଦୁଇଜଣ ବ୍ୟକ୍ତିଙ୍କ ପ୍ରଶ୍ନୋତ୍ତର । ସଂପ୍ରତି ଏହାର ଏକ ଲକ୍ଷ୍ୟାର୍ଥ ପ୍ରଚଳିତ । ତା ହେଉଛି ଚିନ୍ତାର ବିକାଶ କ୍ଷେତ୍ରରେ ଅନ୍ତର୍ବିରୋଧୀ ସଂଘର୍ଷ । ଜର୍ମାନ ଦାର୍ଶନିକ ହେଗେଲଙ୍କ ଦ୍ୱନ୍ଦ୍ୱବାଦ ବସ୍ତୁର କ୍ଷେତ୍ରରେ ସୀମାବଦ୍ଧ । କିନ୍ତୁ ମାର୍କସ୍ ଦ୍ୱନ୍ଦ୍ୱବାଦକୁ ସାମାଜିକ ସଂସ୍ଥାର ବିକାଶ ଉଦ୍ଦେଶ୍ୟରେ ବ୍ୟାବହାରିକ ମୂଲ୍ୟ ପ୍ରଦାନ କରିଥିଲେ । ବସ୍ତୁର ନିରନ୍ତର ପରିବର୍ତ୍ତନ ଓ ବିକାଶ ଉପରେ ଦ୍ୱନ୍ଦ୍ୱବାଦ ଗୁରୁତ୍ୱ ଆରୋପ କରିଥାଏ । ଏହା ସମାଜର ବିଗତ ପର୍ଯ୍ୟାୟଗୁଡ଼ିକୁ କେବଳ ପୁନରାବୃତ୍ତି କରେ ନାହିଁ, ତାହାକୁ ଉନ୍ନତତର ଭିତ୍ତିରେ ଅଗ୍ରଗାମୀ ମଧ୍ୟ କରାଏ । ବିପ୍ଳବ ଦ୍ୱାରା ଜୀବନର ଧାରାବାହିକ ପର୍ଯ୍ୟାୟରେ ପୂର୍ଣ୍ଣଚ୍ଛେଦ ଟାଣିଥାଏ । ଏହି ମତବାଦ ଅନୁଯାୟୀ ଏକ ଯୁଗର ଚିନ୍ତାଧାରାକୁ ତାର ପରବର୍ତ୍ତୀ ଯୁଗର ଚିନ୍ତାଧାରା ସର୍ବଦା ବିରୋଧ କରିଥାଏ । ଏକ ଯୁଗର ଅନ୍ୱୟ (thesis) ପରବର୍ତ୍ତୀ ଯୁଗରେ ପ୍ରତ୍ୟନ୍ୱୟ (antithesis)ରେ ପରିଣତ ହୁଏ । କିନ୍ତୁ ଏହି ଅନ୍ୱୟ ଓ ପ୍ରତ୍ୟନ୍ୱୟ ମଧ୍ୟରୁ ଏକ

ନୂତନ ସମନ୍ୱୟ (synthesis)ର ପ୍ରଚେଷ୍ଟା ପାଇଁ ଉଦ୍ୟମ ଅବ୍ୟାହତ ରହେ । ଏହି ଅନ୍ୱୟ, ପ୍ରତ୍ୟନ୍ୱୟ ଓ ସମନ୍ୱୟକୁ କେନ୍ଦ୍ର କରି ସାମାଜିକ ଚେତନା ପରିବର୍ତ୍ତିତ ହୋଇଯାଏ । ତଦନୁଯାୟୀ ସାମାଜିକ ମୂଲ୍ୟବୋଧ ବିବର୍ତ୍ତିତ ହେଉଥାଏ ।

## (ଖ)—ଐତିହାସିକ ବସ୍ତୁବାଦ (Historical materialism)

ଦ୍ୱନ୍ଦ୍ୱାତ୍ମକତା ମାନବ ଇତିହାସ ସହ ସଂପୃକ୍ତ ହେଲେ ଐତିହାସିକ ବସ୍ତୁବାଦ ସୃଷ୍ଟି ହୁଏ । ଐତିହାସିକ ବସ୍ତୁବାଦ ମତରେ—ଅର୍ଥିକ ପରିସ୍ଥିତି ଅନୁକୂଳ ସାମାଜିକ ତଥା ରାଜନୈତିକ ବ୍ୟବସ୍ଥା ସୃଷ୍ଟି ହେବା ବାଞ୍ଛନୀୟ । ଭୌତିକ ସଂପଦର ବିକାଶପାଇଁ ମାନବିକ ଶ୍ରମ ବିନିଯୁକ୍ତ ହେବା ଆବଶ୍ୟକ । ସମ-ଉତ୍ପାଦନ ଓ ସମ-ବଣ୍ଟନ ମାଧ୍ୟମରେ ଶ୍ରେଣୀହୀନ ସମାଜ ଗଠନ ଏହି ମତବାଦର ମୂଳମନ୍ତ୍ର । ମାର୍କସ୍‌ବାଦ ଏକ ରାଜନୈତିକ ଅର୍ଥଶାସ୍ତ୍ର ହୋଇଥିଲେ ମଧ୍ୟ ବିପ୍ଲବ ମାଧ୍ୟମରେ ସମାଜରେ ସାମ୍ୟବାଦର ପ୍ରତିଷ୍ଠା ଓ ବୈଜ୍ଞାନିକ ମତବାଦର ସୁଗଠିତ ବ୍ୟବସ୍ଥା ଏହାର ଲକ୍ଷ୍ୟ । ସମାଜ-ସମେତ ଇତିହାସ, ନୈତିକ ତତ୍ତ୍ୱ ଓ ସୌନ୍ଦର୍ଯ୍ୟ ତତ୍ତ୍ୱକ୍ଷେତ୍ରରେ ମାର୍କସ୍‌ଙ୍କ ବସ୍ତୁବାଦ ବିପ୍ଳବ ସୃଷ୍ଟି କରିଛି ।

ବସ୍ତୁବାଦର ଭୌତିକ ଗୁରୁତ୍ୱ "ଈଶ୍ୱରକେନ୍ଦ୍ରିକ ସମାଜକୁ ବସ୍ତୁକେନ୍ଦ୍ରିକ କରାଇବା ଉଦ୍ଦେଶ୍ୟରେ ଅଭିପ୍ରେତ । ଏହି ବସ୍ତୁକେନ୍ଦ୍ରିକ ଚିନ୍ତାଧାରା ଭାବବାଦୀ ଦର୍ଶନର ପାରମାର୍ଥିକ ବିଶ୍ୱାସବୋଧକୁ ପ୍ରତ୍ୟାଖ୍ୟାନ କରିଛି । ବିଶେଷତଃ ଈଶ୍ୱରଙ୍କ ଦ୍ୱାହିଦେଇ ଧର୍ମଯାଜକମଣ୍ଡଳୀ ଓ ଶୋଷକ ସମ୍ପ୍ରଦାୟର ଅତ୍ୟାଚାର ବିରୋଧରେ ପ୍ରତ୍ୟକ୍ଷ ଭାବେ ଆହ୍ୱାନ ଦେଇଛି । ପ୍ରତ୍ୟେକ ବସ୍ତୁ ପାର୍ଥିବ ପ୍ରକ୍ରିୟାରେ ସଂଘଟିତ ବିଚାରବୋଧ ହେତୁ ବର୍ଗଭେଦ ବିରୋଧରେ ସ୍ୱର ଉତ୍ତୋଳନ କରିଛି । ମାର୍କସୀୟ ବସ୍ତୁବାଦର ଏହି ଅଗ୍ରଗାମୀ ଚିନ୍ତାଧାରା ପ୍ରଗତିବାଦୀ ସାହିତ୍ୟରେ କଳାତ୍ମକ ରୂପ ପରିଗ୍ରହଣ କରିଅଛି । ଏହାକୁ ମାର୍କସୀୟ ବାସ୍ତବବାଦ ବା ସମାଜବାଦୀ ବାସ୍ତବବାଦ ରୂପେ ମଧ୍ୟ ଉଲ୍ଲେଖ କରାଯାଇଥାଏ ।

## ୬—ବାସ୍ତବବାଦର ପ୍ରତ୍ୟକ୍ଷବାଦୀ ପକ୍ଷ

ପ୍ରତ୍ୟକ୍ଷବାଦ ଏକ ପାଶ୍ଚାତ୍ୟ ଦର୍ଶନ । ଫରାସୀ ଦାର୍ଶନିକ ଅଗଷ୍ଟ କମଟେ (Augste Comte) ଏହାର ପ୍ରବକ୍ତା । "ଅନୁମାନ ପରିବର୍ତ୍ତେ ଏହି ଦର୍ଶନ ପରିଦୃଶ୍ୟମାନ ଜଗତର ପ୍ରତ୍ୟକ୍ଷ ତଥ୍ୟ ଉପରେ ନିର୍ଭରଶୀଳ । ଏହି ଦର୍ଶନର ଆଧୁନିକ ବିକାଶ, ଅନୁଧ୍ୟାନ ମାଧ୍ୟମରେ ପରୀକ୍ଷଣସିଦ୍ଧ ବକ୍ତବ୍ୟର ଅନୁଶୀଳନ ଉପରେ ଆଧାରିତ (୨୧) ।"

ବସ୍ତୁବାଦ ଭଳି କଳ୍ପନା ପ୍ରସୂତ ଅମୂର୍ତ୍ତି ଚିନ୍ତାଧାରାକୁ ପ୍ରତ୍ୟକ୍ଷବାଦ ପ୍ରତ୍ୟାଖ୍ୟାନ କରେ । ବସ୍ତୁମୟ ଦୃଶ୍ୟମାନ ବିଶ୍ୱ, ଏହାର ଭୂମି । ପାରମାର୍ଥିକ ତତ୍ତ୍ୱର ଈଶ୍ୱରବିଶ୍ୱାସ-ବୋଧ ବିରୋଧରେ ଏହି ଦର୍ଶନ କୁଠାରାଘାତ କରିଛି । ବୈଜ୍ଞାନିକ ଚିନ୍ତାଧାରା ସପକ୍ଷରେ ସ୍ୱର ଉତ୍ତୋଳନ କରିଛି । ପ୍ରତ୍ୟକ୍ଷବାଦୀମାନଙ୍କ ମତରେ ସମାଜର ଏକମୁଖୀ ଧାରା ରହିବା ବାଞ୍ଛନୀୟ । ସାମାଜିକ ବ୍ୟବସ୍ଥାର ପାରସ୍ପରିକ ବିରୋଧ ହେତୁ ସମାଜ ବହୁ ଭିନ୍ନ ସଙ୍କଟର ସମ୍ମୁଖୀନ ହେଉଛି । ତେବେ ସଂକଟର ମୂଳବିନ୍ଦୁ ହେଉଛି, ପାରମାର୍ଥିକ ସମାଜ ଓ ବୈଜ୍ଞାନିକ ବ୍ୟକ୍ତିନିଷ୍ଠ ସମାଜର ସଂଘର୍ଷପୂର୍ଣ୍ଣ ମନୋବୃତ୍ତି ।

ପ୍ରତ୍ୟକ୍ଷବାଦ ବାସ୍ତବବାଦର ଏକ ନାମାନ୍ତର ସ୍ୱରୂପ । ସମାଜବାଦୀ ସାହିତ୍ୟକୁ ଏହା ଅନୁପ୍ରାଣୋଦିତ କରିଛି । ବାସ୍ତବବାଦୀ କଳା ଓ ସାହିତ୍ୟର ପ୍ରତ୍ୟକ୍ଷ ପ୍ରକାଶ ଭଙ୍ଗୀକୁ ମଧ୍ୟ ପ୍ରଭାବିତ କରିଛି । ପ୍ରତ୍ୟକ୍ଷବାଦ ଓ ବାସ୍ତବବାଦ ମଧ୍ୟରେ ସମ୍ପର୍କ ଖୁବ୍ ନିବିଡ ହେଲେ ମଧ୍ୟ ବାସ୍ତବବାଦର କଳାତ୍ମକ ଭୂମିକା ପ୍ରତ୍ୟକ୍ଷବାଦର ବସ୍ତୁନିଷ୍ଠ ଭୂମିକାଠାରୁ ନିଜକୁ ପୃଥକ୍ କରିଦିଏ ।

## ୩—ବାସ୍ତବବାଦର ଶିବିରରେ ସ୍ୱଭାବବାଦ

ସ୍ୱଭାବବାଦ (Naturalism)କୁ ବହୁ ସମାଲୋଚକ ସ୍ୱତନ୍ତ୍ରବାଦ ରୂପେ ଗ୍ରହଣ ନକରି ବାସ୍ତବବାଦର ଏକ ଶାଖାରୂପେ ସ୍ୱୀକୃତି ଦେଇଥାନ୍ତି । ମାର୍ଟିନ ଗ୍ରେଙ୍କ ଭାଷାରେ "ସ୍ୱଭାବବାଦ ବାସ୍ତବବାଦର ଏକ ଅଧିକ ସୁନିର୍ଦ୍ଦିଷ୍ଟ ଶାଖା । ଏହା ଜୀବନ ପ୍ରତି ଏକ ଡାର୍‌ଉଇନ୍-ଉତ୍ତର (post Darwin) ଦୃଷ୍ଟିକୋଣ ପ୍ରକାଶ କରିଥାଏ, ଯେଉଁଠାରେ ମନୁଷ୍ୟ ମୌଳିକତଃ ଏକ ପଶୁଭିନ୍ନ ଅନ୍ୟକିଛି ନୁହେଁ । ବଂଶପରମ୍ପରା ଓ ପାରିପାର୍ଶ୍ୱିକ ପରିସ୍ଥିତି ଦ୍ୱାରା ଏହା ପ୍ରଭାବିତ ହୋଇଥାଏ (୩୦) ।

ସ୍ୱଭାବବାଦର ଦାର୍ଶନିକ ହେଉଛନ୍ତି ତେନ୍ (Taine) । ଏହି ଦର୍ଶନ ମତରେ ବିଶ୍ୱ ପ୍ରକୃତି ଓ ମାନବ ପ୍ରକୃତି କୌଣସି ଅତି-ପ୍ରାକୃତ (super natural) ଶକ୍ତିଦ୍ୱାରା ପରିଚାଳିତ ନୁହେଁ । ଏହା ସ୍ୱାଧୀନ, ପ୍ରାକୃତ ନିୟମରେ ଗଠିତ । ରୋମାଣ୍ଟିକବାଦର ଦେବଶିଶୁ (super human) ସ୍ୱଭାବବାଦରେ ଏକ ନୀଚ-ମଣିଷ (sub-human)ରେ ପରିଣତ । କିନ୍ତୁ ବାସ୍ତବବାଦ ମାନବକୁ ଏକ ସାମାଜିକ ପ୍ରାଣୀ (social animal) ରୂପେ ଉପସ୍ଥାପିତ କରିବାପାଇଁ ପ୍ରଯତ୍ନଶୀଳ ।

ବିଶେଷତଃ ପ୍ରକୃତି ନିଜ ସୃଷ୍ଟିରେ ଅପୂର୍ଣ୍ଣ ହୋଇଥିବାରୁ ପ୍ରାକୃତିକ ସ୍ୱଭାବ ପରିଚାଳିତ ସ୍ୱଭାବବାଦ ମାନବ ଚରିତ୍ରର ପାଶବିକ ପ୍ରବୃତ୍ତି ସମୂହର ନଗ୍ନ ରୂପ ପ୍ରକଟନ

କରିଛି । କିନ୍ତୁ ବାସ୍ତବବାଦ ଅସମ୍ପୂର୍ଣ୍ଣ ପ୍ରକୃତିକୁ ସ୍ୱକୀୟ ମାନସଲୋକର ବର୍ଣ୍ଣବିଭାସରେ ପରିପୂର୍ଣ୍ଣ କରିବା ସଙ୍ଗେ ଆଙ୍ଗେ କଳାତ୍ମକ କରିଥାଏ । ସ୍ୱଭାବବାଦ ଅପେକ୍ଷା ବାସ୍ତବବାଦ ସେଥିପାଇଁ ଅପେକ୍ଷାକୃତ ଅଧିକ ଲୋକପ୍ରିୟ ହୋଇବ ।

## ୪—ବାସ୍ତବବାଦ ଓ ଅସ୍ତିତ୍ୱବାଦ

ଡେନ୍‌ମାର୍କର ଦାର୍ଶନିକ ସୋରେନ୍ କିର୍କେଗାର୍ଡ ଅସ୍ତିତ୍ୱବାଦର ପ୍ରତିଷ୍ଠାତା । ପରେ ପରେ କାମ୍ୟୁ, କାଫକା, ସାର୍ତ୍ରେ ପ୍ରମୁଖ ଦାର୍ଶନିକ ତଥା ସାହିତ୍ୟିକଗଣଙ୍କ ଲେଖନୀରେ ଏହାର ଅଧିକ ସଂପ୍ରସାରଣ ଘଟିଛି । ଅସ୍ତିତ୍ୱବାଦ ଏକ ବ୍ୟକ୍ତିବାଦୀ ଦର୍ଶନ । ବ୍ୟକ୍ତିର ବ୍ୟକ୍ତିସତ୍ତା, ଏଠାରେ ସ୍ୱୟଂସମ୍ପୂର୍ଣ୍ଣ ଓ ସ୍ୱୟଂଭୂ—ଏହି ସତ୍ତା ମଧ୍ୟରେ ସମାଜ, ଧର୍ମ, ଯୁଗଚେତନା, ସଂସ୍କାର, ସଂସ୍କୃତି, ସଭ୍ୟତା ଓ ଇତିହାସ ଲୀନ ହୋଇଯାଏ ।

ପ୍ରମାଣସିଦ୍ଧ ଜ୍ଞାନ ଅପେକ୍ଷା ଅନ୍ତରାତ୍ମାର ଉପଲବ୍ଧି ଅସ୍ତିତ୍ୱବାଦରେ ଅଧିକ ମହତ୍ତ୍ୱପୂର୍ଣ୍ଣ । ଈଶ୍ୱର, ଖ୍ରୀଷ୍ଟ ତଥା ଯାନ୍ତ୍ରିକ ସଭ୍ୟତା ବିରୋଧରେ ଏହା ଏକ ଆହ୍ୱାନ । ଏହି ଦାର୍ଶନିକମାନଙ୍କ ମତରେ ପ୍ରତ୍ୟେକଟି ମଣିଷ ଅନ୍ୟ ମଣିଷଠାରୁ ପ୍ରକୃତିରେ ସ୍ୱତନ୍ତ୍ର । ଏହି ମଣିଷଟି ରୋମୀଓ ଦେବତା ଜାନସ୍‌ଙ୍କ ଭଳି ଦ୍ୱିମୁଖ । ଗୋଟିଏ ମୁହଁରେ ସେ ହସେ, ଅନ୍ୟ ମୁହଁଟିରେ କାନ୍ଦେ । ତାର ବହିର୍ମୁଖୀ ବ୍ୟକ୍ତିସତ୍ତା ଛଳନା ଓ ପ୍ରତାରଣାର ଏକ ହାସ୍ୟଯୁକ୍ତ ମୁଖା । ଅସ୍ତିତ୍ୱବାଦୀ ଦାର୍ଶନିକ ଯାସ୍ ଫରସ୍ "ମ୍ୟାନ ଇନ୍ ଦ ମଡର୍ଣ୍ଣ ସୋସାଇଟି" (Man in the Modern Society)ରେ କୁହନ୍ତି, ସାମ୍ପ୍ରତିକ ବିଶ୍ୱ ଆଜି ବଳୟମୁଖୀ । ତାଙ୍କ ମତରେ ବହୁ ସ୍ୱପ୍ନବିଳାସୀ ଭାବୁକ, ଯେଉଁ ଏକ-ବିଶ୍ୱର ପରିକଳ୍ପନା କରିଥିଲେ, ଆଜିର ଏହି ଧ୍ୱଂସମୁଖୀ ଏକ-ବିଶ୍ୱ ଦେଖି, ସେମାନଙ୍କର ନିଶ୍ଚୟ ସ୍ୱପ୍ନଭଙ୍ଗ ଘଟିଥିବ ।

ବହିର୍ବିଶ୍ୱର ଧ୍ୱଂସମୁଖୀ ସ୍ୱରୂପ ଅସ୍ତିତ୍ୱବାଦୀକୁ ସଂଶୟଗ୍ରସ୍ତ କରିଥାଏ । ଏହି ବିଶ୍ୱ ଉପରେ ଆସ୍ଥା ହରାଇ ଥିବାରୁ, ଅନ୍ତର୍ଲୋକର ଅସ୍ତିତ୍ୱ ପ୍ରତି ସେ ବିଶ୍ୱସ୍ତତା ଘୋଷଣ କରେ । ମାନବିକତାର ସାରସତ୍ତା (essence) ଅପେକ୍ଷା ସ୍ୱକୀୟ ସ୍ଥିତି (existence) ଉପରେ ତାର ଦୃଷ୍ଟି କେନ୍ଦ୍ରୀଭୂତ ହୁଏ । ପ୍ରତ୍ୟେକ ବ୍ୟକ୍ତିକୁ ତାର ସ୍ଥିତିର ଦାୟିତ୍ୱ ବହନ କରିବାକୁ ପଡ଼େ । ସମାଜଠାରୁ ବିଚ୍ଛିନ୍ନ ହୋଇ ପଡ଼ିଥିବାରୁ ଏକ ଶୂନ୍ୟତା ଓ ନିଃସଙ୍ଗତା ବୋଧରେ ସେ ପୀଡ଼ିତ ହୁଏ ।

ତତ୍ତ୍ୱଦୃଷ୍ଟିରୁ ବାସ୍ତବବାଦ ସହ ଅସ୍ତିତ୍ୱବାଦର କେତେକ ବିରୋଧାଭାସ ପରିଲକ୍ଷିତ ହୁଏ । ବାସ୍ତବବାଦରେ ବ୍ୟକ୍ତି, ସମାଜର ଏକ ଅଙ୍ଗ, ସମାଜ ଓ ବ୍ୟକ୍ତି

ପରମ୍ପରର ପରିପୂରକ । ଅସ୍ତିତ୍ୱବାଦରେ ବ୍ୟକ୍ତି, ସମାଜଠାରୁ ବିଚ୍ଛିନ୍ନ । ବାସ୍ତବବାଦ ପ୍ରଚଳିତ ସାମାଜିକ ଅବକ୍ଷୟରୁ ସମାଜ ଓ ବ୍ୟକ୍ତିର ପୁନରୁଦ୍ଧାର ପାଇଁ ପ୍ରଚେଷ୍ଟା କରେ । କିନ୍ତୁ ଅସ୍ତିତ୍ୱବାଦ ସାମାଜିକ ମୂଲ୍ୟବୋଧକୁ ସମ୍ପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରେ । ଜୀବନ ପ୍ରତି ବାସ୍ତବବାଦର ଦୃଷ୍ଟିଭଙ୍ଗୀ ଆଶାବାଦୀ । ଅସ୍ତିତ୍ୱବାଦୀ ସମକାଳୀନ ସାମାଜିକ ଜୀବନର ସ୍ଥିତିପ୍ରତି ବିମୁଖ ।

## ମିଥ୍ ଓ ବାସ୍ତବବାଦ

ମିଥ୍ ସହ ବାସ୍ତବବାଦର ସମ୍ବନ୍ଧ ଆପାତତଃ ଅଯୌକ୍ତିକ ଭଳି ମନେ ହୁଏ । କାରଣ ମିଥ୍ ପୁରାଣ ପରମ୍ପରା ସହ ସମ୍ପୃକ୍ତ ଓ ଧାର୍ମିକତା ସହ ଜଡ଼ିତ ବୋଲି ଏକ ଭ୍ରାନ୍ତ ଧାରଣା ପ୍ରଚଳିତ । କିନ୍ତୁ ଇତିହାସର କାଳପରି ମିଥ୍‌ର କାଳ ସରଳରୈଖିକ (flat) ନୁହେଁ । ଏହାର ଗତି ଘୂର୍ଣ୍ଣାୟମାନ (cyclic) । ପ୍ରାଚୀନ କାଳର ମିଥ୍‌କୁ ସାମ୍ପ୍ରତିକ ଯୁଗଚେତନା ସହ ସମ୍ପୃକ୍ତ କରାଯାଇ ମିଥିକାଲ୍ ପଦ୍ଧତି ସୃଷ୍ଟି କରାଯାଇ ପାରେ । କବି-ସମାଲୋଚକ ଟି. ଏସ୍. ଏଲିଅଟ କବିତାର ମିଥିକାଲ୍ ପଦ୍ଧତି ସମ୍ବନ୍ଧରେ କହିଛନ୍ତି, "ବର୍ଣ୍ଣନାତ୍ମକ ପଦ୍ଧତି ପରିବର୍ତ୍ତେ ପ୍ରାଚୀନତା ଓ ଆଧୁନିକତାର ସମାନ୍ତରାଳ ପ୍ରବାହକୁ ଆମେ ନିପୁଣତାର ସହ ମିଥିକାଲ୍ ପଦ୍ଧତିରେ ପ୍ରୟୋଗ କରିପାରୁ (୩୧) ।

୧୯୨୨ ମସିହାରେ ଏଲିଅଟ୍‌ଙ୍କ କାବ୍ୟଗ୍ରନ୍ଥ "ଦ ଓ୍ୱେଷ୍ଟଲାଣ୍ଡ" The Waste Land) ଓ ଜେମସ୍ ଜୟସ୍‌ଙ୍କ ଉପନ୍ୟାସ 'ଇଉଲିସିସ୍' (Ulysis)ରେ ମିଥ୍ ସହ ସମକାଳୀନ ଯୁଗ ଚେତନାର ସଂଯୋଗ କରାଯାଇ ମିଥିକାଲ୍ ପଦ୍ଧତିର ପ୍ରୟୋଗ କରାଯାଇଥିଲା । ବାସ୍ତବ ଜୀବନର ଛନ୍ଦ ଓ ଚରିତ୍ର, ତହିଁରେ କଳାତ୍ମକ ଭାବରେ ପ୍ରତିବିମ୍ବିତ ହୋଇଥିଲା । ଆଧ୍ୟାତ୍ମିକ ଚେତନାକୁ ଯୁଗ ସଙ୍କଟରୁ ପରିତ୍ରାଣର ଏକ ଉପାୟରୂପେ ନିର୍ବାଚନ କରାଯାଇଥିଲେ ମଧ୍ଯ ଉଭୟ କୃତି ଥିଲା ସମକାଳୀନ ଯୁଗ ଓ ଜୀବନର ଦୁଇଟି ବିଶିଷ୍ଟ ଆଲେଖ୍ୟ ।

## ବାସ୍ତବବାଦୀ ଚେତନାର ଗତିଶୀଳତା

ବାସ୍ତବବାଦୀ ଚେତନା ସ୍ଥିତିଶୀଳ ନୁହେଁ, ପକ୍ଷାନ୍ତରେ ଗତିଶୀଳ, ସମାଜର ସ୍ୱରୂପ ପରିବର୍ତ୍ତିତ ହେବା ସଙ୍ଗେ ସଙ୍ଗେ ବ୍ୟକ୍ତିର ଜୀବନପ୍ରତି ଦୃଷ୍ଟିଭଙ୍ଗୀ ବିବର୍ତ୍ତିତ ହୋଇଯାଏ । ଜୀବନର ସତ୍ୟ, ସାମାଜିକ ଚେତନାର ରୂପାନ୍ତର ସହ ଭିନ୍ନରୂପ ପରିଗ୍ରହଣ କରେ । ସୁତରାଂ ପାଶ୍ଚାତ୍ୟ ପରମ୍ପରାରେ ଊନବିଂଶ ଶତାବ୍ଦୀରେ ସଂଘବଦ୍ଧ ଶ୍ରେଣୀ ଚେତନା, ବିଂଶ ଶତାବ୍ଦୀରେ ବ୍ୟକ୍ତି-କୈନ୍ଦ୍ରିକ ଚେତନା ଦିଗକୁ ମୁହାଁଇବା ଲକ୍ଷ୍ୟ କରାଯାଏ ।

ଯାନ୍ତ୍ରିକ ନଗର ସଭ୍ୟତାର ବିକାଶ ତଥା ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହ ପରିଣତି ପାଶ୍ଚାତ୍ୟ ଜୀବନଧାରାର ସଂହତି ଓ ବିଶ୍ୱାସବୋଧକୁ ଖଣ୍ଡିତ କରିଥିଲା । ପ୍ରଥମ ବିଶ୍ୱଯୁଦ୍ଧ ପରେ ଦାରିଦ୍ର୍ୟ, ଖାଦ୍ୟାଭାବ, ମୁଦ୍ରାସ୍ଫୀତି, ବେକାରି ପ୍ରଭୃତି ମହାମାରୀ ଭଳି ସଂକ୍ରମିତ ହେବାକୁ ଆରମ୍ଭ କରିଥିଲା । ଏହି ସାମାଜିକ ସମସ୍ୟା-ଗୁଡ଼ିକୁ ତତ୍କାଳୀନ ପାଶ୍ଚାତ୍ୟ ଗଣତାନ୍ତ୍ରିକ ଶାସନରେ ସଫଳ ଭାବେ ମୁକାବିଲା କରାଯାଇ ନପାରିବାରୁ ଲୋକମାନଙ୍କର ଦୃଷ୍ଟି କମ୍ୟୁନିଜିମ୍ ପ୍ରତି ଉତ୍ତରୋତ୍ତର ଆକୃଷ୍ଟ ହୋଇଥିଲା ।

ପ୍ରଥମ ବିଶ୍ୱଯୁଦ୍ଧ ଅପେକ୍ଷା ଦ୍ୱିତୀୟ ବିଶ୍ୱଯୁଦ୍ଧର କ୍ଷୟକ୍ଷତି ବ୍ୟାପକ ହୋଇଥିଲା । ଏଣୁ ତାର ସମାଧାନ ଏକ ବିଶ୍ୱ ସମସ୍ୟା ରୂପରେ ଦେଖାଦେଲା । ତଥାକଥିତ ଉନ୍ନତ ଦେଶର ଶାସକମାନଙ୍କ ବିରୁଦ୍ଧରେ ଜନଜାଗରଣ ତୀବ୍ରତର ହୋଇ ଉଠିଲା । ଏସିଆ ଓ ଆଫ୍ରିକା ମହାଦେଶର ବହୁ ରାଷ୍ଟ୍ର ଉପନିବେଶବାଦରୁ ମୁକ୍ତ ହୋଇଗଲା । ଜନସାଧାରଣଙ୍କର ଚେତନାବୋଧ କ୍ରମବର୍ଦ୍ଧିତ ହୋଇ ଉଠୁଥିବାରୁ ସୋଭିଏତ୍ ରୁଷ, ଚୀନ ପ୍ରଭୃତି କମ୍ୟୁନିଷ୍ଟ ଶାସିତ ରାଜ୍ୟଗୁଡ଼ିକ ଅଧିକ ଶକ୍ତିଶାଳୀ ଦେଶ ଭାବରେ ପ୍ରତିଷ୍ଠା ଲାଭ କଲେ । ସମଗ୍ର ପାଶ୍ଚାତ୍ୟ ଭୂଖଣ୍ଡର ପ୍ରାଚୀନ ମୂଲ୍ୟବୋଧ ଶିଥିଳ ହେବାକୁ ଆରମ୍ଭ କଲା । ଫଳତଃ ପ୍ରୟୋଗସିଦ୍ଧ ଚିନ୍ତାଧାରାପ୍ରତି କଳା ଓ ସାହିତ୍ୟ କ୍ରମଶଃ ଆକୃଷ୍ଟ ହୋଇଥିଲା । ଯାନ୍ତ୍ରିକ ସଭ୍ୟତା ପ୍ରାଚୀନ ଗୋଷ୍ଠୀ-ଭିତ୍ତିକ ଜୀବନର ତ୍ୟାଗପୂତ ମୂଲ୍ୟବୋଧଗୁଡ଼ିକ ପ୍ରତି ବିଶ୍ୱାସ ପୋଷଣ କରିପାରି ନଥିବାରୁ ବ୍ୟକ୍ତି-ବିଚ୍ଛିନ୍ନତାବୋଧ ବ୍ୟାପକ ହୋଇଥିଲା । ଏଣୁ ବାସ୍ତବବାଦର ସ୍ୱରୂପ ବୈଚିତ୍ର୍ୟ-ମଣ୍ଡିତ ଓ ବିସ୍ତୃତ ହୋଇଯିବା ଲକ୍ଷ୍ୟ କରାଗଲା । ଗଣଚେତନାର ଜାଗରଣକୁ ଭିତ୍ତିକରି ଗଢ଼ି ଉଠିଥିବା ବାସ୍ତବବାଦ, ବ୍ୟକ୍ତି ଚେତନାକୁ କେନ୍ଦ୍ରକରି ତାର ପରିବର୍ତ୍ତିତ ନୂତନ ସ୍ୱରୂପ ଧାରଣ କରିଥିଲା ।

ଜୀବନର ପରିବର୍ତ୍ତିତ ଚେତନାକୁ କେନ୍ଦ୍ରକରି ବିବର୍ତ୍ତିତ ହେଉଥିବାରୁ ବାସ୍ତବବାଦର ଏକ ସୁନିର୍ଦ୍ଦିଷ୍ଟ ତଥା ଚରମ ସଂଜ୍ଞା ନିରୂପଣ କରିବା କଷ୍ଟସାଧ୍ୟ । ସମୀକ୍ଷକ ଡାମିଏନ୍ ଗ୍ରାଣ୍ଟ ଏ ସମ୍ପର୍କରେ ଉଲ୍ଲେଖ କରିଛନ୍ତି, "ବାସ୍ତବତାର ଉପଲବ୍ଧି ଏକ ନିରବଚ୍ଛିନ୍ନ ପ୍ରକ୍ରିୟା; ଯାହା ଏହି ଚେତନାକୁ ସ୍ଥିତିଶୀଳ ହେବାପାଇଁ ଅନୁମତି ଦିଏ ନାହିଁ, ଅଥବା ଏହି ଶବ୍ଦକୁ ଏକ ନିର୍ଦ୍ଦିଷ୍ଟ ଅର୍ଥସମନ୍ୱିତ ଆକୃତି ପ୍ରଦାନ କରେ-ନାହିଁ (୩୬) ।

ଗତିଶୀଳତା ହେତୁ ବାସ୍ତବବାଦର ନିର୍ବାଚିତ ବସ୍ତୁ ପ୍ରତ୍ୟେକ ଯୁଗରେ ନିତ୍ୟ ନୂତନ ରୂପ ଧାରଣ କରେ । ଜର୍ଜ ବେକରଙ୍କ ଭାଷାରେ "ବିତର୍କ ମଧ୍ୟରେ ବାସ୍ତବବାଦର ଜନ୍ମ । ଉକ୍ତିତା ମଧ୍ୟରେ ଏହାର ବିକାଶ । କିନ୍ତୁ ଏହାର ପ୍ରଭାବ ଊନବିଂଶ ଶତାବ୍ଦୀର ସମସ୍ତ ସୀମାକୁ ଅତିକ୍ରମ କରି ବିଂଶ ଶତାବ୍ଦୀରେ ମଧ୍ୟ ପରିବ୍ୟାପ୍ତ (୩୩) ।"

କିନ୍ତୁ ସମସ୍ତ ବିତର୍କ ଓ ବିବଦମାନ ବିବର୍ତ୍ତନ ସତ୍ତ୍ୱେ ବାସ୍ତବବାଦର ଗୋଟିଏ ସତ୍ୟକୁ ଆମ୍ଭେମାନେ ସଦାସର୍ବଦା ଅବଲୋକନ କରିପାରୁ । ତାହା ହେଉଛି ବାସ୍ତବ-ବାଦର ସମସ୍ୟା ସଚେତନତା । ରୋମାଣ୍ଟିକବାଦରେ ସ୍ୱାନୁଭୂତି, ସୌନ୍ଦର୍ଯ୍ୟବୋଧ, ଦୁଃସାହସିକ ଅଭିଯାନ ଓ କଳ୍ପନାବିଳାସୀ ଚିନ୍ତାଧାରା ମୁଖ୍ୟ ସତ୍ୟ ହୋଇଥିବାବେଳେ ସମସାମୟିକ ଯୁଗ ତଥା ବ୍ୟକ୍ତିବିଶେଷର ସମସ୍ୟା ସମୂହର ସମୀକ୍ଷା ବାସ୍ତବବାଦର ମୁଖ୍ୟ ସତ୍ୟ ।

**ଭାରତୀୟ ପରମ୍ପରାରେ ବାସ୍ତବବାଦ**

ବସ୍ତୁ, ବସ୍ତୁତ୍ୱ, ବାସ୍ତବବାଦ ପ୍ରଭୃତି ଶବ୍ଦ ଭାରତୀୟ ପରମ୍ପରାରେ ବହୁଳ ଭାବରେ ବ୍ୟବହୃତ ହୋଇଥିଲେ ମଧ୍ୟ ତାହା ଆଧୁନିକ ବାସ୍ତବବାଦର ପ୍ରତିଭୂ ବା ପ୍ରତିରୂପ ହୋଇନପାରେ । ଏହି ଶବ୍ଦଟି ପୂର୍ବାପୂର ଏକ ନବୀନ ସାହିତ୍ୟିକ ପରିଭାଷା । 'ଶ୍ରୀମଦ୍ ଭାଗବତ'ରେ 'ବାସ୍ତବ'ର ସ୍ୱରୂପ ସମ୍ପର୍କରେ କୁହାଯାଇଛି, "ତାହାହିଁ ବାସ୍ତବ ବସ୍ତୁ ଯାହା ମଙ୍ଗଳମୟ ଓ ତ୍ରିତାପ ନାଶକ (୩୪) ।"

ଭାରତୀୟ ଦର୍ଶନରେ କର୍ମଫଳ ଓ ଜନ୍ମାନ୍ତରବାଦ ଆଦିରେ ବିଶ୍ୱାସ କରାଯାଉଥିବାରୁ ଦୁଃଖକୁ ତାହା ଦୁଃଖ ରୂପେ ଗ୍ରହଣ କରେନାହିଁ । ଥରେ ଶ୍ରୀକୃଷ୍ଣ କୁନ୍ତୀଙ୍କୁ କହିଲେ, ମା ! ତୁମେ ମୋତେ ଅତ୍ୟଧିକ ଭଲପାଅ । ସୁତରାଂ ମତେ କିଛି ବର ମାଗ । ତାହା ମୁଁ ତୁମ୍ଭଙ୍କୁ ଦେବି । ଏଥିରେ କୁନ୍ତୀ ଆଗ୍ରହ ବା ଆତୁରତା ନଦେଖାଇ କହିଲେ "ହେ, ଜଗତଗୁରୁ । ଦୁନିଆରେ ଯେତେ ଦୁଃଖ, ଯନ୍ତ୍ରଣା, ଅପମାନ ଆଦି ସୃଷ୍ଟି କରିଛ ତାହା ମତେ ଦେଇଛ । ଏହା ବ୍ୟତୀତ ଅନ୍ୟ କିଛି ଦୁଃଖ, ଯନ୍ତ୍ରଣା ଯଦି ସୃଷ୍ଟି କରିଥାଅ ତାହା ମତେ ଦେଲେ ମୁଁ ତାହା ସାଦରରେ ଗ୍ରହଣ କରିବି (୩୫) ।"

'ରାମାୟଣ'ରେ ପିତୃସତ୍ୟ ପାଳନ କରି ରାମଚନ୍ଦ୍ର ତାଙ୍କର ନ୍ୟାଯ୍ୟ ପ୍ରାପ୍ୟ ରାଜ ସିଂହାସନ ଛାଡ଼ି ଚଉଦବର୍ଷ ବନବାସ କରିଥିଲେ । ଏଣୁ ଦୁଃଖକୁ ସେ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ । କିନ୍ତୁ ଦୁଃଖ ବିରୋଧରେ ଏହି ସଗ୍ରାମୀ ଚେତନାର ପୃଷ୍ଠଭୂମି ପ୍ରାଚ୍ୟ ଭାରତୀୟ ପରମ୍ପରାରେ ପ୍ରାୟତଃ ଆଦର୍ଶବାଦୀ । ବୁଦ୍ଧଦେବ ସେଥିପାଇଁ କାମନାର ବିନାଶ ଦ୍ୱାରା ଦୁଃଖର ବିନାଶ ସଂସାଧନ କରିବା ପାଇଁ ଉପଦେଶ ଦେଇଥିଲେ ।

ହିନ୍ଦୁ ଦର୍ଶନ ମତରେ ବିବେକଶୀଳ ମନୁଷ୍ୟର ଦେହ, ଭୋଗଲିପ୍ସା ପାଇଁ ଉଦ୍ଦିଷ୍ଟ ନୁହେଁ । ଏହା ଅନନ୍ତ ସୁଖଲାଭ ପାଇଁ କୃଚ୍ଛ୍ର ତପସ୍ୟା ଆଚରଣ ଉଦ୍ଦେଶ୍ୟରେ ଅଭିପ୍ରେତ । ଭାରତବର୍ଷର ଅତୀତ ଇତିହାସ ସତ୍ୟ, ନିଷ୍ଠା ଓ ତ୍ୟାଗଦ୍ୱାରା ମହିମାନ୍ୱିତ । ଏହି ତ୍ୟାଗପୂତ ଭାବନା 'ତେନ ତ୍ୟକ୍ତେନ ଭୁଂଜୀଥା' ଓ 'ସର୍ବେ ଭବନ୍ତୁ ସୁଖୀନଃ' ଆଦି ମନ୍ତ୍ରଦ୍ୱାରା ଅନୁପ୍ରାଣୋଦିତ । 'ଅଥର୍ବବେଦ'ର ଏକ ସ୍ତୋତ୍ରରେ ସମଗ୍ର ଲୋକ ସମାଜକୁ ସହଯୋଗ ସୂତ୍ରରେ ଆବଦ୍ଧ ହୋଇ ପରସ୍ପର ପ୍ରତି ସହୃଦୟତା ପ୍ରକାଶ କରିବାକୁ ଆହ୍ୱାନ ଦିଆଯାଇଛି (୩୬) ।

ବୈଦିକ କବିର ଭାବନା ପୁଣି ଅନ୍ୟ ଏକ ସ୍ତୋତ୍ରରେ ଅଭିବ୍ୟକ୍ତ ହୋଇଛି— "ତୁମେ ସମସ୍ତେ ଗୋଟିଏ ସମିତି ପ୍ରତିଷ୍ଠା କର । ସେହି ସମ୍ମିଳିତ ପ୍ରଚେଷ୍ଟା ଫଳରେ ଐକ୍ୟ ଓ ସଂପ୍ରୀତି ସୃଷ୍ଟି ହେବ । କେବଳ କର୍ମ ନୁହେଁ ମାନସିକ ସାମ୍ୟ ମଧ୍ୟ ଆମର କାମ୍ୟ । ତୁମମାନଙ୍କର ମନ ଓ କର୍ମ ଏକ ହେଉ । ଏକତା ମନ୍ତ୍ରରେ ମୁଁ ତୁମମାନଙ୍କୁ ଉଦ୍‌ଜୀବିତ କରୁଛି (୩୭) ।

ପ୍ରାଚ୍ୟ ଭାରତୀୟ ପରମ୍ପରାରେ ଏହିଭଳି ମାନବବାଦୀ ଚିନ୍ତାଧାରା ଉଦ୍ରିକ୍ତ ହୋଇଥିଲେ ମଧ୍ୟ ସମୟ ସମୟରେ ଭାରତୀୟ ଜନଜୀବନ ଧାର୍ମିକ, ଅନ୍ଧବିଶ୍ୱାସ, ପୌରୋହିତ୍ୟବାଦ, ଜାତିବାଦ, ରାଜତନ୍ତ୍ର ଓ ଧନତନ୍ତ୍ରର ନିର୍ପୀଡ଼ନ ତଥା ନିଷ୍ପେଷଣର ଶିକାର ହୋଇଛି । ଏଣୁ ଏହା ବିରୁଦ୍ଧରେ ବିଭିନ୍ନ ଧର୍ମ, ଦର୍ଶନ ତଥା ଚିନ୍ତାଦର୍ଶର ଉଦ୍‌ଭବ ଘଟିଛି । ଭଗବାନଙ୍କର ସ୍ଥିତି ଓ ସ୍ୱରୂପ ସମ୍ପର୍କରେ ସନ୍ଦେହ ପ୍ରକାଶ ପାଇଛି । ଗଦ୍ୟ-ହବ୍ୟ-ହୋମ ପୂଜାପାର୍ଥୀ ଭଗବାନ, ସାଂଖ୍ୟ ଦର୍ଶନରେ ପ୍ରକୃତି ପୁରୁଷ ରୂପରେ, ବେଦାନ୍ତ ଦର୍ଶନରେ ବ୍ରହ୍ମ-ମାୟା ରୂପରେ, ନ୍ୟାୟ ଦର୍ଶନରେ କାରଣ ଭାବରେ ଉପସ୍ଥାପିତ ହୋଇଛନ୍ତି । କେତେବେଳେ ଅବା ତାଙ୍କର ସ୍ୱରୂପ ଓ ଧାର୍ମିକ ଲକ୍ଷ୍ୟ ଖର୍ବୀକୃତ ହୋଇ ପଡ଼ିଛି ।

ଭାରତୀୟ ଚିକିତ୍ସା ଶାସ୍ତ୍ରର ପ୍ରଣେତା ଚରକ କହିଛନ୍ତି, "ମଣିଷ ଜୀବନରେ ତିନିଗୋଟି ଏଷଣା ରହିବା ଆବଶ୍ୟକ । ଯଥା: ପ୍ରାଣ ସମ୍ବନ୍ଧୀୟ ଏଷଣା, ଧନ ସମ୍ବନ୍ଧୀୟ ଏଷଣା ଓ ପରଲୋକ ସମ୍ବନ୍ଧୀୟ ଏଷଣା । ଉପକରଣ ହୀନ ହୋଇ ବଞ୍ଚିବାଠାରୁ ବଳି ଅଧିକ ପାପୀ କେହି ନାହିଁ । ଏଣୁ ବଞ୍ଚିବାର ଉପାୟ ପାଇଁ ଯତ୍ନଶୀଳ ହେବା ଆବଶ୍ୟକ (୩୮) ।"

ଭାରତୀୟ କାବ୍ୟ, ସାହିତ୍ୟ, ନୀତିଶାସ୍ତ୍ର ଓ ଧର୍ମଶାସ୍ତ୍ରମାନଙ୍କରେ ଚତୁର୍ବର୍ଗ ଫଳପ୍ରାପ୍ତି ପାଇଁ ଗୁରୁତ୍ୱ ଦିଆଯାଇଛି । କିନ୍ତୁ 'କାମସୂତ୍ର' ପ୍ରଣେତା ବାତ୍ସ୍ୟାୟନ

ଚତୁର୍ବର୍ଗର ଧର୍ମ, ଅର୍ଥ, କାମ ଓ ମୋକ୍ଷ ମଧ୍ୟରୁ ମୋକ୍ଷକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ତାଙ୍କ ମତରେ "ଧର୍ମ, ଅର୍ଥ ଓ କାମର ସମସେବନ ପ୍ରୟୋଜନ । ଯେ ଏହା ମଧ୍ୟରୁ ଗୋଟିଏ ପ୍ରତି ଆସକ୍ତ ହୁଏ, ସେ ଜଘନ୍ୟ (୩୯) ।"

ଏହି ମଧ୍ୟମପନ୍ଥୀମାନଙ୍କ ଆଦର୍ଶକୁ ଅସ୍ୱୀକାର କରି ସ୍ୱଭାବବାଦୀମାନେ ଘୋଷଣା କରିଛନ୍ତି ଯେ ବିଶ୍ୱର ପ୍ରତ୍ୟେକ ପଦାର୍ଥ ସ୍ୱାଭାବିକ ନିୟମରେ ସଂଘଟିତ । ସେମାନଙ୍କର ମତରେ "ଅଗ୍ନିକୁ ଉଷ୍ମ, ଜଳକୁ ଶୀତଳ ଓ ପବନକୁ ସମଶୀତୋଷ୍ଣ--ଏପରି ଭାବରେ ଏମାନଙ୍କୁ କିଏ ଗଢ଼ିଛି ? ଏହା ହେଉଛି ଏକ ଏକ ସ୍ୱଭାବସିଦ୍ଧ ପରିଣତି (୪୦) ।"

ଈଶ୍ୱରଙ୍କ ସର୍ଜନା ପରିବର୍ତ୍ତେ ପ୍ରାକୃତିକ ନିୟମାବଳୀ ଅନୁଯାୟୀ ସ୍ୱତଃସ୍ଫୂର୍ତ୍ତି ଭାବରେ ପ୍ରକୃତି ସ୍ୱଭାବସୃଷ୍ଟ ହୋଇଥିବା ପ୍ରସଙ୍ଗ ଏଠାରେ ଉଲ୍ଲେଖ କରାଯାଇଛି । ବୌଦ୍ଧ, ଜୈନ ଓ ଚାର୍ବାକ ଦର୍ଶନରେ ଈଶ୍ୱରଙ୍କ ସ୍ଥିତିକୁ ଅସତ୍ୟବୋଲି ପ୍ରତିପାଦିତ କରାଯାଇଛି । ଚାର୍ବାକ ଦର୍ଶନ ମତରେ ବିଶ୍ୱ ଈଶ୍ୱର ସୃଷ୍ଟ ନୁହେଁ । ଏହା ବସ୍ତୁ ସୃଷ୍ଟ । ମାନବ ଈଶ୍ୱରଙ୍କ ପ୍ରେରିତ ଅମୃତର ସନ୍ତାନ ନୁହେଁ । ତାର ଶରୀର ପାର୍ଥିବ ବସ୍ତୁଦ୍ୱାରା ନିର୍ମିତ । ମାନବର ମୃତ୍ୟୋତ୍ତର ଆତ୍ମିକ ସତ୍ତାକୁ ଚାର୍ବାକ ଦର୍ଶନ ଅସ୍ୱୀକାର କରେ । 'ବ୍ରହ୍ମସତ୍ୟ, ଜଗନ୍ମିଥ୍ୟା' କହି ପାର୍ଥିବ ସଂସାରର ଭୌତିକ ସୁଖ ସମ୍ଭୋଗକୁ ଏହା ପରିହାର କରେନାହିଁ । ଏହି ଦର୍ଶନ ଉଲ୍ଲେଖ କରିଛି "ବସ୍ତୁ ହିଁ ଏକମାତ୍ର ବାସ୍ତବ ସତ୍ୟ-ପ୍ରତ୍ୟକ୍ଷ ପ୍ରମାଣ ହେଉଛି ଜ୍ଞାନର ଏକମାତ୍ର ଅଙ୍ଗ (୪୧) ।"

ପ୍ରକୃତି ଉପରେ ଈଶ୍ୱରଙ୍କର କର୍ତ୍ତୃତ୍ୱ ଚାର୍ବାକ ଦର୍ଶନର ପ୍ରତ୍ୟାଖ୍ୟାତ ଚାର୍ବାକପନ୍ଥୀମାନଙ୍କ ମତରେ "ଧର୍ମ ଏକ ମାନସିକ ବ୍ୟାଧି । ବିଶ୍ୱର ପରିଚାଳନା କ୍ଷେତ୍ରରେ ଈଶ୍ୱରଙ୍କର କୌଣସି ଭୂମିକା ନାହିଁ (୪୨) ।"

ସହଜଯାନ ଧର୍ମରେ ଅନୁରୂପଭାବେ "ଈଶ୍ୱରଙ୍କ ଉପାସନା ଓ କ୍ରିୟା-କର୍ମକୁ ଉପେକ୍ଷା କରାଯାଇଥିଲା । କାଷ୍ଠ, ପାଷାଣ, ମୃଣ୍ମୟ ଦେବତାର ବନ୍ଦନା ବର୍ଜନୀୟ ହୋଇଥିଲା । ନାରୀକୁ ପ୍ରଜ୍ଞାର ଆଧାର ରୂପେ ଚର୍ଚ୍ଚିତ କରାଯାଇଥିଲା । ସ୍ୱକୀୟ ଶରୀରର ପରିଚର୍ଯ୍ୟା ମାଧ୍ୟମରେ ଜୀବନଧାରଣ ଥିଲା ଏହି ଧର୍ମର ମୂଳମନ୍ତ୍ର (୪୩) ।"

ବସ୍ତୁତଃ ଏକ ସଙ୍ଗଠିତ ମତବାଦ ପରିବର୍ତ୍ତେ ପ୍ରାଚୀନ ଭାରତୀୟ ପରମ୍ପରାରେ ବାସ୍ତବବାଦକୁ ମାନବବାଦର ଏକ ଅବିସମ୍ବାଦିତ ଅଙ୍ଗରୂପେ ସ୍ୱୀକୃତି ଦିଆଯାଇଛି ।

## ବାସ୍ତବବାଦର ବର୍ଗୀକରଣ

ପାଶ୍ଚାତ୍ୟ ସମୀକ୍ଷା ଶାସ୍ତ୍ରରେ ବାସ୍ତବବାଦର ବିଭିନ୍ନ ବର୍ଗୀକରଣ ରହିଛି । ସେଥିମଧ୍ୟରୁ କେତେଗୋଟି ପ୍ରଧାନ ବିଭାବ ନିମ୍ନରେ ପ୍ରଦତ୍ତ ହେଲା ।

(କ) ଜାତୀୟତାବାଦୀ ବାସ୍ତବବାଦ (National Realism)
(ଖ) ବ୍ୟଙ୍ଗାତ୍ମକ ବାସ୍ତବବାଦ (Satirical Realism)
(ଗ) ସମାଜବାଦୀ ବାସ୍ତବବାଦ (Socialistic Realism)
(ଘ) ରୋମାଣ୍ଟିକ ବାସ୍ତବବାଦ (Romantic Realism)
(ଙ) ବସ୍ତୁନିଷ୍ଠ ବାସ୍ତବବାଦ (Objective Realism)
(ଚ) ବ୍ୟକ୍ତିନିଷ୍ଠ ବାସ୍ତବବାଦ (Subjective Realism)
(ଛ) ମନସ୍ତାତ୍ତ୍ୱିକ ବାସ୍ତବବାଦ (Psychological Realism) (୪୪)
(ଜ) ମିଥିକାଲ ବାସ୍ତବବାଦ (Mythical Realism) (୪୫)

ତତ୍ତ୍ୱଦୃଷ୍ଟିରୁ ବାସ୍ତବବାଦର ଉପରୋକ୍ତ ବର୍ଗୀକରଣରେ ପାର୍ଥକ୍ୟ ରହିଥିଲେ ମଧ୍ୟ ସାହିତ୍ୟରେ ଏହି ବିଭାବଗୁଡ଼ିକୁ ସର୍ବଦା ବିଚ୍ଛିନ୍ନଭାବେ ବିସ୍ତାର କରିବା ସମ୍ଭବପର ହୁଏନାହିଁ । ତେବେ ସର୍ବଭାରତୀୟ କବିତାରେ ଏହାର ପ୍ରତିଫଳନ ଦୃଷ୍ଟିରୁ ଏହାକୁ ନିମ୍ନଲିଖିତ କେତେଗୋଟି ପର୍ଯ୍ୟାୟରେବର୍ଗୀକୃତ କରାଯାଇପାରେ ।

## (୧) ଜାତୀୟତାବାଦୀ ବାସ୍ତବବାଦ

ରାଷ୍ଟ୍ରୀୟ ମହତ୍ତ୍ୱ ତଥା ସ୍ୱାଧୀନତାର ବାର୍ତ୍ତା ଜାତୀୟତାବାଦୀ ବାସ୍ତବବାଦର ଅନ୍ତର୍ଗତ । ଜାତୀୟତାବାଦୀ ଭାବନାକୁ ସାଧାରଣତଃ ରୋମାଣ୍ଟିକବାଦର ଏକ ଅଂଶରୂପେ ବିଚାର କରାଯାଇଥାଏ । କିନ୍ତୁ ଏ ଭଳି ଅନେକ ଜାତୀୟତାବାଦୀ କବିତା ରହିଛି ଯେଉଁଥିରେ ଅତୀତାଭିମୁଖୀ ପଶ୍ଚାତ୍ ଦୃଷ୍ଟି ପରିବର୍ତ୍ତେ ଜାତିର ଚଳନ୍ତି ତଥା ଆଗାମୀ ଯୁଗର ସଂକେତ ନିହିତ ରହିଛି । ସେହି କବିତାଗୁଡ଼ିକୁ ବାସ୍ତବବାଦୀ କବିତା ପର୍ଯ୍ୟାୟଭୁକ୍ତ କରାଯାଇପାରେ ।

## (୨) ସମାଜବାଦୀ ବାସ୍ତବବାଦ

ଏହି ବାସ୍ତବବାଦ ମାର୍କସୀୟ ଚେତନା ଭିତ୍ତିରେ ପ୍ରତିଷ୍ଠିତ । ଏଣୁ ମାର୍କସୀୟ ସମାଜବାଦ ପ୍ରତିଷ୍ଠା ପାଇଁ ଆବଶ୍ୟକୀୟ ବିଭିନ୍ନ ପନ୍ଥା ଏଠାରେ କାବ୍ୟାୟିତ ହୋଇଥାଏ ।

## (୩) ରୋମାଣ୍ଟିକ ବାସ୍ତବବାଦ

ତତ୍ତ୍ୱ ଦୃଷ୍ଟିରୁ ରୋମାଣ୍ଟିକବାଦ ବାସ୍ତବବାଦର ବିରୋଧୀ । କିନ୍ତୁ କାବ୍ୟ ଚେତନାରେ ଏହି ଦୁଇ ବିରୋଧୀ ତତ୍ତ୍ୱ କେତେକ କ୍ଷେତ୍ରରେ ଯୁଗପତ୍ ପ୍ରକଟିତ ହୋଇଥାନ୍ତି । ଓ୍ୱାଲେସ୍ ଷ୍ଟିଭେନ୍ସ ସେଥିପାଇଁ କାଳ୍ପନିକତାକୁ ଅନାକର୍ଷଣୀୟ କହି

ଆକ୍ଷେପ କରିଥିଲେ ମଧ୍ୟ ପରେ ପରେ ସେ ମତ ଦେଇଛନ୍ତି "ଅନ୍ତତଃ କବିତାରେ କଳ୍ପନା, ବାସ୍ତବତାଠାରୁ ବିଚ୍ଛିନ୍ନହେବା ଉଚିତ ନୁହେଁ (୪୭) ।" ଏହି କଳ୍ପନା-କୈନ୍ଦ୍ରିକ ରୋମାଣ୍ଟିକବାଦ ବାସ୍ତବବାଦୀ କବିତାର କାବ୍ୟିକ ସୌନ୍ଦର୍ଯ୍ୟକୁ ବୃଦ୍ଧିମନ୍ତ କରିଥାଏ ।

## (୪) ବ୍ୟଙ୍ଗାତ୍ମକ ବାସ୍ତବବାଦ

ସମାଜ, ରାଜନୀତି, ଧର୍ମାନୁଷ୍ଠାନ ତଥା ସାଂସ୍କୃତିକ ମୂଲ୍ୟବୋଧର ବ୍ୟତିକ୍ରମ ପ୍ରତି ଏହି ପର୍ଯ୍ୟାୟଭୁକ୍ତ କବିତାରେ ବ୍ୟଙ୍ଗ, ବିଦ୍ରୂପ କରାଯାଇଥାଏ । ତତ୍ତ୍ୱଦୃଷ୍ଟିରୁ ଏହା ନୈତିକତାର ବାହକ ହେଲେ ମଧ୍ୟ କେତେକ ବ୍ୟଙ୍ଗାତ୍ମକ କବିତାରେ ନୈତିକତା-ମୁକ୍ତ ନିରପେକ୍ଷ ପର୍ଯ୍ୟବେକ୍ଷଣ ଲକ୍ଷ୍ୟ କରାଯାଏ ।

## (୫) ମିଥିକାଲ୍ ବାସ୍ତବବାଦ

ମିଥିକ୍ କବିତାରେ ପ୍ରାଚୀନ ମିଥକୀୟ କାଳ, ପରିବେଶ ଓ ଚରିତ୍ର ସହ ସାମ୍ପ୍ରତିକ କାଳ, ପରିବେଶ ଓ ଚରିତ୍ରର ଯୋଗସୂତ୍ର ରକ୍ଷାକରାଯାଇ ବାସ୍ତବବାଦୀ କାବ୍ୟାଦର୍ଶ ସୃଷ୍ଟି କରାଯାଇଥାଏ ।

## ପ୍ରଗତିବାଦୀ କବିତାରେ ବାସ୍ତବବାଦର ସ୍ୱରୂପ

ଭାରତୀୟ କାବ୍ୟଧାରାରେ ବିଂଶ ଶତାବ୍ଦୀର ଚତୁର୍ଥ ଦଶକରୁ ପ୍ରଗତିବାଦୀ ଚିନ୍ତାଧାରାର ଉନ୍ମେଷ । ତହିଁରେ ସମାଜବାଦୀ ବାସ୍ତବବାଦ କାବ୍ୟରୂପ ପରିଗ୍ରହଣ କରିଛି । ସମାଜର ଧର୍ମ, ବର୍ଣ୍ଣ ସଂପର୍କିତ ବିଭେଦକୁ ପ୍ରଗତିବାଦୀ କବିତାରେ ତୀବ୍ରଭାବେ ଆକ୍ଷେପ କରାଯାଇଛି । ଭାରତ ତଥା ସମଗ୍ର ବିଶ୍ୱର ଔପନିବେଶିକ ଶୋଷଣ ବିରୁଦ୍ଧରେ ସଂଗ୍ରାମର ସ୍ୱର ଉଚ୍ଚାରିତ ହୋଇଛି । ସମାଜରୁ ଆର୍ଥିକ ବୈଷମ୍ୟର ବିଲୋପସାଧନ ପାଇଁ ଆହ୍ୱାନ ଦିଆଯାଇଛି । ଶ୍ରେଣୀସାମ୍ୟପାଇଁ ଗଣଚେତନାର ଜାଗୃତି ଏ ଜାତୀୟ କବିତାର ମୂଳମନ୍ତ୍ର ଭାବେ ବିବେଚିତ ହୋଇଛି ।

## ପ୍ରୟୋଗବାଦୀ କବିତାରେ ବାସ୍ତବବାଦର ପରିବର୍ତ୍ତିତ ସ୍ୱର

ପ୍ରତ୍ୟେକ ଯୁଗରେ କାବ୍ୟ ଶୈଳୀରେ କେତେକ ନୂତନ ପ୍ରୟୋଗ ଲକ୍ଷ୍ୟ କରାଯାଏ । କିନ୍ତୁ ଏଠାରେ ଆଧୁନିକ ପ୍ରୟୋଗବାଦୀ କବିତା, ଏକ ବିଶିଷ୍ଟ ଲାକ୍ଷଣିକ ଅର୍ଥରେ ପ୍ରଯୁଜ୍ୟ । ବିଂଶ ଶତାବ୍ଦୀର ପଞ୍ଚମ-ଷଷ୍ଠ ଦଶନ୍ଧି ବେଳକୁ କବିତାରେ ପ୍ରତୀକ, ରୂପକଳ୍ପ, ଭାଷା ତଥା ଛନ୍ଦ ପରିବର୍ତ୍ତନ ସହ ଭାବଚେତନାରେ ମଧ୍ୟ ବୈପ୍ଳବିକ ପରିବର୍ତ୍ତନ ସଂଘଟିତ ହୋଇଛି । କବିତାର ଏହି ଆଙ୍ଗିକ ତଥା ଆତ୍ମିକ ବିବର୍ତ୍ତନକୁ କେନ୍ଦ୍ରକରି ପ୍ରୟୋଗବାଦୀ କବିତାର ଉଦ୍‌ଭବ ଘଟିଛି ।

ସାମାଜିକ, ସାଂସ୍କୃତିକ ତଥା ରାଜନୈତିକ ମୂଲ୍ୟବୋଧର ଅବକ୍ଷୟ ବ୍ୟକ୍ତି-ଚେତନାକୁ ସଂକ୍ରମିତ କରିବା ସଙ୍ଗେ ସଙ୍ଗେ ଏହି ପର୍ଯ୍ୟାୟରେ ବାସ୍ତବବାଦର ସ୍ୱରୂପ ପ୍ରଗତିବାଦୀ କବିତାର ବାସ୍ତବବାଦଠାରୁ ଭିନ୍ନ ରୂପ ଧାରଣ କରିଛି । ପୂର୍ବରୁ ଏହି ଅବକ୍ଷୟର ସଂକେତ ଯେ ନଥିଲା ତାହା ନୁହେଁ, କିନ୍ତୁ ସ୍ୱାଧୀନତା ପରବର୍ତ୍ତୀ କାଳରେ ଏହାର ଉତ୍କଟ ସ୍ୱରୂପ ଲକ୍ଷ୍ୟ କରାଯାଇଛି । ବ୍ୟକ୍ତି ସହିତ ସମାଜର ସମ୍ପର୍କ ଗୌଣ-ହୋଇଛି । ଫଳରେ ପରମ୍ପରାରୁ ବିଚ୍ଛିନ୍ନ ଏକ ବ୍ୟକ୍ତିବାଦୀ ଚେତନାର ଉନ୍ମେଷ ଘଟିଛି । ସମାଲୋଚିକା ମୀନାକ୍ଷୀ ମୁଖାର୍ଜି ତାଙ୍କର 'ରିଅଲିଜିମ୍ ଏଣ୍ଡ ରିଅଲିଟି (Realism and Reality) ଗ୍ରନ୍ଥରେ ଏହି ପରିବର୍ତ୍ତନର ଆଭାସଦେଇ କହନ୍ତି, "ପ୍ରଚଳିତ ସାମାଜିକ ଗତିଶୀଳତା ସହିତ ବ୍ୟକ୍ତିବାଦୀ ଚେତନା ଓତଃପ୍ରୋତଭାବେ ଜଡ଼ିତ, ଯାହା ଆଧୁନିକ ଶିଳ୍ପାୟନ ଦ୍ୱାରା ସମ୍ଭବ ହୋଇଛି । ସଂଘବଦ୍ଧ ଶ୍ରେଣୀଚେତନା ବହିର୍ଭୂତ ବ୍ୟକ୍ତିକୁ, ପରମ୍ପରାର କୋଟରରୁ ଏହା କକ୍ଷଚ୍ୟୁତ କରିଛି ଓ ତାଙ୍କୁ ତାର ଅସାଧାରଣ ଶକ୍ତି ସମ୍ବନ୍ଧରେ ସଚେତନ କରାଇଛି (୪୭) ।"

ବିଜ୍ଞାନ ତଥା ବୈଷୟିକ ବିଜ୍ଞାନର ବିକାଶ ସତ୍ତ୍ୱେ ବ୍ୟକ୍ତି-ସ୍ୱାର୍ଥ-ସର୍ବସ୍ୱ ନଗର ସଭ୍ୟତାରେ, ବ୍ୟକ୍ତିତ୍ୱର ବିକାଶ ପାଇଁ ପର୍ଯ୍ୟାପ୍ତ କ୍ଷେତ୍ର ଲାଭ କରିବା ଦିଗରେ ବ୍ୟର୍ଥ ହୋଇଛି । ବିଶ୍ୱଯୁଦ୍ଧ ଆର୍ଥିକ ଅସଙ୍ଗତି ଆଣିବା ସଙ୍ଗେ ସଙ୍ଗେ ମାନସିକ ସଙ୍କଟ ମଧ୍ୟ ସୃଷ୍ଟି କରିଛି । ସ୍ୱାଧୀନତା ଗାନ୍ଧିଜୀଙ୍କ ରାମରାଜ୍ୟର ସ୍ୱପ୍ନକୁ ସଫଳ କରିପାରି ନାହିଁ । ଜୀବନର ରୁଚିଗତ ସ୍ଥୂଳତା, ନିଷ୍ପାପ ସୌନ୍ଦର୍ଯ୍ୟବୋଧକୁ ବିନଷ୍ଟ କରିଛି । ମୂଲ୍ୟବୋଧର ଏହି ଅବକ୍ଷୟକୁ ଆଧୁନିକ କବି-ମାନସ ଶାଣିତ କଟାକ୍ଷ ପ୍ରୟୋଗ କରିଛି । ପ୍ରୟୋଗ-ବାଦୀ କବିତାରେ ଜୀବନର ଏହି ପରିବର୍ତ୍ତିତ ଚେତନା କାବ୍ୟାୟିତ ହୋଇଛି ।

## ବାସ୍ତବବାଦୀ କାବ୍ୟାଦର୍ଶ

ବାସ୍ତବବାଦୀ କବିତା ଏକ ସ୍ୱତନ୍ତ୍ର ଆଦର୍ଶ ଉପରେ ଆଧାରିତ । ଲେନିନ୍‌ଙ୍କ ଭାଷାରେ "କଳା ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ । ଏଣୁ ଏହାର ବିସ୍ତାରିତ ମୂଳ ଶିଫା ଗୁଡ଼ିକ ସମାଜର ବୃହତ୍ତର ଭାଗକୁ ସ୍ପର୍ଶ କରିବା ଆବଶ୍ୟକ । ଜନ ସାଧାରଣଙ୍କ ଅନୁଭୂତି, ଚିନ୍ତା ଓ ଇଚ୍ଛାକୁ ଏହା ଉନ୍ନତ କରିବା ପାଇଁ ଅଭିପ୍ରେତ ହେବା ବାଞ୍ଛନୀୟ (୪୮) ।" ବାସ୍ତବବାଦୀ କବିତା ସାଧାରଣତଃ ଗଣସଚେତନତା ପାଇଁ ଉଦ୍ଦିଷ୍ଟ ହୋଇଥିବାରୁ ଏହାର ଆବେଦନ ଗଣମୁଖୀ ହେବା ବିଧେୟ । ବିଶେଷତଃ ସମାଜବାଦୀ ବାସ୍ତବବାଦକେନ୍ଦ୍ରିକ ପ୍ରଗତିବାଦୀ କବିତାର ଭାଷା ଓ ଶୈଳୀ ସରଳ ତଥା ସୁବୋଧ ହେବା ଆବଶ୍ୟକ । ଏଣୁ ବାସ୍ତବବାଦୀ କବିତାର ପ୍ରଧାନ ଲକ୍ଷଣ ଗୁଡ଼ିକ ହେଉଛି—

କ—ଗଣ ସଚେତନତା
ଖ—ଉପଯୋଗିତାବାଦୀ ଦୃଷ୍ଟିଭଙ୍ଗୀ
ଗ—ଅବହେଳିତ ସମାଜର ଚରିତ୍ର ଚିତ୍ରଣ
ଘ– ଅଳଂକରଣ ପରିବର୍ତ୍ତେ ସହଜ ପ୍ରକାଶ
ଙ—ମୁକ୍ତ ଛନ୍ଦର ପ୍ରାଧାନ୍ୟ
ଚ—ତଥାକଥିତ ଧର୍ମ ଓ ନୈତିକତାମୁକ୍ତ ଜୀବନର ସ୍ଥିତି ପ୍ରତି ଗୁରୁତ୍ୱ ପ୍ରଦାନ ।
ଛ—ସାମାଜିକ ସମସ୍ୟାର ପରିବର୍ତ୍ତନ ଅନୁଯାୟୀ ନିତ୍ୟନୂତନ ବିଷୟବସ୍ତୁର ଆହରଣ ।
ଜ—ନିତ୍ୟ ନୈମିତ୍ତିକ ଜୀବନରୁ ଭାଷା ଓ ଶବ୍ଦର ଚୟନ ।

ହିନ୍ଦୀ ସାହିତ୍ୟର ସମାଲୋଚକ ଡକ୍ଟର ରାମଶରଣ ସିଂହ କବିତାର ଭାଷା ଓ ଶବ୍ଦ ଚୟନ ଉପରେ ଗୁରୁତ୍ୱ ଆରୋପ କରି କହିଛନ୍ତି "ସୁସ୍ପଷ୍ଟ, ସାଧାରଣ ତଥା ପ୍ରଚଳିତ ଭାଷାକୁ ଆତ୍ମଗତ କର (୪୯) ।" ରୋମାଣ୍ଟିକ କବି ଓ୍ୱାର୍ଡସ୍‌ଓ୍ୱର୍ଥ (Words-worth) ମଧ୍ୟ କବିତାର ଘଟଣା, ପରିସ୍ଥିତି ଓ ଭାଷା ପ୍ରଚଳିତ ଜନଜୀବନରୁ ଆହୃତ ହେବା ବାଞ୍ଛନୀୟ ବୋଲି ମତଦେଇଛନ୍ତି । ତାଙ୍କ ମତରେ "କବି ସାଧାରଣ ଜନ ଜୀବନରେ ଘଟୁଥିବା ଘଟଣାରୁ ବିଷୟବସ୍ତୁ ଆହରଣ କରି ବାସ୍ତବ ଜୀବନରେ ବ୍ୟବହୃତ ଭାଷାର ସୁନିର୍ବାଚିତ ପରିବେଷଣ କରିବା ଆବଶ୍ୟକ (୫୦) ।

## ବାସ୍ତବବାଦୀ କବିତାର ପ୍ରକାଶଭଙ୍ଗୀ

ବାସ୍ତବବାଦୀ କବିତାର ପ୍ରକାଶଭଙ୍ଗୀର ଭିନ୍ନତା ଦୃଷ୍ଟିରୁ ସମାଲୋଚକଗଣ ଏହାକୁ ଦୁଇଟିଶ୍ରେଣୀରେ ବିଭକ୍ତ କରିଛନ୍ତି—ସାଦୃଶ୍ୟ ତତ୍ତ୍ୱ ଓ ସମନ୍ୱିତ ତତ୍ତ୍ୱ । ଆରିଷ୍ଟୋଟଲ ଏହି ସିଦ୍ଧାନ୍ତଗୁଡ଼ିକୁ ପ୍ରୟୋଜନସିଦ୍ଧ ସୂତ୍ର (law of necessity) ଓ ସମ୍ଭାବ୍ୟସିଦ୍ଧ ସୂତ୍ର (law of probability) ରୂପେ ଅଭିହିତ କରିଛନ୍ତି । ପ୍ଲେଟୋଙ୍କ ଭାଷାରେ ଏଗୁଡ଼ିକ ହେଉଛି ଯଥାକ୍ରମେ—ଅନୁକରଣାତ୍ମକ ବାସ୍ତବତା (Imitated Reality) ଓ ଉପସୃଷ୍ଟ ବାସ୍ତବତା (Manufactured Reality) ।

### (୧) ସାଦୃଶ୍ୟତତ୍ତ୍ୱ

ସାଦୃଶ୍ୟତତ୍ତ୍ୱ ମତରେ ବାସ୍ତବବାଦୀ ସାହିତ୍ୟ ବହିର୍ବିଶ୍ୱର ସାଧାରଣ ବାସ୍ତବ ସତ୍ୟଉପରେ ଆଧାରିତ । ଏହା ପ୍ରତ୍ୟକ୍ଷ ଅନୁଭୂତସିଦ୍ଧ ଓ ପ୍ରମାଣଦ୍ୱାରା ପରୀକ୍ଷିତ । ଏହି ତତ୍ତ୍ୱ ଅନୁଯାୟୀ ସାହିତ୍ୟିକ କୌଣସି ନୂତନ ତଥ୍ୟ ଉପସ୍ଥାପିତ କରନ୍ତି ନାହିଁ । ଜୀବନର ପ୍ରତ୍ୟକ୍ଷୀଭୂତ ସତ୍ୟକୁ ପୁନରୁପସ୍ଥାପିତ ମାତ୍ର

କରିଥାନ୍ତି । ରୁଷିଆର ସମାଜବାଦୀ ଦାର୍ଶନିକ ବେଲିନେସ୍କି ଓ ଚେର୍ନିସ୍ ଭେସ୍କି ଏହି ମତକୁ ଦୃଢ଼ ଭାବେ ସମର୍ଥନ କରିଛନ୍ତି । ବେଲିନେସ୍କିଙ୍କ ଭାଷାରେ "କବିତା ଜୀବନକୁ ନୂତନଭାବେ ସୃଷ୍ଟି କରି ପାରେ ନାହିଁ, ପକ୍ଷାନ୍ତରେ ଏହା ଜୀବନକୁ ପୁନଃ ପ୍ରକାଶିତ କରିଥାଏ (୫୧) ।

ଚେର୍ନିସ୍ ଭେସ୍କିଙ୍କ ଭାଷାରେ "କଳାର ପ୍ରଥମ ଲକ୍ଷ୍ୟ ହେଉଛି ବାସ୍ତବ ପୁନର୍ବିନ୍ୟାସ (୫୨) ।"

## (୨) ପ୍ରୟୋଜନସିଦ୍ଧ ଓ ସମ୍ଭାବ୍ୟସିଦ୍ଧ ସୂତ୍ର

ଆରିଷ୍ଟୋଟଲଙ୍କ ଅନୁକରଣତତ୍ତ୍ୱ (Theory of Imitation)ରେ ସାଦୃଶ୍ୟତତ୍ତ୍ୱ ଓ ସମନ୍ୱିତ ତତ୍ତ୍ୱର ସଙ୍କେତ ଅନ୍ତର୍ନିହିତ । ଆରିଷ୍ଟୋଟଲଙ୍କ ଭାଷାରେ "ବିଷୟବସ୍ତୁର ଗଠନ ତଥା ଚରିତ୍ରର ଚିତ୍ରଣ ଦୃଷ୍ଟିରୁ କବି ପ୍ରୟୋଜନ ଅଥବା ସମ୍ଭାବନା ଯେ କୌଣସି ଗୋଟିଏ ବିଭବ ପ୍ରତି ଦୃଷ୍ଟି ରଖିବା ଉଚିତ୍ (୫୩) । ଆରିଷ୍ଟୋଟଲଙ୍କ କାବ୍ୟତତ୍ତ୍ୱର ପ୍ରୟୋଜନସିଦ୍ଧ ସୂତ୍ର (Law of necessity) ଜୀବନର ଉପଯୋଗିତାବାଦୀ ତାତ୍‌କାଳିକ ସମସ୍ୟା ଉପରେ କେନ୍ଦ୍ରୀଭୂତ । ସମ୍ଭାବ୍ୟସିଦ୍ଧ ସୂତ୍ର (Law of probability) ପ୍ରୟୋଜନୀୟ ତାତ୍‌କାଳିକତା ସହ ସମ୍ଭାବ୍ୟ ଆଗାମୀ ଆକାଂକ୍ଷାର ସମନ୍ୱୟରୁ ସୃଷ୍ଟ । ଏହି ପର୍ଯ୍ୟାୟରେ କବିତାର କଳାତ୍ମକ ମୂଲ୍ୟ ଅପେକ୍ଷାକୃତ ବ୍ୟାପକ ।

## (୩) ଉପସୃଷ୍ଟ ବାସ୍ତବତା (Manufactured Reality) ଓ ଅନୁକରଣାତ୍ମକ ବାସ୍ତବତା (Imitated Reality)

ପ୍ଲେଟୋଙ୍କ 'ଦି ରିପବ୍ଲିକ୍' (The Republic) ଗ୍ରନ୍ଥରେ କଳାର ସୃଜନଶୀଳତା ଓ ଅନୁକରଣାତ୍ମକ ଉଭୟ ବିଭବର ସୂଚନା ଦିଆଯାଇଛି । କଳାର ସୃଜନଶୀଳତାକୁ ପ୍ଲେଟୋ 'ଉପସୃଷ୍ଟ ବାସ୍ତବତା' ଓ କଳାରେ ଜୀବନର ପ୍ରତିରୂପ ଅଙ୍କନକୁ 'ଅନୁକରଣାତ୍ମକ ବାସ୍ତବତା' ରୂପେ ଅଭିହିତ କରିଛନ୍ତି । ଉଭୟ ତତ୍ତ୍ୱମଧ୍ୟରୁ ପ୍ଲେଟୋ ଅନୁକରଣାତ୍ମକ ବାସ୍ତବ ସତ୍ୟର ସାମାଜିକ ଉପଯୋଗିତାକୁ ଅଗ୍ରାଧିକାର ଦେଇଛନ୍ତି । ତେଣୁ ସେ ଉପସୃଷ୍ଟକାରୀ ବାସ୍ତବବାଦୀମାନଙ୍କୁ ଆକ୍ଷେପକରି କହିଛନ୍ତି "ଆମ ସହରରେ ପ୍ରବେଶ କରିଥିବା କବି ସହରର ଆକାଶ ଓ ସୂର୍ଯ୍ୟାଲୋକ

ତଲେ ଯେତେ ଉନ୍ନତକଳା ସୃଷ୍ଟି କରନ୍ତୁ ନା କାହିଁକି, ଏ ଭଳି ବ୍ୟକ୍ତିଙ୍କର ଆବଶ୍ୟକତା ଆମ ସହରରେ ନାହିଁ । ଆମ ନୀତି ନିୟମ ମାନି ଚଳୁଥିବା କବିଙ୍କୁ ଆମ ସହରରେ ସ୍ଥାନ ଦେବୁ । କବି ଭାବରେ ସେ ଅପେକ୍ଷାକୃତ, ଅନାକର୍ଷଣୀୟ ହେଲେ ମଧ୍ୟ ତାଙ୍କର କାବ୍ୟକୃତି ଆମର ହିତ କାର୍ଯ୍ୟରେ ନିୟୋଜିତ ହୋଇ ପାରିବ (୫୪) ।”

'Hard Times'ର ଦ୍ୱିତୀୟ ପରିଚ୍ଛେଦରେ କଳାର ଯଥାର୍ଥ ଚରିତ୍ର ସମ୍ବନ୍ଧରେ କୁହାଯାଇଛି । କଳ୍ପନାବିଳାସକୁ ତୁମେ ପୂର୍ଣ୍ଣରୂପେ ପ୍ରତ୍ୟାଖ୍ୟାନ କରିବା ଆବଶ୍ୟକ । ତଥ୍ୟକୁ ସନ୍ଦିଗ୍ଧ କରିବାଭଳି ଅଳଂକରଣ ସର୍ବଥା ବର୍ଜନୀୟ । ତୁମେ ପୁଷ୍ପିତ ଗାଲିଚା ବ୍ୟବହାର କରନାହିଁ । ଅଥବା ତୁମର ମୃଣ୍ମୟ ପାତ୍ରରେ ବୈଦେଶିକ ପକ୍ଷୀ ବା ପ୍ରଜାପତି ସମୂହକୁ ବସାବାନ୍ଧିବାର ସୁଯୋଗ ଦିଅନାହିଁ । ସେମାନଙ୍କର ଚିତ୍ର ମଧ୍ୟ ମୃଣ୍ମୟପାତ୍ରରେ ଅଙ୍କନ କରନାହିଁ । ଏହା ହିଁ ତଥ୍ୟ ଓ ସ୍ୱାଦ୍ୟ (୫୫) ।”

ସ୍ୱୀକୃତିମୂଳକ କବିତା ତଥା ପ୍ରାମାଣିକ ନାଟକରେ ଜୀବନ ସତ୍ୟର ଅନୁରୂପ ଅନାବୃତ୍ତ ଚରିତ୍ର ଆବଶ୍ୟକ । ହିନ୍ଦୀ ସାହିତ୍ୟର ସମାଲୋଚକ ରାମ ରତନ ଭଟ୍ଟନାଗର ବାସ୍ତବବାଦୀ କଳା ଓ ସାହିତ୍ୟର ଯଥାଯଥ ଚରିତ୍ର ସମ୍ପର୍କରେ ମତଦେଇ କୁହନ୍ତି, “ବାସ୍ତବବାଦୀ କଳାକାର ନିରୀକ୍ଷଣ ଓ ପ୍ରାମାଣିକତା ଉପରେ ଗୁରୁତ୍ୱ ଦେଇ ଥାଆନ୍ତି । ବାସ୍ତବରେ ଏହାକୁ ବାସ୍ତବବାଦ ନ କହି ବାସ୍ତବ ଚରିତ୍ର କହିବା ଅଧିକ ଯୁକ୍ତିଯୁକ୍ତ ହେବ । ସାଧାରଣ ଅନୁଭୂତି ସମୂହର ଜୀବନ୍ତ ବିବରଣ ମାଧ୍ୟମରେ ଏହାର ଉପଯୋଗ ଲକ୍ଷ୍ୟ କରାଯାଏ (୫୬) ।”

## (୪) ସମନ୍ୱିତ ତତ୍ତ୍ୱ (Coherence Theory)

ସାଦୃଶ୍ୟତତ୍ତ୍ୱର ପ୍ରତ୍ୟକ୍ଷ ପ୍ରମାଣଭିତ୍ତିକ ଉପଲବ୍ଧି ସମନ୍ୱିତ ତତ୍ତ୍ୱରେ ରୂପାନ୍ତରିତ ହୁଏ । ବିଶ୍ୱଜୀବନର ସ୍ଥିତିସତ୍ୟର ଅବଗତ ପ୍ରକ୍ରିୟା (process of knowing) ଏଠାରେ ସୃଷ୍ଟିଶୀଳ ପ୍ରକ୍ରିୟା (process of making)ରେ ପରିଣତ ହୁଏ । ସାଦୃଶ୍ୟ ତତ୍ତ୍ୱର ପ୍ରମାଣ, କଳାକାରର ତୂଳୀରେ ରଞ୍ଜିତ ଓ ରହସିକ୍ତ ହୋଇ ଉପସ୍ଥାପିତ ହୁଏ । ଆରିଷ୍ଟୋଟଲଙ୍କ ଭାଷାରେ “କବିତା ଇତିହାସ ନୁହେଁ । ଇତିହାସର ତଥ୍ୟଗତ ସତ୍ୟର କାବ୍ୟିକ ରୂପାୟନ ମାତ୍ର (୫୭) । ସମାଲୋଚକ ଏ. ଏ. ମେଣ୍ଡିଲୋ ଓ ଜେ. ଡବ୍ଲ୍ୟୁ. ପୁରସେର ମଧ୍ୟ ଏହି ମତକୁ ସମର୍ଥନ କରନ୍ତି । ମେଣ୍ଡିଲୋଙ୍କ ଭାଷାରେ “ସ୍ରଷ୍ଟା ଚେତନାରେ ବାସ୍ତବବାଦ ସର୍ବଦା ଏକ ସୃଷ୍ଟିଶୀଳ ପ୍ରକ୍ରିୟା । ଏହା ପୂର୍ବସ୍ଥିତ

ନୁହେଁ (୫୮) ।'' ପୁର୍‌ଷେର୍ କହନ୍ତି, ''ଯଦି ପ୍ରକୃତରେ ଏକ କଳାରେ କିଛି ସତ୍ୟ ନିହିତ ରହିଥାଏ ତାହାହେଲେ ତାହା ତାର ସାଦୃଶ୍ୟ ବା ଅନୁକରଣାତ୍ମକତାରେ ରହି ନଥାଏ (୫୯) ।''

ଅନୁକରଣାତ୍ମକ କଳାଦ୍ୱାରା ପ୍ରାକୃତିକ ବସ୍ତୁ, କିମ୍ବା ତଥା ସାମାଜିକ ପ୍ରକାର (pattern)ର ଅବିକଳ ପ୍ରତିରୂପ ଅଙ୍କିତ ହୋଇଥାଏ । କିନ୍ତୁ କଳା କେବଳ ଅନୁକରଣକେନ୍ଦ୍ରିକ ନୁହେଁ । ସୃଜନଶୀଳତାର ସଫଳରୂପାୟନ ହିଁ ବାସ୍ତବବାଦୀ କଳା ସୃଷ୍ଟିର ଧର୍ମ । ବିଟିଶ୍ ସମାଲୋଚକ କାଲଦାସ ରାୟଙ୍କ ଭାଷାରେ ବାସ୍ତବସତ୍ୟ ଅନେକ ସମୟରେ କଙ୍କାଳ ବ୍ୟତୀତ ଅନ୍ୟ କିଛି ନୁହେଁ । ସେହି କଙ୍କାଳରେ ରକ୍ତ, ମାଂସ, ତ୍ୱକ୍ ଓ ଲାବଣ୍ୟ ସଂଯୋଗ କରିବାର ଦାୟିତ୍ୱ ସାହିତ୍ୟକର । ଏହି ସଂଯୋଗର ସଫଳତାରେ ସାହିତ୍ୟ ସତ୍ୟ ସୁନ୍ଦର ରୂପ ଧାରଣ କରିଥାଏ (୬୦) ।''

ସୁତରାଂ ଦୃଶ୍ୟମାନ ବସ୍ତୁ-ସମ୍ପର୍କିତ ଚିନ୍ତାର କଳାତ୍ମକ ସ୍ଥିତିପାଇଁ କବିର ମାନସିକ ପ୍ରକ୍ରିୟାର ଭୂମିକା ଏକାନ୍ତ ଗୁରୁତ୍ୱପୂର୍ଣ୍ଣ । ସୋଭିଏତ ସମାଲୋଚକ ଭାସିଲି ନୋଭିକୋଭ କହିଛନ୍ତି ''ସତ୍ୟ ସର୍ବଦା ମୂର୍ତ୍ତି ଓ ଏକ ଶ୍ରେଣୀଭିତ୍ତିକ ସମାଜରେ ଏହା ସବୁବେଳେ ଶ୍ରେଣୀ ଭିତ୍ତିରେ ବିଭକ୍ତ ।···କିନ୍ତୁ କଳାର ପ୍ରାମାଣିକ କିମ୍ବା ତାର କଳାତ୍ମକ ଭୂମିକାଠାରୁ ଅବିଚ୍ଛିନ୍ନ (୬୧) ।"

## ବାସ୍ତବବାଦୀ କବିତାର ଅଭିମୁଖ୍ୟ

ବାସ୍ତବବାଦୀ କବିତାର ଆଭିମୁଖ୍ୟ ହେଉଛି ଯୁଗ ଚେତନାର କଳାତ୍ମକ ଉପସ୍ଥାପନ । ଏହା ଯୁଗଚେତନାର ବାହକ । ଡକ୍ଟର ସି. ଜି. ଜଙ୍ଗଙ୍କ ଭାଷାରେ ''ପ୍ରତ୍ୟେକ ଉନ୍ନତ କବିତା ସମକାଳୀନ ଜୀବନ ଓ ଯୁଗ ଚେତନାରୁ ତାର ଶକ୍ତି ଆହରଣ କରିଥାଏ । ବୈକ୍ତିକ କାରଣରୁ ଉଦ୍‌ଭୂତ ହୋଇଥିଲେ ଏହାର ଅର୍ଥାବବୋଧ ଆମ୍ଭମାନଙ୍କ ପାଇଁ ସମ୍ପୂର୍ଣ୍ଣ ବିନଷ୍ଟ ହୋଇଥାଏ (୬୨) ।''

ବାସ୍ତବବାଦୀ କବିତାରେ, ବ୍ୟକ୍ତି ସମାଜର ଏକ ଅଂଶରୂପେ ପରିଗଣିତ । ସମାଜ ଓ ତାସହ ସଂଯୁକ୍ତ ବ୍ୟକ୍ତି ଚରିତ୍ରର ଯଥାର୍ଥ ସ୍ୱରୂପର ଉଦ୍‌ଘାଟନ, ତାର ଆଭିମୁଖ୍ୟ । ସମାଜ ଜୀବନ, ଯୁଗଚେତନା ତଥା ବ୍ୟକ୍ତି ବିଶେଷର ସଂପର୍କକୁ କାର୍ଯ୍ୟ-କାରଣ ଭିତ୍ତିରେ ଏହା ବିଶ୍ଳେଷଣ କରେ । ସୁତରାଂ ଏହା ଭାବପ୍ରବଣତାମୁକ୍ତ ଓ ସୁନିର୍ଦ୍ଦିଷ୍ଟ ସଂସ୍କାରଚେତନାନିଷ୍ଠ ।

ରୋମାଣ୍ଟିକ କବିତାର ଆଭିମୁଖ୍ୟ ନିରୋଳ ସର୍ଜନା । ଉଇଲିୟମ ବ୍ଲେକ କହନ୍ତି ''ସର୍ଜନା ହିଁ ମୋର ଧର୍ମ (୬୩) ।'' ରୋମାଣ୍ଟିକ କବିର ଗୁରଣ ଭୂମି, ପ୍ରକୃତି ଓ କଳ୍ପନା । ''ଧୂଳିକଣାରେ ସେ ବିଶ୍ୱର ଦର୍ଶନ କରେ । ଆରଣ୍ୟ ପୁଷ୍ପରେ ସ୍ୱର୍ଗର

ସୁଷମା ଉପଲବ୍‌ଧି କରେ । ହାତ ପାପୁଲିରେ ଅସୀମତାକୁ ଧାରଣ କରେ । ଚିରନ୍ତନ-ତାକୁ ସୀମିତ ସମୟର ସୀମାରେ ଆବଦ୍ଧ କରେ (୭୪) ।" ତାର ଦୃଷ୍ଟିଭଙ୍ଗୀ ସଂପୂର୍ଣ୍ଣ ବୈଜ୍ଞାନିକ ।

ବାସ୍ତବବାଦୀ କବି ଜନସମାଜ ମଧ୍ୟରେ ହିଁ କାବ୍ୟଶକ୍ତିକୁ ଉଦ୍‌ଜୀବିତ କରିଥାଏ । ସୋଭିଏତ୍ ରୁଷର ସମାଜବାଦୀ କବି ମାୟାକୋଭସ୍କି ସେଥିପାଇଁ ଦ୍ୱିଧାମୁକ୍ତ କଣ୍ଠରେ ଉଚ୍ଚାରଣ କରିଛନ୍ତି "ତୁମମାନଙ୍କ ମଧ୍ୟରେ ମୁଁ ବିଦ୍ୟମାନ । ଯେଉଁଠାରେ ଯନ୍ତ୍ରଣା ସେହି ଠାରେ ମୋର ସ୍ଥିତି । ତୁମମାନଙ୍କର ଗୋଟିଏ ମାତ୍ର ଲୋତକ ବିନ୍ଦୁରେ ମୁଁ କ୍ରୁଶବିଦ୍ଧ ହୁଏ (୭୫) ।"

ବାସ୍ତବବାଦୀ କବିର ଜୀବନଦୃଷ୍ଟି ବସ୍ତୁନିଷ୍ଠ । କବି-ସମାଲୋଚକ ଟି. ଏସ୍. ଏଲିୟଟ୍ କହିଛନ୍ତି, "କଳାକାରର ବିକାଶ, ତାର ନିରବଚ୍ଛିନ୍ନ ଆତ୍ମବଳିଦାନ ତଥା ବ୍ୟକ୍ତିର ଆତ୍ମସତ୍ତାର ବିଲୋପ ସାଧନ ଉପରେ ନିର୍ଭର କରେ । କବିତା ଆବେଗର ଏକ ଅଭିବ୍ୟକ୍ତି ନୁହେଁ, ପକ୍ଷାନ୍ତରେ ଆବେଗରୁ ମୁକ୍ତି । ଏହା ବ୍ୟକ୍ତିତ୍ୱର ପ୍ରକାଶ ନୁହେଁ, ବ୍ୟକ୍ତିତ୍ୱରୁ ପଳାୟନ (୭୬) ।"

କବିତାର ତତ୍ତ୍ୱ କ୍ଷେତ୍ରରେ ବାଦ ବିସମ୍ବାଦ ବହୁକାଳର । କିନ୍ତୁ କବିତା, ରୂପ ଓ ରସର ଏକ ସମାହିତ ଉତ୍ସ । ବାସ୍ତବବାଦୀ କବିତାରେ ଏହି ରୂପ ଓ ରସର ମୂଳବିନ୍ଦୁ—ଯୁଗଚେତନାର ରୂପାୟନ । କବି ଚେତନା ଯୁଗର ସମସ୍ୟା ସହିତ ଏଠାରେ ନିବିଡ଼ ଭାବରେ ସଂଶ୍ଳିଷ୍ଟ । ବାସ୍ତବବାଦୀ କବି ବସ୍ତୁନିଷ୍ଠ ବିଶ୍ୱରେ ମାୟାର ପ୍ରଲେପ ଦିଅନ୍ତି ନାହିଁ । କାବ୍ୟକଳା ମାଧ୍ୟମରେ ବାସ୍ତବଜୀବନର କାୟାକୁ ସାକାର ରୂପ ଦିଅନ୍ତି ।

ପାଶ୍ଚାତ୍ୟ କାବ୍ୟଧାରାରେ ବାସ୍ତବବାଦର ସ୍ୱର ଭିନ୍ନ ଭିନ୍ନ ସାମାଜିକ, ଅର୍ଥନୈତିକ ତଥା ରାଜନୈତିକ ବିପ୍ଳବକୁ କେନ୍ଦ୍ରକରି ବିବର୍ତ୍ତିତ । ସମାଜବାଦୀ କବିତାର ବସ୍ତୁନିଷ୍ଠ ସ୍ୱର ବିଂଶ ଶତାବ୍ଦୀର ପ୍ରୟୋଗବାଦୀ କାବ୍ୟ ମାନସରେ ରୂପାନ୍ତରିତ । ଫଳିବଦ୍ଧ-ଶ୍ରେଣୀ ଚେତନା-ମୁକ୍ତ ବ୍ୟକ୍ତିସତ୍ତାର ବାସ୍ତବ ଅନୁଭୂତି ସମୂହ ତହିଁରେ ବିଶ୍ୱସ୍ତଭାବେ ଲିପିବଦ୍ଧ । ବିଜ୍ଞାନ ତଥା ବୈଷୟିକ ବିଜ୍ଞାନର ସମନ୍ୱୟରେ ଅଭିବୃଦ୍ଧ ଶିଳ୍ପ ସଭ୍ୟତାର କାୟା ବିସ୍ତାର, ପଲ୍ଲୀ ଅଞ୍ଚଳର ସରଳ ଓ ସହଜ ଜୀବନଧାରାର କ୍ରମବିଲୟ ତଥା ବିଶ୍ୱଯୁଦ୍ଧର ଭୟାବହ ତାଣ୍ଡବ ପୃଥିବୀର ଶାନ୍ତ ତଥା ସଦ୍‌ଭାବର ବାତାବରଣକୁ ଚଳ-ଚଞ୍ଚଳ କରିବା ସଙ୍ଗେ ସଙ୍ଗେ ଜୀବନ ପ୍ରତି କବିର ଦୃଷ୍ଟିଭଙ୍ଗୀ କିଭଳି ଆତ୍ମପ୍ରକାଶ କରିଛି, ପରବର୍ତ୍ତୀ ପରିଚ୍ଛେଦରେ ତାର ବିହଙ୍ଗାବଲୋକନ କରାଯାଉଛି ।

## ପାଦଟୀକା

(୧) Beauty is truth truth, beauty—Ode on a Grecian urn—John Keats.

(୨) Truth can only apply to reality, to real concrete life.—Illusion and Reality—page-11-Christopher Caudwell.

(୩) Poetry is not the proper antithesis to prose but to science—Coleridge.

(୪) (i) Damian Grant—The Realism

(ii) Christopher Caudwell—Illusion and Reality.

(iii) Alex Preminger—Princeton Encyclopaedia of Poetry & Poetics.

(iv) Thomos Hudson—A Reader's Guide to Literary Terms.

(v) Wallace Stevens—Opus Posthumus

(vi) George. J. Becker—Documents on Modern Literary Realism.

(vii) V. D. Solapinto—Realism in Poetry.

(viii) George Lucas—The meaning of contemporary realism.

(୫) (i) Aristotle—Theory of Poetics and fine Arts.

(ii) Plato—The Republic.

(୬) "Realism × × × reminds us all the time of its ultimate etymological derivation from res, 'thing."

Realism—Damian Grant-page 43

(୭)—"In theory, the realist wishing to record life as it is, refrains from imposing a predetermined pattern, (based on a philosophical orientation)

upon his materials. He allows the story to tell itself, for truth, he feels, resides in the events themselves,"

Thomos Hudson—A Reader's Guide to Literary Terms—page-179.

(୮)—"Realism (in art and literature) showing of real life, facts etc. in a true way, omitting nothing that is ugly or painful and idealising nothing."—Oxford Advanced Learner's, Dictionary of Current English—A. S, Hornby.

(୯)—'Realism by itself is fatal. Truth is the air without which we cannot breathe, but art is a plant, sometimes even a fantastic one, which grows and develops in the air—Turgenev.

(୧୦)—Eventually an imaginary world is entirely without interest. × × × Realism brings us to the source of our difficulties. W. Stevens-Opus Posthumus.

(୧୧)—"Realistic poetry at its best is likely to meet the following conditions:—

(i) It will describe normal situations and average characters in ordinary settings (often with emphasis on lower strata of society).

(ii) It will renounce the use of far-fetched images and metaphors.

(iii) It will endeavour to reproduce actual speech and tend to approximate prose rhythms—Princeton Encyclopaedia of Poetry & Poetics. p-685.

(୧୨)—"Realism in art may be considered generally the antithesis of idealism that the representation of things as they are and not in imagined perfection".

Every Man's Dictionary of Pictorial Art, part 2, page-213.

(୧୩)—Realism commits itself to an exact, complete and sincere reproduction of the social milieu, of the contempory world....this reproduction should therefore be as simple as possible so that any one may understand it"—Duranty (quoted-D. Grant in his book Realism. page-27)

(୧୪)—"The realist screen is a plain glass, very thin, very clear, which aspires to be perfectly transparent that images may pass through it and remake themselves in all their reality."

Emile Zola-Le Roman Experimental-Tr-D. Grant in his book Realism-page-28.

(୧୫)—(କ) ୧୭୬୭ ମସିହା—ଜେମସ୍ ହାରଗ୍ରେଭସଙ୍କ ଦ୍ୱାରା ସୂତାକଟା ଯନ୍ତ୍ରର ଉଦ୍‌ଭାବନ ।

(ଖ) ୧୮୩୦ ମସିହା—ଜର୍ଜ ଷ୍ଟିଫେନସନଙ୍କ ଦ୍ୱାରା ରେଲ୍ ଇଂଜିନର ଉଦ୍‌ଭାବନ ।

(ଗ) ୧୮୪୪ ମସିହା—ସାମୁଏଲ୍ ମୋରେସଙ୍କ ଦ୍ୱାରା ଟେଲିଗ୍ରାଫର ପ୍ରତିଷ୍ଠା ।

(ଘ) ୧୮୫୬ ମସିହା—ହେନେରି ବେସେମିର୍‌ଙ୍କ ଦ୍ୱାରା ଇସ୍ପାତ ଉତ୍ପାଦନ ।

(ଙ) ୧୮୭୬ ମସିହା—ଆଲେକ୍ ଜାଣ୍ଡର ଗ୍ରାହାମ୍‌ବେଲଙ୍କ ଦ୍ୱାରା ଟେଲିଫୋନର ଉଦ୍‌ଭାବନ ।

(୧୬)—(କ) ୧୮୩୧-୩୪ ମସିହା-ଇଂଲଣ୍ଡର ବସ୍ତ୍ର ବୟନକାରୀ ଶ୍ରମିକମାନଙ୍କର ଆନ୍ଦୋଳନ ।

(ଖ) ୧୮୩୯-୪୮ ମସିହା—ଇଂଲଣ୍ଡରେ ଚାର୍ଟିଷ୍ଟ ଆନ୍ଦୋଳନ ।
(ଗ) ୧୮୪୩ ମସିହା—ଇଂଲଣ୍ଡ ସମବାୟ ସମିତିର ପ୍ରତିଷ୍ଠା ।
(ଘ) ୧୮୪୪ ମସିହା—ଜର୍ମାନ ଶ୍ରମିକ ସଂଘର ସଂଗଠନ ।
(ଙ) ୧୮୪୭ ମସିହା—ଇଂଲଣ୍ଡରେ କମ୍ୟୁନିଷ୍ଟ ଲିଗ୍‌ର ପ୍ରଥମ ସମ୍ମିଳନୀ ।
(ଚ) ୧୮୬୪ ମସିହା—ଆନ୍ତର୍ଜାତିକ ଶ୍ରମଜୀବୀ ସଂଗଠନ ।
(ଛ) ୧୮୬୭ ମସିହା—ଟ୍ରେଡ୍ ଇଉନିୟନ କଂଗ୍ରେସ ।

(୧୭)—୧୮୬୩ ମସିହା—ପୋଲାଣ୍ଡରେ ଶ୍ରମିକ ଆନ୍ଦୋଳନ ।

(୧୮)—୧୮୭୦ ମସିହା—ଫରାସୀ ସାଧାରଣତନ୍ତ୍ରର ପରାଜୟ ।

(୧୯)—(କ) ଜର୍ମାନ ସୋସାଇଟିର କେନ୍ଦ୍ରୀୟ ମୁଖପତ୍ର 'ଭରଓ୍ୱାର୍ଟସ୍'ରେ ପ୍ରକାଶିତ ଏଙ୍ଗେଲ୍‌ସଙ୍କ ପ୍ରବନ୍ଧ ସମୂହ ।
(ଖ) ୧୮୪୮ ମସିହାରେ ମାର୍କସଙ୍କର କମ୍ୟୁନିଷ୍ଟ ଇସ୍ତାହାର (Communist Manifesto)ର ପ୍ରକାଶନ ।
(ଗ) ନିଉୟର୍କ ଡେ଼ଲି ଟ୍ରିବ୍ୟୁନରେ ମାର୍କସଙ୍କର ପ୍ରକାଶିତ ପ୍ରବନ୍ଧ ସମୂହ ।
(ଘ) ୧୮୬୩ ମସିହାରେ ମାର୍କସଙ୍କ 'ଦାସ୍ କାପିଟଲ୍' (Das Kapital)ର ପ୍ରକାଶନ ।

(୨୦)—Introduction to Vishnu Purana—Dr. Wilson.

(୨୧)—୧୮୨୬ ମସିହାରେ ଫ୍ରାନ୍‌ସରେ ନେପେସେଙ୍କ ଦ୍ୱାରା ଫଟୋଗ୍ରାଫିର ଉଦ୍ଭାବନ । ୧୮୩୭ ମସିହାରେ ଦାଗ୍ୟୁରଙ୍କ ମାଧ୍ୟମରେ ଏହାର ବିକାଶ ସଂସାଧନ ।

(୨୨)—Mirror presents a cold reflection of whatever stands before it, but art always selects, analyses and reshapes reality in order to penetrate more than deeply into its essence. (Socialist Realism in Art and Literature, p-245.)

(୨୩)—'In art you have to be true to the psychology more than to fact itself'—Maxim Gorky

(୨୪)—୧୮୯୮ ମସିହା—ରୁଷୀୟ ସମାଜବାଦୀ ଗଣତାନ୍ତ୍ରିକ ସଂଘର ପ୍ରତିଷ୍ଠା ।

(୨୫)—୧୯୦୫ ମସିହା ଜାନୁଆରୀ ୨୨—ରକ୍ତାକ୍ତ ରବିବାର (Red Sunday)

(୨୬)—୧୯୧୭ ଅକ୍ଟୋବର—ରୁଷିଆର ଗଣ ବିପ୍ଳବ ।

(୨୭)—······the word realism must surely be the most independent, most elastic, most prodigious of critical terms."—D. Grant, Realism-p-1

(୨୮)—"Materialism in philosophy, the theory that everything is material or results from matter. × × Matter is the sole cause, the only source of being and change." Encyclopaedia Americana, page 425.

(୨୯)—Positivism is based on observable phenomena and positive facts rather than speculation. Modern development of this philosophy is mainly concerned with verification of empirical statement—Oxford Advanced Learner's Dictionary, page-649

(୩୦)—A more particularised branch of Realism. Naturalism expresses a post-Darwinian view of life in which man is seen as fundamentally no more than a specialised animal subject wholly to natural forces such as heredity and environment. Dictionary of Literary Terms—Martin Gray—page-135.

(୩୧)—"Instead of narrative method we may use now the mythical method, manipulating a continuous parallel between the contemporaneity and antiquity"—T. S. Eliot.

(୩୨)—"Reality is seen as something which has to be attained, not merely taken for granted and the attainment is a continuous process that never

allows the concept to stabilise, or the word to offer a convenient mould of meaning-Realism page-5 & 6—Damian Grant

(୩୩)—"Born in controversy and developed in acrimony, this literary revolution has influenced the literature of every country at some point during the last century and continues to be felt in our day."

(Preface to Documents of modern literary realism-George Becker)

(୩୪)—× × × × "ବେଦ୍ୟ ବାସ୍ତବମତ୍ର ବସ୍ତୁ ଶିବଦଂ
ତାପ ତ୍ରୟୋନ୍ମୂଳନମ୍"

ଶ୍ରୀମଦ୍ ଭାଗବତ ୪/୩

(୩୫)—ବିପଦାଃ ସନ୍ତୁନଃ ଶଶ୍ୱତ୍ ତତ୍ର ତତ୍ର ଜଗଦ୍‌ଗୁରୋ
ଭବତଃ ଦର୍ଶନଂ ଯତସ୍ୟାଦ ନ ପୁନର୍ଭବ ଦର୍ଶନଂ

ଶାନ୍ତିପର୍ବ-ମହାଭାରତ

(ହିନ୍ଦୀ ମାସିକ ପତ୍ରିକା କଲ୍ୟାଣ ୧୯୪୮ ଜାନୁଆରୀ—୫୬୧ ପୃଷ୍ଠାରୁ ଉଦ୍ଧୃତ)

(୩୬)—"ସମାନୀ ବ ଆକୂତିଃ, ସମାନା ହୃଦୟାନିବଃ
ସମାନମସ୍ତୁ ବୋ ମନୋ, ଯଥାଃ ସୁସହାସତି"

ଅଥର୍ବ ବେଦ-୧-୮-୬୪

(୩୭)—"ସମାନୋ ମନ୍ତ୍ର ସମିତି ସମାନୀ, ସମାନଂ ମନଃ ସହଚିତ୍ତମେଷାମ୍
ସମାନ ମନ୍ତ୍ର ଗତ ମନ୍ତ୍ରୟେବଃ, ସମାନେନ ବା ହବିଷା ଜୁହୋମି"

ଅଥର୍ବ ବେଦ-୧-୭-୬୪

(୩୮)—"ପ୍ରାଣୈର୍ଷଣା, ଧନୈର୍ଷଣା ପରଲୋକୈର୍ଷଣା
ନ ଇହ ପାପାନ୍ ପାପୀୟୋଽସ୍ତି ଯସ୍ୟ
ଅନୁପକରଣସ୍ୟ ଦୀର୍ଘମାୟୁଃ
ତସ୍ମାତ୍ ଧନାର୍ଥଂ ଯତେତ"

ଚରକ ସଂହିତା ୧୩/୪

(୩୯)—"ଧର୍ମାର୍ଥକାମାଃ ସମମେବ ସେବ୍ୟାଃ
ଯୋହ୍ୟେକ—ସକ୍ତଃ ସଃ ଜନୋ ଜଘନ୍ୟଃ ।
(ବାତ୍ସାୟନ କାମସୂତ୍ର ୫/୪)

(୪୦)—"ଅଗ୍ନିରୁଷ୍ଣୋ ଜଳଂ ଶୀତଂ ସମସ୍ପର୍ଶସ୍ତଥାନିଳଃ
କେନେଦଂ ଚିତ୍ରିତଂ ତସ୍ମାତ୍ ସ୍ୱଭାବତ୍ ତତ୍ ବ୍ୟବସ୍ଥିତିଃ
ସର୍ବ ଦର୍ଶନ ସଂଗ୍ରହ---ଚାର୍ବାକ ଦର୍ଶନ-ଶ୍ଳୋକ-୧୦୫-ପୃ ୧୩

(୪୧)—"Matter is the only reality, Perception is the only form of knowledge—Indian Philosophy—Dr. S. Radhakrishnan-Vol-II.

(୪୨)—"Religion is a foolish aberration, a mental disease A God is not necessary to count for the world.
Indian Philosophy --Vol-II- Dr. S Radhakrishnan.
page-79.

(୪୩)—ନ କଷ୍ଟ କଳନାଂ କୁର୍ଯ୍ୟାତ୍ ନୋପବାସଂ ନଚ କ୍ରିୟାମ୍
ସ୍ନାନଂ ଶୌଚଂ ନ ଚୈବାତ୍ର ଗ୍ରାମଧର୍ମ ବିବର୍ଜନମ୍ ।
ନ ଚାପି ବନ୍ଦୟେଦ୍ ଦେବାନ୍ କାଷ୍ଠ, ପାଷାଣ ମୃଣ୍ମୟାନ୍
ପୂଜା ମସ୍ୟୈବ କାୟସ୍ୟ କୁର୍ଯ୍ୟାନ୍ନିତ୍ୟଂ ସମାହିତଃ
ସର୍ବ ବର୍ଣ୍ଣା ସମଦ୍ଭୂତା ଜୁଗୁପ୍ସା ନୈବ ଯୋଷିତଃ
ସୈବ ଭଗବତୀ ପ୍ରଜ୍ଞା ସମ୍ବୃତ୍ୟା ରୂପମାଶ୍ରିତା ।

Introduction to Buddhist Esotorison-page-77
(ଡକ୍ଟର କରୁଣାକର କରଙ୍କ "ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ"—ପୃ-୨୧୫ ରୁ ଉଦ୍ଧୃତ)

(୪୪) — Damian Grant—Reali m—page-1

) [illegible] lia — [illegible] and Reality as quoted from [illegible] and Poetics—page-541.

(୪୬)—"In poetry at [illegible] ast the imagination must not [illegible]etach itself from reality. Page 162, O' Pus Pus humus, Wallace Stevens.
Quoted [illegible] Damian Grant-'Realism'-page-18

(୪୭)—"× × this concept of individualism can also be related to the new social mobility that industrialisation made possible, displacing man from his secure traditional niche, making him realise the unique potential of each human being including himself, outside social hierarchy."
( Realism and Reality—Page-4—Meenakshi Mukherjee)

(୪୮)—"Art belongs to the people. It must with its widest stretching root go out into the very thick of the broaded masses. It must combine the feelings, thoughts and will of the masses and uplift them."-Lenin

(୪୯)—"ସୁସ୍ପଷ୍ଟ, ସାମାନ୍ୟ ଔର୍ ପ୍ରଚଳିତ ଭାଷାକୋ ଅପନାଲେ"
(ବୃହତ୍ ଇତିହାସ—ପୃ ୧୦୧, ଗୁଣଶରଣ ସିଂହ)

(୫୦)—"× × × the poet should choose incidents and situations from common life and relate them as far as possible in a selection of language really used by the people."
(Preface to lyrical ballad-Wordsworth)

(୫୧)—Poetry does not create life anew but reproduces it"—Belinsky
(Damian Grant—Realism—page-14)

(୫୨)—The first purpose of Art is to reproduce—reality Chernishevsky
(Damian Grant-Realism-page 14)

(୫୩)—As in the structure of the plot, so in he portraiture of Character, the poet should always

aim either at necessary or the probable. (Aristotle's theory of poetry and fine arts)

(୫୪)—Then apparently if there comes to our city a man so wise that he can turn into everything under the sun and intimate every conceivable object, when he offers to show off himself and his poems to us we shall do obeisance to him as to a sacred, wonderful, and agreeable person, but we shall say that we have no such man in our city, and the law forbids there being one, and we shall anoint him with myrrh, and crown him with a wreath of sacred wool, and send him off to another city, and for ourselves, we shall employ a more austere and less attractive poet and story teller whose poetry will be to our profit. (Trans A. D. Lindsay Everymaned, London 1954, p. 80, quoted by Damian Grant in Realism-page-31)

(୫୫)—You must discard the word fancy altogether. You have nothing to do without it. You are not to have in any object of use or ornaments what would be a contradiction in fact. You do not walk upon flowers in fact; you cannot be allowed to walk upon flowers in the carpets. You do not find that foreign birds and butterflies come and perch upon your crockery. × × × This is the new discovery. This is fact. This is taste."—"Hard times" Bounderby.
quoted Damian Grant in pRealism—page-15

(୫୬)—"ଯଥାର୍ଥବ୍ୟଦୀ କଲାକାର ନିରୀକ୍ଷଣ ଔର ପ୍ରାମାଣିକତା ପର୍ ବଲ୍ ଦେତା ହୈ । ବାସ୍ତବ ମେ ଇସେ ଯଥାର୍ଥବାଦ ନ କହକର୍ ଯଥାର୍ଥଚିତ୍ରଣ କହାଯାସକ୍ତା ହୈ । ସାମାନ୍ୟ ଅନୁଭୂତିକା ଜୀବନ୍ତ ବିବରଣ ପ୍ରସ୍ତୁତ କର୍ନେ କେ ଲିଏ ଉସ୍ କା ଉପଯୋଗ ହୁଆ ହୈ ।"
ସାହିତ୍ୟ ମେ ଯଥାର୍ଥବାଦ-ମୂଲ୍ୟ ଔର ମୂଲ୍ୟାଙ୍କନ-ରସ ରତନ ଭଟନାଗର-ପୃ. ୩୩ ।

(୫୭)—"Poetry is not history. History is based upon facts and with these it is primarily concerned, poetry transforms its fact into poetic truth." Aristotle's theory of Poetry and Fine Arts, page-164.

(୫୮)—"Reality in the artist's sense is always something created, it does not exist a prior."
(A. A. Mendilow—Time and the Novel, London, 1952, page-36 )
quoted Damian Grant in Realism—page-16

(୫୯)—"If ··there is any truth in a work of art it is not generally found to be in its correspondence with or imitation of actual fact" British Journal of Aesthetics (1963), page-99.

(୬୦)—"ବାସ୍ତବ ସତ୍ୟ ଅନେକ ସମୟେ କଙ୍କାଳ ଛାଡ଼ା କିଛୁଇ ନୟ । ସେଇ କଙ୍କାଳେ ରକ୍ତ, ମାଂସ, ତ୍ୱକ ଓ ଲାବନ୍ୟ ଯୋଗ କରିତେ ହୟ ସାହିତ୍ୟିକଦେ, ତବେ ତାହା ସତ୍ୟ ସୁନ୍ଦର ରୂପ ଧାରଣ୍ କରେ ।"
(ବାସ୍ତବ ସତ୍ୟ ଓ ସାହିତ୍ୟେର ସତ୍ୟ—ସାହିତ୍ୟ ପ୍ରସଙ୍ଗ—କାଳିଦାସ ରାୟ-
ପୃ-୫୬

(୬୧)- "Truth is always concrete and in a class society it is always regarded in class terms······In terms of aesthetics, it means that the epistemological functions of art are inseparable from its aesthetic

functions and from the notions of the beautiful and the ugly"

(Artistic Truth and Dialectics of creative work—Vassily Novikov, page-11 and 12)

(୬୨)—"Great poetry draws its strength from the life of mankind and we completely miss its meaning if we try to derive it from personal factors—C.J Jung.

(୬୩)—"...my bussiness is to creale"—William Blake-Jerusalem.

(୬୪)—"To see a world in a grain of sand
And Heaven in a wild flower
Hold infinity in the palm of your hand
And Eternity in an hour"
(Auguries of Innocence—W. Blake-Page-623)

(୬୫)—And I amongs't you × × ×
Wherever pain is—there am I
On every single tear that is shed
I myself am crucified
Mayakovsky—(A cloud in Trousers)

(୬୬)—"The progress of an artist is a continual self sacrifice × × × Poetry is not a turning of loose emotions, but an escape from emotion, it is not the expression of personality, but an escape from personality"—T. S. Eliot.

## ଦ୍ୱିତୀୟ ପରିଚ୍ଛେଦ

# ପାଶ୍ଚାତ୍ୟ କାବ୍ୟଧାରାରେ ବାସ୍ତବବାଦ

ଅଷ୍ଟାଦଶ ଶତାବ୍ଦୀରେ ବିଜ୍ଞାନ ତଥା ବୈଷୟିକ ବିଜ୍ଞାନର ବିକାଶ, ନଗର ସଭ୍ୟତାର ପରିପ୍ରସାର ତଥା ଶ୍ରମଜୀବୀ ସମ୍ପ୍ରଦାୟର ନବଜାଗରଣ ପାଶ୍ଚାତ୍ୟ ସାହିତ୍ୟରେ ନୂତନ ଚିନ୍ତା ଜାଗ୍ରତ କରିଥିଲା । ପ୍ରାଚୀନ ସାଂସ୍କୃତିକ ବିଶ୍ୱାସବୋଧ ଓ ଆଧ୍ୟାତ୍ମିକ ଭାବନା ପରିବର୍ତ୍ତେ କାବ୍ୟ କବିତାରେ ପାର୍ଥିବ ଜୀବନବୋଧର ବାସ୍ତବ ଚେତନା ଅଭିବ୍ୟକ୍ତ ହୋଇଥିଲା ।

### ପ୍ରାକ୍ ଶିଳ୍ପ ବିପ୍ଳବ ଯୁଗର ବାସ୍ତବବାଦୀ ଚିନ୍ତାଧାରା

ଯୁଗ ସାହିତ୍ୟ ସବୁ ସମୟରେ ଏକ ଧାରା ବା ଚିନ୍ତାମାନସ ଦ୍ୱାରା ପ୍ରଭାବିତ ହୋଇନଥାଏ । ଏହାର କାରଣ, ପ୍ରଗତିବାଦୀ ଗୋଷ୍ଠୀ ସବୁବେଳେ ଧାରାବନ୍ଧା ନିୟମର ଶୃଙ୍ଖଳାକୁ ଭାଙ୍ଗି ଆଗେଇ ଯିବାକୁ ଚାହିଁଥାଏ । ଶିଳ୍ପ ବିପ୍ଳବ ହେତୁ ପାଶ୍ଚାତ୍ୟ ପରମ୍ପରାରେ ଅଷ୍ଟାଦଶ ଶତାବ୍ଦୀଠାରୁ ବାସ୍ତବବାଦୀ କବିତାର ବହୁଳ ପ୍ରସାର ହୋଇଥିଲେ ମଧ୍ୟ, ଚତୁର୍ଦ୍ଦଶ ଶତାବ୍ଦୀରୁ ବାସ୍ତବବାଦୀ ଚିନ୍ତାମାନସର ଉଦ୍ରେକ ହୋଇଥିଲା ।

ଚତୁର୍ଦ୍ଦଶ ଶତାବ୍ଦୀରେ ଉଇଲିୟମ ଲାଙ୍ଗଲାଣ୍ଡ (William Langland) ଓ ଜିଓଫ୍ରେ ଚସର (Geoffrey Chaucer)ଙ୍କ କବିତାରେ ସମକାଳୀନ ସମାଜର ମୂଲ୍ୟବୋଧ-ସମ୍ପର୍କିତ ଅବକ୍ଷୟ ପ୍ରତି ଶାଣିତ ଅଙ୍ଗୁଳି ନିର୍ଦ୍ଦେଶ କରା-ଯାଇଥିଲା । ଲାଙ୍ଗଲାଣ୍ଡ ତାଙ୍କର "ପିୟର୍ସ ଦ ପ୍ଳାଉମାନ" (Piers the Plowman)ରେ ଧର୍ମଯାଜକ ତଥା ପ୍ରଶାସକମାନଙ୍କର ପ୍ରତାରଣାପୂର୍ଣ୍ଣ ମନୋବୃତ୍ତିକୁ ଆକ୍ଷେପ କରିଥିଲେ । ଚତୁର୍ଦ୍ଦଶ ଶତାବ୍ଦୀର କୃଷି ଭିତ୍ତିକ ସମାଜରେ କୃଷକ ସମ୍ପ୍ରଦାୟର ଦୁଃଖ ଓ ଦୈନ୍ୟର ବାସ୍ତବ ଦର୍ଶନ ଥିଲା ଲାଙ୍ଗଲାଣ୍ଡଙ୍କ କାବ୍ୟକୃତିର ବୈଶିଷ୍ଟ୍ୟ ।

ଚସରଙ୍କ 'କାଣ୍ଟରବେରି ଟେଲ୍‌ସ' (Canterbery Tales)ର 'ପ୍ରୋଲଗ୍'ରେ ଧର୍ମଯାଜକ, ଧର୍ମ ସନ୍ୟାସିନୀ, ଶାସକ, ପ୍ରଶାସକ ତଥା ନାଇଟ (Knight)ମାନଙ୍କ ସମେତ ସମଗ୍ର ଚତୁର୍ଦ୍ଦଶ ଶତାବ୍ଦୀର ସାମାଜିକ, ରାଜନୀତିକ ତଥା ଧର୍ମୀୟ ଅଧଃପତନର ସ୍ୱରୂପ ପ୍ରକଟିତ ହୋଇଥିଲା ।

ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀର ଜନ୍ ଡ୍ରାଇଡ଼ନ (John Dryden) ଓ ଆଲେକଜାଣ୍ଡର ପୋପ୍ (Alexander Pope) ମୁଖ୍ୟତଃ ଅଲଂକରଣ ପ୍ରଧାନ ନିଓ କ୍ଲାସିକ୍ (neo classic) କବି ହୋଇଥିଲେ ମଧ୍ୟ ସେମାନଙ୍କ କାବ୍ୟଚେତନାରେ ସମାଜ ଜୀବନର ବାସ୍ତବ ଚିତ୍ର ପ୍ରତିଫଳିତ ହୋଇଥିଲା । ଡ୍ରାଇଡ଼ନଙ୍କ ଆବ୍‌ସଲମ୍ ଓ ଆକିଟୋଫେଲ୍ (Absalom and Achitophel)ର ଆକିଟୋଫେଲ୍ କ୍ଷମତାପିପାସୁ ରାଜନୀତିଜ୍ଞମାନଙ୍କର ଏକ ସର୍ବକାଳୀନ ପ୍ରତିଭୂ (୧) । ପୋପଙ୍କର 'ଦି ରେପ୍ ଅଫ୍ ଦି ଲକ' (The Rape of the Lock)ରେ ଉଚ୍ଚ ସମ୍ପ୍ରଦାୟର ଜୀବନଚର୍ଯ୍ୟାର ଚିତ୍ର ପ୍ରମୂର୍ତ୍ତି । ଡ଼ନସିଆଡ଼ (Dunciad)ରେ ପେଶାଦାର ଲେଖକମାନଙ୍କର ଈର୍ଷା ଓ ଅସୂୟାର କାବ୍ୟରୂପ ପ୍ରକଟିତ ।

## ରୋମାଣ୍ଟିକ୍ କବିତାରେ ବାସ୍ତବବାଦ

ୱିଲିୟମ୍ ଓ୍ୱାର୍ଡ଼ସ୍‌ଓ୍ୱର୍ଥ୍ (William Wordsworth) ମୁଖ୍ୟତଃ ଜଣେ ରୋମାଣ୍ଟିକ କବି ହୋଇଥିଲେ ମଧ୍ୟ ତାଙ୍କ କବିତାରେ ବାସ୍ତବବାଦୀ ଚିନ୍ତାଧାରାର ପ୍ରତିଫଳନ ଲକ୍ଷ୍ୟ କରାଯାଏ । ଦୃଷ୍ଟାନ୍ତ ସ୍ୱରୂପ ତାଙ୍କର 'ଦି ଓଲ୍ଡ଼ କମ୍ବରଲାଣ୍ଡ ବେଗାର୍' (The old cumberland Beggar) କବିତାଟିକୁ ଆଲୋଚନା କରାଯାଇପାରେ । କମ୍ବରଲାଣ୍ଡର ଏକ ବୃଦ୍ଧ ଭିକାରୀର ଜୀବନଯାପନ ପଦ୍ଧତି ଉପରେ କବିତାର ବକ୍ତବ୍ୟ ଆଧାରିତ—ଏକ ପଥର ଗଦା ଉପରେ ବସି ବୃଦ୍ଧ ଭିକାରୀଟିଏ ଖାଦ୍ୟ ଗ୍ରହଣ କରୁଛି । ଆକାଶରେ ରୋମାଣ୍ଟିକ କବିତା ପରି ଚନ୍ଦ୍ରର ସ୍ୱପ୍ନ ମେଦୁର ଜ୍ୟୋତ୍ସ୍ନାଲୋକ ନାହିଁ । ତା ପରିବର୍ତ୍ତେ ସୂର୍ଯ୍ୟର ସ୍ପଷ୍ଟ ବାସ୍ତବ ଚେତନାକୁ ଶାଣିତ କରୁଛି । ସମଗ୍ର ପରିବେଶରେ ନିର୍ଜନତା ରାଜତ୍ୱ କରୁଛି । କବିତାଟିର ନାୟକ ନିକଟରେ ରୋମାଣ୍ଟିକ କାବ୍ୟ ନାୟକର ସୌନ୍ଦର୍ଯ୍ୟ ଅଥବା ବୀରତ୍ୱବୋଧ ସୁଦୂର ପରାହତ । କାରଣ ଭିକାରୀଟି ବୃଦ୍ଧ । ତାର ଜରାଗ୍ରସ୍ତ ଶିଥିଳ ମାଂସପେଶୀ, ଅସ୍ଥିର ହାତ ଖାଦ୍ୟ ଗ୍ରହଣ କରିବାକୁ ଅସମର୍ଥ । ବାର୍ଦ୍ଧକ୍ୟଜନିତ କମ୍ପନ ହେତୁ ଖାଦ୍ୟ ଗୁଡ଼ିକ ଇତସ୍ତତଃ ବିକ୍ଷିପ୍ତ (୨) । ଏହି କବିତାର ଭାଷା, ପରିବେଶ ଓ ବିଷୟବସ୍ତୁ ଏକାନ୍ତ ବାସ୍ତବଧର୍ମୀ ।

## ଶିଳ୍ପ ବିକାଶ ଜନିତ କୃଷି କୈନ୍ଦ୍ରିକ ପଲ୍ଲୀ ସଭ୍ୟତାର ଅବକ୍ଷୟ

ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ବିକ୍ଷିପ୍ତ ଭାବେ ପାଶ୍ଚାତ୍ୟ କାବ୍ୟଧାରାରେ ସମାଜର ବାସ୍ତବ ଚିତ୍ର ଅଙ୍କିତ ହୋଇଥିଲେ ମଧ୍ୟ, ଏଦ୍ୱାର ଦ୍ୱିତୀୟାର୍ଦ୍ଧ ବେଳକୁ ଶିଳ୍ପ ସଭ୍ୟତାର ପ୍ରସାର ଫଳରେ କୃଷି-ଭିତ୍ତିକ ପଲ୍ଲୀ ସଭ୍ୟତାର ଅବକ୍ଷୟର ଚିତ୍ର କାବ୍ୟାୟିତ ହୋଇଥିଲା । ଗ୍ରାମାଞ୍ଚଳରେ ଶିଳ୍ପ ପ୍ରସାର ଫଳରେ କୃଷିର ବ୍ୟାପକ ଅବନତି ଘଟିଥିଲା । କୃଷି ଉପରେ ନିର୍ଭର କରୁଥିବା କୃଷିଶ୍ରମିକମାନଙ୍କ ଅବସ୍ଥା

ଶୋଚନୀୟ ହୋଇ ପଡ଼ିଥିଲା । ଏହି ସମୟରେ ଇଂଲଣ୍ଡର ଜଣେ ଖ୍ୟାତନାମା କବି ଅଲିଭର ଗୋଲ୍ଡ଼ସ୍ମିଥ୍ (Oliver Goldsmith) କୃଷି-ଭିତ୍ତିକ ପଲ୍ଲୀ ସଭ୍ୟତା ଉପରେ ଶିଳ୍ପ ସଭ୍ୟତାର ଆକ୍ରମଣକୁ କେନ୍ଦ୍ର କରି 'ପରିତ୍ୟକ୍ତ ପଲ୍ଲୀ (Deserted Village) ଶୀର୍ଷକ ଏକ କାବ୍ୟ ରଚନା କରିଥିଲେ । କବିଙ୍କର ଜନ୍ମଭୂମି ଆଏରଲଣ୍ଡର ଲିସୋୟ (Lissoy) ଗ୍ରାମ କାବ୍ୟଟିରେ ଅବର୍ଣ୍ଣ (Auburn) ରୂପେ ନାମିତ, ଯାହା କବିଙ୍କର ସୁଖ ସ୍ମୃତିର ଆଧାର । ଅବର୍ଣ୍ଣର ବିସ୍ତୀର୍ଣ୍ଣ ବାଥିକା ଓ ଶସ୍ୟ ସମ୍ଭାର ଶିଳ୍ପ ସଭ୍ୟତାର ଏକଚ୍ଛତ୍ର ରାଜତ୍ୱ ମଧ୍ୟରେ ପରିତ୍ୟକ୍ତ । କିନ୍ତୁ ଶିଳ୍ପ ସଭ୍ୟତାର ସ୍ୱରୂପ ମଧ୍ୟ କବିଙ୍କ ଦୃଷ୍ଟିରେ କ୍ଷଣ-ଭଙ୍ଗୁର । ଜମି ଉପରେ ଶ୍ରେଣୀବଦ୍ଧ ଭାବେ ସଜ୍ଜିତ ଗ୍ୱ'ର୍କସ୍ ଗୁଡିକର ଭଗ୍ନ ସ୍ଥିତି ମଧ୍ୟରେ ଏହା ସୂଚିତ (୩) ।

## ଶିଳ୍ପ ସଭ୍ୟତାର ସଙ୍କଟର ସ୍ୱରୂପ

ଗୋଲ୍ଡସ୍ମିଥ୍ଙ୍କ କବିତାରେ ଶିଳ୍ପ ସଭ୍ୟତାର ଯେଉଁ ଚିତ୍ର ପ୍ରକଟିତ ହୋଇଥିଲା ତାହା ଡ଼ବ୍ଲ୍ୟୁ. ଏସ୍. ବ୍ଲଣ୍ଟ (W. S. Blunt), ୱିଲିୟମ୍ ଅର୍ଣ୍ଣେଷ୍ଟ ହେନ୍‌ଲି (William Ernest Henley) ଓ ଜନ୍ ଡେ଼ଭିଡ଼ସନ୍ (John Devidson) ପ୍ରମୁଖଙ୍କ କବିତାରେ ଅଧିକ ଶାଣିତଭାବେ ଆତ୍ମପ୍ରକାଶ କରିଛି ।

ଭିକ୍ଟୋରିଆ ଯୁଗରୁ ଇଂଲଣ୍ଡର ସାମାଜିକ ଜୀବନରେ ଏହି ଶିଳ୍ପୀକରଣର ପ୍ରଭାବ ଅନୁଭୂତ ହୋଇଥିଲା । ଭିକ୍ଟୋରିଆ ଯୁଗୀୟ କବି ମାଥ୍ୟୁ ଆରନଲ୍ଡ଼ (Mathew Arnold)ଙ୍କ ଭାଷାରେ କବିତା ଜୀବନର ଏକ ସମୀକ୍ଷା । ଆରନଲଡ଼ଙ୍କ କବିତାରେ ଗଣତନ୍ତ୍ର, ବିଜ୍ଞାନ ତଥା ବୈଷୟିକ ବିଜ୍ଞାନର ପ୍ରତିକୂଳ ପ୍ରଭାବକୁ ସମାଲୋଚନା କରାଯାଇଥିଲା । ଆରନଲଡ଼୍‌ଙ୍କ ମତରେ "ମାନବର ସଦଗୁଣାବଳୀ କ୍ରମଶଃ ଅଧଃପତିତ ହେଉଛି । କ୍ଷୁଦ୍ରତା ଏକନିତ ହେଉଛି । ଏହାକୁ ଅତିକ୍ରମ କରିବା ଅସମ୍ଭବ" (୪) । 'ଡ଼ୋଭର ବିଚ' (Dover Beach)ରେ ଯୋଗ ଯନ୍ତ୍ରଣାର ସ୍ୱରୂପକୁ ଏକ ଅନ୍ଧକାରାଚ୍ଛନ୍ନ ପରିବେଶ ମଧ୍ୟରେ ପ୍ରମୂର୍ତ୍ତି କରାଯାଇଛି । "ଜୀବନର ଏହି ଅନ୍ଧକାରାଚ୍ଛନ୍ନ ବଳୟ ମଧ୍ୟରେ ଅଜ୍ଞ ସୈନିକ ଭଳି ପ୍ରତ୍ୟେକ ବ୍ୟକ୍ତି ଏଠାରେ ପରସ୍ପର ସହ ସଂଘର୍ଷରତ" (୫) । ବସ୍ତୁତଃ ବିଜ୍ଞାନ ମଣିଷକୁ ଶିଖାଇଛି ସ୍ଥିତି ପାଇଁ ସଂଘର୍ଷ (struggle for existence) ତଥା ଯୋଗ୍ୟତମର ଉଦ୍‌ବର୍ତ୍ତନ (survival of the fittest) । ପ୍ରାଚୀନ କାଳରେ ଜୀବନ ଥିଲା ଟେମ୍‌ସ ନଦୀର ଉଜ୍ଜ୍ୱଳ ଜଳଧାରାପରି ରୁଚିର (୬) । ସାଂପ୍ରତିକ କାଳରେ ଜୀବନର ସ୍ୱରୂପ କ୍ଳେଦାକ୍ତ । ବିଜ୍ଞାନ ତଥା ବୈଷୟିକ ବିଜ୍ଞାନର ବିକାଶ ଭୌତିକ ପ୍ରାଚୁର୍ଯ୍ୟ ଦେଇଛି ସତ, ମାତ୍ର ମାନବର କୋମଳ ହୃଦୟାନୁଭୂତିକୁ ବିନଷ୍ଟ କରିଛି । ପାରସ୍ପରିକ ମମତା ଓ ମୈତ୍ରୀଭାବ

ଜୀବନକୁ ଅନିଶ୍ଚିତତା ଆଚ୍ଛନ୍ନ କରିବସିଛି । ଅବକ୍ଷୟର ଅନ୍ଧକାର ଭିତରେ ସ୍ଥିର ବିଶ୍ୱାସବୋଧ ଅବଲୁପ୍ତ ହୋଇଛି । ଜେମ୍ସ ଥମସନ୍ (James Thomson)ଙ୍କ କାବ୍ୟ ଚେତନାରେ ଏହି ଭାବନା ପ୍ରତିଫଳିତ—"ଅନିଶ୍ଚିତତାର କଳା ପରଦା ଭେଦ କରିବାକୁ ଆଜି କାହାର ଶକ୍ତି ନାହିଁ । କାରଣ ସେହି ଯବନିକାର ପୃଷ୍ଠ ଦେଶରେ ମଧ୍ୟ ଆଲୋକ ସମ୍ଭାବନା (୭) ।"

ଡ଼ବ୍ଲୁ · ଏସ. ବ୍ଲଣ୍ଟଙ୍କ କବିତାରେ ଶିଳ୍ପ ସଭ୍ୟତା ସଂକ୍ରମିତ ଜୀବନର ଶୁଷ୍କ ତଥା ଆବର୍ଜନାପୂର୍ଣ୍ଣ କୁତ୍ସିତ ସ୍ଥିତି ସୁସ୍ପଷ୍ଟ—"ଇଞ୍ଜିନ୍ ନିର୍ଗତ ଧୂମାଭ ଆବରଣରେ ପରିପାର୍ଶ୍ୱ ଆଚ୍ଛନ୍ନ । ଫୁଲ ଅଥବା ଘାସର ବିକାଶ ପାଇଁ କୌଣସି ସମ୍ଭାବନା ନାହିଁ । କାରଣ ଜୀବନୀ-ଶକ୍ତିର ଉତ୍ସ ସୂର୍ଯ୍ୟ, କାରଖାନାର ଧୂଆଁରେ ଅବଗୁଣ୍ଠିତ । ପାରିପାର୍ଶ୍ୱିକ ବାତାବରଣ ବିଷାକ୍ତ । କାରଖାନାର ପରିତ୍ୟକ୍ତ ଆବର୍ଜନାର ପୂତିଗନ୍ଧରେ ମାଛ ବା ବେଙ୍ଗ ତ ଦୂରର କଥା, ଛୋଟ ଛୋଟ ପୋକ ଜୋକ ମଧ୍ୟ ନିଶ୍ଚିହ୍ନ । କାରଖାନାର ଆସୁରିକ ଶବ୍ଦରେ ପକ୍ଷୀର ନିଃସ୍ୱନ ଅବଲୁପ୍ତ (୮) ।"

ଜନ୍ ଡ଼େଭିଡ଼୍ସନ ( John Davidson )ଙ୍କ କବିତାରେ ଶିଳ୍ପ ସଭ୍ୟତାରେ ବ୍ୟକ୍ତିର ନିତ୍ୟନୈମିତ୍ତିକ ଜୀବନର ଚରମ ନିଭଳ ଗତାନୁଗତିକ ତାହା ସୂଚିତ । ଡ଼େଭିଡ଼ସନ୍‌ଙ୍କ ଭାଷାରେ "ମଣିଷ, ମଣିଷ ନୁହେଁ, କେବଳ ପୋକଟିଏ ମାତ୍ର । ଏହି ମଣିଷ-ପୋକଟିର ଜୀବନଯାତ୍ରା ଅର୍ଥ ଉପାର୍ଜନରେ ସୀମାବଦ୍ଧ । ସେଥିପାଇଁ ତାକୁ ଘରୁ ଅଫିସକୁ, ପୁଣି ଅଫିସରୁ ଘରକୁ ଲେଉଟିବାକୁ ପଡ଼େ । ଯାତ୍ରାପଥ ତାର ଅନ୍ଧକାରାଚ୍ଛନ୍ନ । କାରଣ ପ୍ରକୃତିର ମୁକ୍ତ ପରିବେଶ ପରିବର୍ତ୍ତେ ମଣିଷ ତିଆରି ଭୂମିତଳ କୃତ୍ରିମ ଟ୍ରେନ ତାର ବାହକ" (୯) ।

ଶିଳ୍ପ ସଭ୍ୟତାର କୃତ୍ରିମତା ମଧ୍ୟରେ ପ୍ରାଚୀନ କାଳର ଶାଶ୍ୱତ ମୂଲ୍ୟବୋଧ ଅନ୍ତର୍ହିତ । ବନ୍ଧୁତ୍ୱ ସ୍ୱାର୍ଥ ସର୍ବସ୍ୱ ଏକ ସୌଦାଗରୀ ବୃତ୍ତି । ଉଇଲିୟମ୍ ଅର୍ନେଷ୍ଟ ହେନ୍‌ଲି ( William Ernest Henley)ଙ୍କ "ହସପିଟାଲ ପୋଏମ୍‌ସ୍" (Hospital poems)ରେ ଏହି ଚେତନା ଅଭିବ୍ୟକ୍ତ । ଏଡ଼ିନବର୍ଗର ଗୋଟିଏ ହସପିଟାଲରେ ଚିକିତ୍ସିତ ହେଉଥିବା ବେଳେ ହେନ୍‌ଲି, ରୋଗ, କ୍ଷତ ବିକ୍ଷତର ତୀବ୍ର ଯନ୍ତ୍ରଣା ମଧ୍ୟରେ ବଞ୍ଚିବାର ଆଶାରେ ମଣିଷର ଆତ୍ମା କିପରି ଆକୁଳ ହୁଏ ତାହା ଅନୁଭବ କରିଥିଲେ । 'ହସପିଟାଲେ' କବିତା ସଂକଳନରେ ଏହି ଚେତନା ବାସ୍ତବଧର୍ମୀ ପୃଷ୍ଠଭୂମି ମଧ୍ୟରେ ବର୍ଣ୍ଣିତ ।

"ଇଞ୍ଜିନ୍‌ରୁ ପଡ଼ିଯାଇ ଲୋକଟିର ମେରୁହାଡ଼ ଭାଙ୍ଗି ଯାଇଛି । କ୍ଷତ ବିକ୍ଷତ ହୋଇ କଙ୍କରିଲ ଧାରଣାରେ ସେ ଟାଣି ଓଟାରି ହୋଇଯାଇଛି । ସାଥୀମାନେ ତାର

ବଞ୍ଚିବାର ଆଶା ଛାଡ଼ିଦେଇ ତା ଉପରେ କମ୍ବଳଟିଏ ଘୋଡ଼ାଇ ଦେଇ ଚାଲିଗଲେ । କମ୍ବଳ ଭିତରୁ ଛଟପଟ ହେଉଥିବା ଗୋଡ଼ଟିଏ ବଞ୍ଚି ରହିବାର ବ୍ୟର୍ଥ ଆକୁଳତା ପ୍ରକାଶ କରୁଥିଲା, ମାତ୍ର ତାର ସଙ୍ଗୀମାନେ ନିର୍ବେଦ ନିସ୍ପୃହ ଥିଲେ (୧୦) ।

ହେନ୍‌ଲିଙ୍କ କବିତାରେ 'ହସପିଟାଲ' ଶିଳ୍ପ ସଭ୍ୟତାର ସ୍ୱାର୍ଥ-ସର୍ବସ୍ୱ ରୁଗ୍‌ଣ ମନୋବୃତ୍ତି ପ୍ରପୀଡ଼ିତ ଆଧୁନିକ ବିଶ୍ୱର ଏକ ପ୍ରତୀକ । ଗୋଷ୍ଠୀ ଜୀବନରେ ବିଚ୍ଛିନ୍ନତା ସହ ପ୍ରକୃତିର ନିଷ୍ପାପ ପରିବେଶର ବିଲୋପ, କ୍ରମଶଃ ମଣିଷକୁ ରୁକ୍ଷ-କଠିନ-କର୍କଶ କରି ବସିଛି । ସଂବେଦନ ଶୀଳ ପ୍ରବୃତ୍ତି ମଧ୍ୟରେ କବି ଜୀବନର ଏକ ବିଷାଦଗ୍ରସ୍ତ ସ୍ୱର ଶୁଣିଛନ୍ତି (୧୧) ।

ଶିଳ୍ପ ସଭ୍ୟତାର ସଙ୍କଟ ପାଶ୍ଚାତ୍ୟ ଜନ ଜୀବନକୁ କ୍ରମଶଃ ବ୍ୟକ୍ତି-କୈନ୍ଦ୍ରିକ ଓ ସ୍ୱାର୍ଥ-ସର୍ବସ୍ୱ କରି ଦେଉଥିବା ବେଳେ ପ୍ରଥମ ବିଶ୍ୱଯୁଦ୍ଧ ଜନ ଜୀବନକୁ ଚଳ-ଚଞ୍ଚଳ କରି ଦେଇଛି ।

## ପ୍ରଥମ ବିଶ୍ୱ ଯୁଦ୍ଧର ପ୍ରଭାବ

ପ୍ରଥମ ବିଶ୍ୱଯୁଦ୍ଧ ପୂର୍ବରୁ, ରାଷ୍ଟ୍ରୀୟ ସୁରକ୍ଷା ପାଇଁ ଜନ ସମାଜର ଏକ ନୈତିକ କର୍ତ୍ତବ୍ୟବୋଧ ରହିଥିଲା । କାର୍ଯ୍ୟ-କାରଣର ଊର୍ଦ୍ଧ୍ୱରେ ରହି ରାଷ୍ଟ୍ର ପାଇଁ ମୃତ୍ୟୁବରଣ କରିବା ଥିଲା ସୈନିକର ଏକ ପବିତ୍ର ନୈତିକ କର୍ତ୍ତବ୍ୟ (୧୨) ।

ପ୍ରଥମ ବିଶ୍ୱଯୁଦ୍ଧ ସମ୍ପର୍କିତ କାବ୍ୟ ଚେତନାର ରୂପକାର ରୁପର୍ଟ ବ୍ରୁକ୍ (Rupert Brook), ୱିଲ୍ ଫ୍ରେଡ୍ ଓନ୍ (Wilfred Owen), ସିଗଫ୍ରେଡ୍ ଶାଶୁନ (Siegfried Sassoon) ପ୍ରମୁଖ ପ୍ରଥମ ମହାସମର ସହ ପ୍ରତ୍ୟକ୍ଷ ଭାବେ ସଂପୃକ୍ତ ଥିଲେ । ସାଧାରଣ ଜନ ଜୀବନ ଉପରେ ନେତୃବର୍ଗଙ୍କ ଆରୋପିତ ଯୁଦ୍ଧର ବ୍ୟାପକ କ୍ଷୟକ୍ଷତିର ସେମାନେ ଥିଲେ ପ୍ରତ୍ୟକ୍ଷ ଦ୍ରଷ୍ଟା । ଏଣୁ ଯୁଦ୍ଧର ବିଭୀଷିକା ପ୍ରତି ସେମାନଙ୍କ ଲେଖନୀ ଶ୍ଳେଷଶାଣିତ ହୋଇ ଉଠିଛି ।

ସିଗ୍‌ଫ୍ରେଡ଼ ଶାଶୁନଙ୍କ କବିତାରେ ଯୁଦ୍ଧର କ୍ରୂର ବିଭୀଷିକା ପ୍ରତି ବିଦ୍ୱେଷ ପ୍ରକଟିତ ହେବା ସଙ୍ଗେ ସଙ୍ଗେ ସମର ସମ୍ମୁଖୀନ ସୈନିକମାନଙ୍କର କ୍ଳେଶ ଓ ଯନ୍ତ୍ରଣାର ବାସ୍ତବ ସ୍ୱରୂପ ଚିତ୍ରିତ ହୋଇଛି—"ସୈନିକମାନଙ୍କୁ ଆଗାମୀ ରାତିରେ କ୍ଳାନ୍ତିକର ସମରକାଳୀନ ଯାତ୍ରା ପାଇଁ ଶିକ୍ଷା ଦିଆଯାଉଛି । କାଲି ସେମାନଙ୍କୁ ଟ୍ରେନ ଭିତରୁ ବାହାରିବାକୁ ପଡ଼ିବ । ସେତେବେଳେ ସେମାନଙ୍କ ବୁଟ ଗୁଡ଼ିକ ହୁଏତ ପରିତ୍ୟକ୍ତ ଅବସ୍ଥାରେ ଥିବ । ତରଳି ଯାଇଥିବା ବରଫ ମିଶା କାଦୁଆ ମାଟି ଉପରେ ଯିବାବେଳେ ଦୁଃଖ ଓ ଯନ୍ତ୍ରଣା ବ୍ୟତୀତ ଅନ୍ୟସବୁ ସ୍ମୃତି ସେମାନଙ୍କୁ ଭୁଲି ଯିବାକୁ ପଡ଼ିବ । ଆଜି ରାତିର

ଗୋଲାପି ସ୍ୱପ୍ନ ସ୍ଥାନରେ କାଲି ହୁଏତ ରାଜତ୍ୱ କରୁଥିବ ମୃତ୍ୟୁର ଭୟାବହ ବିପନ୍ନତା । ତଥାପି ଯୁଦ୍ଧ ଚାଲିଥିବ, କିନ୍ତୁ ମୃତ୍ୟୁ ବରଣ କରିଥିବା ସୈନିକଟି ତାର କାରଣ ଜାଣି ନ ଥିବ (୧୩) ।”

ଥୋମସ୍ ହାର୍ଡ଼ି (Thomas Hardy) ଅନ୍ୟମାନଙ୍କ ପରି ଯୁଦ୍ଧର ସପକ୍ଷ ବା ବିପକ୍ଷରେ କୌଣସି ମନ୍ତବ୍ୟ ନ ଦେଇ; ବ୍ୟକ୍ତି ବିଶେଷ ଉପରେ ଯୁଦ୍ଧର କ୍ରୂର ପ୍ରଭାବ ପଡ଼େ ତାହା ନିପୁଣ ଭାବେ ବର୍ଣ୍ଣନା କରିବାରେ ସ୍ୱାତନ୍ତ୍ର୍ୟ ସୃଷ୍ଟି କରିଛନ୍ତି । ନିଜ ଜନ୍ମଭୂମି ଓ୍ୱେସେକସ୍ (Wessex) ଗ୍ରାମର ଏକ ନିରୀହ ଡ୍ରମ ବାଦକ ଦକ୍ଷିଣ ଆଫ୍ରିକାରେ ସଂଘଟିତ ବୋର ଯୁଦ୍ଧ (Boer War) ରେ କୌଣସି ଆଶା ଆକାଂକ୍ଷା ନ ରଖି କିଭଳି ଆତ୍ମବଳି ଦେଇଥିଲି, ତାହାର ବାସ୍ତବ ଚିତ୍ର ପ୍ରଦାନ କରିଛନ୍ତି ।

“ଉତ୍ତର ଦେଶ (ଇଂଲଣ୍ଡ)ର ଡ୍ରମବାଦକ ହଜ୍ (Hodge)ର ଉନ୍ନତ ଗ୍ରୀବ ଓ ମସ୍ତିଷ୍କ ଉପରେ ଦକ୍ଷିଣ ଆଫ୍ରିକାର କେଉଁ ଅଜଣା ଅଞ୍ଚଳର ବୃକ୍ଷଲତା ବଢ଼ି ଉଠିବ । ତାର ଜୀବନର ନକ୍ଷତ୍ର ଉପରେ ଏକ ଅଚିହ୍ନା ଆକାଶର ନକ୍ଷତ୍ରମାଳା ଯେ ରାଜୁତି କରିବେ, ତାହା କ’ଣ ହଜ୍ ଜାଣି ପାରିବ (୧୪) ?”

ବସ୍ତୁତଃ ଶାନ୍ତିପାଇଁ ମାନବର ସଂଗ୍ରାମ ଏକ ବ୍ୟର୍ଥ ଶ୍ରମରେ ପର୍ଯ୍ୟବସିତ ହୋଇଛି । ହାର୍ଡ଼ିଙ୍କ “ଖ୍ରୀଷ୍ଟମସ୍ ୧୯୨୪” ଏହାର ଏକ ବ୍ୟଙ୍ଗ ଭାଷ୍ୟ—“ବିଶ୍ୱ ଶାନ୍ତି ପାଇଁ ଆମେ ସ୍ୱର ଉତ୍ତୋଳନ କରୁଛୁ । ସେଥିପାଇଁ ଅସଂଖ୍ୟ ଧର୍ମଯାଜକ ମଧ୍ୟ ପ୍ରେରଣ କରୁଛୁ । କିନ୍ତୁ ଦୁଇ ହଜାର ବର୍ଷ ଧରି ଏହି ପ୍ରଚେଷ୍ଟାର ବିନିମୟରେ ଆମେ କେବଳ ବିଷାକ୍ତ ବାଷ୍ପ ହିଁ ଲାଭ କରିଛୁ (୧୫) ।”

ଶିଳ୍ପକେନ୍ଦ୍ରିକ ନଗର ସଭ୍ୟତାର ଗତାନୁଗତିକ ଧାରାକୁ ଯୁଦ୍ଧ ପୁନଃ ଜାଗ୍ରତ କରିଥିଲା ସତ, ମାତ୍ର ଯୁଦ୍ଧର ବିଭୀଷିକା ପାଶ୍ଚାତ୍ୟ ଜୀବନଯାତ୍ରାକୁ କ୍ଷିପ୍ର ବିକ୍ଷିପ୍ତ କରିଦେଇଥିଲା । ଜୀବନର ସୁଦୃଢ଼ ସାଂସ୍କୃତିକ ତଥା ଆଧ୍ୟାତ୍ମିକ ମୂଲ୍ୟବୋଧ ପ୍ରତି ବିଶ୍ୱାସବୋଧ ଖଣ୍ଡିତ ହୋଇଥିଲା । ବ୍ୟକ୍ତିପ୍ରତି ରାଷ୍ଟ୍ରୀୟ ଦାୟିତ୍ୱବୋଧ ଏକ ପ୍ରହସନ ବୋଲି ଜନସାଧାରଣ ହୃଦୟଙ୍ଗମ କରିଥିଲେ । ବ୍ୟକ୍ତିବିଚ୍ଛିନ୍ନତାବୋଧ, ଆତ୍ମକେନ୍ଦ୍ରିକ ନିଷ୍ପେଷିଣୀ ମନୋଭାବ ସୃଷ୍ଟି କରିଥିଲା । ନଗର ସଭ୍ୟତାର ଅବକ୍ଷୟକୁ ତ୍ୱରାନ୍ୱିତ କରିବା ପାଇଁ ଯୁଦ୍ଧ ଏକ କ୍ଷୟକାରୀ ଶକ୍ତିର ଭୂମିକା ଗ୍ରହଣ କରିଥିଲା ।

**ପ୍ରଥମ ବିଶ୍ୱଯୁଦ୍ଧୋତ୍ତର ନଗର ସଭ୍ୟତାର ଅବକ୍ଷୟ**

ପ୍ରଥମ ବିଶ୍ୱଯୁଦ୍ଧୋତ୍ତର କାଳରେ ନଗର ଜୀବନର ଅବକ୍ଷୟ ପାଶ୍ଚାତ୍ୟ କାବ୍ୟ ଚେତନାର ସ୍ୱରକୁ ନିୟନ୍ତ୍ରିତ କରିଥିଲା । ଏହି ସମୟର ସର୍ବାପେକ୍ଷା ଶକ୍ତିଶାଳୀ

କାବ୍ୟଚେତନାର ସ୍ୱାକ୍ଷର ବହନ କରିଥିଲା ଟି. ଏସ୍. ଏଲିୟଟ୍ (T. S. Eliot)ଙ୍କ କାବ୍ୟକୃତ । ଏଲିୟଟ୍‌ଙ୍କ 'ଲଭ୍ ସଙ୍ଗ ଅଫ୍ ଜେ. ଆଲଫ୍ରେଡ୍ ପ୍ରୁଫ୍ରକ୍ (Love song of J. Alfred Prufrock), 'ଜେରୋନସିଆନ୍' (Gerontion), 'ପ୍ରିଲ୍ୟୁଡସ୍' (Preludes) ଓ 'ସୁଇନି' (Sweeny Erect) ଆଦି କବିତାରେ ଆଧୁନିକ ଜୀବନର କ୍ଲାନ୍ତ, ବିରକ୍ତିବୋଧ ତଥା ଶକ୍ତି ଓ ସାମର୍ଥ୍ୟର ବିଡମ୍ବନା ସୂଚିତ । ଏଲିୟଟ୍‌ଙ୍କର 'ପ୍ରୁଫ୍ରକ୍‌ଙ୍କର ପ୍ରେମ ସଂଗୀତ' ଯଥାର୍ଥତଃ ରୋମାଣ୍ଟିକ କାବ୍ୟନାୟକର ରୋମାଞ୍ଚକର ପ୍ରଣୟାଭିବ୍ୟକ୍ତି ନୁହେଁ । ପ୍ରୁଫ୍ରକ୍ ନାମକରଣ ମଧ୍ୟ ସ୍ୱୟଂ ବଡ ଆଣ୍ଟିରୋମାଣ୍ଟିକ୍ । ସେହି ଦୃଷ୍ଟିରୁ ପ୍ରୁଫ୍ରକ୍ ଏକ ହିରୋ ନୁହେଁ, ସେ ଏକ ଆଣ୍ଟିହିରୋ ବା ପ୍ରତିନାୟକ । ଏହି ପ୍ରତିନାୟକ ପ୍ରୁଫ୍ରକ୍ ଚରିତ୍ର ମାଧ୍ୟମରେ ଏକ ଆତ୍ମକୈନ୍ଦ୍ରିକ ଅସ୍ୱସ୍ତିବୋଧ ତଥା ଆତ୍ମ-ବିଦ୍ରୂପ ପ୍ରମୂର୍ତ୍ତି । ପ୍ରୁଫ୍ରକ, ଶାରୀରିକ ଓ ମାନସିକ—ଉଭୟ ଦୃଷ୍ଟିରୁ ଅସମର୍ଥ । ତାର ଜୀବନ ଚିନ୍ତା ଏକାନ୍ତ ସୀମାବଦ୍ଧ । ସୁତରାଂ ସେ ବ୍ୟାପକ ଜୀବନାନୁବୋଧକୁ ଏକ କଫି ଚାମୁଚର ପରିସୀମାରେ କଳନା କରେ (୧୬) ।

ପ୍ରୁଫ୍ରକ୍ ଭଳି "ହଲୋମେନ୍" (Hollow Men) କବିତାରେ ଜୀବନର ଅର୍ଥହୀନତା ଓ ଅସାମର୍ଥ୍ୟବୋଧ ସୂଚିତ । ଏଲିୟଟ୍‌ଙ୍କର ମୂଲ୍ୟବୋଧ-ହୀନ ଆଧୁନିକ ମଣିଷ ବାସ୍ତବତଃ ଏକ ଖାଲଭୂତ । ସେ ନିର୍ବୋଧ, ତାର ଚଳଚଞ୍ଚଳତା ଅସ୍ତମିତ(୧୭) । ତାର ଜୀବନ ଓ ବିଶ୍ୱ ଏକାନ୍ତଭାବେ ଜରାଜୀର୍ଣ୍ଣ । ଜୀବନର ରୁଗ୍‌ଣ ସ୍ୱରର ଛନ୍ଦ ମଧ୍ୟରେ ଏହି ଖାଲଭୂତର ପୃଥିବୀ ନିଃଶେଷିତ (୧୮) ।

'ଜେରୋନ୍‌ସିଆନ'ରେ ଆଧୁନିକ ମଣିଷ ବାର୍ଦ୍ଧକ୍ୟ ଚେତନାଗ୍ରସ୍ତ । ତାର ପରିପାର୍ଶ୍ୱ କୁତ୍ସିତ ଓ ଲୌହକଠିନ । ତାର ଅସ୍ୱାଭାବିକ ଦୁଷ୍କର୍ମ ହିଁ ତାର ବୀରତ୍ୱବୋଧର ପରିମାପକ । ସଦ୍‌ଗୁଣ—ତାର ଅପରିଣାମଦର୍ଶୀ ଅପରାଧ (୧୯) । ଏହି ଦୁଷ୍କର୍ମ ହିଁ ତାର ପ୍ରଥମ ମହାସମରସଂପର୍କିତ ବୀଭତ୍ସିକାପୂର୍ଣ୍ଣ କ୍ରିୟାକଳାପ ।

ଏଲିୟଟ୍ ପାଶ୍ଚାତ୍ୟ ନଗର ସଭ୍ୟତାର ବୀଭତ୍ସ, ଆଦର୍ଶହୀନ ପ୍ରବାହକୁ କଟୁ କଟାକ୍ଷ କରି ଅନବନମିତ 'ସୁଇନି' (Sweeny Erect) କବିତାରେ ସୁଇନିପରି ଏକ ଅସଭ୍ୟ, ଅସଂସ୍କୃତ, ଆଦିମ ଯୌନବୁଭୁକ୍ଷାସର୍ବସ୍ୱ ପ୍ରତୀକ ଚରିତ୍ରର ଅବତାରଣା କରିଛନ୍ତି । ଆଧୁନିକ ସଭ୍ୟତାକୁ ତ୍ୟାଗନିଷ୍ଠାବର୍ଜିତ ରୂପଜୀବାର ସନ୍ତାନନଷ୍ଟକାରୀ ଯୌନାଚାର ସହିତ ସେ ତୁଳନା କରିଛନ୍ତି । ଶାରୀରିକ ଗଠନ ଦୃଷ୍ଟିରୁ ମାନବ ଅନବନମିତ । କାରଣ ସେ ଦ୍ୱିପଦ । ପଶୁଭଳି ସେ ଚତୁଷ୍ପଦ ଅଥବା ନିମ୍ନମୁଖୀ ନୁହେଁ, ପଶୁଠାରୁ ମଣିଷର ଶାରୀରିକ ଗଠନର ଏହି ମୌଳିକ ପାର୍ଥକ୍ୟ ସତ୍ତ୍ୱେ ଚେତନାରେ

ସେ ପଶୁର ସମଧର୍ମୀ । ତାର ଉତ୍ଥାନପାଦ ଚିନ୍ତାଧାରା ଅବକ୍ଷୟଗ୍ରସ୍ତ । ସୁତରାଂ 'ଇରେକ୍ଟ' (Erect) ଶବ୍ଦର ପ୍ରୟୋଗ ମାଧ୍ୟମରେ ଏହି ବିପର୍ଯ୍ୟୟମୁଖୀ ଚେତନା ପ୍ରତି କବିଙ୍କର ବିଦ୍ରୂପ ପ୍ରକଟିତ । ଶାରୀରିକ ଗଠନ ଦୃଷ୍ଟିରୁ ସେ ଅନବନମିତ ହେଲେ ମଧ୍ୟ ତାର ଚେତନା ଅବନମିତ ।

'ପ୍ରିଲ୍ୟୁଡ୍' କବିତାରେ ନଗର ଜୀବନର କ୍ଲାନ୍ତିକର ଜୀବନଯାତ୍ରାରେ ସ୍ୱରୂପ ସୂଚିତ । ସନ୍ଧ୍ୟା ସେଠାରେ ରନ୍ଧା ମାଂସର ବାସ୍ନାରେ ଅବତରଣ କରେ । ସକାଳ ଆବିର୍ଭୂତ ହୁଏ ରାତିର ପରିତ୍ୟକ୍ତ ବିଅର୍ ବୋତଲର ଦୁର୍ଗନ୍ଧରେ । ସିଗାରେଟ୍‌ର ଶେଷ ଉପେକ୍ଷିତ ଖଣ୍ଡିଟି ପରି ଜୀବନ ହା ହୁତାଶର କୁହୁଳା ବାମ୍ଫରେ ନିଃଶବ୍ଦରେ ନିଃଶେଷିତ ହୁଏ । ମନୁଷ୍ୟର ଆତ୍ମା ନଭସ୍ପର୍ଶୀ ଦୁଇ ଅଟ୍ଟାଳିକାର ମଧ୍ୟବର୍ତ୍ତୀ ଆକାଶଭଳି ସଂକୁଚିତ ହୋଇଯାଏ । ଏହି ନିସ୍ତରଙ୍ଗ ତଥା ସଂକୀର୍ଣ୍ଣ ଜୀବନଧାରାକୁ ବଦଳାଇବା ପାଇଁ ତାର ଉତ୍କଣ୍ଠା ମଧ୍ୟ ନ ଥାଏ । କବିତାର ଶେଷ ଚରଣପାଦରେ ଆଧୁନିକ ମଣିଷର ଏହି ଦୃଷ୍ଟିଭଙ୍ଗୀ ପ୍ରତି କବିଙ୍କର ବକ୍ତବ୍ୟ ଶ୍ଳେଷଶାଣିତ—ପ୍ରାଗୈତିହାସିକ ଯୁଗର ବୃଦ୍ଧା ନାରୀମାନେ ଶୂନ୍ୟ ଜାଲେଣି ଝଲାରୁ ଜାଲେଣି ସଂଗ୍ରହ ପାଇଁ ଏପଟ ସେପଟ ବୁଲିଲା ପରି ପୃଥିବୀଟି ତା' ଗ୍ରହପଥେ ଘୂରୁଛି । ଶୂନ୍ୟ ଜାଲେଣି ଝଲାରୁ ଜାଲେଣି ସଂଗ୍ରହ ସମ୍ଭବ ନୁହେଁ । ତେଣୁ ପୃଥିବୀର ଜାଲେଣି ପକ୍ଷାନ୍ତରେ ଜୀବନୀଶକ୍ତି ସଂଗ୍ରହ ଏକ ବିଫଳ ପ୍ରଚେଷ୍ଟା । ଏହି ନିରର୍ଥକ ଜୀବନର ସ୍ଥିତିପାଇଁ ଆଧୁନିକ ମଣିଷ ଉଦାସୀନ ଓ ନିରୁଦ୍‌ବେଗ । ଏହି ଗ୍ଲାନିକର ଦୃଶ୍ୟକୁ ଦେଖି କବି ମୁହଁକୁ ହାତରେ ଘଷିଧରି ହସିବାକୁ କହିବାଦ୍ୱାରା ସାଂପ୍ରତିକ ଜୀବନବୋଧ ପ୍ରତି ଶାଣିତ ବ୍ୟଙ୍ଗପ୍ରକାଶ କରିଛନ୍ତି (୨୦) ।

ଏଲିଏଟ୍‌ଙ୍କ କାବ୍ୟ ଚେତନାର ଉତ୍ତରଣ ପର୍ବରେ 'ଦି ଓ୍ୱେଷ୍ଟଲ୍ୟାଣ୍ଡ' (The Waste Land)ର ଜନ୍ମ । ଯୁଦ୍ଧୋତ୍ତର ବିଶ୍ୱକୁ କବି 'ପରିତ୍ୟକ୍ତ-ଭୂମି' ରୂପେ ପରିକଳ୍ପନା କରିଛନ୍ତି । ଏହା ସହ ସଂଯୁକ୍ତ ହୋଇଛି 'ଗ୍ରେଲ୍ କିମ୍ବଦନ୍ତୀ' (Grail Legend) । ଯୀଶୁଙ୍କ ରକ୍ତ ପାତ୍ର ସୁରକ୍ଷିତ ପ୍ରାସାଦ (Grail Castle)କୁ ଜଗିଛନ୍ତି କୈବର୍ତ୍ତରାଜ । ତାଙ୍କର ଗୋଇଠିରେ ଏକ କ୍ଷତ ଚିହ୍ନ । ସେ ନପୁଂସକ । ଯେଉଁଦିନ ନାଇଟ୍‌ଗଣ (Knights) ଯୀଶୁଙ୍କ ରକ୍ତପାତ୍ର ଅନୁସଂଧାନ କରିବାକୁ ଆସିବେ, ସେ ଦିନ ତାଙ୍କ କ୍ଷତ ଆରୋଗ୍ୟ ହେବ । ବନ୍ଧ୍ୟା ଭୂମି ଶସ୍ୟଶ୍ୟାମଳା ହେବ । ଓ୍ୱେଷ୍ଟଲ୍ୟାଣ୍ଡରେ ଉତ୍ପାଦିକା ଶକ୍ତି ସଂପର୍କିତ ମିଥ୍ (Fertility Myth)ର ପ୍ରୟୋଗ ପରିଲକ୍ଷିତ ହୁଏ । ତାଙ୍କର ପ୍ରୁଫ୍ରକ୍ ଓ ସୁଇନି କବିତା ଭଳି 'ଓ୍ୱେଷ୍ଟଲ୍ୟାଣ୍ଡ'ର ନାରୀ ଓ ପୁରୁଷ ଚରିତ୍ରଗୁଡ଼ିକ ଶାରୀରିକ ତଥା ମାନସିକ ଶକ୍ତିଚ୍ୟୁତ । ସଭ୍ୟତାର ପୁନର୍ବିନ୍ୟାସ ପାଇଁ କାମନା ଏହା ମାଧ୍ୟମରେ ବ୍ୟଞ୍ଜନାତ୍ମକ ରୀତିରେ ଅଭିବ୍ୟକ୍ତିତ ।

ଆଧୁନିକ ଜୀବନ, ମୃତ୍ୟୁଗ୍ରସ୍ତ, କବିତାର ପ୍ରାରମ୍ଭରୁ ସିବିଲ (Cybil) ଚରିତ୍ର ମାଧ୍ୟମରେ ଏହା ସୂଚିତ । ସିବିଲ୍ ଗ୍ରୀକ୍ ମିଥ୍‌ର ଏକ ଚରିତ୍ର । ଆପୋଲୋଙ୍କଠାରୁ ସେ ଅନନ୍ତ ଜୀବନ ଭିକ୍ଷା କରିଥିଲା, କିନ୍ତୁ ଅନନ୍ତ ଯୌବନ କାମନା କରିବାକୁ ବିସ୍ମୃତ ହୋଇଥିଲା । ଯୌବନଶୂନ୍ୟ ବାର୍ଦ୍ଧକ୍ୟ ଚେତନାଗ୍ରସ୍ତ ଜୀବନ ମୃତ୍ୟୁର ନାମାନ୍ତର । ସିବିଲ୍ ପରି ସାଂପ୍ରତିକ କାଳର ବ୍ୟକ୍ତିସତ୍ତା ମୃତ୍ୟୁଚେତନାଗ୍ରସ୍ତ ।

'ଓ୍ୱେଷ୍ଟଲାଣ୍ଡ'ର ମାଡାମ୍ ସାସୋଟ୍ରିସ୍ (Madam Sasotris) ମଧ୍ୟ ଗ୍ରୀକ୍-ଇଜିପ୍‌ଟ ପରମ୍ପରାରୁ ଆହୃତ । ପ୍ରାଚୀନ ପରମ୍ପରା ଅନୁଯାୟୀ ସେ ଭବିଷ୍ୟତ ଦର୍ଶିନୀ । କିନ୍ତୁ ବର୍ତ୍ତମାନ କାଳରେ ମାଡାମ୍ ସାସୋଟ୍ରିସ୍‌ଙ୍କର ଏହା ଏକ ବ୍ୟାବସାୟିକ ବୃତ୍ତି । ହାତ ମୁଠାରେ ତାଙ୍କର ଭାଗ୍ୟ କଥକ ତାସମୁଠା । ତାସମୁଠାରେ ପ୍ରତିଫଳିତ ହୋଇଛନ୍ତି କାବ୍ୟର ଏକ ଏକ ଚରିତ୍ର—ଏକ-ଚକ୍ଷୁ ସୌଦାଗର, ଫୋନେସିଆର ନାବିକ ଫେଲବାସ ଓ ନେପଲ୍‌ସର ରାଜପୁତ୍ର ଫର୍ଡିନାଣ୍ଡ । ଏମାନେ ସମସ୍ତେ ଏକ ଯୋଗସୂତ୍ରରେ ଗ୍ରଥିତ । 'ଓ୍ୱେଷ୍ଟଲାଣ୍ଡ'ର ସମଗ୍ର ଜୀବନଭୂମି କ୍ଳାନ୍ତ ଓ ଅବସନ୍ନ । ପର୍ବତର ବନ୍ଧୁର ଶଯ୍ୟାରେ ଆଶା ଓ ଆଶ୍ୱାସନାର ବାରିଧାରା ସୁଦୂର ପରାହତ (୨୧) । ପରିସମାପ୍ତିରେ ଶାନ୍ତିର ଓଁ କାର ଉଚ୍ଚାରିତ ହୋଇଥିଲେ ମଧ୍ୟ ଶେଷ ପର୍ଯ୍ୟନ୍ତ ତପ୍ତ, ଶୁଷ୍କ, ବନ୍ଧ୍ୟା ଭୂମିର ସ୍ୱରୂପ ଅପରିବର୍ତ୍ତିତ ।

## ମାର୍କସୀୟ ବାସ୍ତବବାଦ

ପ୍ରଥମ ବିଶ୍ୱଯୁଦ୍ଧୋତ୍ତର କାଳରେ ଗଣତନ୍ତ୍ରର ବିଫଳତା ତଥା ନଗର୍ ସଭ୍ୟତାର ବିକାଶ ମଧ୍ୟରେ ଦରିଦ୍ର ଜନସାଧାରଣଙ୍କ ଦୂରବସ୍ଥା କେତେକ ପାଶ୍ଚାତ୍ୟ କବିଙ୍କୁ ମାର୍କ୍‌ସବାଦ ପ୍ରତି ଆକୃଷ୍ଟ କରିଥିଲା । ପାଶ୍ଚାତ୍ୟ କାବ୍ୟ ପରମ୍ପରାରେ ମାର୍କସଙ୍କ ବାସ୍ତବବାଦର ଧାରା କେବଳ ଇଂରାଜୀ ନୁହେଁ, ମାର୍କିନ୍, ରୁଷ ଓ ଫରାସୀ ସାହିତ୍ୟରେ ମଧ୍ୟ ସମାନ୍ତରାଳ ଭାବେ ପ୍ରବାହିତ ହୋଇଥିଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଯୁଦ୍ଧୋତ୍ତର ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଧାରାର ସମ୍ପ୍ରସାରଣ ଉଲ୍ଲେଖନୀୟ ।

ଫରାସୀ କବି ଲୁଇ ଆରାଂଗ, ଏହି ମାର୍କସୀୟ ବିପ୍ଳବର ଧାରାକୁ ଏକ ରକ୍ତ ଟ୍ରେନ୍ ରୂପକ ମାଧ୍ୟମରେ ପ୍ରକାଶ କରିଛନ୍ତି (୨୨) ।

ମାର୍କିନ କବି ଓ୍ୱାଲ୍‌ଟ ହ୍ୱିଟ୍‌ମାନ (Walt Whitman) ମାର୍କସ୍‌ଙ୍କ ବାସ୍ତବବାଦକୁ ତାଙ୍କର 'ସଙ୍ଗ୍ ଅଫ୍ ମାଇସେଲ୍‌ଫ' (Song of myself)ରେ ସ୍ପଷ୍ଟଭାବେ ସ୍ୱୀକୃତ ଦେଇଛନ୍ତି (୨୩) ।

ତାଙ୍କ ମତରେ ଯେଉଁଠାରେ ଭୂମି ଓ ଜଳର ସ୍ଥିତି ସେଠାରେ ଦୂର୍ବାଦଳର ବିକାଶ । ବାୟୁ, ସ୍ଥାନ, କାଳ ଓ ପାତ୍ର ନିର୍ବିଶେଷରେ ସର୍ବତ୍ର ପ୍ରବାହିତ ହୋଇଥାଏ (୨୪) । ହୁଇଟ୍‌ମାନଙ୍କ ଏହି ବକ୍ତବ୍ୟରୁ ସ୍ପଷ୍ଟ ମନେହୁଏ ପ୍ରକୃତି ସ୍ଥାନ, କାଳ ଓ ପାତ୍ରଗତ ଭେଦର ବିଗ୍ରହ କରେନାହିଁ । ଯେଥିପାଇଁ ସର୍ବତ୍ର ତାହାର ମୁକ୍ତ ବିକାଶ ସମ୍ଭବ ହୋଇଥାଏ । ମାନବ ସମାଜ ମଧ୍ୟରେ ଜାତି, ଧର୍ମ ଓ ବର୍ଣ୍ଣ ଭେଦ ନ ରହିଲେ ଏହାର ସାମୂହିକ ଅଗ୍ରଗତି ସୁଗମ ହେବ । କବି ହୁଇଟ୍‌ମାନଙ୍କ ପ୍ରଗତିବାଦୀ ଦୃଷ୍ଟିଭଙ୍ଗୀ ସମଗ୍ର ମାନବ ସମାଜ ମଧ୍ୟରେ ନିଜକୁ ପ୍ରଦର୍ଶନ କରିଛି (୨୫) ।

ରୁଷିଆର ସମାଜବାଦୀ କବି ମାୟାକୋଭସ୍କିଙ୍କ କବିତାରେ ମଧ୍ୟ ସାଧାରଣ ଜନଜୀବନ ପ୍ରତି ସମ୍ବେଦନଶୀଳତା ପ୍ରକଟିତ ହୋଇଛି । କବିତାରେ ସେ ନିଜେ ନିଜ ପାଇଁ କଥା କୁହନ୍ତି ନାହିଁ, ପକ୍ଷାନ୍ତରେ ସମଗ୍ର ଦଳିତ ଜନଶକ୍ତିର ବାର୍ତ୍ତା ତାଙ୍କ କବିତାରେ ଅଭିବ୍ୟକ୍ତ ହୁଏ । ତାଙ୍କ ଭାଷାରେ "ମୋ ଓଠରେ ପନ୍ଦର କୋଟି ଲୋକଙ୍କର ଶବ୍ଦ ଫୁଟି ଉଠିଛି (୨୬) ।" ରୁଷିଆର ଅନ୍ୟତମ ସମାଜବାଦୀ କବି ଏଲ୍ ଭି. ସିନୋରଭଙ୍କ ଭାଷାରେ-"ମୁଁ ସାଧାରଣ ମଣିଷକୁ ଭଲ ପାଏ, ଯେଉଁମାନେ ରୁଟି ତିଆରି କରିବା ଓ ଗଛ ବଢ଼େଇବାର କୌଶଳ ଓ ସେଥିପାଇଁ କେତେ ଶ୍ରମ ଓ ଧୈର୍ଯ୍ୟ ନିୟୋଜିତ ହେବ ଜାଣନ୍ତି (୨୭) ।

ବିଂଶ ଶତାବ୍ଦୀର ଚତୁର୍ଥ ଦଶନ୍ଧି ବେଳକୁ ଇଂରାଜୀ ସାହିତ୍ୟରେ ଅଡେନ୍ ଗୋଷ୍ଠୀର କବିଗଣ (Poets of Auden Group) ସେମାନଙ୍କ କବିତାରେ ସମାଜବାଦୀ ଚିନ୍ତାଧାରା ପ୍ରକାଶ କରିଥିଲେ । ସେମାନଙ୍କ ମଧ୍ୟରେ ଲୁଇ ମ୍ୟାକ୍‌ନିସ୍ (Louis MacNeice), ସି. ଡେ. ଲୁଇସ୍ (Cei Day Lewis) ଓ ଷ୍ଟିଫେନ ସ୍ପେଣ୍ଡର ପ୍ରମୁଖ ଅନ୍ୟତମ ।

ଲୁଇ ମ୍ୟାକ୍‌ନିସ୍‌ଙ୍କ ଭାଷାରେ—"ପୁଞ୍ଜିର କେନ୍ଦ୍ରୀକରଣ ଏକ ମଧୁମେହ-ଗ୍ରସ୍ତ ସଂସ୍କୃତି (Diabetic culture) ସୃଷ୍ଟି କରେ, ଯାହା ମଧୁମେହ ପରି ଜୀବନ ଓ କଳାର ସୂକ୍ଷ୍ମାତି ସୂକ୍ଷ୍ମ ସ୍ନାୟୁକୁ ସଂଚରି ଯାଏ (୨୮) ।"

ଅଡ଼େନ୍ କୁହନ୍ତି—"ଆମେ ପ୍ରତ୍ୟେକ ପରସ୍ପରକୁ ଭଲ ପାଇବା ନଚେତ୍ ମୃତ୍ୟୁବରଣ କରିବା ଉଚିତ୍ (୨୯) ।"

ସ୍ପେଣ୍ଡରଙ୍କ ଉକ୍ତି ଅନୁଯାୟୀ—"କୌଣସି ବ୍ୟକ୍ତି ଭୋକିଲା ନ ରହୁ । ସମାଜର ପ୍ରତ୍ୟେକ ବ୍ୟକ୍ତିଙ୍କୁ ସମାନ ଭାବେ ଉପଯୋଗ କରାଯାଉ । ମଣିଷକୁ ମଣିଷ ଭାବେ ସ୍ୱୀକାର କରିବା ଆମର ଲକ୍ଷ୍ୟ (୩୦) ।

ଡ଼ି. ଏଚ. ଲରେନ୍ସ (D. H. Lawrence)ଙ୍କ 'ହାଓ ବିଷ୍ଟଲି ଦି ବୁର୍ଜୁଆ ଇଜ୍' (How beastly the bourgeois is) କବିତାରେ "ବୁର୍ଜୁଆ ଗୋଷ୍ଠୀଙ୍କ ଦ୍ୱୈତ ବ୍ୟକ୍ତିତ୍ୱଧାରୀ ଭାବେ ଆକ୍ଷେପ କରାଯାଇଛି । ବହିର୍ଭାବରେ ଆପାତଃ ସୌନ୍ଦର୍ଯ୍ୟ ଓ ଶୁଦ୍ଧତା ଅନ୍ତରାଳରେ ପୋକଖିଆ ଗିଲ୍ଲ ପରି ସେମାନେ ଅନ୍ତଃସାରଶୂନ୍ୟ (୩୧) ।"

ରଏ କ୍ୟାମ୍ପବେଲ (Roy Campbell)ଙ୍କ 'ଦି ସର୍ଫ' '(The Serf) କବିତାରେ କୃଷକ, ସାମାଜିକ ବିପ୍ଳବର ପ୍ରତିଭୂ, ଯାହାର ବିପ୍ଳବ ରାଜପ୍ରାସାଦ, ସିଂହାସନ ଓ ଆଭିଜାତ୍ୟର ସ୍ତମ୍ଭକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେବ (୩୨) ।

ପାଶ୍ଚାତ୍ୟ ଦେଶରେ ସମାଜବାଦକୁ କେନ୍ଦ୍ର କରି ଏହି ପରୀକ୍ଷା-ନିରୀକ୍ଷା ସାମାଜିକ ବାସ୍ତବବାଦୀ ଚେତନା ଜାଗ୍ରତ କରୁଥିବାବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହ ତାଣ୍ଡବଲୀଳା ସଂଘଟିତ ହୋଇଛି ।

**ଦ୍ୱିତୀୟ ମହାସମରର ବିଭୀଷିକା ଓ ସମରୋତ୍ତର ବିଶ୍ୱର ବିଷର୍ଣ୍ଣତା**

ବିଶ୍ୱ କାବ୍ୟଧାରାରେ ଦ୍ୱିତୀୟ ମହାସମରର ଭୟାବହ ପରିଣତିର ବାସ୍ତବଧର୍ମୀ ପ୍ରତିଫଳନ ଘଟିଛି । ସୋଭିଏତ୍ ରୁଷର କବି ଆଲେକଜାଣ୍ଡାର ତର୍ଦୋଭସ୍କି (Alexander Tardovsky)ଙ୍କ 'ଭାସିଲି ଟେରକିନ୍' (Vassili Tyorkin) ରେ ସୈନିକମାନଙ୍କର ଯୁଦ୍ଧକାଳୀନ ଅସହାୟ ସ୍ଥିତିର ଏକ କରୁଣ ଚିତ୍ର ପ୍ରତିଫଳିତ :—

"ରାତ୍ରିର ନିରନ୍ଧ୍ର ଅନ୍ଧକାର ଭିତରେ ଜର୍ମାନ ସୈନିକଗଣ ଉଡ଼ାଜାହାଜର ସନ୍ଧାନୀ ଆଲୋକ (Search Light) ସାହାଯ୍ୟରେ ରୁଷିଆର ବ୍ୟାପକ ଅଞ୍ଚଳରେ ବୋମା ବର୍ଷଣ କରିଛନ୍ତି । ତାଜା ଉଷ୍ମ ରକ୍ତରେ ସିକ୍ତ ରୁଷୀୟ ସୈନିକଗଣ ନଦୀର ଜଳଧାରାରେ ଢଳି ପଡ଼ିଛନ୍ତି । ଜଳର ଗଭୀରରୁ ଗଭୀରତର ଶଯ୍ୟାରେ ସେମାନେ ନିଃଶବ୍ଦରେ ନିଶ୍ଚିହ୍ନ ହୋଇ ଯାଇଛନ୍ତି (୩୩) ।"

ପ୍ରଥମ ବିଶ୍ୱଯୁଦ୍ଧ ମାନବ ସମାଜରେ ଏକ ଆତ୍ମିକ ଆଦର୍ଶର ସୃଷ୍ଟି କରିଥିଲା ବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧ ମନୁଷ୍ୟକୁ ଅଧିକ ବାସ୍ତବଧର୍ମୀ କରାଇଛି । ସୁତରାଂ ଆଦର୍ଶଗତ କଳ୍ପନା ବିଳାସରେ ଆତ୍ମାର ଶୁଦ୍ଧି ହାସଲ ନ କରି ଆଧୁନିକ କବିଗଣ ଜଳ, ସ୍ଥଳ ଓ ଆକାଶରେ ଯୁଦ୍ଧର ଅଭୂତପୂର୍ବ ଧ୍ୱଂସର ତାଣ୍ଡବ ଲୀଳାର ଭୟାବହ ପରିଣତି ମାଧ୍ୟମରେ ମଣିଷ ସମାଜକୁ ଜୀବନର ବାସ୍ତବ ସତ୍ୟର ସନ୍ଧାନ ଦେଇଅଛନ୍ତି । ଯୁଦ୍ଧର ସେନାପତିମାନଙ୍କ ପାଇଁ ପରମାଣୁ ବୋମା ଧ୍ୱଂସର ଏକ

ଅମୋଘ ଅସ୍ତ୍ର ରୂପେ ବିବେଚିତ ହେଉଥିବା ବେଳେ ଆଧୁନିକ କବିମାନସରେ ଏହା ଶାନ୍ତିର ଅଗ୍ରଦୂତ ରୂପେ ଆତ୍ମପ୍ରକାଶ କରିଛି । ପରମାଣୁ ବୋମାର ଧ୍ୱଂସଲୀଳା ମଣିଷ ସମାଜକୁ ଯୁଦ୍ଧର ବିଫଳତା ବିଷୟରେ ଏକ ସୁନିର୍ଦ୍ଦିଷ୍ଟ ଚେତାବନୀ । ରେଜିନାଲଡ୍ ଗୌଲ୍ଡ଼ (Reginald Gould)ଙ୍କ କବିତାରେ ଏହା ଏକ ଜୀବନ୍ତ ସ୍ୱାକ୍ଷର ବହନ କରିଛି ।

" ମୋ ପୁଅର ଘାତକ ବୋମାଟି କେତେ ମଧୁର
ଏହା ତାହାକୁ ଶାନ୍ତିରେ ସୁଷୁପ୍ତି ଦେଇଛି
ଏହା ତାହାକୁ ଯୁଦ୍ଧର ଆତଙ୍କରୁ ମୁକ୍ତ କରି ଦେଇଛି
ଆଉ ବନ୍ଧୁକ ଓ ବୋମା ଲୋଡ଼ା ନାହିଁ (୩୪) ।"

ବସ୍ତୁତଃ ପାଶ୍ଚାତ୍ୟ ବାସ୍ତବବାଦୀ କାବ୍ୟଧାରା, ଛନ୍ଦର ଶୃଙ୍ଖଳରୁ ମୁକ୍ତ । ଏହା ମୁକ୍ତ ଛନ୍ଦର ବାହକ । ଏହାର ଭାଷା, ପ୍ରତୀକ ଓ ରୂପକଳ୍ପଗୁଡ଼ିକ ବାସ୍ତବଧର୍ମୀ ପରିସରରୁ ଆହୃତ । ଭାରତୀୟ ବାସ୍ତବବାଦୀ କବିତା ଉପରେ ଉଭୟ ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିରୁ ଏହାର ପ୍ରଭାବ ଅନାସ୍ୱାଦବେଦ୍ୟ । ଭାରତୀୟ ମାର୍କସୀୟ ବାସ୍ତବବାଦୀ କବିତାରେ ମାର୍କିନ କବି ହ୍ୱିଟମ୍ୟାନ୍, ରୁଷୀୟ କବି ମାୟାକୋଭସ୍କି ତଥା ଇଂରାଜୀ ଅଡ଼େନ୍ କବି ଗୋଷ୍ଠୀଙ୍କର ସମତାନ୍ତ୍ରିକ ସ୍ୱର ପରିଲକ୍ଷିତ । ଭାରତୀୟ ପ୍ରୟୋଗବାଦୀ କବିତାରେ ଇଂରାଜୀ କବି ଟି. ଏସ୍. ଏଲିୟଟ୍‌ଙ୍କ କାବ୍ୟ ବକ୍ତବ୍ୟ ଓ ଶୈଳୀ-ଶିଳ୍ପର ସମାନ୍ତରାଳ ଧାରା ପ୍ରବାହିତ ।

## ପାଦଟୀକା

(୧)—"Of these the false Achitophel was first.
A Name to all succeeding Ages curst.
× × ×
And born a shapeless lump, like Anarchy.
In Friendship False, Implacable in Hate,
Resolved to Ruin or to Rule the state,"
(The Satires of Dryden)

Absalom and Achitophel—Ed. John Churton Collins.

(୨)— "In the sun,
Upon the second step of that small pile.
Surrounded by those unpeopled hills.
He sat, and ate his food in solitude"
The Old Cumberland Beggar—(Wordsworth)

(୩) —Sweet Auburn ! parent of the blissful hour,
They glades forlorn confess the tyrant's power
× × ×
While broken tea cups, wisely kept for show,
Rang'd o'er the chimney, glisten'd in a now
(From the Deserted Village, Oliver Gold Smith)
quoted from Three Hundred Years of English Poetry
edited-A. Mendeloff—pages 30 and 35.

(୪)—"Great qualities are trodden down
And littleness united.
Is become invincible."
(Empedocles on Etna—Matthew Arnold)

(୫)—We are here as on a darkling plain.
Swept with confused alarms of struggle and flight,
Where ignorant armies clash by night.
(Dover Beach by Matthew Arnold)

(୬)—"Where wits were fresh and clear.
And life ran gaily as the sparkling thames."
(The Scholar Gipsy—Matthew Arnold)

(୭)—"That none can pierce the vast black veil uncertain, Because there is no light beyond the curtain."
(In the City of Dreadful Night-James Thomson)

(୮)—The smoke of their foul dens.
Broadeth on thy fair Earth as a black pestilence.
Hiding the kind day's eye. No flower, no grass there groweth.
Only their engines, dung which the fierce furnace throweth.
Their presence poisoneth all and maketh all unclean.
Thy streams they have made sewers for their dyes aniline,
No fish therein may swim, no frog, no worm may crawl,
No sanil for grime may build her house within their wall,
Thy beasts they have enslaved in blindness underground
The voice of birds that say to them is a lost sound"
(Satan Absolved—W. S. Blunt)

(୯)—"For like a mole I journey in the dark
Atravelling along the underground

From my Pillared Halls and broad Suburban park.
To come to the daily dull official round,
And home again at night with my pipe all alight,
A scheming how to count ten bob a pound"
("Thirty Bob a week"—John Davidson)

(୧୦)—"He had fallen from an engine,
And been dragged along the metals.
It was hopeless, and they knew it,
So they covered him and left him
As he lay by fits half sentient,
Inarticulately moaning
With his stockinged soles protruded
Stark and awkward from the blankets........"
(In Hospitals—William Ernest Henley)

(୧୧)—"A tragic meanness seems so to environ
These corridors and stairs of stone and iron
Cold, Naked, clean-half work-house and half-jail
(In Hospitals by William Ernest Henley)

(୧୨)—"Theirs not to reason why
Theirs but to do and die"
—Tennyson

(୧୩)—"And then he thought to-morrow night we turdge
Upto the trenches, and my boots are rotten
Five miles of stodgy day and freezing sludge,
And everything but wretchedness forgotten.
To-night he's in the pink, but soon he'll die.
And still the war goes on, he don't know why"
Siegfried Sassoon-quoted from Crisis in English Poetry—V. D. Solapinto

(୧୪)—"Yet portion of that unknown plain
Will Hodge forever be,
His homely Northern breast and brain
Grow to some southern tree,
And strange eyed constellation reign
His stars eternally

—Thomos Hardy

(୧୫)—"Peace upon earth ! was said We sing it
And pay a million priests to bring it.
After two thousand years of March
We have got as far as poison gas"

—Thomos Hardy

Quoted from Satire/Arthur Pollard critical
Idiom/Series.

(୧୬)—"I have measured my life with coffee spoons"
(The Love song of J. Alfred Prufrock) T. S Eliot.

(୧୭)—"We are the hollow men
We are the stuffed men
Leaning together
Headpiece filled with straw, Alas !
(Hollow Men—T. S. Eliot)

(୧୮)—"This is the way the world ends
This is the way the world ends
This is the way the world ends.
Not with a bang but a whimper"
(Hollow Men—T. S. Eliot)

(୧୯)—"......................Unnatural vices
Are fathered by one heroism. Virtues

Are forced upon us by one impudent crimes"
(Geroution—T. S. Eliot)

(୨୦)—Wipe your hand across your mouth, and Laugh,
The Worlds revolve like ancient women
Gathering fuel in vacant lots.
(Preludes—T. S. Eliot)

(୨୧)—"Here is no water but only rock
Rock and no water and the sandy road
The road winding above among the mountains
Which are mountains of rock without water"
(Waste Land—T. S. Eliot)

(୨୨)—The red train starts and nothing shall stop it"—Louis Arang.

(୨୩)—" I accept Reality and dare not question it,
Materialism first and last imbuing"
(Song of Myself—Leaves of Grass-Walt Whitman)

(୨୪)—"This is the grass that grows wherever
the land is and the water is
This the common air that bathes the globe"
(Song of Myself—Leaves of Grass-W. Whiteman.)

(୨୫)—"In all people I see myself" —Ibid

(୨୬)—"150,000,000 people speak through lips of mine"
(Mayakovoski)

(୨୭)—"I loved common people............

× × ×

People who knew how bread was made,
And,how plants grew and how much sweat it takes'—Elvi Sineno
(Quoted from Artistic Truth And Dialectics of creative work.

—Vassily Novikov

(୨୮)—The excess sugar of a diabetic culture
Rotting the nerve of life and literature
(An Eclogue for Christmas—Louis-Mac Nleice)

× × ×

୨୯—"We must love one another or die"
(September 1, 1939 —Auden)

(୩୦)—"............................ No man
Shall hunger, Man shall spend equally
Our goal which we compel, Man shall be man"

—Stephen Spender

Quoted from Crisis in English Poetry—1880-1940·
V. S. Pinto

(୩୧)—"Just like an old mushroom, all wormy inside shollow/under a smooth skin and an upright appearance."
(How Beastly the Bourgeois is—D. H. Lawrence)

(୩୨)—"The timeless, surly patience of the self
That moves the nearest to the naked earth
And ploughes down palaces, and thrones and towers"

(The seif—Roy Compbell)

(୩୩)—"How could anyone forget it,
Seeing helpless soldiers drown
Live warmblooded human beings
Sinking down, and down, and down"

(Vassili Tyorkin-Alexander Tvardovsky) Quoted from Artistic Truth and Diabetics of creative work—Vassily Novikov.

(୩୪)—Sweet was the bomb that killed my son
It made him sleep and sleep in peace,
It made him free from the bar of war,
Now no more guns, no more bombs"

(Harbinger of Peace by Reginald Gould)

## ତୃତୀୟ ପରିଚ୍ଛେଦ

# ଭାରତୀୟ କାବ୍ୟଚେତନାରେ ବାସ୍ତବବାଦ

ଊନବିଂଶ ତଥା ବିଂଶ ଶତାବ୍ଦୀର ଯୁଗସନ୍ଧି କ୍ଷଣରେ ପ୍ରାଚ୍ୟ-ପାଶ୍ଚାତ୍ତ୍ୟ ଚିନ୍ତା ସଂଘର୍ଷ ଓ ସମନ୍ୱୟ ଫଳରେ ଭାରତୀୟ ସାହିତ୍ୟରେ ଏକ ରୁଚିଗତ ପରିବର୍ତ୍ତନ ସଂଘଟିତ ହୋଇଥିଲା । ଏହି ସମୟରେ ସର୍ବଭାରତୀୟ ସ୍ତରରେ ବାସ୍ତବବାଦୀ ଚେତନା, କବିତାକୁ ରୀତିଯୁଗୀୟ କଳ୍ପନାବିଳାସ ଓ ସୌନ୍ଦର୍ଯ୍ୟଚିତ୍ରଣରୁ ମୁକ୍ତ କରିଥିଲା । ଯୁଗ ଓ ଜୀବନର ସମସ୍ୟା ପ୍ରତି କବି-ମାନସର ସଚେତନତା କାବ୍ୟ କବିତାକୁ ବାସ୍ତବମୁଖୀ କରାଇଥିଲା । ଏହି ଯୁଗସନ୍ଧି କ୍ଷଣରେ ରାଜନୀତିଜ୍ଞ, ସଂଗଠକ ତଥା ସାହିତ୍ୟିକମାନଙ୍କ ଦୃଷ୍ଟି ମୁଖ୍ୟତଃ ଦୁଇଟି ସମସ୍ୟା ଉପରେ କେନ୍ଦ୍ରୀଭୂତ ହୋଇଥିଲା । ପ୍ରଥମଟି ଥିଲା ଜାତୀୟ ସମସ୍ୟା, ଦ୍ୱିତୀୟଟି ସାମାଜିକ ସମସ୍ୟା ।

ଊନବିଂଶ ଶତାବ୍ଦୀୟ ଭାରତୀୟ ଜନଜୀବନ ରାଜନୈତିକ ପରାଧୀନତା, ଆର୍ଥିକ ଅନଗ୍ରସରତା, ସାମାଜିକ କୁସଂସ୍କାର ତଥା ଅନ୍ଧବିଶ୍ୱାସର ନିଗଡ ବନ୍ଧନ ମଧ୍ୟରେ ଆବଦ୍ଧ ଥିଲା । ସେହି ସମୟରେ ୟୁରୋପର ବ୍ୟାପକ ଶିଳ୍ପ ପ୍ରସାର ସହ ଭାରତୀୟ ଜନଜୀବନର ବିଶେଷ ସମ୍ବନ୍ଧ ନ ଥିଲେ ହେଁ, ବ୍ରିଟିଶ୍ ଶାସନର ପ୍ରଭାବ ହେତୁ ପାରମ୍ପରିକ କୃଷିଭିତ୍ତିକ ବିକେନ୍ଦ୍ରୀତ ଅର୍ଥନୈତିକ ସମାଜର ସୁଦୃଢ ସାଂସ୍କୃତିକ ବିଶ୍ୱାସବୋଧ ଆଂଶିକଭାବେ ଖଣ୍ଡିତ ହୋଇଥିଲା ।

ବ୍ରାହ୍ମସମାଜ ଓ ଆର୍ଯ୍ୟ ସମାଜର ପ୍ରତିଷ୍ଠା (୧) ଗଳ୍ପ, ଉପନ୍ୟାସ ଓ ନାଟକ ଭଳି କାବ୍ୟକବିତାକୁ ସାମାଜିକ କୁସଂସ୍କାରର ବିଲୋପ ପାଇଁ ପ୍ରେରଣା ଦେଇଥିଲା । ଅନ୍ୟ ପକ୍ଷରେ ଜାତୀୟ ଆନ୍ଦୋଳନ ଓ ବ୍ରିଟିଶ୍ ଶାସକଙ୍କର ଭେଦ ନୀତି (୨) ଜାତୀୟ ସାହିତ୍ୟ ସୃଷ୍ଟି ପାଇଁ ଏକ ବଳିଷ୍ଠ ପୃଷ୍ଠପଟ୍ଟ ଥିଲା । ହିନ୍ଦୀ କବିତାରେ ଭାରତେନ୍ଦୁ ହରିଶ୍ଚନ୍ଦ୍ର, ତାମିଲ କବିତାରେ ସୁବ୍ରମନ୍ୟମ୍ ଭାରତୀ, ତେଲୁଗୁ କବିତାରେ କାନ୍ଦୁକୁରି ବିରେଶଲିଙ୍ଗମ୍ ଓ ବଙ୍ଗଳା କବିତାରେ ମାଇକେଲ୍ ମଧୁସୂଦନ ଦତ୍ତ ତଥା ଈଶ୍ୱର ଗୁପ୍ତ ପ୍ରମୁଖ ଏହି ଉଦ୍ୟମର କର୍ଣ୍ଣଧାର ଥିଲେ ।

ବିଂଶ ଶତାବ୍ଦୀର ତୃତୀୟ ଦଶକ ବେଳକୁ ଏକ ରୋମାଣ୍ଟିକ ତଥା ରହସ୍ୟ-ବାଦୀ କାବ୍ୟଭାବନା ଭାରତୀୟ କବିମାନସକୁ ପ୍ରଭାବିତ କରିଥିଲା । ମରାଠୀ ସାହିତ୍ୟର

ରବିକିରଣ ମଣ୍ଡଳ କବିଗୋଷ୍ଠୀ, ହିନ୍ଦୀ ସାହିତ୍ୟର ଛାୟାବାଦୀ ଓ ବଙ୍ଗଳା ସାହିତ୍ୟର କଲ୍ଲୋଳ କବିଗୋଷ୍ଠୀ (୩) ଏହି ଯୁଗ ଚେତନାବୋଧର ବାର୍ତ୍ତାବହ ଥିଲେ । ଏହି କବିମାନଙ୍କର କାବ୍ୟ ଚେତନା ଉପରେ ଇଂରାଜୀ ରୋମାଣ୍ଟିକ କବିମାନଙ୍କର କାବ୍ୟିକ ପ୍ରଭାବ ଥିଲା ଗଭୀର ।

## ଭାରତୀୟ ପ୍ରଗତିବାଦୀ କବିତାରେ ବାସ୍ତବବାଦ

ବିଂଶ ଶତାବ୍ଦୀର ଚତୁର୍ଥ ଦଶକ ବେଳକୁ ମାର୍କସ୍ ପ୍ରବର୍ତ୍ତିତ ସମାଜବାଦୀ ବାସ୍ତବବାଦ ଭାରତୀୟ କାବ୍ୟ ଜଗତକୁ ବ୍ୟାପକ ଭାବେ ଅନୁପ୍ରାଣିତ କରିଥିଲା । କବିତା ସୌନ୍ଦର୍ଯ୍ୟ, ସୌକୁମାର୍ଯ୍ୟ ଓ କଳ୍ପନାବିଳାସରୁ ବିଚ୍ଛିନ୍ନ ହୋଇ ଶୋଷିତ ସମାଜର ସମସ୍ୟାକୁ କାବ୍ୟାୟିତ କଲା । ଏହି ପର୍ଯ୍ୟାୟରେ କବିତାରେ ସାଦୃଶ୍ୟତତ୍ତ୍ୱ (Correspondence Theory)ର ପ୍ରତ୍ୟକ୍ଷଧର୍ମୀ କାବ୍ୟଶୈଳୀ ତଥା ସାମାଜିକ ଉପଯୋଗିତାବାଦୀ ଦୃଷ୍ଟିଭଙ୍ଗୀ ପ୍ରକଟିତ ହୋଇଥିଲା । ଇଂରାଜୀ କବି ଅଡେନ୍,ସ୍ପେଣ୍ଡର, ମାର୍କିନ କବି ହୁଇଟମାନ୍, ଫରାସୀ କବି ଲୁଇ ଆରାଂଗ ତଥା ରୁଷୀୟକବି ମାୟା-କୋଭସ୍କି ପ୍ରମୁଖଙ୍କ କବିତାର ସାମାଜିକ ବାସ୍ତବବାଦୀ ଚେତନାରୁ ଭାରତୀୟ ସମାଜବାଦୀ କବିମାନେ ଉପାଦାନ ଆହରଣ କରିଥିଲେ ।

ଭାରତୀୟ କାବ୍ୟପରମ୍ପରାରେ ଏହି ସମାଜବାଦୀ ବାସ୍ତବବାଦ-ଚେତନା-ସମ୍ବଳିତ ସ୍ୱରକୁ 'ପ୍ରଗତିବାଦୀ ଚେତନା' ରୂପେ ଅଭିହିତ କରାଯାଇଛି । ସୃଷ୍ଟି ଗତିଶୀଳ-ଏହା ମାର୍କସବାଦର ତର୍କ । ମାର୍କସ୍‌ଙ୍କ ଐତିହାସିକ ଦ୍ୱନ୍ଦ୍ୱବାଦ ଜୀବନ, ସମାଜ ଓ ଯୁଗ ଚେତନାର ଗତିଶୀଳତା ଉପରେ ଗୁରୁତ୍ୱ ଆରୋପ କରେ । ଧର୍ମ, ସଂସ୍କୃତି ତଥା ପୁରାତନ କୁସଂସ୍କାରକୁ ପରିତ୍ୟାଗ କରି ଜୀବନର ସର୍ବାଙ୍ଗୀନ ଉନ୍ନତି ପ୍ରତି ଦୃଷ୍ଟି ଦିଆଯାଇଥିବାରୁ, ସମାଜବାଦୀ କବିତାକୁ ଭାରତୀୟ କାବ୍ୟ ପରମ୍ପରାରେ, ପ୍ରଗତିବାଦୀ କବିତାରୂପେ ମଧ୍ୟ ସଂଜ୍ଞାୟିତ କରାଯାଇଛି । ହିନ୍ଦୀ ସାହିତ୍ୟରେ ଏହାକୁ "ସାମାଜିକ ଯଥାର୍ଥବାଦୀ କବିତା" ଓ ତେଲୁଗୁ ସାହିତ୍ୟରେ ଏହାକୁ 'ଅଭ୍ୟୁଦୟ କବିତ୍ୱମ୍' ରୂପେ ଅଭିହିତ କରାଯାଏ । ଏହି ଭାରତୀୟ ପ୍ରଗତିବାଦୀ କବିତାର ଅନ୍ୟ ଏକ ବୈଶିଷ୍ଟ୍ୟ ହେଉଛି—ମାର୍କସ୍‌ଙ୍କ ସମାଜବାଦ ସହ ଭାରତରେ ବ୍ରିଟିଶ୍ ଶାସନର ଔପନିବେଶିକ ଶୋଷଣ ବିରୋଧରେ ମଧ୍ୟ ଏଥିରେ ସ୍ୱର ଉତ୍ତୋଳନ କରାଯାଇଛି ।

## ପ୍ରଗତିଶୀଳ ଲେଖକ ସଂଘ ସମୂହର ପ୍ରତିଷ୍ଠା

ଭାରତୀୟ କାବ୍ୟ ଚେତନାରେ ମାର୍କସବାଦର ପ୍ରଭାବ ଫଳରେ, ଭାରତର ବିଭିନ୍ନ ଅଞ୍ଚଳରେ ପ୍ରଗତିଶୀଳ ଲେଖକ ସଂଘ ସମୂହ ପ୍ରତିଷ୍ଠିତ ହୋଇଥିଲା । ୧୦-୪-୩୦ରେ

ଲକ୍ଷ୍ନୌଠାରେ ସର୍ବଭାରତୀୟ ସ୍ତରରେ ନିଖିଳ ଭାରତ ଲେଖକ ସଂଘ ଅନୁଷ୍ଠିତ ହୋଇଥିଲା । ୧୯୪୫ ମସିହାରେ ଉର୍ଦ୍ଦୁ ଲେଖକ ସଂଘର ଉଦ୍‌ଘାଟନ କରିଥିଲେ ଶ୍ରୀମତୀ ସରୋଜିନୀ ନାଇଡୁ । ଶ୍ରୀଯୁକ୍ତ ଅମ୍ବିକା ପ୍ରସାଦ ବାଜପେୟୀ ଓ ନନ୍ଦଦୁଲାରେ ବାଜପେୟୀଙ୍କ ଅଧ୍ୟକ୍ଷତାରେ ପ୍ରଗତିଶୀଳ ଲେଖକସଂଘ ଗଠିତ ହୋଇଥିଲା । ଏହି ଲେଖକ ସଂଘ ସମୂହର ସଂସ୍ଥାପନା ମାଧ୍ୟମରେ ସର୍ବଭାରତୀୟ ସାହିତ୍ୟ ସ୍ତରରେ ସମାଜବାଦୀ ବାସ୍ତବବାଦ ବା ପ୍ରଗତିବାଦର ଅଭ୍ୟୁଦୟ ପାଇଁ ଅନୁକୂଳ ବାତାବରଣ ସୃଷ୍ଟି ହୋଇଥିଲା ।

## ତାମିଲ୍ ପ୍ରଗତିବାଦୀ କବିଗୋଷ୍ଠୀ

ତାମିଲ୍ କବି ଭାରତୀ ଦାଶନ୍ ଥିଲେ ଜଣେ ବିଶିଷ୍ଟ ସମାଜବାଦୀ କବି । ୧୯୩୮ ମସିହାରେ ତାଙ୍କର 'ପ୍ରରଇଟିଚ କବି' (ବିପ୍ଳବୀ କବି) ରେ ସାମାଜିକ ବିପ୍ଳବ ତଥା ପ୍ରଗତିଶୀଳ ଚେତନାର ସଂକେତ ମିଳିଥିଲା । ବାଣୀ ଦାଶନଙ୍କ 'ବାଣୀ ଦାଶନ କବିତାଇ କଲ୍'ରେ ସମାଜର ଅର୍ଥନୈତିକ ବୈଷମ୍ୟର ଚିତ୍ର ପ୍ରଦତ୍ତ ହୋଇଥିଲା । ତାଙ୍କର 'ଏଙ୍କଲଭିଦୁ'ରେ ଗ୍ରାମ ଓ ନଗର ସଭ୍ୟତାର ସଂଘର୍ଷର ସୂଚନା ଦିଆଯାଇଥିଲା । ଶିଳ୍ପ ସଭ୍ୟତାର ସର୍ବଗ୍ରାସୀ ପରିଣତି ପ୍ରତି ସେ ଶାଣିତ କଟାକ୍ଷ ପ୍ରୟୋଗ କରିଥିଲେ ।

## ତେଲୁଗୁ ପ୍ରଗତିବାଦୀ କବିତାରେ 'ଦିଗମ୍ବରଲୁ' କବିଗୋଷ୍ଠୀ

ତେଲୁଗୁ କବିତାରେ 'ଦିଗମ୍ବରଲୁ କବି ଗୋଷ୍ଠୀ' ସମାଜବାଦୀ-ବାସ୍ତବବାଦ ସମ୍ପର୍କିତ ଭାବନା ବିଂଶ ଶତାବ୍ଦୀର ଚତୁର୍ଥ ଦଶକରେ ପ୍ରକାଶ କରିଥିଲେ । ଏହି ଗୋଷ୍ଠୀର କବିଗଣ 'ନଗ୍ନମୁନି', 'ଜ୍ୱାଳାମୁର୍ଖୀ' ଓ 'ମହାସ୍ୱପ୍ନ' ଆଦି ଛଦ୍ମ ନାମରେ ପରିଚିତ । ତେଲୁଗୁ କବିତାରେ ଡ଼. ଆର୍. ରେଡ୍ଡିଙ୍କ, କୃଷକ ପତ୍ନୀ, ଓ ଚଲ୍ଲୁକ ଜଟଲଙ୍କ 'ରୁଧିର ଜ୍ୟୋତି, ଆଦି କବିତାରେ ଶ୍ରେଣୀହୀନ ସମାଜ ଗଠନ ପାଇଁ ଆହ୍ୱାନ ଦିଆଯାଇଥିଲା । ତଥାକଥିତ ଧର୍ମୀୟ ଆଚାର ତଥା ପୌରୋହିତ୍ୟବାଦ ବିରୋଧରେ ଏ ଜାତୀୟ କବିତାରେ ସ୍ୱର ଉତ୍ତୋଳନ କରାଯାଇଥିଲା ।

## ବଙ୍ଗଳା କବିତାରେ ପ୍ରଗତିବାଦୀ ଚେତନା

ବଙ୍ଗଳା କବିତାରେ କାଜି ନଜରୁଲ୍ ଇସଲାମ୍, ସୁବାସ ମୁଖୋପାଧ୍ୟାୟ ଓ ସୁକାନ୍ତ ଭଟ୍ଟାଚାର୍ଯ୍ୟ ପ୍ରମୁଖଙ୍କ କବିତାରେ ପ୍ରଗତିବାଦର ସ୍ୱର ଝଙ୍କୃତ ହୋଇଛି । ଅବଶ୍ୟ ବିଂଶ ଶତାବ୍ଦୀର ତୃତୀୟ ଦଶକର ପ୍ରାରମ୍ଭରୁ ବଙ୍ଗୀୟ ପତ୍ର ପତ୍ରିକା ମାଧ୍ୟମରେ ଏହି

ଚେତନାର ଉନ୍ମେଷ ଲକ୍ଷ୍ୟ କରାଯାଇଥିଲା । ଢାକା ବିଶ୍ୱବିଦ୍ୟାଳୟର ଯୋନାଥନ୍ ହଲ୍‌ର ବାର୍ଷିକ ପତ୍ରିକା 'ବାସ୍ତବିକା', ବର୍ଗୀୟ ପତ୍ରିକା 'ପ୍ରଗତି' ଓ 'କାଳି କଲମ' ସମାଜବାଦୀ ବାସ୍ତବବାଦର ବଳିଷ୍ଠ ପୃଷ୍ଠପୋଷକ ଥିଲେ (୪) ।

ନଜରୁଲ୍, ସୁବାସ ଓ ସୁକାନ୍ତ ପ୍ରମୁଖଙ୍କ ଉଦ୍ୟମରେ ବଙ୍ଗଳା କବିତାରେ ପ୍ରଗତିବାଦର ସଂପ୍ରସାରଣ ସଂଘଟିତ ହୋଇଥିଲା । ନଜରୁଲ୍‌ଙ୍କ 'ଅଗ୍ନିବୀଣା', 'ସର୍ବହରା' ସୁବାସ ମୁଖୋପାଧ୍ୟାୟଙ୍କ 'କମ୍ରେଡ୍ ସ୍ତାଲିନ୍', 'ଅଗ୍ନିକୋଣ', 'ମେଘେ-ଦିନେର କବିତା' "ସୁକାନ୍ତ ଭଟ୍ଟାଚାର୍ଯ୍ୟଙ୍କ 'ପୁରେଇନୋଧାନ୍ଦା' ଓ, ଏକ୍‌ଟି ମୁରୁଗେର କାହାନୀ' ଆଦି କବିତାରେ ସମାଜର ଶ୍ରେଣୀ ବୈଷମ୍ୟ ବିରୋଧରେ ଶୋଷିତ ସମ୍ପ୍ରଦାୟକୁ ସଚେତନ କରାଇବା ପାଇଁ ଉଦ୍ୟମ କରାଯାଇଥିଲା ।

ସୁବାସ ମୁଖୋପାଧ୍ୟାୟଙ୍କ 'ମେଘେ ଦିନେର କବିତା'ରେ ପୁଷ୍ପିତ ସ୍ୱପ୍ନର ସ୍ରୋତରୁ ବାସ୍ତବ ଜୀବନର ରୁକ୍ଷ, କର୍କଶ ପଥକୁ କବିତାର ଯାତ୍ରା ପରିବର୍ତ୍ତନ ସୂଚିତ । କବିଙ୍କ ଭାଷାରେ—"ଆମେ ଧ୍ୱଂସର ସମ୍ମୁଖୀନ । ପୁଷ୍ପ ସମ୍ପ୍ରୀତିର ସମସ୍ତ ଆଜି ନାହିଁ । ଓଷ୍ଠପୁଟରେ ସ୍ୱପ୍ନର ନୀଳ ମଦିରାର ସୁଗନ୍ଧ ପରିବର୍ତ୍ତେ, ବାସ୍ତବ ଜୀବନର ତୀବ୍ର ରୌଦ୍ରରେ ଆମର ତ୍ୱକ ବିବର୍ଣ୍ଣ (୫) ।"

## ହିନ୍ଦୀ କବିତାରେ ବାସ୍ତବବାଦ

ହିନ୍ଦୀକବିତାରେ ସୁମିତ୍ରାନନ୍ଦନ ପନ୍ଥଙ୍କ 'ଯୁଗବାଣୀ', 'ଯୁଗାନ୍ତ' 'ମୁକ୍ତିବୋଧଙ୍କ 'ତାର ସପ୍ତକ' ଜଗନ୍ନାଥ ପ୍ରସାଦ ମିଳିନ୍ଦଙ୍କ 'ନବ ଯୁଗକେ ଗାନ', ଜୟଶଙ୍କର ଭଟ୍ଟଙ୍କ 'ଅମୃତ ଔର ବିଷ', ନରେନ୍ଦ୍ର ଶର୍ମାଙ୍କ 'ଲଲ୍ ରୁଷ', ବାଳକୃଷ୍ଣ ଶର୍ମା (ନବୀନ)ଙ୍କ 'ଚେତାବନୀ' ଓ ରାଙ୍ଗେୟ ରାଘବଙ୍କ 'ଔର୍‌ଲେଖା' ଆଦିରେ ପ୍ରଗତିବାଦୀ ବାସ୍ତବବାଦ ପ୍ରକଟିତ ହୋଇଥିଲା । ପ୍ରଗତିବାଦ, ସାହିତ୍ୟ କ୍ଷେତ୍ରରେ ଛାୟାବାଦର ବିରୋଧୀ । ଛାୟାବାଦର ରହସ୍ୟବାଦୀ ଭାବନା ଓ ପଦବିନ୍ୟାସର କୋମଳ ଲଳିତଭଙ୍ଗୀକୁ ପ୍ରଗତିବାଦୀ ଚେତନା ବିରୋଧ କରିଥିଲା । ବିଂଶ ଶତାବ୍ଦୀର ଚତୁର୍ଥ-ପଞ୍ଚମ ଦଶକ ବେଳକୁ ଛାୟାବାଦର ନିର୍ମୋକରୁ ମୁକ୍ତିର ସନ୍ଧାନ ଖୋଜିଥିଲେ ହରିବଂଶ ରାୟ ବଚ୍ଚନ, ସୁମିତ୍ରା ନନ୍ଦନ ପନ୍ଥ, ଗିରିଜା କୁମାର ମାଥୁର୍, ନିରାଲା (ସୂର୍ଯ୍ୟକାନ୍ତ ତ୍ରିପାଠୀ) ପ୍ରମୁଖ କବିଗଣ । ସୁମିତ୍ରା ନନ୍ଦନ ପନ୍ଥ 'ଯୁଗବାଣୀ'ର ମୁଖବନ୍ଧରେ ଉଲ୍ଲେଖ କରିଥିଲେ—"ଚଳନ୍ତ ଯୁଗର ସମସ୍ୟାବଳୀକୁ ମୁଁ 'ଯୁଗବାଣୀ'ରେ ରୂପାୟିତ କରିବାର ପ୍ରୟାସ କରିଛି । ଏଥିରେ ଯଦି ବର୍ତ୍ତମାନ କାଳର ସମସ୍ୟାର ସାମାନ୍ୟତମ ସୂଚନା ମିଳେ, ତାହାହେଲେ ମୋର ପ୍ରୟାସ ସାର୍ଥକ ହୋଇଛି ବୋଲି ବୁଝିବି (୬) ।"

## ପ୍ରଗତିବାଦୀ କବିତାର ବାସ୍ତବଧର୍ମୀ ବକ୍ତବ୍ୟ ଓ ଅଭିମୁଖ୍ୟ

ସମାଜର ଅବହେଳିତ ନିମ୍ନ ବର୍ଗୀୟ ଜନସାଧାରଣଙ୍କର ସମସ୍ୟା ସମୂହ ପ୍ରଗତିବାଦୀ କବିତାର ଉପଜୀବ୍ୟ ବିଷୟରୂପେ ଗୃହୀତ ହୋଇଥାଏ । ବିଶିଷ୍ଟ ହିନ୍ଦୀ ସାହିତ୍ୟିକ ପ୍ରେମଚନ୍ଦ ପ୍ରଗତିଶୀଳ କବିତାର ବାସ୍ତବ ଧର୍ମୀ ଆଭିମୁଖ୍ୟ ସମ୍ବନ୍ଧରେ ଆଲୋଚନା କରିବାକୁ ଯାଇ କହିଛନ୍ତି—"ସାହିତ୍ୟ କେବଳ ମନୋରଞ୍ଜନ ପାଇଁ ଉଦ୍ଦିଷ୍ଟ ନୁହେଁ । ଆମେ ଏଭଳି ସାହିତ୍ୟ ସୃଷ୍ଟି କରିବାକୁ ଚାହୁଁ ଯେଉଁଥିରେ ସାମ୍ପ୍ରତିକ ବିପନ୍ନାବସ୍ଥାର ପ୍ରତିବିମ୍ବ ଓ ତାହାର ଆଶାପୂର୍ଣ୍ଣ ସମାଧାନର ସଙ୍କେତ ରହିଥିବ (୭) ।"

ଭାରତୀୟ ପ୍ରଗତିବାଦୀ କବିତାର ମୁଖ୍ୟ ବୈଶିଷ୍ଟ୍ୟ ଗୁଡ଼ିକ ହେଉଛି :—

କ) ପୁଞ୍ଜିବାଦର ଉଚ୍ଛେଦ ।
ଖ) ସଂଘଶକ୍ତି ମାଧ୍ୟମରେ ଶ୍ରେଣୀ-ସାମ୍ୟର ପ୍ରତିଷ୍ଠା ।
ଗ) ସାମାଜିକ ବୈଷମ୍ୟ ବିରୋଧରେ ଆହ୍ୱାନ ।
ଘ) ଧର୍ମୀୟ ସଂକୀର୍ଣ୍ଣତା ବିରୋଧରେ ସ୍ୱର ଉତ୍ତୋଳନ ।
ଙ) ନାରୀପ୍ରତି ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ ।
ଚ) ଅବହେଳିତ ବର୍ଗରୁ ଚରିତ୍ର ଆହରଣ ।
ଛ) ମିଥିକ୍ ଚରିତ୍ରର ପ୍ରଗତିବାଦୀ ଭୂମିକା ।
ଜ) ଯୁଦ୍ଧର ବିଭୀଷିକା ବିରୋଧରେ ଆହ୍ୱାନ ।
ଝ) ଭାରତୀୟ ମୁକ୍ତି ଆନ୍ଦୋଳନର ଝଙ୍କାର ।
ଞ) ଗଣତନ୍ତ୍ରର ସୁରକ୍ଷା ପାଇଁ ଚେତାବନୀ ।

### (କ) ପୁଞ୍ଜିବାଦର ଉଚ୍ଛେଦ

ପରମ୍ପରାଗତ ଭାବେ ଗଢ଼ି ଉଠିଥିବା ଜମିଦାରୀ, ଜାଗିରଦାରୀ, ମହାଜନ ଓ ସାହୁକାର ପ୍ରଥା ସଙ୍ଗେ ନବାଗତ ଶିଳ୍ପ ସଭ୍ୟତାର ଦାସ୍ତାଦ ଶିଳ୍ପପତି ଓ ମଧ୍ୟବିତ୍ତ ଗୋଷ୍ଠୀର ଶୋଷଣ ଏକ ବୈପ୍ଳବିକ ପରିସ୍ଥିତିର ସୃଷ୍ଟି ପାଇଁ ଭିତ୍ତିଭୂମି ପ୍ରସ୍ତୁତ କରିଥିଲା । ମାର୍କସ୍‌ବାଦର ଅଭ୍ୟୁଦୟ ସଙ୍ଗେ ପୃଥିବୀବ୍ୟାପୀ ଯେଉଁ ଗଣଚେତନା ସୃଷ୍ଟି ହୋଇଥିଲା ତାର ପ୍ରଭାବ ଭାରତବର୍ଷରେ ସଂପ୍ରସାରିତ ହୋଇଥିଲା । ଏଣୁ ଶୋଷିତ ଗୋଷ୍ଠୀ ନାନା ଭାବରେ ଶୋଷଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ସେମାନଙ୍କର ଏହି ବୈପ୍ଳବିକ ଚେତନା କବିମାନଙ୍କୁ ପ୍ରଭାବିତ କରିଥିଲା । ତେଣୁ ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ପୁଞ୍ଜିବାଦୀ ସଭ୍ୟତା ବିରୋଧରେ ଯେଉଁ ସଚେତନତା ପ୍ରକଟିତ ହୋଇଥିଲା, ଚତୁର୍ଥ ଦଶକ ବେଳକୁ ତାହା ଅଧିକ ସନ୍ନଦ୍ଧ ଓ ସାମୂହିକ ଭାବେ ଭାରତୀୟ

କାବ୍ୟଧାରାକୁ ନିୟନ୍ତ୍ରିତ କରିଥିଲେ । ହିନ୍ଦୀ ସାହିତ୍ୟର କବି ତ୍ରିଲୋଚନ ଶାସ୍ତ୍ରୀ, ରାମଧାରୀ ସିଂହ ଦିନକର, ମୁକ୍ତିବୋଧ, ତାମିଲ କବି ଦାଶୀଦାଶନ, ତେଲୁଗୁ ସାହିତ୍ୟର ନଗ୍ନମୂନି କବିଗୋଷ୍ଠୀ, ବଙ୍ଗଳା ସାହିତ୍ୟର କାଜି ନଜରୁଲ୍ ଇସଲାମ୍ ପ୍ରମୁଖ କବିଗଣ ପୁଞ୍ଜିବାଦର ଉଚ୍ଛେଦ ପାଇଁ କବିତା ମାଧ୍ୟମରେ ଆହ୍ୱାନ ଦେଇଥିଲେ ।

ତ୍ରିଲୋଚନ ଶାସ୍ତ୍ରୀ 'ଧରତୀ ଏକାଧିକାର କେ ପଞ୍ଜେ ମେଁ'ରେ ଉଲ୍ଲେଖ କରିଥିଲେ—"ପୁଞ୍ଜିବାଦ ସମସ୍ତଙ୍କର ମହତ୍ତ୍ୱ ନଷ୍ଟ କରିଛି—ଜୀବନର, ଜନ-ସାଧାରଣଙ୍କର, ସମାଜର, କଳାର, ବିଜ୍ଞାନର । ଏହାର ମୂଳୋତ୍ପାଟନ ବିନା ସାମାଜିକ ପ୍ରଗତି ବାଧାପ୍ରାପ୍ତ ହେବ (୮) ।" ଦିନକରଙ୍କ ଭାଷାରେ-"ଗରିବର ଲହୁରେ ପୁଞ୍ଜିବାଦର ପ୍ରାଚୀର ଗଠିତ । ତେଣୁ ହେ କୃଷକ ଓ ମଜଦୁର ସଂଘ ଏହି ପୁଞ୍ଜିବାଦ ବିରୋଧରେ ସ୍ୱର ଉତ୍ତୋଳନ କର" (୯) । ମୁକ୍ତିବୋଧ 'ତାର ସପ୍ତକ'ରେ ପୁଞ୍ଜିବାଦୀ ସଭ୍ୟତାର ବିଳାସ-ବ୍ୟସନ ଓ ଚକ୍ରାନ୍ତଧାରାକୁ ଘୃଣାସ୍ପଦ ଓ ଏହା ଧ୍ୱଂସର ନିକଟବର୍ତ୍ତୀ ବୋଲି ମତ ଦେଇଛନ୍ତି (୧୦) । ବଙ୍ଗୀୟ କବି ନଜରୁଲ୍ ଇସଲାମ୍‌ଙ୍କ 'ବିଦ୍ରୋହୀ' ଶୀର୍ଷକ କବିତାରେ ସମାଜର ଶ୍ରେଣୀ ବୈଷମ୍ୟର ସୂଚନା ଦିଆଯିବା ସଙ୍ଗେ ସଙ୍ଗେ ପୁଞ୍ଜିବାଦର ବିଲୋପ ସାଧନ ପାଇଁ କ୍ରାନ୍ତିର ସଙ୍କେତ ପ୍ରଦତ୍ତ ହୋଇଛି ।

### (ଖ) ସଂଘଶକ୍ତି ମାଧ୍ୟମରେ ଶ୍ରେଣୀ ସାମ୍ୟର ପ୍ରତିଷ୍ଠା

"ସଂଘ ଶକ୍ତି ବଳରେ ପୁଞ୍ଜିବାଦ-ବିରୋଧୀ ବିପ୍ଳବ ତ୍ୱରାନ୍ୱିତ ହୋଇ ପାରିବ । ସର୍ବହରାବର୍ଗ ହିଁ ସମାଜରେ ସ୍ଥିତ ଅନ୍ୟ ସମସ୍ତ ବର୍ଗର ଅସ୍ତିତ୍ୱ ଲୋପ କରି ସମାଜକୁ ଶ୍ରେଣୀ ବିହୀନ କରିବାର ଗୁରୁ ଦାୟିତ୍ୱ ବହନ କରିପାରିବ । ସମାଜକୁ ଏହି ବର୍ଗ ବିହୀନ ବ୍ୟବସ୍ଥା ଆଡ଼କୁ ଅଗ୍ରଗାମୀ କରାଇ ନେଉଥିବା ସାହିତ୍ୟ ହିଁ ଯଥାର୍ଥ ପ୍ରଗତିଶୀଳ ସାହିତ୍ୟ(୧୧) । ଆଲୋଚ୍ୟ କାଳରେ ଜଗନ୍ନାଥ ପ୍ରସାଦ ମିଳିନ୍ଦ, ନରେନ୍ଦ୍ର ଶର୍ମା, ଦିନକର ଓ ନଜରୁଲ ପ୍ରମୁଖ ସଂଘଶକ୍ତି ବଳରେ ଶ୍ରେଣୀସାମ୍ୟର ପ୍ରତିଷ୍ଠା ସପକ୍ଷରେ ଆହ୍ୱାନ ଦେଇଛନ୍ତି । ନରେନ୍ଦ୍ର ଶର୍ମାଙ୍କ 'ଲାଲରୁଷ'ରେ ସୋଭିଏତ୍ ରୁଷର ସମାଜବାଦୀ ବ୍ୟବସ୍ଥାକୁ ସ୍ୱାଗତ କରାଯାଇଛି । ସୋଭିଏତ୍‌ରୁଷ୍‌ର ପଞ୍ଚାୟତ ବ୍ୟବସ୍ଥା ନୂତନ କର୍ମ ସଂସ୍ଥାନ ମାଧ୍ୟମରେ ବେକାର ସମସ୍ୟାର ସମାଧାନ ପାଇଁ ଉଦ୍ୟମ କରିଛି । ରୁଷିଆର ଶୋଷଣ ବିହୀନ ସାମ୍ୟବାଦ ସପକ୍ଷରେ ନରେନ୍ଦ୍ର ଶର୍ମା "ଲାଲରୁଷ' କବିତା ସଂକଳନରେ ମତବ୍ୟକ୍ତ କରିଛନ୍ତି (୧୨) । ଶ୍ରେଣୀହୀନ ସାମାଜିକ ବ୍ୟବସ୍ଥା ହିଁ ସମସାଧନର ଉତ୍ସ । ନିଖିଳ ବିଶ୍ୱର ପ୍ରୟୋଜନକୁ ଏହା ପରିପୂରଣ କରିପାରିବ । ସୁମିତ୍ରାନନ୍ଦନ ପନ୍ତଙ୍କ 'ଯୁଗବାଣୀ'ର 'ମାର୍କସ୍ କେ ଗୀତ'ର ଏହା ମୁଖ୍ୟ ସ୍ୱର (୧୩) । କବି ରାଙ୍ଗେୟ ରାଘବ ମଧ୍ୟ ସମାଜରେ ଶ୍ରେଣୀସାମ୍ୟର ପ୍ରତିଷ୍ଠା ପାଇଁ ସଂଘ ଶକ୍ତିର

ଜାଗରଣ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ତାଙ୍କ ମତରେ—"ଯେଉଁଯୁଗରେ, ସାମ୍ରାଜ୍ୟବାଦ ତଥା ପୁଞ୍ଜିବାଦ ବିରୋଧରେ ଶ୍ରମିକ ତଥା କୃଷକ ସମ୍ମିଳିତ ଭାବେ ସଂଗ୍ରାମରତ, ମୁଁ ସେହିଯୁଗର ବାହକ, କାରଣ ସଂଘର୍ଷ ହିଁ ଜୀବନର ନାମାନ୍ତର (୧୪)।" ବଙ୍ଗୀୟ କବି ନଜରୁଲ ଇସଲାମ୍‌ଙ୍କ ଭାଷାରେ ମଧ୍ୟ ସାମାଜିକ ସାମ୍ୟର ସଂସ୍ଥାପନ ଏକାନ୍ତ କାମ୍ୟ—"ସେ (କବି) ସେହି ଦିନ ଶାନ୍ତ ହେବେ, ଯେଉଁଦିନ ସମାଜରେ ସାମ୍ୟ ପ୍ରତିଷ୍ଠିତ ହେବ, ଉତ୍ପୀଡ଼ିତର କ୍ରନ୍ଦନ ଯେଉଁଦିନ ପ୍ରତିଧ୍ୱନିତ ନ ହେବ ଓ ଅତ୍ୟାଚାରୀର କୃପାଣର ଝନତ୍କାର ଯେଉଁଦିନ ନୀରବ ହେବ, ସେଇ ଦିନ ତାଙ୍କର ସଂଗ୍ରାମ ଶେଷ ହେବ (୧୫) ।"

## (ଗ) ସାମାଜିକ ବୈଷମ୍ୟ ବିରୋଧରେ ଆହ୍ୱାନ

ପ୍ରଗତିବାଦୀ କବିତାରେ ଶୋଷିତ ସଂପ୍ରଦାୟର ସମସ୍ୟା ସମୂହ ଉପରେ ଆଲୋକପାତ କରାଯିବା ସଙ୍ଗେ ସଙ୍ଗେ, କବିତାକୁ ବାସ୍ତବଧର୍ମୀ ଆବେଦନ ମିଳିଥାଏ । ସୁମିତ୍ରା ନନ୍ଦନ ପନ୍ଥଙ୍କ 'ଗ୍ରାମ୍ୟା'ରେ କୃଷି ଶ୍ରମିକ ସମାଜର ଦୁଃଖ ଦୈନ୍ୟର ଯଥାର୍ଥ ଚିତ୍ର ଉପସ୍ଥାପିତ କରାଯାଇଛି । 'ବେଁ ଆଖେଁ'ରେ ଗାଁ ମହାଜନମାନଙ୍କ ଅତ୍ୟାଚାରର ଚିତ୍ର ପ୍ରଦତ୍ତ ହୋଇଛି । ବଙ୍ଗୀୟ କବି ସୁକାନ୍ତ ଭଟ୍ଟାଚାର୍ଯ୍ୟ ଉଲ୍ଲେଖ କରିଛନ୍ତି—"ଶୋଷକ ସଂପ୍ରଦାୟର ନୃଶଂସ ପ୍ରବୃତ୍ତି ବହୁ ପ୍ରାଚୀନ କାଳର । ପୁରୁଣା ଧନ୍ଦା ଭଳି ଏହାର ସମାଧାନ ଦୁଷ୍କର । ଦରିଦ୍ର, ଧନିକ ପାଇଁ ଖାଦ୍ୟପେୟର ବ୍ୟବସ୍ଥା କରେ । କିନ୍ତୁ ବିନିମୟରେ ଉପଯୁକ୍ତ ପାରିଶ୍ରମିକ ତାକୁ ମିଳେ ନାହିଁ। ଅଭିଜାତ ଗୋଷ୍ଠୀର ଆତ୍ମ-ପ୍ରଶସ୍ତି ରୂପକ ଢୋଲର ଖୋଲ ଗରିବ ଲୋକର ଚମଡ଼ାରେ ପ୍ରସ୍ତୁତ ହୋଇଥାଏ (୧୬)।" 'ଏକଟି ମୁରୁଗେର କାହାଣୀ'ରେ ଦରିଦ୍ର ଜନତାକୁ ମୁଗୀ ରୂପକ ଛଳରେ ପ୍ରକାଶ କରା ଯାଇଛି । ଧନିକ ଗୋଷ୍ଠୀର ଶୋଷଣ ଜାଲରେ ଏହି ମୁର୍ଗୀ ଆବଦ୍ଧ, ଏକାନ୍ତ ଭାବେ ଅସହାୟ, ସେମାନଙ୍କ ମଧ୍ୟରେ—ଖାଦ୍ୟ-ଖାଦକର ସମ୍ବନ୍ଧ । ସୁତରାଂ ଧନିକ ଗୋଷ୍ଠୀର ଯୂପକାଠରେ ଅବଶେଷରେ ତାକୁ ବଳି ପଡ଼ିବାକୁ ହୁଏ (୧୭) । ଏଣୁ ହିନ୍ଦୀ ସାହିତ୍ୟର କବି ନିରାଲା (ସୂର୍ଯ୍ୟକାନ୍ତ ତ୍ରିପାଠୀ) ଆହ୍ୱାନ ଦେଇଛନ୍ତି—"ଶୀଘ୍ର ଶୀଘ୍ର ପାଦ ବଢାଅ । ଅମୀରଙ୍କ ଘରଆସକୁ ମାଡ଼ିଆସ । ଏହା ହେବ ଦିନ ମଜୁରିଆଙ୍କ ପାଠଶାଳା । ସମାଜର ଯେତେ ଧୋବା, ତେଲି, ଚମାର, ପ୍ରଭୃତି ନିଷ୍ପେଷିତ, ଅତ୍ୟାଚାରିତ, ଦଳିତ ଜାତି, ଆସ । ଅମୀରଙ୍କ ଅନ୍ଧାର ଭଣ୍ଡାର ଘର ଖୋଲି ଦିଅ । ସେଠାରେ ପାଠ ପଢିବା ପାଇଁ ବସି ଯାଅ (୧ ) ।" ସାମାଜିକ ବୈଷମ୍ୟର ବିଲୋପ ସାଧନ ହିଁ ନିରାଲାଙ୍କ କଳ୍ପିତ ଏହି ସାମ୍ୟବାଦୀ ବିଦ୍ୟାଳୟର ଆଭିମୁଖ୍ୟ ।

## ଧର୍ମୀୟ ସଂକୀର୍ଣ୍ଣତା ବିରୋଧରେ ସ୍ୱର ଉତ୍ତୋଳନ

ଧର୍ମାନୁଷ୍ଠାନ ତଥା ପୌରୋହିତ୍ୟବାଦର ସଂକୀର୍ଣ୍ଣତା ବିରୋଧରେ ପ୍ରଗତିବାଦୀ କବିତାରେ ବୈପ୍ଳବିକ ଚିନ୍ତା ପ୍ରକଟିତ । ହିନ୍ଦୀ କବିତାରେ ଜୟଶଙ୍କର

ଭଟ୍ଟଙ୍କ 'ବିଦ୍ରୋହୀ', ଆର୍. ସି ପ୍ରସାଦ ସିଂହଙ୍କ 'ସଙ୍କଳ୍ପବ' ଅଞ୍ଚଳଙ୍କ 'ମଧୂଲିକା', ସୁମିତ୍ରା ନନ୍ଦନ ପନ୍ଥଙ୍କ 'ଗ୍ରାମ୍ୟ ଦେବତା' ଓ 'ମହାନ'ରେ ଏହି ଚିନ୍ତାଧାରା ରୂପାୟିତ । ବଙ୍ଗଳା କବିତାରେ ନଜରୁଲ୍ ଇସଲାମ୍‌ଙ୍କ "ସାମ୍ୟବାଦୀର ଗାନ' ଓ ସୁବାସ ମୁଖୋପାଧ୍ୟାୟଙ୍କ 'ବୁଡୋ ଭଗବାନ' ଧର୍ମ ଭିତ୍ତିରେ ଦରିଦ୍ର ଜନସାଧାରଣଙ୍କ ଉପରେ ସଂଘଟିତ ଅତ୍ୟାଚାରର ଏକ ଏକ ଶ୍ଳେଷଶାଣିତ ଆକ୍ଷେପ ।

ଶତାବ୍ଦୀ ଶତାବ୍ଦୀ-ବ୍ୟାପୀ ଅପମାନର ଭାର ଶିରରେ ବହନ କରିଥିବା ନରନାରୀଗଣମାନଙ୍କୁ ଦୁଃଖ ଓ ଦୈନ୍ୟରୁ ମୁକ୍ତ କରିବା ପାଇଁ କବିଗୁରୁ ରବୀନ୍ଦ୍ରନାଥ ମଧ୍ୟ ଆକାଙ୍କ୍ଷା ପୋଷଣ କରିଥିଲେ—

"ଅନେକ ଶତାବ୍ଦୀ ଧରେ ନାମେ ଶିରେ ଅପମାନ ଭାର
ମାନୁଷେର ନାରାୟଣ ତବୁଓ କରନା ନମସ୍କାର
ତବୁ ନତ କରି ଆଖିଁ ଦେଖିବାରେ ପାଓ ନାକି
ନେମେଛେ ଧୂଲାର ତଲେ ହୀନ ପତିତେର ଭଗବାନ
ଅପମାନ ହଥେ ହବେ ସେଥା ତୋରେ ସବାରେ ସମାନ (୧୯) ।"

.........ବଙ୍ଗୀୟକବି ନଜରୁଲ୍ ଇସଲାମଙ୍କ କବିତାରେ ଏହି ସ୍ୱର ଏକାନ୍ତ ଆବେଗ-ପ୍ରବଣ । ସାମ୍ୟବାଦୀ ଇସ୍ଲାମର ଅନୁଯାୟୀ, ମାନବ ହିଁ ଈଶ୍ୱରଙ୍କ ସର୍ବଶ୍ରେଷ୍ଠ ସୃଷ୍ଟି । କିନ୍ତୁ ତଥାକଥିତ ବର୍ଣ୍ଣଭେଦର ଦ୍ୱାହିରେ ପୁରୋହିତ ମଣ୍ଡଳୀ ମନ୍ଦିର ପ୍ରାଙ୍ଗଣରୁ ସେମାନଙ୍କୁ ବାସନ୍ଦ କରିଥାନ୍ତି (୨୦) ।

ହିନ୍ଦୀ ସାହିତ୍ୟର କବି ରାମଧାରୀ ସିଂହ ଦିନକର ମଧ୍ୟ ଅନ୍ଧବିଶ୍ୱାସ ପରିଚାଳିତ ସମାଜର ଧର୍ମ ବ୍ୟବସ୍ଥାକୁ ବିଦ୍ରୂପ କରିଛନ୍ତି । ତାଙ୍କ ମତରେ ନରମେଧ ଯଜ୍ଞର ପଞ୍ଚ-ପୁରୋଧା ଆଜି ଜନ୍ଦ୍ୱନ୍ଦ୍ୱରେ ସାମାଜିକ ଜୀବନର ଶୀର୍ଷ ସ୍ତରରେ ଉପନୀତ । ଦରିଦ୍ରର ଜୀବନ ଧାରଣ ଏକ ସମସ୍ୟା । କାରଣ ଈଶ୍ୱର ଧନୀକର ଗୃହବନ୍ଦୀ (୨୧) ।

## (ଙ) ନାରୀପ୍ରତି ପ୍ରଗତିବାଦୀ ଦୃଷ୍ଟିଭଙ୍ଗୀ

ମନୁଙ୍କର ସ୍ୱାତନ୍ତ୍ର୍ୟରହିତା ନାରୀ ପ୍ରଗତିବାଦୀ କବିତାରେ ବିପ୍ଳବିଣୀ ଭୂମିକାରେ ଅବତୀର୍ଣ୍ଣା । ସୁମିତ୍ରାନନ୍ଦନ ପନ୍ଥଙ୍କ 'ଗ୍ରାମ୍ୟା'ରେ ଓ ଦିନକରଙ୍କ 'ନାରୀ'ରେ ସେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାବୋଧରେ ଅଭିଷିକ୍ତା । ପୁରୁଷ ଭଳି ସେ ସମାଜରେ ଏକ ସକ୍ରିୟ ଅଙ୍ଗ । ଜଗନ୍ନାଥ ପ୍ରସାଦ ମିଳିନ୍ଦଙ୍କ 'ନବୀନା'ରେ ନାରୀ 'ବୀରାଙ୍ଗନା', 'ବିଦ୍ରୋହିଣୀ', ଯୁଗାନ୍ତକାରିଣୀ ଆଦି ଉପାଧିରେ ଭୂଷିତା । ନାରୀର ଭୂମିକା କେବଳ

'ପତ୍ନୀତ୍ୱ' ମଧ୍ୟରେ ସୀମାବଦ୍ଧ ନୁହେଁ। ତାର ଏକ ସ୍ୱୟଂ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ରହିଛି। ସେ ମାନବୀ—ସମାଜର ପ୍ରଗତି ପାଇଁ ତାର ଅବଦାନ ଅପରିହାର୍ଯ୍ୟ । ସୁମିତ୍ରାନନ୍ଦନ ପନ୍ଥ, ନାରୀକୁ ବନ୍ଧନମୁକ୍ତ ହୋଇ ସେହି ସ୍ୱାତନ୍ତ୍ର୍ୟ ହାସଲ କରିବା ପାଇଁ ଆହ୍ୱାନ ଦେଇଛନ୍ତି (୨୨) ।

ଯୁଗ ଯୁଗ ଧରି ପ୍ରାଚ୍ୟ ଦେଶର ନାରୀକୁ ଦୁହିତା, ଦୁଲାଳୀ, ଜାୟା, ଜନନୀ ପ୍ରଭୃତି କୋମଳତାପ୍ରବଣ କଳ୍ପନାର ଯେଉଁ ଲଘୁପୃଷ୍ଠ ଦିଆଯାଇଥିଲା କବି ନଜରୁଲ୍ ସେହି ନାରୀକୁ ତହିଁରୁ ମୁକ୍ତ ହୋଇ ଜାଗ୍ରତର ମଣି-ମଞ୍ଜିର ବଜାଇବାକୁ ପ୍ରେରଣା ଦେଇଛନ୍ତି (୨୨) ।

## (ଚ) ଅବହେଳିତ ବର୍ଗ ପ୍ରତି ସଂବେଦନଶୀଳତା

ସାମାଜିକ ଜୀବନରେ ଅବହେଳିତ, ପତିତ, ଦୀନ, ହୀନ ବର୍ଗ ପ୍ରତି ସମବେଦନଶୀଳତା ପ୍ରଗତିବାଦୀ କବିତାର ଅନ୍ୟତମ ଉପଜୀବ୍ୟ ବସ୍ତୁ । ସାମାଜିକ ବା ଆର୍ଥିକ ବିଷମତା ଈଶ୍ୱରସୃଷ୍ଟ ନୁହେଁ, ଅଥବା ପ୍ରାରବ୍ଧ ଲବ୍ଧ ନୁହେଁ । ଏହା ତଥାକଥିତ ସମାଜପତି, ପଣ୍ଡା ପୁରୋହିତ, ରାଜା ମହାରାଜା, ଜମିଦାର ସାହୁକାର, ମହାଜନ ଗୋଷ୍ଠୀର ଅପସୃଷ୍ଟି । ଯୁଗ ଯୁଗ ଧରି ସମାଜର ନିପୀଡ଼ନରେ ଜର୍ଜରିତ, କମଷ୍ଟପୃଷ୍ଟ ସମାଜରେ ଆତ୍ମସଚେତନତା ସୃଷ୍ଟି କରି, ସାମାଜିକ ବାଧା ବିଘ୍ନର ଶୃଙ୍ଖଳ, ଅନ୍ଧବିଶ୍ୱାସ ବିରୁଦ୍ଧରେ ଦୃଢ଼ସ୍ୱର ଉଠାଇବା ପ୍ରଗତିବାଦୀ କବିତାର ଅନ୍ୟତମ ଆଭିମୁଖ୍ୟ । ଦେଶର ଅଗଣନ କୃଷକ, ଶ୍ରମିକ, ସେବାକାରୀ ଗୋଷ୍ଠୀକୁ ମୁଷ୍ଟିମେୟ ନ୍ୟସ୍ତସ୍ୱାର୍ଥ ଶୋଷକ ଗୋଷ୍ଠୀର କୁକ୍ଷିଚ୍ୟୁତ କରି ଖଟିଖିଆ ଶ୍ରମିକ-କୃଷକ ସମାଜର ପ୍ରତିଷ୍ଠା ପାଇଁ ମାର୍କସ୍ ଯେଉଁ ଆହ୍ୱାନ ଦେଇଥିଲେ ତାହା ଭାରତୀୟ ପ୍ରଗତିବାଦୀ କାବ୍ୟଚେତନାରେ ପ୍ରତିଷ୍ଠିତ ହୋଇଥିଲା ।

ହିନ୍ଦୀକବି ଭଗବତୀ ଚରଣ ବର୍ମାଙ୍କ 'ମୈଂସଗାଡ଼ି', ଦିନକରଙ୍କ 'ହିଲ୍ଲୀ' ଅଞ୍ଚଳଙ୍କ 'ଶୋଷିତ', 'ବହ ମଜଦୂର କ ଅନ୍ଧୀ ଲଡ଼କୀ', ଡ: ମହେନ୍ଦ୍ର ଭଟ୍ଟନାଗରଙ୍କ 'ଭିଖାରିନ' ଓ ନିରାଲାଙ୍କ 'ଭିକ୍ଷୁକ' ଆଦି କବିତାରେ, ଶୋଷିତ ସମ୍ପ୍ରଦାୟର ଜୀବନଧାରା ପ୍ରତି ସମବେଦନା ପ୍ରକଟିତ ହେବା ସଙ୍ଗେ ସଙ୍ଗେ ସେମାନଙ୍କୁ ସଂଗ୍ରାମ ପାଇଁ ଆହ୍ୱାନ ଦିଆଯାଇଛି । ଡ: ରାଙ୍ଗେୟ ରାଘବ କହିଛନ୍ତି 'କିଶାନ ଓ ମଜଦୁର ସମ୍ପ୍ରଦାୟ ହିଁ ସାମ୍ୟବାଦୀ ଯୁଗର ଅବତାର (୨୪) । ବଙ୍ଗୀୟ କବି ନଜରୁଲ୍ ଇସଲାମ୍ ନିର୍ଯ୍ୟାତିତ ଗୋଷ୍ଠୀର ନବ ଅଭ୍ୟୁତ୍ଥାନର ସମ୍ଭାବ୍ୟ ସଫଳତା କାମନା କରିଛନ୍ତି (୨୫) ।

## (ଛ) ମିଥିକ୍ କବିତାର ପ୍ରଗତିବାଦୀ ଭୂମିକା

ଭାରତର ପୁରାଣ ବର୍ଣ୍ଣିତ ବୀରତ୍ୱ-ସୂଚକ ଚରିତ୍ର ଗୁଡ଼ିକୁ ପ୍ରଗତିବାଦୀ କବିତାରେ ସମସାମୟିକ ସମାଜବାଦୀ ଯୁଗ ଚେତନାର ରୂପକାର ଭାବେ ଅବତାର୍ଣ୍ଣ

କରାଯାଇଛି । ହିନ୍ଦୀ କବି ଧର୍ମବୀର ଭାରତୀଙ୍କ 'କନୁପ୍ରିୟା', 'ଅନ୍ଧାଯୁଗ', ସାମ୍‌ସେର ବାହାଦୁର ସିଂହଙ୍କ 'ସମସ୍ତ ସାମ୍ୟବାଦୀ' ତଥା ବଙ୍ଗୀୟ କବି ନଜରୁଲ୍ ଇସଲାମଙ୍କ 'ଅଭିମନ୍ୟୁ', 'ସବ୍ୟସାଚୀ' ଓ 'ଫାଲ୍‌ଗୁନୀ' ଆଦି କବିତାରେ ଏହାର ସ୍ୱାକ୍ଷର ପ୍ରତି-ବିମ୍ବିତ । ଧର୍ମବୀର ଭାରତୀଙ୍କ 'ଅନ୍ଧାଯୁଗ'ରେ ଯୁଗଚେତନାର ଅବକ୍ଷୟକୁ ଅନ୍ଧଯୁଗ ସହ ତର୍କଣା କରାଯାଇଛି । ମହାଭାରତର ମିଥ୍ ମାଧ୍ୟମରେ ଏହି 'ଅନ୍ଧଯୁଗ'ରୁ ଉତ୍ତରଣର ବାର୍ତ୍ତା କାବ୍ୟିକ ସ୍ତରରେ ସୂଚିତ ହୋଇଛି । ସାମସେର ବାହାଦୁର ସିଂହଙ୍କ କବିତା 'ସମସ୍ତ ସାମ୍ୟବାଦୀ'ରେ ଧନଞ୍ଜୟ ଅର୍ଜୁନଙ୍କୁ ସାମ୍ୟବାଦୀ ଯୁଗ ବିପ୍ଳବୀ ରୂପେ ଅବତାରଣା କରାଯାଇଛି (୬୬) । ବଙ୍ଗୀୟ କବି ନଜରୁଲ୍ ଇସଲାମ୍‌ଙ୍କ 'ସବ୍ୟସାଚୀ' ଅନୁରୂପ ଭାବେ ଜଣେ ସମାଜବାଦୀ ବିପ୍ଳବୀ । ଯୁଗେ ଯୁଗେ ସାମାଜିକ ବୈଷମ୍ୟର ବିଲୋପ ପାଇଁ ସେ ଧରାବତରଣ କରିଥାନ୍ତି । ତାଙ୍କ ରଥର ସାରଥୀ ରୂପେ ଅବତୀର୍ଣ୍ଣ ହୋଇଥାନ୍ତି ଭଗବାନ ଶ୍ରୀକୃଷ୍ଣ (୬୭) । ମାର୍କସୀୟ ବାସ୍ତବବାଦୀ ବା ପ୍ରଗତିବାଦୀ କବି ଯୁଗର ପାରମ୍ପରିକ କୁସଂସ୍କାର ସମୂହରେ ପ୍ରଳୟର ଇନ୍ଧନ ସଂଯୋଗ କରେ । ଏହି ପରିପ୍ରେକ୍ଷୀରେ ପୁରାଣର 'ନଟରାଜ'ଙ୍କ ଭୂମିକା ସର୍ବଶ୍ରେଷ୍ଠ । ନଜରୁଲ୍ ଇସ୍‌ଲାମ ନିଜକୁ ପ୍ରଳୟଙ୍କରୀ 'ନଟରାଜ' ଭୂମିକାରେ ଅବତୀର୍ଣ୍ଣ କରାଇଛନ୍ତି (୬୮) । ସାଧାରଣ ଲୋକ ସମାଜ ଉପରେ ମିଥ୍‌ର ପ୍ରଭାବ ଗଭୀର ହୋଇଥିବାରୁ ଏହି ବାସ୍ତବବାଦୀ କବିଗଣ, ମିଥିକ୍ ଚରିତ୍ର ସମୂହକୁ କାବ୍ୟ ବକ୍ତବ୍ୟର ଏକ ଏକ ବଳିଷ୍ଠ ସଂବାହକର ଭୂମିକା ପ୍ରଦାନ କରିଛନ୍ତି ।

## (ଜ) ଯୁଦ୍ଧର ବିଭୀଷିକା ବିରୋଧରେ ଆହ୍ୱାନ

ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରଳୟ ତାଣ୍ଡବ ଓ ତଦ୍‌ଜନିତ ଅନ୍ତର୍ଜାତୀୟ କ୍ଷୟକ୍ଷତିର ଚିତ୍ର ସର୍ବ ଭାରତୀୟ କାବ୍ୟଧାରାରେ ପ୍ରତିବିମ୍ବିତ ହୋଇଅଛି । ବଙ୍ଗଳା ସାହିତ୍ୟର ବିଷ୍ଣୁଦେ ଓ ହିନ୍ଦୀ ସାହିତ୍ୟର ଅଜ୍ଞେୟ (ସଚ୍ଚିଦାନନ୍ଦ ବାତ୍ସାୟନ) ତଥା ଦିନକର ପ୍ରମୁଖଙ୍କ କବିତାରେ ଏହାର ପ୍ରତିଫଳନ ଉଲ୍ଲେଖନୀୟ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ନାଜିବାଦ ବିରୋଧରେ ଯେଉଁ ପ୍ରତିକ୍ରିୟା ପ୍ରକଟିତ ହୋଇଥିଲା ଦିନକରଙ୍କ 'ହୁଙ୍କାର' ତା'ର ଏକ ଆଗ୍ନେୟ ଉଚ୍ଚାରଣ (୬୯) । ଦ୍ୱିତୀୟ ମହାସମରର ରକ୍ତପାତ ତଥା ବିଭୀଷିକାପୂର୍ଣ୍ଣ ସଂଗ୍ରାମ ବିଷ୍ଣୁଦେଙ୍କ '୧୯୪୬' କବିତାରେ ଚିତ୍ରିତ । ଏହି ସମୟରେ ଜର୍ମାନୀ, ଇଟାଲି ଓ ଜାପାନ—ଅକ୍ଷଶକ୍ତି ବର୍ଗ (Axis Powers) ଏକ ପକ୍ଷରେ ଓ ଅପର ପକ୍ଷରେ ଇଂଲଣ୍ଡ, ଆମେରିକା ଓ ରୁଷିଆ ମିତ୍ର ଶକ୍ତି (Allied Powers) ରୂପେ ବିଶ୍ୱ ମହାଯୁଦ୍ଧରେ ବ୍ୟାପୃତ ଥିଲେ । ଏହି ଯୁଦ୍ଧର ବିଭୀଷିକାକୁ ଲକ୍ଷ୍ୟକରି ବିଷ୍ଣୁଦେ କହିଥିଲେ—

"ରାଜା ରାଜାସ୍ୱ ଲଢ଼ାଇ ଚଳେ
ମୃତ୍ୟୁ ହାନେ ଭଲୁର ବନେ

× ×

ଭୂଗୋଳ ଫାମ୍ପେ ଅଗ୍ନିବାନେ" (୩୦) ।

ଯୁଦ୍ଧଲିପ୍ସୁ ପାଶ୍ଚାତ୍ୟ ରାଷ୍ଟ୍ରନାୟକଗଣଙ୍କୁ ଏଠାରେ ରାଜା ରୂପେ ଅଭିହିତ କରାଯାଇଛି । ବିସ୍ତୀର୍ଣ୍ଣ ସବୁଜ ଭୂମିର ପ୍ରାଣ ପ୍ରାଚୁର୍ଯ୍ୟ ଉପରକୁ ମୃତ୍ୟୁ ସତେ ଅବା ଝାମ୍ପି ପଡ଼ିଛି । ପୃଥିବୀର ଭୂଗୋଳ, ଅଗ୍ନିବାଣ ରୂପକ ମାରଣାସ୍ତ୍ରର ପ୍ରଚଣ୍ଡ ଆଘାତରେ ରକ୍ତଶୂନ୍ୟ ହୋଇ ପଡ଼ିଛି ।

ଅଜ୍ଞେୟଙ୍କ ହିରୋସୀମା—ଜାପାନର ହିରୋସୀମା ଉପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳୀନ ବୋମା ବିସ୍ଫୋରଣର ଏକ କାବ୍ୟିକ ପ୍ରତିକ୍ରିୟା । କବିତାର ପ୍ରକାଶ କୌଶଳ ବିବରଣୀଧର୍ମୀ ନୁହେଁ, ପକ୍ଷାନ୍ତରେ ଏହା ବ୍ୟଞ୍ଜନାଧର୍ମୀ । ସମଗ୍ର କବିତାରେ ଯୁଦ୍ଧର ନାମୋଲ୍ଲେଖ ମାତ୍ର ନାହିଁ । ଯୁଦ୍ଧର ବିଭୀଷିକାକୁ ଏଠାରେ 'କାଳସୂର୍ଯ୍ୟ' ରୂପକ ମାଧ୍ୟମରେ ପ୍ରକାଶ କରାଯାଇଛି । କାଳସୂର୍ଯ୍ୟର ରଥଚକ୍ର ସତେ ଅବା ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ହିରୋସୀମା ଉପରେ ବିଚ୍ଛୁରିତ ହୋଇ ପଡ଼ିଚି (୩୧) । ଏହାପରେ ଏକ ନିର୍ବେଦ ନିର୍ବିକଳ୍ପ ଶୂନ୍ୟତା ସମଗ୍ର ନଗରୀର ପରିସୀମାକୁ ପରିବ୍ୟାପ୍ତ ହୋଇ ଯାଇଚି । ହିରୋସୀମାର ଫଟାମାଟି ଉପରେ ମୃତ୍ୟୁ-ଦାନବର ଏ ଅବତରଣ ନିୟତିକୃତ ନୁହେଁ, ଏହା ସ୍ୱୟଂ ମାନବକୃତ । ହିରୋସୀମାର ପ୍ରସ୍ତର ଖଣ୍ଡରେ ଏବେ ତାର ଜ୍ୱଳନ୍ତ ସାକ୍ଷର ବିଦ୍ୟମାନ । ବଙ୍ଗୀୟ କବି ପ୍ରେମେନ୍ଦ୍ର ମିତ୍ରଙ୍କ ଭାଷାରେ-"ମନୁଷ୍ୟ ଏକ ଯୁଦ୍ଧ କ୍ଳାନ୍ତ ପଥିକ । ଯୁଗ ପରେ ଯୁଗ ବହୁ ଯୁଦ୍ଧର ସମ୍ମୁଖୀନ ହୋଇ ସେ ନୈରାଶ୍ୟ କବଳିତ (୩୨) । ବାସ୍ତବବାଦୀ କବି ଚେତନା ଏହି ଯୁଦ୍ଧକାଳୀନ କ୍ଷୟ-କ୍ଷତିର ଯଥାର୍ଥ ଚିତ୍ର ଅଙ୍କନ କରି ବିଶ୍ୱକୁ ଯୁଦ୍ଧର ବିଭୀଷିକାରୁ ମୁକ୍ତ କରିବା ପାଇଁ ସତତ କ୍ରିୟାଶୀଳ ।

**(ଝ) ଭାରତୀୟ ମୁକ୍ତି ଆନ୍ଦୋଳନର ଝଙ୍କାର**

ସ୍ୱାଧୀନତା ପୂର୍ବବର୍ତ୍ତୀ କାଳରେ ଭାରତୀୟ ମୁକ୍ତି ଆନ୍ଦୋଳନର ଝଙ୍କାର କାବ୍ୟ କବିତାରେ ପ୍ରତିଧ୍ୱନିତ ହୋଇଥିଲା । ହିନ୍ଦୀ ସାହିତ୍ୟର ସମାଲୋଚକ ପ୍ରେମଚନ୍ଦ ବିଜୟ ବର୍ଗୀଙ୍କ ଭାଷାରେ—" ଆଲୋଚ୍ୟ କାଳରେ ସ୍ୱାଧୀନତା ପ୍ରାପ୍ତି ପାଇଁ ଦୁଇଟି ମାର୍ଗ ପରିଲକ୍ଷିତ ହୋଇଥିଲା । ପ୍ରଥମଟି 'ଅହିଂସ ମାର୍ଗ' ଓ ଦ୍ୱିତୀୟଟି ସଶସ୍ତ୍ର କ୍ରାନ୍ତିର ମାର୍ଗ (୩୩) । ସ୍ୱାଧୀନତା ପାଇଁ ଅହିଂସ ସଂଗ୍ରାମ ମହାତ୍ମା ଗାନ୍ଧୀଙ୍କ ବୈପ୍ଳବିକ

ଚିନ୍ତାଧାରା ଉପରେ ପ୍ରତିଷ୍ଠିତ ହୋଇଥିଲା । ପରାଧୀନ ଭାରତକୁ ଔପନିବେଶିକ ଶୋଷଣରୁ ମୁକ୍ତ କରି ଏକ ପ୍ରଗତିଶୀଳ ରାଷ୍ଟ୍ରରେ ପରିଣତ କରିବା ଥିଲା ଗାନ୍ଧିଜୀଙ୍କର ଲକ୍ଷ୍ୟ । କୁଟୀର ଶିଳ୍ପର ପ୍ରସାର ଦ୍ୱାରା ଜାତିକୁ ସ୍ୱାବଲମ୍ବନଶୀଳ କରିବା ପାଇଁ ସେ ଆହ୍ୱାନ ଦେଇଥିଲେ । ବଙ୍ଗୀୟ କବି ସତ୍ୟେନ୍ଦ୍ରନାଥ ଦତ୍ତଙ୍କ କବିତାରେ ଏହି ଭାବନା ପ୍ରତିଫଳିତ—

" ଚରଖାର ଘର୍ଘର—ଆପନାର ନିର୍ଭର ।
ଗଙ୍ଗାୟ ମେଘନାୟ ତିସ୍ତାୟ ସାଡ଼ା
ଦାଣ୍ଡା ଆପନାୟ ପାୟେ ଦାଣ୍ଡା (୩୪) ।"

ଚରଖାର ଘର୍ଘର ଭିତରେ କବି ସତ୍ୟେନ୍ଦ୍ରନାଥ ଏକ ଆତ୍ମନିର୍ଭରଶୀଳ ଜାତିର ଅଗ୍ରଗାମୀ ପଦଯାତ୍ରାର ସୂଚନା ଦେଇଛନ୍ତି । ଏହା ହିଁ ଥିଲା ଗାନ୍ଧୀବାଦୀ ବାସ୍ତବତାର ମୂଳମନ୍ତ୍ର । ଭାରତମାତାର ଶୋଷିତ, ନିରସ୍ତ୍ର ନିରକ୍ଷର ଓ ନିର୍ଦ୍ଧନ ସନ୍ତାନମାନଙ୍କର ମସ୍ତକ ଦୁଃଖ, ଦୈନ୍ୟ ଓ ଭୟବୋଧରେ ଅବନତ ହୋଇଥିବା ବେଳେ ଗାନ୍ଧିଜୀଙ୍କର ସତ୍ୟ ଓ ଅହିଂସାର ମନ୍ତ୍ର ଜନଗଣର ଚେତନାକୁ ଦୁଃଖ, ଦୈନ୍ୟ ଓ ଭୟରୁ ବିମୁକ୍ତ କରି ନବ ଜାଗରଣର ଆହ୍ୱାନ ଦେଇଥିଲା (୩୫) । ସତ୍ୟ ଓ ଅହିଂସା ଏକ ଆଦର୍ଶବାଦୀ ଚିନ୍ତାଧାରା ଭଳି ପ୍ରତୀତ ହେଉଥିଲେ ମଧ୍ୟ, ଏହା ହିଁ ଥିଲା ତତ୍‌କାଳୀନ ନିରସ୍ତ୍ର ଜନତାଙ୍କର ନବ ଜାଗରଣ ପାଇଁ ମହାତ୍ମାଜୀଙ୍କର ଏକ ବଳିଷ୍ଠ ବାସ୍ତବଧର୍ମୀ ମାନସିକ ଅସ୍ତ୍ର ।

ସାଂପ୍ରଦାୟିକ ବିଦ୍ୱେଷର ଊର୍ଦ୍ଧ୍ୱରେ ସ୍ୱାଧୀନତା ପାଇଁ ବିଶ୍ୱସ୍ତ ଭାବେ ସଂଗ୍ରାମ ଥିଲା ଜାତୀୟ ନେତୃବର୍ଗଙ୍କର ଆଭିମୁଖ୍ୟ । ବଙ୍ଗୀୟ କବି ନଜରୁଲ୍ ଇସଲାମଙ୍କ କବିତାରେ ଜାତି, ଧର୍ମ ଓ ସମ୍ପ୍ରଦାୟ ନିର୍ବିଶେଷରେ ଭାରତବାସୀଙ୍କୁ ଜାତୀୟ ସଂଗ୍ରାମରେ ଆତ୍ମୋତ୍ସର୍ଗ କରିବା ପାଇଁ ଉଦ୍‌ବୋଧନ ଦିଆଯାଇଛି । ହିନ୍ଦୁସ୍ଥାନର ଦୁଇ ବିଶିଷ୍ଟ ବର୍ଗ-ହିନ୍ଦୁ ଓ ମୁସଲମାନ ସଂପ୍ରଦାୟକୁ ସେ ସମ୍ମିଳିତ ଭାବେ 'ଉତ୍ତିଷ୍ଠତ ମନ୍ତ୍ର' ଦେଇଛନ୍ତି (୩୬) ।

ଭାରତୀୟ ଜାତୀୟ ମୁକ୍ତି ସଂଗ୍ରାମର ଦ୍ୱିତୀୟ ମାର୍ଗଟି ହେଉଛି—ସଶସ୍ତ୍ର କ୍ରାନ୍ତି । ଏହା ମାର୍କସବାଦ ଦ୍ୱାରା ପ୍ରଭାବିତ ବୋଲି ସମାଲୋଚକମାନଙ୍କର ମତ । ହିନ୍ଦୀ ସାହିତ୍ୟର ବିପ୍ଳବୀ କବି ସୋହନ୍‌ଲାଲ ଦ୍ୱିବେଦୀ 'ଆର୍ଯ୍ୟାବର୍ତ୍ତ'ରେ ଏହି କ୍ରାନ୍ତିର ସୂଚନା ଦେଇଛନ୍ତି । ତାଙ୍କ ଭାଷାରେ—ସ୍ୱାଧୀନତା ଦରିଦ୍ରର ଭିକ୍ଷା ନୁହେଁ । ଅନୁନୟ ଓ ବିନୟ ଭାବଦ୍ୱାରା ଦରିଦ୍ର ଭିକ୍ଷା ଲାଭ କରିପାରେ । କିନ୍ତୁ ସ୍ୱାଧୀନତା ତଲୱାରର ହିଁ ପ୍ରାପ୍ୟ (୩୭) । ବିଦେଶୀ ଶାସନରେ ଅତ୍ୟାଚାର ପ୍ରପୀଡ଼ିତ ଜନସାଧାରଣ ନିଜ ରକ୍ତ-

ବନ୍ଦୁର ବନ୍ଦନମୟରେ ସ୍ୱାଧୀନତା ପାଇଁ ସଂଗ୍ରାମ କରିଛନ୍ତି । ସେହି ରକ୍ତର ଋଣକୁ ରକ୍ତାକ୍ତ ବିପ୍ଳବର ଧାରାରେ ପରିଶୋଧ କରିବାର ସମୟ ସମୁପସ୍ଥିତ । ବଙ୍ଗୀୟ କବି ସୁବାସ ମୁଖୋପାଧ୍ୟାୟଙ୍କ 'ଅଗ୍ନିକୋନ' କବିତାରେ ଏହି ଚେତନା ପ୍ରତିବିମ୍ବିତ (୩୮) । ସାମଗ୍ରିକ ଦୃଷ୍ଟିରୁ ଭାରତୀୟ ମୁକ୍ତି ଆନ୍ଦୋଳନର ଝଙ୍କାର ଉଭୟ ଜାତୀୟ-ବାଦୀ ତଥା ବାମପନ୍ଥୀ କାବ୍ୟଧାରାରେ ସମାନ୍ତରାଳ ଭାବେ ପ୍ରତିଫଳିତ । ଉଭୟ ପର୍ଯ୍ୟାୟର କାବ୍ୟଧାରାରେ ପରାଧୀନ ଭାରତକୁ ପ୍ରଗତିଶୀଳ ଜୀବନର ଜୟଯାତ୍ରା ପାଇଁ ଦୃପ୍ତସ୍ୱରରେ ଆହ୍ୱାନ ଦିଆଯାଇଛି ।

## (ଙ) ଗଣତନ୍ତ୍ରର ସୁରକ୍ଷା ପାଇଁ ଚେତାବନୀ

"ଜାତୀୟ ସଂଗ୍ରାମର ମୁଖ୍ୟ ଲକ୍ଷ୍ୟ ଥିଲା ସ୍ୱାଧୀନତା ଲାଭ । ସ୍ୱାଧୀନତା ପ୍ରାପ୍ତି ପରେ ଏହି ଲକ୍ଷ୍ୟ ସାମଗ୍ରିକ ଭାବେ ଦେଶର ସାମାଜିକ ଓ ଆର୍ଥିକ ବିକାଶ ଉଦ୍ଦେଶ୍ୟରେ ରୂପାନ୍ତରିତ ହୋଇଥିଲା (୩୯) ।"

ପ୍ରାକ୍ ସ୍ୱାଧୀନତା କାଳରେ ଜାତୀୟତାବାଦର ଉନ୍ମାଦନା ଓ ସଂଗ୍ରାମ-ସାଧନା ଭାରତର ସ୍ୱାଧୀନତା ପାଇଁ ଉଦ୍ଦିଷ୍ଟ ଥିଲା । ସ୍ୱାଧୀନତା ପରବର୍ତ୍ତୀ କାଳରେ ଗଣତାନ୍ତ୍ରିକ ସମାଜବାଦର ସୁରକ୍ଷା ହେଲା ଜାତୀୟ ନେତୃବର୍ଗଙ୍କର ଆହ୍ୱାନ । କିନ୍ତୁ ବାସ୍ତବତଃ ସ୍ୱାଧୀନତା ପରବର୍ତ୍ତୀ ସମୟରେ ରାଜନୈତିକ ନେତୃବର୍ଗଙ୍କ ପ୍ରତାରଣାପୂର୍ଣ୍ଣ ମନୋବୃତ୍ତି ଫଳରେ ଜାତୀୟ ଉନ୍ନତି ବାଧାପ୍ରାପ୍ତ ହୋଇଛି । ବଙ୍ଗୀୟ କବି ବନଫୁଲ (ବଳାଇଚାନ୍ଦ ମୁଖୋପାଧ୍ୟାୟ), ବିଷ୍ଣୁଦେ ଓ ହିନ୍ଦୀ ସାହିତ୍ୟର କବି ଦିନକର ଓ ସୁମିତ୍ରା ନନ୍ଦନ ପନ୍ତଙ୍କ କବିତାରେ ଏହି ସ୍ୱରର ପ୍ରତିଫଳନ ଘଟିଛି ।

ବଙ୍ଗୀୟ କବି ବନଫୁଲଙ୍କ ବ୍ୟଙ୍ଗ କବିତା 'ଅସ୍ତୁନ୍ ଦେଶେ' ସ୍ୱାଧୀନତା ପରବର୍ତ୍ତୀ କାଳରେ ନେତୃବର୍ଗଙ୍କ ପ୍ରତାରଣାପୂର୍ଣ୍ଣ ମନୋବୃତ୍ତି ଉପରେ ଆଧାରିତ । ସମଗ୍ର କବିତାର ବକ୍ତବ୍ୟ ବଙ୍ଗ ଦେଶର ଜଳାଭାବ ଉପରେ ଆଧାରିତ । କିନ୍ତୁ ଜଳାଭାବ ଏଠାରେ ବକ୍ତବ୍ୟ ପ୍ରକାଶନର ଏକ ଉପାୟ, ସ୍ୱୟଂ ବକ୍ତବ୍ୟ ନୁହେଁ । ଭାରତୀୟ ଜନ-ସାଧାରଣଙ୍କ ପ୍ରତି ନେତୃବର୍ଗଙ୍କ ଛଳନାପୂର୍ଣ୍ଣ ଆଚରଣର ଏହା ଏକ ବ୍ୟଙ୍ଗ ଭାଷ୍ୟ (୪୦) ।

ବିଷ୍ଣୁଦେ'ଙ୍କ 'ନବ ପ୍ରତିଷ୍ଠାୟ' କବିତାରେ ସ୍ୱାଧୀନତା ପରବର୍ତ୍ତୀ କାଳରେ ଭାରତବର୍ଷରେ ଜୀବନ ଯନ୍ତ୍ରଣାର କିଭଳି ନବ ପ୍ରତିଷ୍ଠା ହୋଇଛି, ତା'ର ସୂଚନା ପ୍ରଦତ୍ତ (୪୧) ।

ଦିନକରଙ୍କ 'ନୟି ସୁଭାଷିତ'ରେ ସ୍ୱାଧୀନ ଭାରତର ଶତମୁଖୀ ପାର୍ଟି ନେତୃବର୍ଗଙ୍କୁ ଆକ୍ଷେପ କରାଯାଇଛି । ଦିନକରଙ୍କ ଭାଷାରେ "ନେତୃବର୍ଗଙ୍କ କର୍ମତତ୍ପରତା ବାର୍ତ୍ତାଳାପଗୃହ ମଧ୍ୟରେ ସୀମାବଦ୍ଧ । କ୍ଷମତା-ରାଜନୀତି ବ୍ୟକ୍ତି ସ୍ୱାର୍ଥ ସାଧନର ଏକ ଅସ୍ତ୍ର (୪୨)।" ଗାନ୍ଧୀବାଦୀ ମୂଲ୍ୟବୋଧ ଏକ ଶୀତଳ ପାଉଁଶର ନିସ୍ତେଜ ଚିତାରେ ରୂପାନ୍ତରିତ । ମୂଲ୍ୟବୋଧର ଏହି ଅବକ୍ଷୟକୁ ଦିନକର 'ପରଶୁରାମ କେ ପ୍ରତୀକ୍ଷା'ରେ ବିଦ୍ରୂପ କରିଛନ୍ତି (୪୩)। ସୁମିତ୍ରା ନନ୍ଦନ ପନ୍ତ କହିଛନ୍ତି, "ମନ, ବଚନ ଓ କର୍ମର ସମର୍ପଣ ଦ୍ୱାରା ଗଣତନ୍ତ୍ରକୁ ସୁରକ୍ଷିତ କରାଯାଇପାରେ (୪୪)। ଗଣତନ୍ତ୍ରର ସୁରକ୍ଷା ବିନା ଶାସନ-ତାନ୍ତ୍ରିକ ସ୍ୱାଧୀନତା ନିରର୍ଥକ । ସାମଗ୍ରିକ ଭାବରେ ଜନସାଧାରଣଙ୍କର ନ୍ୟାଯ୍ୟଦାବୀର ଉତ୍ଥାପନ ସହ ଔପନିବେଶିକ ଶୋଷଣମୁକ୍ତ ସ୍ୱାଧୀନ ରାଷ୍ଟ୍ର ଭାରତର ସର୍ବାଙ୍ଗୀନ ବିକାଶ ଉପରେ ପ୍ରଗତିବାଦୀ କବିତାର ବକ୍ତବ୍ୟ କେନ୍ଦ୍ରୀଭୂତ ।

## ପ୍ରୟୋଗବାଦୀ କବିତାରେ ବାସ୍ତବବାଦ

"ପ୍ରୟୋଗବାଦୀ କବିତା କେବଳ ରୂପଗତ ନବୀନତାକୁ ବୁଝାଏ ନାହିଁ । ଭାଷା, ଶୈଳୀ ଓ ଛନ୍ଦରେ ରୂପାନ୍ତରୀକରଣ ସହଜସାଧ୍ୟ, କିନ୍ତୁ ପ୍ରୟୋଗବାଦୀ କବିତାରେ ଅନ୍ତରଙ୍ଗ ନବୀନତା ହିଁ ମୁଖ୍ୟ ପର୍ଯ୍ୟାୟ । ସଚ୍ଚା ପ୍ରୟୋଗବାଦୀ କବି ଅନ୍ତରଙ୍ଗ ନବୀନତାର ରୂପକାର । ନବୀନତା ଏଠାରେ କାବ୍ୟର ଭଙ୍ଗିମା, ମନ୍ତବ୍ୟ ଓ ସାମୂହିକ ପ୍ରଭାବ ସବୁ କ୍ଷେତ୍ରରେ ଏକତ୍ର ପରିଲକ୍ଷିତ ହୋଇଥାଏ (୪୫) ।"

ହିନ୍ଦୀ ପ୍ରୟୋଗବାଦୀ କବିତା ବା 'ନୟି କବିତା' ପରମ୍ପରାରେ ମୋହନୀକାନ୍ତ ସିହ୍ନା, ଭବାନୀ ପ୍ରସାଦ ମିଶ୍ର, ଭାରତ ଭୂଷଣ ଅଗ୍ରୱାଲ, ଶ୍ରୀକାନ୍ତ ବର୍ମା, ସୁଦାମା ପାଣ୍ଡେୟ (ଧୂମିଲ) ପ୍ରମୁଖ ସ୍ମରଣୀୟ । ସୁମିତ୍ରା ନନ୍ଦନ ପନ୍ତଙ୍କ 'ଲୋକାୟତନ'ରେ ଉଭୟ ପରମ୍ପରା ଓ ପ୍ରୟୋଗର ଯୁଗପତ୍ ପ୍ରଭାବ ଲକ୍ଷ୍ୟ କରାଯାଏ । ଗୁଜୁରାଟୀ କବିତାରେ ବେଣୀଭାଇ ପୁରୋହିତ, ବାଲମୁକୁନ୍ଦ ଦାଭେ, ରାଜେନ୍ଦ୍ର ସାହା, ପ୍ରହଲାଦ ପରେଖ, ପଞ୍ଜାବୀ କବିତାରେ ମୋହନ ସିଂହ, ପ୍ରୀତମ୍ ସିଂହ ଓ ଅମୃତା ପ୍ରୀତମ୍, ଉର୍ଦ୍ଦୁ କବିତାରେ ରଶ୍ମିକାନ୍ତ ରାହି ଓ ବଙ୍ଗଳା କବିତାରେ ବୁଦ୍ଧଦେବ ବସୁ, ଜୀବନାନନ୍ଦ ଦାସ ଓ ବିଷ୍ଣୁ ଦେ ଏହି ପର୍ଯ୍ୟାୟରେ ସ୍ମରଣୀୟ ।

ପ୍ରୟୋଗବାଦୀ କବିତାର ମୁଖ୍ୟ ବିଭାବ ଗୁଡ଼ିକ ହେଉଛି :—

୧ । ଯୁଗ ସଂକଟର ବାସ୍ତବ ସ୍ୱରୂପ

୨ । ଶିଳ୍ପ ସଭ୍ୟତାର ପ୍ରସାର ଫଳରେ ପଲ୍ଲୀର ଗୋଷ୍ଠୀ-କୈନ୍ଦ୍ରିକ ଜୀବନର କୈନ୍ଦ୍ରଚ୍ୟୁତି ଓ ବ୍ୟକ୍ତି-କୈନ୍ଦ୍ରିକ ନଗର ସଭ୍ୟତାର ଅଭ୍ୟୁଦୟ ।

୩ । ଯୁଗ ସଂକଟର ସମ୍ମୁଖୀନ ମିଥିକ୍ ଚରିତ୍ର ।
୪ । ପାଶ୍ଚାତ୍ୟ ପରୀକ୍ଷାଧର୍ମୀ କବିତାର ସମାନ୍ତରାଳ ଶୈଳୀର ପ୍ରତୀକ ଓ ଚିତ୍ରକଳ୍ପର ବ୍ୟାପକ ପ୍ରୟୋଗ ।

## ୧ । ଯୁଗ ସଂକଟର ବାସ୍ତବ ସ୍ୱରୂପ

ଯାନ୍ତ୍ରିକ ବୈଜ୍ଞାନିକ ଅଗ୍ରଗତି ଓ ଶିଳ୍ପ ସଭ୍ୟତାର ବିକାଶ ହେତୁ ପାରମ୍ପରିକ ଚିନ୍ତାଦର୍ଶର ଘୋରତର ପରିବର୍ତ୍ତନ ଘଟିଛି । ଏହି ପରିବର୍ତ୍ତନ ଯୋଗୁଁ, ସମାଜର ଅଭୂତପୂର୍ବ ଭୌତିକ ରୂପାନ୍ତର ହୋଇଛି । ବୈଜ୍ଞାନିକ ପ୍ରକ୍ରିୟା ଦ୍ୱାରା ମଣିଷ ଗ୍ରହ-ଗ୍ରହାନ୍ତରକୁ ଯାତ୍ରା କରିପାରିଛି, ପରମାଣୁ ଶକ୍ତିର ଉଦ୍‌ଭାବନ କରିଛି । ସେ ସମୁଦ୍ରର ଅତଳଗର୍ଭରେ ଅବଳୀଳା କ୍ରମେ ବିଚରଣ କରିପାରିଛି । ମାତ୍ର ଅପରପକ୍ଷରେ ମାନବ ସମାଜର ସ୍ୱଚ୍ଛନ୍ଦ ଜୀବନଯାତ୍ରା ହିଂସା ଦ୍ୱେଷ ପରଶ୍ରୀକାତରତାର ବହ୍ନିରେ ବିପନ୍ନ ହୋଇଛି । ଆନ୍ତର୍ଜାତୀୟ ସହାବସ୍ଥାନ ପରିବର୍ତ୍ତେ ମାରଣାସ୍ତ୍ର ପ୍ରତିଯୋଗିତା ତଥା ଶୀତଳ ଯୁଦ୍ଧର ଅନ୍ତଃସ୍ରୋତ ବିଶ୍ୱକୁ ଅସ୍ଥିର ଓ ଆତଙ୍କିତ କରିଛି । ହିନ୍ଦୀ ସାହିତ୍ୟର କବି ମୋହନଲାଲ ସିହ୍ନା ସାଂପ୍ରତିକ ଯୁଗର ଦୁଇ ବିଶିଷ୍ଟ ପ୍ରବୃତ୍ତି ସମ୍ବନ୍ଧରେ ମତ ଦେଇ ଉଲ୍ଲେଖ କରିଛନ୍ତି :

"ଆମେ ଯୁଦ୍ଧ ପାଇଁ ବନ୍ଧୁକ, ପରମାଣୁ ବୋମା, ଗୋଳା, ଗ୍ୟାସ ଆଦି ଯେଉଁଭଳି ଉତ୍ପାଦନ କରୁଛୁ ଆମୋଦ ପ୍ରମୋଦ ପାଇଁ ସିଗାରେଟ୍ ପାଇପ, ଘଡ଼ି, ଚଷମା, ସ୍ନୋ, ସିନେମା ଓ କ୍ରିମ୍ ଆଦି ସେହିଭଳି ପ୍ରସ୍ତୁତ କରୁଛୁ (୪୬) ।" ସାଂପ୍ରତିକ ବିଶ୍ୱର ସମର ତଥା ସଂକ୍ଷୋଭ ସଂପ୍ରୀତିକୁ ଏଠାରେ ଶ୍ଳେଷଶାଣିତ କଣ୍ଠରେ ଆକ୍ଷେପ କରାଯାଇଛି । ନଗର ସଭ୍ୟତାର ଅନ୍ତଃରୂପ ଉନ୍ମୋଚନ ମଧ୍ୟରେ ଏହି ଯୁଗ ସଂକଟର ସ୍ୱରୂପ ଅଧିକ ସୁସ୍ପଷ୍ଟ ହୋଇଛି ।

## ୨ । ନଗର ସଭ୍ୟତାର ଅଭ୍ୟୁଦୟ

ପ୍ରୟୋଗବାଦୀ କବିତାରେ ଆଧୁନିକ ନଗର ଜୀବନର ଧାରାକୁ ଶ୍ଳେଷାତ୍ମକ ସ୍ୱରରେ ବିଦ୍ରୂପ କରାଯାଇଛି । ବଙ୍ଗୀୟ କବି ବିଷ୍ଣୁ ଦେ'ଙ୍କ 'ସ୍ମୃତି ସତ୍ତା ଓ ଭବିଷ୍ୟତ'ରେ ନଗର ଏକ ଜୀବନ୍ତ ନରକ । ଅପଘାତ, ଅଭାବ ବୃଦ୍ଧିର ମାରପେଞ୍ଚ ତଥା ଜୀବନଧାରଣ ପାଇଁ କ୍ଷୁଦ୍ର ସଂଗ୍ରାମ ମଧ୍ୟରେ ପ୍ରାଚୀନ-ସାଂସ୍କୃତିକ ସତ୍ୟ ଅପହୃତ । ଇଂରାଜୀ କବି ଟି ଏସ୍ ଏଲିୟଟଙ୍କ ୱେଷ୍ଟଲାଣ୍ଡର 'Unreal City' ପରି ବିଷ୍ଣୁଦେଙ୍କ ଅବାସ୍ତବ ସହର, ଏକ ମୃତ୍ୟୁ ବିକାର ମାତ୍ର (୪୭) ।

ହିନ୍ଦୀ କବି ସୁମିତ୍ରାନନ୍ଦନ ପନ୍ଥ "ଲୋକାୟତନର' 'ସଂସ୍କୃତି ଦ୍ୱାର'ରେ ଉଲ୍ଲେଖ କରିଛନ୍ତି—"ସାଂସ୍କୃତିକ ସ୍ୱର୍ଗ, ନଗର ପରମ୍ପରା ନୁହେଁ, ପଲ୍ଲୀ ପରମ୍ପରାରେ

ହିଁ ସମ୍ଭବ । ନଗର ସଭ୍ୟତାର ତଥାକଥିତ ସୁଖ, ନରକର ନାମାନ୍ତର (୪୮) । ନଗର ସଭ୍ୟତାର ନରକ କୁଣ୍ଡ ମଧ୍ୟରେ ଧର୍ମ, ସଂସ୍କୃତି ଓ ପ୍ରଣୟ-ସମେତ ସାମଗ୍ରିକ ଭାବେ ଜୀବନର ଧାରା ଅବକ୍ଷୟଗ୍ରସ୍ତ । ହିନ୍ଦୀ କବି ମୋହନଲାଲ ସିହ୍ନା ଏହିଭଳି ସଭ୍ୟ ମନୁଷ୍ୟଙ୍କୁ 'ବଦ୍‌ସୁରତ', 'ଭୟଙ୍କର' ତଥା 'କ୍ରୂର' ଆଖ୍ୟା ଦେଇଛନ୍ତି (୪୯) । ବାସ୍ତବବାଦୀ କବିଚେତନା ଚଳନ୍ତ ନଗର ଜୀବନର ଏହି କୁତ୍ସିତ ସ୍ୱରୂପକୁ ସାକାର କରିଛନ୍ତି । ସୌନ୍ଦର୍ଯ୍ୟର ଦୋହାଇ ଦେଇ ସତ୍ୟକୁ ପ୍ରତ୍ୟାଖ୍ୟାନ କରିନାହାନ୍ତି ।

ମହାନଗରୀର ଜୀବନଧାରା ବଙ୍ଗୀୟ କବି ଜୀବନାନନ୍ଦ ଦାସଙ୍କ ଭାଷାରେ ପ୍ଲେଗ୍ ରୋଗ୍ ସହ ତୁଳନୀୟ । କବିଙ୍କର 'ଏଇ ନିଦ୍ରା' ଶୀର୍ଷକ କବିତାରୁ ଏହାର ଦୃଷ୍ଟାନ୍ତ ଉଦ୍ଧାର କରାଯାଇପାରେ । ମନୁଷ୍ୟର ଜୀବନଧାରାକୁ ଗ୍ରାସ କରିଛି କାଳଦୂତ ମହାମାରୀ—'ବ୍ୟୁବୋନିକ ପ୍ଲେଗ୍' । କବି ଜୀବନାନନ୍ଦ 'ବ୍ୟୁବୋନିକ ପ୍ଲେଗ'କୁ ଚିତ୍ରକଳ୍ପ ରୂପେ ପ୍ରୟୋଗ କରିଛନ୍ତି । ନଗର ସଭ୍ୟତାର ଭୀଭତ୍ସ ପରିଣତିକୁ ଏଠାରେ 'ବ୍ୟୁବୋନିକ ପ୍ଲେଗ୍' ରୂପେ ଅଭିହିତ କରାଯାଇଛି । ସମଗ୍ର ଜୀବନାନୁବୋଧକୁ ଆଚ୍ଛନ୍ନ କରିଛି ଅରାଜକତାର କୃଷ୍ଣଚ୍ଛାୟା (୫୦) । ରୋମାଣ୍ଟିକ କବିତାର ସ୍ୱପ୍ନବିଳାସ ତଥା ପ୍ରଗତିବାଦୀ କବିତାର ବୈପ୍ଳବିକ କାବ୍ୟୋତ୍ସାହ ଏଇ ପରିପ୍ରେକ୍ଷୀରେ ଅନ୍ତର୍ହିତ ହୋଇଛି ।

### ୩ । ପରିବର୍ତ୍ତିତ ମିଥିକ୍ ଚରିତ୍ର

ମିଥିକ୍ ଚରିତ୍ରଗୁଡ଼ିକ ପ୍ରୟୋଗବାଦୀ କବିତାରେ ଭିନ୍ନ ରୂପରେ ଆତ୍ମପ୍ରକାଶ କରିଛନ୍ତି । ପ୍ରଗତିବାଦୀ କବିତାର 'ଫାଲଗୁନି', 'ଅଭିମନ୍ୟୁ', 'ଶ୍ରୀକୃଷ୍ଣ' ଆଦି ବିପ୍ଳବାତ୍ମକ ଚରିତ୍ର ପ୍ରୟୋଗବାଦୀ କବିତାର ତୀବ୍ର ଯୁଗ ସଙ୍କଟର ସମ୍ମୁଖୀନ ହୋଇଛନ୍ତି । ଆମର ଶାଶ୍ୱତ ମୂଲ୍ୟବୋଧର କେନ୍ଦ୍ରଚ୍ୟୁତି ଏହା ମାଧ୍ୟମରେ ଅଭିବ୍ୟକ୍ତ ହୋଇଛି ।

ବଙ୍ଗୀୟ କବି ବିଷ୍ଣୁ ଦେ'ଙ୍କ ଦୀର୍ଘ ମିଥିକ୍ କବିତା 'ଜନ୍ମାଷ୍ଟମୀ'ରେ ସାଂପ୍ରତିକ ସମୟର ଅବକ୍ଷୟକୁ କାବ୍ୟିକ ରୀତିରେ ଅବତାରଣା କରାଯାଇଛି । କବିତାର ନାମ 'ଜନ୍ମାଷ୍ଟମୀ' । କିନ୍ତୁ ଶ୍ରୀକୃଷ୍ଣଙ୍କ ଜନ୍ମ ଏଠାରେ ବିଡ଼ମ୍ବିତ । କାରଣ 'ଶ୍ରୀମଦ୍ ଭାଗବତ'ର ଅଷ୍ଟମ ସନ୍ତାନର ଜନନୀ ଦେବକୀ ଏଠାରେ ଅକାଳମୃତ୍ୟୁର ଶିକାର ହୋଇଛନ୍ତି (୫୧) । କାଳର ଅବକ୍ଷୟ ମଧ୍ୟରେ ସଭ୍ୟ ମଣିଷ ଜୀବନର ପୁନଃ-ସଂସ୍ଥାନ ପାଇଁ ନିରୁତ୍ସାହିତ । ବହିର୍ମୁଖୀ ସ୍ଥିତିର ବିନ୍ୟାସ ତାର କାମ୍ୟ । ଜୀବନକୁ ସେ 'ଗୃହ ଓ ତାସ ଖେଳ' ଭଳି ଲଘୁ ଭାବରେ ଗ୍ରହଣ କରେ (୫୨) । କିନ୍ତୁ ବ୍ୟାଧି ଓ ଉତ୍ତେଜନା କବଳରୁ ତା'ର ମୁକ୍ତି କାହିଁ ? ଘର ତା' ପାଇଁ ବୈକୁଣ୍ଠ

ସମାନ ସୁନ୍ଦର ନୁହେଁ । ତାସ ଖେଳର ଉତ୍ତେଜନା ପରେ ତା'ର ଗୃହ ପ୍ରବେଶ–ସେଇଁଠାରେ ଆଧୁନିକ ନଚିକେତାଙ୍କୁ ଅମ୍ଳଶୂଳ ଓ ସର୍ଦ୍ଦିକାଶ ଭୋଗିବାକୁ ପଡ଼ିବ । ଜୀବନର ନାନାଦି ସଂକ୍ଷିପ୍ତ ମୁହୂର୍ତ୍ତରେ ଅଶାନ୍ତିରେ ସେ ପୀଡ଼ିତ ହେବ ।

ବାସ୍ତବବାଦୀ କବି କିନ୍ତୁ ଆଶାବାଦୀ । ମୂଲ୍ୟବୋଧର ବିଚ୍ୟୁତି ସେ ଦର୍ଶାଇ, ଜନମାନସକୁ କେବଳ ନୈରାଶ୍ୟ ଜର୍ଜ୍ଜରିତ କରନ୍ତି ନାହିଁ । ସୁତରାଂ ଯୁଗ ଓ ଜୀବନର ନିରନ୍ଧ୍ର ଅନ୍ଧକାରକୁ ଭେଦକରି ପଞ୍ଚାଗ୍ନିର ପ୍ରଦୀପ ପ୍ରଜ୍ଜ୍ୱଳିତ ହୁଏ (୫୩) ।

୪ । କାବ୍ୟଶୈଳୀ

ବାସ୍ତବବାଦୀ କବିତାର ବକ୍ତବ୍ୟ ଭଳି ଏହାର ଅଭିବ୍ୟକ୍ତି କୌଶଳ ମଧ୍ୟ ଆଳଂକାରିକତାମୁକ୍ତ ହୋଇଥାଏ । ସୁତରାଂ ଛନ୍ଦର ବନ୍ଧନ ପରିବର୍ତ୍ତେ ମୁକ୍ତଛନ୍ଦ (Verse Libre or free verse) ଓ କ୍ଲିଷ୍ଟ ତତ୍ସମ ଶବ୍ଦର ବାହୁଲ୍ୟ ପରିବର୍ତ୍ତେ ତତ୍ସମ ଓ ଦେଶଜ ଶବ୍ଦର ଯୁଗପତ୍ ମିଳନ ଏଠାରେ କାବ୍ୟିକ ଗଠନରେ ସଂସାଧିତ ହୋଇଥାଏ । ବଙ୍ଗଳା ସାହିତ୍ୟର କବି ସୁବୋଧ ମୁଖୋପାଧ୍ୟାୟଙ୍କ "ବାଘବନ୍ଦୀ" କବିତାରୁ ଏହାର ଦୃଷ୍ଟାନ୍ତ ଦିଆଯାଇ ପାରେ ।

"ଯଖନ ସିନେମା ଭାଙ୍ଗାୟ ଯାତ୍ରୀଦେର ଠ୍ୟାଂକେ ଗୁଞ୍ଜେ
ରାତ୍ରେର ଶେଷ ଟ୍ରାମ
ନ୍ୟାଚତେ ନ୍ୟାଚତେ ଗୁମଟିତେ ଫିରେ (୫୪) ।"

"ରାତ୍ରି" ଯାତ୍ରୀ ଭଳି ତତ୍ସମ ଶବ୍ଦସହ ଏଠାରେ 'ଗୁମ୍‌ଟି' 'ଗୁଂଜେ' ଆଦି ଦେଶଜ ଶବ୍ଦ ସମାନ୍ତରାଳ ଭାବେ ପ୍ରଯୁକ୍ତ । କବିତାରେ ତିନୋଟି ପାଦ ମଧ୍ୟରୁ ପ୍ରଥମ ପାଦଟି ସତର, ଦ୍ୱିତୀୟ ସାତ, ତୃତୀୟ ବାର ଅକ୍ଷର-ବିଶିଷ୍ଟ । କବିତାଟି ପାରମ୍ପରିକ ଅକ୍ଷର ନିୟମ ଛନ୍ଦ ବନ୍ଧନରୁ ବିମୁକ୍ତ ଓ ମୁକ୍ତ ଛନ୍ଦର ବାହକ ।

ମାର୍କସୀୟ ବାସ୍ତବବାଦୀ ବା ପ୍ରଗତିବାଦୀ କବିତାରେ ବିପ୍ଳବାତ୍ମକ ରୂପକର ବହୁଳ ପ୍ରୟୋଗ ଲକ୍ଷ୍ୟ କରାଯାଏ । ହିନ୍ଦୀ ସାହିତ୍ୟର କବି ଶିବ ମଙ୍ଗଳ ସିଂହ ସୁମନଙ୍କ 'ୟୁଗ କା ମୌଲ' କବିତାରେ 'ଲାଲବର୍ଣ୍ଣ' ବିପ୍ଳବର ରୂପକ ଭାବେ ଚିତ୍ରିତ—

"ଅନ୍ଧେରା ନଶାମେ ମଶାଲେଁ ସି ଜଲତି
ଚଲିଜା ରହି ହୈ ବଢ଼ି ଲାଲ ସେନା (୫୫) ।"

ରକ୍ତ ରଙ୍ଗର 'ମଶାଲ' ଓ 'ଲାଲ ସେନା' ଏଠାରେ ବିପ୍ଳବର ଦୁଇ ରୂପକ । ବଙ୍ଗଳା ସାହିତ୍ୟର କବି ନଜରୁଲ୍ ଇସଲାମଙ୍କ କବିତାରେ ବୈପ୍ଳବିକ ଚେତନା, ଆରକ୍ତ ପତାକା ରୂପକ ଛଳରେ ଅଭିବ୍ୟଞ୍ଜିତ—

"ନବୀନର ଲାଲ ଝାଣ୍ଡା ଉଡ଼ାୟେ ଆସିତେଛେ କାଲୀରୟ
ରକ୍ତ-ନିଶାନ ନହେ ସେରେ ଓରା ରକ୍ତ ଶାଖାର ଜୟ (୫୬) ।"

କିଶଳୟ ନୂତନତାର ରକ୍ତ ପତାକା ଉଡ଼ାଇ ଆସିଛୁ । ତା'ର ରକ୍ତ ସଙ୍କେତ ଶକ୍ତି ଶାଖାର ଜୟଗାନ କରୁଛି । ଦଳିତ ଜନସଂଘର ଶୁଷ୍କ ଜୀବନ ବୃକ୍ଷରେ ଏହାହିଁ ବସନ୍ତର ରକ୍ତରାଗ ।

ପ୍ରୟୋଗବାଦୀ କବିତାରେ ରୂପକ ପରିବର୍ତ୍ତେ ପ୍ରତୀକ ତଥା ଚିତ୍ରକଳ୍ପର ବ୍ୟବହାର ଅଧିକ । ବଙ୍ଗୀୟ କବି ବୁଦ୍ଧଦେବ ବସୁଙ୍କ କବିତାରୁ ପ୍ରତୀକର ଏକ ବାସ୍ତବଧର୍ମୀ ପ୍ରୟୋଗ ଉଦ୍ଧାର କରାଯାଇ ପାରେ —

"ଆମି ଛୁନୁ ଶୁକ୍ନୋ ଡ଼ାଙ୍ଗାୟ ପଡ଼େ
ଯେଖାନେ ନର୍ଜନେ
ପାଥେର ଆବର୍ଜନା, ମଗ୍‌ମାଛ, ଶ୍ୟାଓଲେ ଶାମୁକ × × (୫୭) ।"

'ଶୁକ୍‌ନୋଡ଼ାଙ୍ଗା' (ଶୁଷ୍କ ନୌକା), 'ମଗ୍‌ମାଛ)' (ମଳମାଛ)'ଶ୍ୟାଓଲେ' (ଶିଉଳି) ଆଦି ପ୍ରତୀକ, ମୃତ୍ୟୁର ହିମ ଶୀତଳତାର ବାହକ । କାବ୍ୟନାୟକର ନିଃସଙ୍ଗ ମାନସର ବାସ୍ତବ ସ୍ଥିତି ଏଇ ପ୍ରତୀକ ଗୁଚ୍ଛ ମାଧ୍ୟମରେ ସୂଚିତ ।

ଚିତ୍ରକଳ୍ପ ପ୍ରୟୋଗ କ୍ଷେତ୍ରରେ ମଧ୍ୟ ସାଂପ୍ରତିକ ବାସ୍ତବ ଜୀବନର ସ୍ୱରୂପ ସାର୍ଥକଭାବେ ପ୍ରତିଫଳିତ । ହିନ୍ଦୀ ସାହିତ୍ୟର କବି ଧୂମିଲଙ୍କ କବିତାରୁ ଏହାର ସୂଚନା ଦିଆ ଯାଉଛି —

"ତୁମହାରେ ଆତ୍ମୀୟତା
ଜଲେହୁଏ କାଗଜକା ବହ
ଉଜ୍ୱାର ହୈ (୫୮) ।"

ଜଳି ଯାଉଥିବା କାଗଜର ଫର୍ଦ୍ଦ (ଉପଭାର) ପରି ସାଂପ୍ରତିକ ନଗର ସଭ୍ୟତାର ଆତ୍ମୀୟତା ଏକାନ୍ତ କ୍ଷଣସ୍ଥାୟୀ ।

ପ୍ରଗତିବାଦୀ କବିତାରେ ରୂପକର ପ୍ରୟୋଗ ରହିଥିଲେ ମଧ୍ୟ, ଅଙ୍ଗସଜ୍ଜା ଅପେକ୍ଷା ସାଦୃଶ୍ୟ ତତ୍ତ୍ୱର ପ୍ରତ୍ୟକ୍ଷ ଉପସ୍ଥାପନ କୌଶଳ ତହିଁରେ ମୁଖ୍ୟ ଭୂମିକା ବହନ କରିଥାଏ । ପ୍ରୟୋଗବାଦୀ କବିତାରେ ଯୁଗର ଜଟିଳ ଚିନ୍ତାଧାରାକୁ ବ୍ୟଞ୍ଜନାତ୍ମକ ରୀତିରେ ଅଭିବ୍ୟକ୍ତ କରାଯାଉ ଥିବାରୁ ପ୍ରତୀକ ଓ ଚିତ୍ରକଳ୍ପର ପ୍ରୟୋଗ ସେଠାରେ ବ୍ୟାପକ । ଅଙ୍ଗ ଓ ଆତ୍ମା—ପ୍ରୟୋଗବାଦୀ କବିତାରେ ସମାନୁପାତିକଭାବେ ଗୁରୁତ୍ୱ-ପୂର୍ଣ୍ଣ । ସମନ୍ୱିତ ତତ୍ତ୍ୱର କଳାତ୍ମକ ଆବେଦନ ଏହାର ବୈଶିଷ୍ଟ୍ୟ । ଆଧୁନିକ ଓଡ଼ିଆ ପ୍ରଗତିବାଦୀ ତଥା ପ୍ରୟୋଗବାଦୀ କବିତାରେ ଏହି ଧାରା ସମାନ୍ତରାଳ ଭାବେ ପ୍ରଚଳିତ । ପରବର୍ତ୍ତୀ ପରିଚ୍ଛେଦରେ ଏହାର ପୃଷ୍ଠପଟ ବିମୃଷ୍ଟ ।

## ପାଦଟୀକା

(୧)—(କ) ବ୍ରାହ୍ମ ସମାଜର ପ୍ରତିଷ୍ଠା—୧୮୨୮ ମସିହା
(ଖ) ଆର୍ଯ୍ୟ ସମାଜର ସ୍ଥାପନା—୧୮୭୬ ମସିହା
(୨)—(କ) ୧୮୮୫ ଭାରତୀୟ ଜାତୀୟ କଂଗ୍ରେସର ସ୍ଥାପନା,
(ଖ) ୧୯୦୫ ବଙ୍ଗ-ଭଙ୍ଗ
(ଗ) ୧୯୦୬—କଲିକତା କଂଗ୍ରେସ ଅଧିବେଶନ ଓ
(ଘ) ୧୯୨୦—ଅସହଯୋଗ ଆନ୍ଦୋଳନ ।
(୩)—(କ) ମରାଠୀ ରବିକିରଣ ମଣ୍ଡଳ କବିଗୋଷ୍ଠୀ—ଓ୍ୱାଇ. ଡ଼ି. ପେଣ୍ଡାରକାର (ଯଶୋବନ୍ତ), ଏସ. କେ. କାନେଟ୍‌କାର୍ (ଗିରୀଶ), ଏମ୍. ଟି. ପଟ୍ଟବର୍ଦ୍ଧନ୍ (ମାଧବ ଜୁଲିଆନ) ପ୍ରମୁଖ ।
(ଖ) ହିନ୍ଦୀ ଛାୟାବାଦୀ କବିଗୋଷ୍ଠୀ—ମହାଦେବୀ ବର୍ମା, ସୂର୍ଯ୍ୟକାନ୍ତ ତ୍ରିପାଠୀ, ସୁମିତ୍ରା ନନ୍ଦନ ପନ୍ତ, ଜୟଶଙ୍କର ପ୍ରସାଦ, ହରିବଂଶ ରାୟବଚ୍ଚନ ପ୍ରମୁଖ ।
(ଗ) ବଙ୍ଗଳା କଲ୍ଲୋଲ କବିଗୋଷ୍ଠୀ—ଅଜିତ୍ ଦତ୍ତ, ଅଚିନ୍ତ୍ୟ ସେନଗୁପ୍ତ, ପ୍ରମଥ ନାଥ ବିଶି, ପ୍ରେମେନ୍ଦ୍ର ମିତ୍ର ପ୍ରମୁଖ ।
(୪)—(କ) ବାସ୍ତବିକା—୧୯୨୦ ମସିହା
(ଖ) କାଳିକଲମ ପତ୍ରିକା—୧୯୨୬ ମସିହା
(ଗ) ପ୍ରଗତି ପତ୍ରିକା—୧୯୨୭ ମସିହା
(୫)—"ପ୍ରିୟ ଫୁଲ ଖେଲିବାର ଦିନ ନୟେ ଅଦ୍ୟ
ଧ୍ୱଂସେର ମୁଖୋମୁଖି ଆମ୍‌ରା
ଚୋଖେ ଆର ସ୍ୱପ୍ନେର ନେଇ ନୀଲ୍ ମଦ୍ୟ
କାଠଫାଟା ରୋଦ ସେକେ ଚାମଡ଼ା । (ମେୟେ ଦିନେର କବିତା)
ସୁଭାସ ମୁଖୋପାଧ୍ୟାୟର ଶ୍ରେଷ୍ଠ କବିତା—ପୃ-୧୩
(୬)—"ଯୁଗବାଣୀ ମେଁ ଯୁଗକେ ସମସ୍ୟାୟୋଁ କୋ ବାଣୀ ଦେନେକା ପ୍ରୟତ୍ନ କିୟା ହୈ । ଯଦି ଯୁଗକା ମନୋବୃତ୍ତି କା କିଞ୍ଚିତମାତ୍ର ଆଭାସ ଇସ ମେଁ ମିଲସକା ତୋ ମୈଁ ଅପ୍‌ନେ ପ୍ରୟାସକୋ ବିଫଳ ନହି ସମଝୁଁଗା ।" (ଯୁଗବାଣୀ-ବିଜ୍ଞାପନ)
(୭)—"ସାହିତ୍ୟ କେବଳ ମନୋରଞ୍ଜନକି ବସ୍ତୁ ନହିଁ ହୈ । ହମ୍ ଏସା ସାହିତ୍ୟ ନିର୍ମିତ କରନା ଚାହତେ, ଜିସ୍ ମେଁ ବର୍ତ୍ତମାନ ବିପନ୍ନାବସ୍ଥା କା ପ୍ରତିବିମ୍ବ ଔର ପରିତ୍ରାଣ ପାନେ କି ଆଶାପୂର୍ଣ୍ଣ ସନ୍ଦେଶ ନିହିତ ହୈ ।"
ହିନ୍ଦୀକାବ୍ୟମେଁ ପ୍ରଗତିବାଦ—ପୃ-୩୧-୩୨

(୮)—"ପୁଞ୍ଜିବାଦ ନେ ମହତ୍ତ୍ୱ ନଷ୍ଟ କରଦିୟା ସବ୍‌କା
ଜୀବନକା, ଜନକା, କଲାକା, ସଂସ୍କୃତିକା
ବିନା ପୁଞ୍ଜିବାଦ କେ ମିଟାୟେ କିସୀ ତରହ ଭୀ
ସ୍ୱସ୍ଥ ଜୀବନ ସମ୍ଭବ ନହିଁ ହୋ ସକତା
ଜ୍ଞାନ ବିଜ୍ଞାନ କିସୀ ପ୍ରକାର କୋଇ କଲ୍ୟାଣ ନହିଁ ହୋ ସକତା"
(ଧରତୀ ଏକାଧିକାର କେ ପଞ୍ଜେମେ (ପୃ—୮୪)

(୯)—"ଆହେଁ ଉଠେଁ। ଦୀନକୃଷକୋଁ କୀ, ମଜଦୁରୋଂ ତଡ଼ପ-ପୁକାରେଁ
ଅରେ ଗରୀବୋଁ କେ ଲୋହୁ ପର ଖଡ଼ୀ ହୁଈ ତେରୀ ଦିବାରେଁ।"
(ହୁଂକାର—ଦିଲ୍ଲୀ-ପୃ-୪୭)

(୧୦)—"ଶ୍ରେଷ୍ଠ ହାସ୍ୟ କେବଲ ଘୃଣା କୀ ଦୁର୍ଗନ୍ଧ
ତେରି ରେଶମୀ ବସ୍ତ୍ର ଶବ୍ଦ—ସଂସ୍କୃତ ଅନ୍ଧ

× × ×

ତେରାଧ୍ୱଂସ କେବଲ୍ ତେରା ଅର୍ଥ।"
(ତାର ସପ୍ତକ ପୁଞ୍ଜିବାଦୀ ସମାଜକେ ପ୍ରତି ପୃ-୬୫)

(୧୧)—"ଅବ୍ ସର୍ବହରା ବର୍ଗ ସମସ୍ତ ବର୍ଗୋଂକା ଅସ୍ତିତ୍ୱ କୋ ମିଟାକର ସାରେ ସମାଜ
କୋ ଶ୍ରେଣୀବିହୀନ ବ୍ୟବସ୍ଥା ଦେଗା। ଇସି ବର୍ଗହୀନ ବ୍ୟବସ୍ଥା କୀ ଓର୍ ଲେଜାନେ-
ୱାଲା ସାହିତ୍ୟ ପ୍ରଗତିଶୀଲ ସାହିତ୍ୟ ହୈ।"
(ହିନ୍ଦୀ ସାହିତ୍ୟକେ ପ୍ରମୁଖ 'ବାଦ'ଔର ଉନ୍‌କେ ପ୍ରବର୍ତ୍ତକ-ପୃ—୧୬୩)

(୧୨)—ବହେଁ। ରାଜ ହୈ ପଞ୍ଚାୟତ କା
ବହାଁ। ନ ହୈ ବେକାରୀ
ବହାଂ ନ ଲଡ଼ତୀ ଦାଢ଼ୀ-ଚୋଟୀ
ବହାଂ ନହି ସାହୁକାର
ମିଲୋଂ ବହାଂ ମଜୁରୋଂ କୀ ହୈଂ
ଧରତୀ ସୁହାଂ କିସାନୋଁ କା
(ଲାଲ୍ ନିଶାନ-ଲାଲ୍ ରୁସ୍ ପୃ ୩୯)

(୧୩)—"ବର୍ଗହୀନ ସାମାଜିକତା ଦେଗି ସବକୋ ସମସ ସାଧନ
ପୂରିତ ହୋଙ୍ଗେ ଜନକେ ଭବ ଜୀବନ କେ ନିଖିଲ ପ୍ରୟୋଜନ
(ଯୁଗବାଣୀ—ମାର୍କସ୍ କେ ଗୀତ—ପୃ ୨୭)

(୧୪)—"ଯିସ୍ ଯୁଗମେଁ କଗ ଶ୍ରମିକ, କୃଷକ ସବ୍ ମିଲ୍ ଅପନା ବନ୍ଧନ ତୋଡ଼େଁ
ସାମ୍ରାଜ୍ୟବାଦ, ସଂପତ୍ତିବାଦ, ଶୋଷଣ କା ବଲ ହୋନା ଗ୍ରେଡେଁ
ହମ୍ ବନେ ଉସୀ ଯୁଗ କେ ବାହନ
ସଂଘର୍ଷ ହୈ ହମାରା ଜୀବନ"
(ନବ ଯୁଗ କେ ଗାନ ପୃ-୩୩)

(୧୫)—ମହା ବିଦ୍ରୋହୀ ରଣକ୍ଳାନ୍ତ ଆମି ସେଇ ଦିନ ହବ ଶାନ୍ତ
ଯବେ ଉତ୍ପୀଡ଼ିତେର କ୍ରନ୍ଦନ ରୋଲ ଆକାଶେ ବାତାସେ ଧ୍ୱନିବେନା
ଅତ୍ୟାଚାରୀର ଖଡ୍ଗ କୃପାନ ଭୀମରଣ ଭୂମେ ନାଚବେନା
ବିଦ୍ରୋହୀ ରଣକ୍ଳାନ୍ତ ଆମି ସେଇ ଦିନ ହବ ଶାନ୍ତ ।
(ବିଦ୍ରୋହୀ-ଅଗ୍ନିବୀଣା-ପୃ ୧)

(୧୬)—ବୋଲତେ ପାରେ ଧନୀର ମୁଖେ କାରା ଯୋଗାଏ ଖାଦ୍ୟ
ଧ୍ୱନିର ପାଏର ତଲାଏ ତାରା ଥାକତେ କେନୋ ବାଧ୍ୟ
ହିଙ୍ଗ, ଟିଙ୍ଗ, ଛଟ୍ ପ୍ରଶ୍ନ ଏ ସବ ମାଥାର ମଧ୍ୟେ କାମଡ଼ାଏ
ବଡ଼ ଲୋକେର ଢାକ ତଇରି, ଗରିବ ଲୋକେର ଚାମଡ଼ାଏ"
(ପୁରୋନୋ ଧାଁନ୍ଧା—ସୁକାନ୍ତ ସମଗ୍ର-୧୮୮-୧୮୯)

(୧୭)—ସୁକାନ୍ତ ସମଗ୍ର—ପୃ ୧୩

(୧୮)—"ଜଲ୍ଦି, ଜଲ୍ଦି ପୈର ବଡ଼ାଓ୍ୱୋ, ଆଓ୍ୱୋ, ଆଓ୍ୱୋ ଆଜ ଅମୀରୋଁକେ ହବେଲୀ
କିସାନୋଁ କୀ ହୋଗୀ ପାଠଶାଲା, ଧୋବୀ, ପାସୀ, ଚମାର, ତେଲୀ
ଖୋଲେଁଗେ ଅଁଧେରେ କା ତାଲା ଏକ ପାଠ ପଢ଼େଁଗେ ଟାଟ ବିଛାଓ୍ୱୋ"
(ତବଲ୍ଲି—ପୃ ୭୮)

(୧୯)—ଅପମାନିତ-ଗୀତାଞ୍ଜଳି, ପୃ—୧୧

(୨୦)—"ଗାଇ ସାମ୍ୟେର ଗାନ
ମାନୁଷେର ଚେୟେ ବଡ଼ କିଛୁ ନାଇ, ନହେ କିଛୁ ମହୀୟାନ
ନାଇ ଦେଶକାଳ ପାତ୍ରେର ଭେଦ, ଅଭେଦ ଧର୍ମ ଜାତି
ସବ୍ ଦେଶେ, ସବ୍ କାଲେ ଘରେ ଘରେ ତିନି ମାନୁଷେର ଜ୍ଞାତି
ପୂଜାରୀ ଦୁୟାର ଖୋଲୋ । କ୍ଷୁଧାର ଠାକୁର ଦାଣ୍ଡାଏ ଦୁୟାରେ
ପୂଜାର ସମୟ ହଲ ।"
(ସାମ୍ୟବାଦୀର ଗାନ, ସର୍ବହରା)

(୨୧)—"ମଜୁର ମେଧର ପୋଷକ ଦାନବ ଆଜନପଥ ନନ୍ଦ୍ୱିନ୍ନ ହୁଏ।
କେଁସେ ବଚେ ଦୀନ, ପ୍ରଭୁଭ ଧନସ୍ରୋଁ କେ ଗୃହ ବନ୍ଦ ହୁଏ"—
ରେଣୁକାପୃ-୨୮

(୨୨)—"ନଜ ବନ୍ଧନ ଖୋ, ତୁମନେ ସ୍ୱତନ୍ତ୍ରତା କୋ ଅର୍ଜିତ
ସ୍ତ୍ରୀ ନହିଁ, ଆଜ ମାନବୀ ବନଗୟି ତୁମ ବଦ୍ରୋହଣୀ
ଯିସ୍ କେ ପ୍ରିୟ ଅଙ୍ଗୋକେ ଛୁ ଅନଲତପ ପୁଲକିତ',
(ଗ୍ରାମ୍ୟା-ସୁମିତ୍ରା ନନ୍ଦନ ପନ୍ଥ-ପୃ- ୮୪)

(୨୩)—"ଓଗୋ ଓ ପ୍ରାଚୀ-ର ଦୁଲାଲୀ, ଦୁହିତା, ତରୁଣୀର
ଓଗୋ ଜାୟା ଓଗୋ ଭଗିନୀର ! ଡାକେ ସଙ୍ଗୀର
ତୋମ୍ ରନାଇଗୋ ଲାଞ୍ଛିତ ମୋର ତାଇ ଆଜ
ଉଠୁକ୍ ତୋମାର ମନ—ମଞ୍ଜିର ଘନବାଜ"
(ଅଗ୍ର-ପଥିକ-ଝଂକାର-ନଜରୁଲ୍ ଇସଲାମ୍—ପୃ ୧୪)

(୨୪—"ଆଜ ଯୁଦ୍ଧ ଅବତାର ହେଁତେ—ସ୍ୱେ ମଜଦୁର କଶାନ"
(ବଧ୍‌ଲତେ ପତ୍‌ଥ—ପୃ ୭୨—ଡ଼: ରାଙ୍ଗେୟ ରାଘବ )

(୨୫)—"ଜୟ ନପୀଡ଼ିତ ପ୍ରାନ୍।
ଜୟ ନବ ଅଭିଯାନ୍ "
(ଫରିଆଦ୍—ସବହର—ପୃ ୨୫)

(୨୬)—"ମୁକ୍ତି କା ଧନଂଜୟ ବହ
ଚିର ବଜୟୀ ବଲ ମେଁ ବହ
ଧ୍ୟେୟ ଧୀର
ସେନାନୀ
ଅବରାମ
ବାମପକ୍ଷବାଦୀ "
(ସମୟ ସାମ୍ୟବାଦୀ, ଦୁସର ସପ୍ତକ—ପୃ ୧୧୪)

(୨୭)—ଯୁଗେ ଯୁଗେ ସେ ଯେ ନବ ନବ ରୂପେ
-ଆସେ ମହା ସେନାପତି
ଯୁଗେ ଯୁଗେ ସନ୍ ଶ୍ରୀ ଭଗବାନ୍ ଯେହ୍ନିତାଁ ହରଇ
ରଥ ସାରଥି"
(ସଂଚତା—ସବ୍ୟସାଚୀ—ଫନମନସା-ପୃ ୧୦୮)

(୨୮)—" ଆମି ଚିର ଦୁର୍ଦ୍ଦମ, ଦୁର୍ବିନୀତ, ନୃଶଂସ
ମହାପ୍ରଳୟର ଆମି ନଟରାଜ, ଆମି ସାଇକ୍ଳୋନ୍, ଆମି ଧ୍ୱଂସ
(ବିଦ୍ରୋହୀ -ସଞ୍ଚିତା-ପୃ ୧)

(୨୯)—"ରାଇନ ତଟ ଥିଲ୍ ସଭ୍ୟତା, 'ହିଟଲର' ଖଡ଼ା କୌନ ବୋଲେ ?
ଶସ୍ତା ଖୂନ୍ ଯୁଦ୍ଧବାଜା ହୌ 'ନାଜୀ' ନିଜ ସ୍ୱସ୍ତିକ ଧୋ ଲେଁ ।"
(ହୁଙ୍କାର—ପୃ ୪୨)

(୩୦)—(୧୯୪୨—ସାତ ଭାଇଚମ୍ପା—ବର୍ଚ୍ଛର ପଚଶ—ବିଷ୍ଣୁଦେ—ପୃ ୪୪୨)

(୩୧)—"କାଲ ସୂର୍ଯ୍ୟ କେ ରଥକେ ପହିୟୋଁ କେ
ଜ୍ୟୋଁ ଅରେ ଟୂଟକର ବିଖର ଗୟେ ହୋଁ
ଦଶୋ ଦିଶାୟେଁ ତମେଁ × × ×
(ହରୀଘାସପର କ୍ଷଣଭର—ସଚ୍ଚିଦାନନ୍ଦ ହୀରାନନ୍ଦ ବାତ୍ସ୍ୟାୟନ)

(୩୨)—"ଆଛେ ଏକ କ୍ଳାନ୍ତ ପଦାତିକ
ଯୁଗେ ଯୁଗେ ସବ ଯୁଦ୍ଧେ ହେରେ ଫିରେ ଆଶା
କ୍ଳାନ୍ତ ପଦାତିକ"
(କ୍ଳାନ୍ତ ପଦାତିକ—ପ୍ରେମେନ୍ଦ୍ର ମିତ୍ର)

(୩୩)—"ଆଲୋଚ୍ୟ କାଲ ମେଁ ସ୍ୱତନ୍ତ୍ରତା ପ୍ରାପ୍ତ କେ ଦୋ ମାର୍ଗ ସାମନେ
ଆୟେଥେ, ଏକ ତୋ ଅହିଂସା କା ମାର୍ଗ, ଦୂସରା ସଶସ୍ତ୍ର କ୍ରାନ୍ତି କା ମାର୍ଗ..."
(ପ୍ରେମଚନ୍ଦ ଏବଂ ବର୍ତ୍ତମାନ ହିନ୍ଦୀ କବିୟୋଁ କା ସାମାଜିକ ଦର୍ଶନ—ପୃ ୨୨୧)

(୩୪)—ମରୀଚିକା-ସତ୍ୟେନ୍ଦ୍ରନାଥ ଦତ୍ତ ପୃ ୨୧

(୩୫)—"ଅର୍ଦ୍ଧ ଭୂଷିତ, ଶୋଷିତ, ନିରସ୍ତ୍ର ଜନ
ମୂଢ଼, ଅସଭ୍ୟ, ଅଶିକ୍ଷିତ ନିର୍ଦ୍ଧନ
ବୃକ୍ଷ ଅଧନେ ଧର ମେଁ
ନତ ମସ୍ତକ
× × ×
ସଫଲ ଆଜ ଉନକା ତପ ସଂଯମ
ପିଲା ଅହିଂସା ସନ୍ତ୍ୟ ଅନୁପମ
ହରତ ଜନ ମନ ଭୟ, ତମ ଭ୍ରମ
ଜଗଜନନୀ ଜୀବନ ବିକାଶିନୀ
ଭାରତମାତା-ଆଧୁନିକ କାବ୍ୟ ସଂଗ୍ରହ-ନିରାଲା-ପୃ ୩୫

(୩୬)—"ଏବାରେ ଉଠିବେ ସତ୍ୟ ହିନ୍ଦୁ ମୁସଲିମ ମହାବଲ
ଜେଗେଛସ ତୋରା, ଜେଗେଛେ ବିଧାତା ନେମେଛେ ଖୋଦାର କଲ
(ହିନ୍ଦୁମୁସଲିମ ଯୁଦ୍ଧ-ସଂଚିତା ପୃ ୨୧) ।

(୩୭)—" ମାଁଗ୍‌ନେ ସେ ଭିଖ ମିଲ୍‌ତି ହୈ ଧାନ ଜନକୋ
କିନ୍ତୁ ମିଲତି ହୈ ତଲଓ୍ୱାର ସେ ସ୍ୱତନ୍ତ୍ରତା"
(ଆର୍ଯ୍ୟାବର୍ତ୍ତ-ମୋହାନଲାଲ ମାହାତୋ-ସପ୍ତମସର୍ଗ ପୃ ୬୨)

(୩୮)—"ଦିନ ଏସେଗେଛେ ଭାଇରେ ରକ୍ତର ଋଣ ରକ୍ତର ଧାରେ ଶୁଧବାର
ବିଦେଶୀ ରାଜାର ପ୍ରାନ୍ ଭ୍ରୋମରକେ
ନଖେ ନଖେ ଟିପି ମାରବାର"
(ଅଗ୍ନିକୋନ-ସୁବାସ ମୁଖୋପାଧ୍ୟାୟର ଶ୍ରେଷ୍ଠ କବିତା—ପୃ ୫୧)

(୩୯) – "ପ୍ରାପ୍ତି କେ ପୂର୍ବତକ ସ୍ୱାତନ୍ତ୍ରତା ଏକ ସାଧ୍ୟ ହୋତି ହୈ । କିନ୍ତୁ ପ୍ରାପ୍ତି କେ ପଶ୍ଚାତ୍ ବହ ଏକ ସାଧନ ହୋତି ହୈ କିସ୍ ଦୁସରେ ସାଧ୍ୟୋଁ କେ ଲିୟେ । ତବସମଷ୍ଟି ରୂପ ସେ ଦେଶ୍ କ ସର୍ବାଙ୍ଗୀନ ଉନ୍ନତି ଔର ବିକାଶ ଉସକେ ଲକ୍ଷ୍ୟ ହୈ ।" (ହିନ୍ଦୀ କବିୟୋଂ କ ସାମାଜିକ ଦର୍ଶନ—ପ୍ରେମଚନ୍ଦ ବିଜୟ ବର୍ଗୀୟ ପୃ-୧୧୩)

(୪୦)—ଅଗ୍ନିନ ଦେଶେ-ବନ ଫୁଲେର୍ ବ୍ୟଙ୍ଗ କବିତା-ପୃ ୪୮

(୪୧)—"ଦୁପାଶେର ଦେଶ କାନ୍ଦେ ତୋମାର ଓ ଆମାର ସ୍ୱଦେଶ
ଅନାହାର ଅର୍ଦ୍ଧାହାର ଆର ଅନାଚାର ଅତ୍ୟାଚାର

× × ×

ଆମାର ବ୍ୟାପକ ଦୁଃଖ ରୂପାନ୍ତରେ ଉନ୍ମୁଖ ହିଷ୍ଟାୟ
ତୋମାକେଇ ଚାୟତାଇ ଯନ୍ତ୍ରନାର ନବ ପ୍ରତିଷ୍ଠାୟ"
(ନବ ପ୍ରତିଷ୍ଠାୟ—ବିଚ୍ଛର ପଚଶ-ବିଷ୍ଣୁଦେ—ପୃ ୪୮)

(୪୨)—"ବେ ନ ତୋ ଗାତେ, ବଜାତେ ନାଚତେ ହୈଁ
ଔର ଖବରୋଁ କେ ସେବା କୁଛଭି ନହିଁ ପଢତେ
ହର୍ ଘଣ୍ଟ ଉନ ଚନ୍ଦା ଓଦେଁ ଇସ୍‌ବାତ୍ କୋ ରହତି
କି କୈସେ ଔର ଲେଗୋଁ ସେ ଜଗ ଉଞ୍ଚେ ଦେଖେ ହମ୍"
(ନର୍ୟି ସୁଭାଷିତ—ପୃ ୨୦—ରାଜନୀତି—ଦିନକର)

(୪୩)—"× × ବୃନ୍ତୋଁ ପର ଜଲତେ ସୂର୍ଯ୍ୟ ଗ୍ଲୋଭ ଦେଖ ହୈ
ଚୁନ୍, ଚୁନ୍ କର କେବଲ ଗୃଦ୍ଧ ଦୌଡ଼ ଚଲତ ହୈଁ
× × ×
ପାବକ କୋ ତୁଷାର ବନା ଦେଖ ହୈଁ
ଗାନ୍ଧୀକୋ ଶୀତଲ କ୍ଷାର ବନା ଦେତେ ହୈଁ ।
(ପରଶୁରାମ କେ ପ୍ରତୀକ୍ଷା-ଦିନକର)

(୪୪)—"ବହୁ ରକ୍ତ ସ୍ୱେଦ ଅଭିଷେକିତ ଭୂଷଣ ବନ ରଚନା ସାଧନ
ଦାୟିତ୍ୱ ସର୍ବବନ୍ଧ ଦୁଷ୍କର ମନ ବଚନ କର୍ମ କର ଅର୍ପଣ
ଉଦ୍ୟତ ଜାଗ୍ରତ ରହ ଗଣତନ୍ତ୍ରକା କରନା ପଡ଼ତା ସଂରକ୍ଷଣ
(ସଂସ୍କୃତି ଦ୍ୱାର-ଲୋକାୟତନ-ପୃ ୧୪୭-୪୭୭)

(୪୫)—"ପ୍ରୟୋଗ କା ସମ୍ବନ୍ଧ କେବଲ ରୂପଗତ ନବୀନତା ସେ ନହି ହୈ × × ×
ଭାଷା, କାବ୍ୟ-ଶୈଲୀ ଔର ଛନ୍ଦ କି ନବୀନତା ସହଜ ମେଁ ହି ପ୍ରୟୋଗବାଦ
ବନ ଯାତା ହୈ । ପରନ୍ତୁ ସଚା ପ୍ରୟୋଗବାଦୀ କବିତା ଅନ୍ତରଙ୍ଗୀ ନବୀନତା
କା ଦାବେଦାର ହୋତା ହୈ । ଯହ ନବୀନତା କାବ୍ୟ କି ଭଙ୍ଗିମା, ମନ୍ତବ୍ୟ,
ପ୍ରଭାବ—ସଭି କ୍ଷେତ୍ରୋମେଁ ଏକ ସାଥ ହି ମିଲତା ହୈ ।"
(ସଚ୍ଚିଦାନନ୍ଦ ହୀରାନନ୍ଦ ବାତ୍ସାୟନ—ତାର ସପ୍ତକ—ମୁଖବନ୍ଧ)

(୪୬)—"ଯେ ଯୁଦ୍ଧୋଁ କେ ଲିୟେ ବନ୍ଦୁକ, ଏଟମ, ଗୋଲିୟାଁ, ସଙ୍ଗୀନ
ଗୈସେଁ, ମୋଟରେଁ, ଟୈଙ୍କେଁ, ମସିନଗନ୍
ଔର ମୌଜୋ କେ ଲିୟେ—
ସିଗରେଟ୍, ପାଇପ, ଘଡ଼ି, ଚଶମା, ସ୍ନୋ, ସିନେମା, କ୍ରୀମ........"
(କବିତା-ନୟା ସବେରା, ପୃ ୧୦୬, ମୋହନଲାଲ ସିହ୍ନା)

(୪୭)—"ନଗର ଜୀବନ × ×
ନାନା ଅବାନ୍ତର ଶିକାରୀ ଶିକାର
ଅଥଚ ସବଟା ଗୌନ୍ ଅଚେତନ ବା ଅର୍ଦ୍ଧଚେତନ
ନରକେର ଓ ବ୍ୟଙ୍ଗ ଚନ୍ଦ୍ର, ମୃଥୁର ଓ ଦ୍ୱିକାର"
(ସ୍ମୃତି : ସତ୍ତା: ଭବିଷ୍ୟତ-ବହ୍ମର ପଚଶ ପୃଷ୍ଠା-ବିଷ୍ଣୁଦେ)

(୪୮)—"ନଗରୋଁ କେ ସ୍ୱର୍ଗୀୟ ସୁଖ ମେଁ
ନର ଜୀବନ ନରକ ଅବଗୁଣ୍ଠିତ"
(ଲୋକାୟତନ-ସଂସ୍କୃତିଦ୍ୱାର, ପୃ ୨୪—ସୁମିତ୍ରା ନନ୍ଦନ ପନ୍ଥ)

(୪୯)—ନୟୀ ସବେର୍ (କବିତା)-ମୋହନ କାନ୍ତ ସିହ୍ନା-ପୃ ୧୦୦

(୫୦)—"ଶୁନେଛେ କେ ଇହାଦେର ମୁଖେ କୋନ ଅନ୍ଧକାର କଥା
ସକଲ ସଂକଳ୍ପ ଚିନ୍ତା ବୃଥା ଧ୍ୟାନେ ମାନୁଷେର ଜୀବନେର ଏଇ ଶୁଭ୍ରତା
ଇହାଁଦେର ଶ୍ରେୟ ନାକୋ
ବ୍ୟୁବୋନିକ ପ୍ଲେଗର ମତନ × × ×"
(ଏଇଜନଦ୍ରା-ଜୀବନାନନ୍ଦ ଦାସର ଶ୍ରେଷ୍ଠ କବିତା—୨ୟ.ଭାଗ—ପୃ-୪୪)

(୫୧)—"ବ୍ୟର୍ଥ କରେ ବୈଦ୍ୟେର ବିଧାନ
ଭେଷଜ ନିଦାନ
ଚଲେ ଯେବେ ଗେଲ ଅଷ୍ଟମ ସନ୍ତାନେର ମାତା ଯମପୁରେ
ଅକାଲେ
ବାସୁକି ବୃଥା ଗ୍ରୀବା ଧାରେ × × ×" (ଜନ୍ମାଷ୍ଟମୀ-ବଛର ପଚିଶ ପୃ-୨୦୪)

(୫୨)—"ତା'ର ପରେ ଗ୍ଲୁ ଏବଂ ତାସ
ବ୍ରିଜଇ ଖେଲେ ନା ହୟତୋ ଫ୍ଲାଶ୍।" (ତତ୍ରୈବ)

(୫୩)—"କୋନ ଦେଶ ଲକ୍ଷ୍ୟ କୋନ ଅମୃତ ଆଧାର
× × ×
ଜାଲେପାର୍ଥ ପଞ୍ଚାଗ୍ନିର ପ୍ରଦୀପ ତୋମାର" (ତତ୍ରୈବ ପୃ-୨୨୬)

(୫୪)—ବାଘବନ୍ଦୀ—ସୁବାସ ମୁଖୋପାଧ୍ୟାୟର ଶ୍ରେଷ୍ଠ କବିତା—ପୃ ୩୧

(୫୫)—ଯୁଗ କା ମୌଲ୍—ଶିବ ମଙ୍ଗଲ ସିଂହ ସୁମନ

(୫୬)—ଜଂଜର—ନଜରୁଲ୍ ଇସଲାମ୍—ସଂଚିତା ପୃ-୧୦୮

(୫୭)—ଆବର୍ତ୍ତ—ବୁଦ୍ଧଦେବ ବସୁ—ଶୀତେର ପ୍ରାର୍ଥନା ବସନ୍ତେର ଉତ୍ତର, ପୃ. ୧୨

(୫୮)—ଯହର ମେଁ ସୂର୍ଯ୍ୟାସ୍ତ—ଧୂମିଲ—(ଆଧୁନିକ କାବ୍ୟସଂଗ୍ରହ-ପୃ ୧୦୩)

## ଚତୁର୍ଥ ପରିଚ୍ଛେଦ

# ଆଧୁନିକ ଓଡ଼ିଆ କାବ୍ୟଧାରାରେ ବାସ୍ତବବାଦୀ ଚେତନାର ପୃଷ୍ଠପଟ

ଊନବିଂଶ ଶତାବ୍ଦୀର ଶେଷ ପାଦରେ ଓଡ଼ିଶାର କବିମାନସ, ରୀତି ଯୁଗର ଗତାନୁଗତିକ ଶୃଙ୍ଖଳାର ବନ୍ଧନଯୁକ୍ତ ଉପେକ୍ଷା କରି ଯୁଗ ଓ ଜୀବନର ଚଳନ୍ତି ସମସ୍ୟା ପ୍ରତି ଆକୃଷ୍ଟ ହୋଇଥିଲା । ରୀତିଯୁଗୀୟ କାବ୍ୟ-ପରମ୍ପରାର ମୁଖ୍ୟତଃ ଦୁଇଟି ଦିଗ ରହିଥିଲା । ଗୋଟିଏ ରାଧା-କୃଷ୍ଣ ପ୍ରେମମୂଳକ ବୈଷ୍ଣବ କାବ୍ୟଧାରା ଓ ଅନ୍ୟଟି ହେଉଛି ରାଜକୁମାର ରାଜକୁମାରୀଙ୍କ ପୂର୍ବରାଗ, ଅନୁରାଗ, ବିରହ ଓ ମିଳନ-କେନ୍ଦ୍ରିକ କାଳ୍ପନିକ କାବ୍ୟଧାରା । ଏକ ପକ୍ଷରେ ପାରମାର୍ଥିକ ଚିନ୍ତାଦର୍ଶ, ଅପର ପକ୍ଷରେ କାଳ୍ପନିକ ପ୍ରଣୟ ବିଳାସ ସମଗ୍ର ମଧ୍ୟଯୁଗୀୟ ଓଡ଼ିଆ କାବ୍ୟସମ୍ଭାରର ମୁଖ୍ୟ ଉପଜୀବ୍ୟ ହୋଇଥିବାରୁ ଜୀବନର ବାସ୍ତବ ସମସ୍ୟା ସମୂହ ତହିଁରେ ଉପେକ୍ଷିତ ହୋଇଥିଲା । ଅବଶ୍ୟ ପ୍ରାଚୀନ ପୁରାଣ, କାବ୍ୟ ତଥା ଖଣ୍ଡକାବ୍ୟ ଗୁଡ଼ିକରେ ସ୍ଥଳ ବିଶେଷରେ ସମାଜ ଓ ଧର୍ମୀୟ ଚେତନାର ଅବକ୍ଷୟ ପ୍ରତି କଟାକ୍ଷପାତ କରାଯାଇ ଥିଲା । ସାରଳାଙ୍କ ମହାପୁରାଣ ମହାଭାରତର କୃଷ୍ଣ ଚରିତ୍ରରେ, ସହଜଯାନ ବୌଦ୍ଧ ଧର୍ମର ଅଧୋପତନ ଅଭିବ୍ୟଞ୍ଜିତ ହୋଇଥିଲା । ବଳରାମ ଦାସଙ୍କ 'ଲକ୍ଷ୍ମୀପୁରାଣ' 'ବେଦାନ୍ତସାର ଗୁପ୍ତଗୀତା', ମହାଦେବ ଦାସଙ୍କ 'ଧର୍ମଗୀତା' ତଥା ଭୀମ ଭୋଇଙ୍କ 'ସ୍ତୁତି ଚିନ୍ତାମଣି' ଓ 'ବ୍ରହ୍ମ ନିରୂପଣ ଗୀତା' ଆଦି କାବ୍ୟକ ସୃଷ୍ଟିରେ ଜାତିପ୍ରଥା ଓ ପୌରୋହିତ୍ୟବାଦ-ସର୍ବସ୍ୱ ଧର୍ମୀୟ କୁସଂସ୍କାର ବିରୋଧରେ ସ୍ୱର ଉତ୍ତୋଳନ କରାଯାଇ ଥିଲା । କିନ୍ତୁ ଏହି କୃତିଗୁଡ଼ିକ ମୁଖ୍ୟତଃ ଥିଲା ଧର୍ମ-କେନ୍ଦ୍ରିକ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଜାତୀୟ ସ୍ତରରେ, ସ୍ୱାଧୀନତା ପାଇଁ ଯେଉଁ ବୈପ୍ଳବିକ ଚେତନା ଅଙ୍କୁରିତ ହୋଇଥିଲା ତା'ର ପ୍ରଭାବ ଓଡ଼ିଆ କାବ୍ୟ-ଧାରାରେ ନବପଲ୍ଲବନ ସୃଷ୍ଟି କରିଥିଲା । ସର୍ବଭାରତୀୟ ସ୍ତରର କାବ୍ୟ ଚେତନା ପରି ତତ୍କାଳର ଓଡ଼ିଆ କାବ୍ୟଚେତନା ମୁଖ୍ୟତଃ, (କ) ଜାତୀୟ ଚେତନା ଓ (ଖ) ସମାଜ ଚେତନା ଧର୍ମୀ ଥିଲା । ଊନବିଂଶ ଶତାବ୍ଦୀର ସାହିତ୍ୟ ଚେତନାକୁ ସମାଲୋଚକ ନରେନ୍ଦ୍ରନାଥ ମିଶ୍ର ରେନାଁସାର ଅଗ୍ରଗାମୀ ଚିନ୍ତାଧାରା ରୂପେ ଅଭିହିତ କରିଛନ୍ତି ।

ତାଙ୍କ ମତରେ ୟୁରୋପୀୟ ପରମ୍ପରା ଅପେକ୍ଷା, ଭାରତୀୟ ପରଂପରାରେ ଏହି ନବ ଅଭ୍ୟୁଦୟ ପ୍ରକ୍ରିୟା କ୍ଷିପ୍ରତର ଗତିରେ ସଂଘଟିତ ହୋଇଥିଲା (୧)। ଏହି ପ୍ରକ୍ରିୟା ମଧ୍ୟରେ ଜାତୀୟ ତଥା ସାମାଜିକ କାବ୍ୟଚେତନାର ସମୃଦ୍ଧି ଘଟିଥିଲା ।

### (କ) ଓଡ଼ିଆ କାବ୍ୟଧାରାରେ ଜାତୀୟତାବାଦୀ ବାସ୍ତବବାଦ

ଓଡ଼ିଶାର ଜାତୀୟତାବାଦୀ ଆନ୍ଦୋଳନ ଦୁଇଟି ଧାରାରେ ପ୍ରବାହିତ ଥିଲା । ଯଥା—(୧) ଭାରତର ଜାତୀୟତାବାଦୀ ଆନ୍ଦୋଳନ ଓ (୨) ଦେଶ ମିଶ୍ରଣ ବା ଉତ୍କଳର ବିଚ୍ଛିନ୍ନ ଅଞ୍ଚଳର ଏକତ୍ରୀକରଣ ।

### ୧—ଭାରତର ଜାତୀୟତାବାଦୀ ଆନ୍ଦୋଳନ

ଭାରତକୁ ଏକ ସ୍ୱାଧୀନ ଦେଶରେ ପରିଣତ କରିବା ପାଇଁ ଯେଉଁ ଜାତୀୟବାଦୀ ଆନ୍ଦୋଳନ ସୃଷ୍ଟି ହୋଇଥିଲା ତା'ର ପ୍ରଭାବ ତତ୍କାଳୀନ ଯୁବମାନସକୁ ପ୍ରଭାବିତ କରିଥିଲା । ଭାରତୀୟ ଜାତୀୟବାଦୀ ଓ ଉତ୍କଳ ମିଶ୍ରଣ ଆନ୍ଦୋଳନକାରୀମାନଙ୍କର କେତେକ ନୀତିଗତ ପାର୍ଥକ୍ୟ ଥିବା ସତ୍ତ୍ୱେ ଇଂରେଜ ସରକାରଙ୍କ ଔପନିବେଶିକ ଶୋଷଣ ଓ ଦମନ ବିରୁଦ୍ଧରେ ସେମାନେ ସମଭାବରେ ସ୍ୱର ଉତ୍ତୋଳନ କରିଥିଲେ । ଆଧୁନିକ କବିତାର ପ୍ରାରମ୍ଭ ପର୍ଯ୍ୟାୟରୁ ଯୁଗର ବାସ୍ତବ ସମସ୍ୟାଗୁଡ଼ିକ ସେକାଳର କବି ମାନସକୁ ପରିସ୍ପନ୍ଦିତ କରିଥିଲା । ତତ୍କାଳୀନ ଜାତୀୟ ସମସ୍ୟାର ସମାଧାନ ପାଇଁ କାବ୍ୟ-କବିତାରେ ଆହ୍ୱାନ ଦିଆ ଯାଇଥିଲା । କାବ୍ୟ କବିତାରେ ପ୍ରତିଫଳିତ ହୋଇଥିବା ଏହି ଆହ୍ୱାନ ଗୁଡ଼ିକ ହେଉଛି—

ଅ—ଜାତୀୟ ଜାଗରଣ ପାଇଁ ପ୍ରେରଣା ସୃଷ୍ଟି

ଆ—ସ୍ୱାବଲମ୍ବନଶୀଳତା ପାଇଁ ବିଦେଶୀ ବର୍ଜନ

ଇ—ସ୍ୱରାଜ୍ୟ ପାଇଁ ତ୍ୟାଗନିଷ୍ଠା ଓ ତତ୍ପରତା ।

### ଅ-ଜାତୀୟ ଜାଗରଣ ପାଇଁ ପ୍ରେରଣା ସୃଷ୍ଟି

ରାଧାନାଥ ରାୟଙ୍କ 'ମହାଯାତ୍ରା', 'ଦରବାର' ଓ 'ଭାରତ ଗୀତିକା' ଆଦି କୃତିରେ ଜାତୀୟ ଜାଗରଣ ପାଇଁ ପ୍ରେରଣା ପ୍ରତିଫଳିତ । ଜାତୀୟବାଦୀ ସାହିତ୍ୟ ସାମ୍ରାଜ୍ୟବାଦ ବିରୋଧୀ ବୋଲି ସମାଜବାଦୀ ନେତା ପ୍ରାଣନାଥ ପଟ୍ଟନାୟକଙ୍କ ମତ । ଜାତୀୟବାଦୀ ସାହିତ୍ୟ ଏକ ଜାତିର ଐତିହ୍ୟ ଓ ସଂସ୍କୃତିର ପ୍ରଖ୍ୟାପକ । ଜାତୀୟତା-ଜାତୀୟବାଦୀ ସାହିତ୍ୟ ଏକ ଜାତିର ଐତିହ୍ୟ ଓ ସଂସ୍କୃତିର ପ୍ରଖ୍ୟାପକ । ଜାତୀୟତା-ବର୍ଜିତ ସାହିତ୍ୟ-ଚିନ୍ତା, ସାମନ୍ତବାଦୀ ରୁଚିର ପରିଚାୟକ । 'ଦରବାର', 'ମହାଯାତ୍ରା' ଓ 'ଭାରତ ଗୀତିକା' ଆଦି ଜାତୀୟବାଦୀ ସାହିତ୍ୟରେ ତତ୍କାଳୀନ ଲୋକରୁଚି ଅନୁକୂଳ ଆଶା ଓ ଆକାଙ୍‌କ୍ଷା ପରିସ୍ଫୁଟ (୨) ।

ରାଧାନାଥଙ୍କ 'ମହାଯାତ୍ରା'ରେ ପୁରାଣ ଇତିହାସ ଅତିମୁଖୀ ହୋଇ ଜାତୀୟ ଜାଗରଣ ପାଇଁ ଉତ୍ସର୍ଗୀକୃତ । 'ମହାଯାତ୍ରା'ର ଅମର୍ତ୍ତ୍ୟବାଣୀ ମାଧ୍ୟମରେ, କବି ପରାଧୀନ ଭାରତର ସୁପ୍ତ ଜନମାନସକୁ ଜାଗ୍ରତର ବାର୍ତ୍ତା ଦେଇଛନ୍ତି (୩) । ଦରବାରରେ ତାତ୍କାଳିକ ଶିକ୍ଷିତ ସମାଜର, ପାଶ୍ଚାତ୍ୟ ସଭ୍ୟତାପ୍ରତି ଥିବା ଦାସ୍ୟ ମନୋଭାବକୁ, ଉପାଧିଗ୍ରହଣ ବ୍ୟାଜରେ ବ୍ୟଙ୍ଗ କରାଯାଇଛି । (୪) 'ଭାରତ ଗୀତିକା'ରେ କବି ଅଖଣ୍ଡ ଭାରତର ଜାତୀୟ ସଂହତିର ମହିମ୍ନ ଶ୍ଳୋକ ଶୁଣାଇଛନ୍ତି (୫) ।

**ଆ—ସ୍ୱାବଲମ୍ବନଶୀଳତା ପାଇଁ ବିଦେଶୀ ବର୍ଜନ**

ଜାତୀୟ ଆନ୍ଦୋଳନକୁ ତ୍ୱରାନ୍ୱିତ କରିବା ପାଇଁ ବିଦେଶୀ ଦ୍ରବ୍ୟର ବର୍ଜନ ଥିଲା ଏକ ବଳିଷ୍ଠ ଜାତୀୟତାବାଦୀ ଆହ୍ୱାନ । ଏହି ଜାତୀୟ ଆହ୍ୱାନ ଓଡ଼ିଶାର କବିମାନସକୁ ଅନୁପ୍ରାଣୋଦିତ କରିଥିଲା । ମଣିଷର ଜୀବନଧାରଣ ପାଇଁ ଆବଶ୍ୟକ ଲୁଣପରି ଏକ ସ୍ୱଳ୍ପ ମୂଲ୍ୟ ତଥା ସହଜଲବ୍ଧ ଦ୍ରବ୍ୟର ଉତ୍ପାଦନ ଓ ଉପଯୋଗ ଉପରେ ବ୍ରିଟିଶ ସରକାର ବିଧି ନିର୍ଦ୍ଦେଶ ଜାରିକରି ଜନସାଧାରଣଙ୍କୁ ଦାସତ୍ୱ ବନ୍ଧନରେ ପଙ୍ଗୁ କରିଦେବାପାଇଁ ଉଦ୍ୟମ କରିଥିଲେ । ଭାରତୀୟ ତନ୍ତୀମାନଙ୍କ ଦ୍ୱାରା ପ୍ରସ୍ତୁତ ସୂକ୍ଷ୍ମ ମସଲିନ ଲୁଗାର ଉତ୍ପାଦନ ଲୋପକରି ବିଲାତର ଲିଭରପୁଲର ବସ୍ତ୍ରର ପ୍ରଚଳନ କରାଇଥିଲେ । ଭାରତରେ ସ୍ୱାଧୀନତାର ନବଚେତନା ସୃଷ୍ଟି ହେବାପରେ ଏହି ଶୋଷଣ ସ୍ରୋତକୁ ରୁଦ୍ଧ କରି ସ୍ୱାବଲମ୍ବନଶୀଳ ହେବାପାଇଁ ଜାତୀୟ ନେତୃବର୍ଗ ଉଦ୍‌ବୋଧନ ଦେଇଥିଲେ । ଏଣୁ ଏହି ଧାରଣାର ସଫଳ ରୂପାୟନ ପାଇଁ ଫକୀରମୋହନ, ଗଙ୍ଗାଧର, ନନ୍ଦକିଶୋର, କାନ୍ତ କବି ଓ କୁନ୍ତଳାକୁମାରୀ ପ୍ରମୁଖ ଅରଟର ପ୍ରଚଳନ ଓ ହାତକଟା ଲୁଗାର ବ୍ୟବହାର ଉପରେ ଗୁରୁତ୍ୱ ଦେଇଥିଲେ ।

ଫକୀରମୋହନ ମୁଖ୍ୟତଃ ଜଣେ କଥାଶିଳ୍ପୀ ହୋଇଥିଲେ ମଧ୍ୟ ଯେଉଁ ସ୍ୱଳ୍ପ କେତେକ କବିତା ଲେଖିଛନ୍ତି, ତହିଁରେ ଗ୍ରାମ୍ୟ ସମାଜ ଅଥବା ଜାତୀୟ ଜାଗରଣର ଚିତ୍ର ପ୍ରତିବିମ୍ବିତ ହୋଇଛି । ଲୁଣମରା, ଲୁଗାବୁଣା ଉପରେ ଇଂରେଜ ସରକାରଙ୍କ କଟକଣା ବିରୋଧରେ ସେ ସ୍ୱର ଉତ୍ତୋଳନ କରିଛନ୍ତି (୬) ।

ସ୍ୱଦେଶୀ ବସ୍ତ୍ରର ବୟନ ମାଧ୍ୟମରେ ସ୍ୱାବଲମ୍ବନଶୀଳ ହେବାପାଇଁ ଗଙ୍ଗାଧର ମଧ୍ୟ ଆହ୍ୱାନ ଦେଇଛନ୍ତି । ସ୍ୱାବଲମ୍ବନଶୀଳତା-ବିହୀନ ପରାଙ୍ଗପୁଷ୍ଟ ଜୀବନଯାପନ ମାନବର ଧର୍ମ ନୁହେଁ । ଏହା ଦାସତ୍ୱ ବନ୍ଧନରେ ଶୃଙ୍ଖଳିତ ହୀନମନ୍ୟତାର ପରିଚାୟକ । ଗଙ୍ଗାଧର ଏହାକୁ ପଶୁ ପ୍ରବୃତ୍ତି ସହ ତୁଳନା କରିଛନ୍ତି (୭) ।

ନନ୍ଦକିଶୋରଙ୍କ କବିତାରେ ଲୁଣ ବିନା ଓଡ଼ିଶାର ସାଧାରଣ ଜନତା କିଭଳି ଅସୁବିଧାର ସମ୍ମୁଖୀନ ହେଉଥିଲେ ତାହାର ବାସ୍ତବ ଚିତ୍ର ପ୍ରଦତ୍ତ ହୋଇଛି (୮) ।

ଜାତୀୟ ଦୁର୍ଗତିରୁ ଉଦ୍ଧାର ପାଇବା ପାଇଁ ଉତ୍କଳମଣି ଗୋପବନ୍ଧୁ, କାନ୍ତକବି ଲକ୍ଷ୍ମୀକାନ୍ତ ଓ କୁନ୍ତଳା କୁମାରୀ ସାବତ ପ୍ରମୁଖ କବିମାନେ ଚରଖାକୁ ଏକମାତ୍ର ଅସ୍ତ୍ରରୂପେ ବ୍ୟବହାର କରିଛନ୍ତି । ଗୋପବନ୍ଧୁଙ୍କ ଭାଷାରେ—"ଗୃହରେ ଅରଟ, ଗ୍ରାମରେ ପଞ୍ଚାୟତ, ଗ୍ରାମବାସୀମାନଙ୍କ ମଧ୍ୟରେ ଏକତ୍ୱ ତଥା ବିଦେଶୀ ବସ୍ତ୍ରର ବର୍ଜନ ଦ୍ୱାରା ସ୍ୱରାଜ୍ୟ ଯଜ୍ଞ ସଫଳତା ଲାଭ କରିପାରିବ (୯) । କାନ୍ତକବି ଲକ୍ଷ୍ମୀକାନ୍ତ ମଧ୍ୟ ଅରଟକୁ ମୁକ୍ତିର ଅସ୍ତ୍ର ରୂପେ ଅଭିହିତ କରିଛନ୍ତି (୧୦) । କୁନ୍ତଳାକୁମାରୀଙ୍କ ଭାଷାରେ—ଭାରତ ଲବଣ ପାରାବାର ତଥା କୋମଳ କପାର ଗନ୍ତାଘର ଯେତେ ସମୃଦ୍ଧ ହୋଇଥିବାବେଳେ ଭାରତ-ବାସୀଙ୍କୁ ଲିଭରପୁଲର ଲୁଣ ଓ ମାଞ୍ଚେଷ୍ଟରର ବସ୍ତ୍ର ପରିଧାନ ପାଇଁ ଆଇନ ପ୍ରଣୟନ କରାଯିବା, ଜାତୀୟ ଅର୍ଥନୀତି ପ୍ରତି ଏକ ବିପଦ (୧୧) ।

ଇଂରେଜ ଶାସନର ସ୍ୱୈରାଚାର ଫଳରେ ସ୍ୱର୍ଣ୍ଣପ୍ରସୂ ଭାରତ ଛାରଖାର ହୋଇଛି । ବିଦେଶୀ ଦ୍ରବ୍ୟର ବ୍ୟାପକ ପ୍ରଚଳନ ଫଳରେ ସ୍ୱାବଲମ୍ବନଶୀଳତା ବାଧାପ୍ରାପ୍ତ ହୋଇଛି । ହୀନମନ୍ୟତା ଜାତି ଆତ୍ମାକୁ ଆଚ୍ଛନ୍ନ କରି ରଖିଥିବାରୁ ଏହା ବିରୁଦ୍ଧରେ ପ୍ରତିବାଦ କରିବାପାଇଁ ଜନସାଧାରଣ ଶକ୍ତି ଓ ସାମର୍ଥ୍ୟ ହରାଇବସିଛନ୍ତି । ଜାତୀୟକବି ବୀରକିଶୋର ଦାସଙ୍କ 'ମୋହନ ବଂଶୀ'ରେ ଏହି ଭାବନାର ପ୍ରତିଫଳନ ଘଟିଛି (୧୨) ।

## ଇ—ସ୍ୱରାଜ୍ୟ ପାଇଁ ତ୍ୟାଗନିଷ୍ଠା ଓ ତତ୍ପରତା

ବ୍ରିଟିଶ ଶାସନ କବଳରୁ ଭାରତକୁ ମୁକ୍ତ କରିବା ଜାତୀୟ ଆନ୍ଦୋଳନର ମୂଳମନ୍ତ୍ର ଥିଲା । ଏହାର ଆଭିମୁଖ୍ୟ ଥିଲା ଭାରତବର୍ଷରେ ସ୍ୱରାଜ୍ୟର ସଂସ୍ଥାପନା । ସତ୍ୟବାଦୀ ଯୁଗର ଅଗ୍ରଜ କବି ଗୋପବନ୍ଧୁ ଲକ୍ଷ୍ନୌ କଂଗ୍ରେସ ଅଧିବେଶନରେ ଯୋଗ ଦେବା ପରେ ଓଡ଼ିଶାରେ ସ୍ୱରାଜ୍ୟ ସ୍ଥାପନା ପାଇଁ ଉନ୍ମାଦନାର ସ୍ରୋତ ଉଚ୍ଛୁଳି ଉଠିଥିଲା । ବାଲଗଙ୍ଗାଧର ତିଲକଙ୍କ 'ସ୍ୱରାଜ୍ୟ ଆମର ଜନ୍ମଗତ ଅଧିକାର' ଉକ୍ତି ଗୋପବନ୍ଧୁଙ୍କ କବିତାରେ ଅଧିକ ବ୍ୟାପକ ଅର୍ଥରେ ପ୍ରଯୁକ୍ତ ହୋଇଥିଲା । ସ୍ୱଦେଶ ମାଟିରେ ସ୍ୱାଧୀନ ଶାସନ, ସ୍ୱାଧୀନ ଅଭିବ୍ୟକ୍ତି, ସ୍ୱାଧୀନ ବିହାର ଓ ସ୍ୱାଧୀନ ଜୀବନଯାପନ ସାମାଜିକ ଜୀବନର ଶ୍ରୀରଗୋଟି ପ୍ରମ୍ଫୁଟନ କାର୍ଯ୍ୟ କରେ ବୋଲି ଉତ୍କଳମଣି ମତ ଦେଇ ଥିଲେ (୧୩) । ଦେଶର ସ୍ୱରାଜ୍ୟ ସାଧନା ପଥରେ ଥିବା ଅପୂର୍ଣ୍ଣତାକୁ ନିଜର ହାଡ଼, ମାଂସ ବିନିମୟରେ ପରିପୂର୍ଣ୍ଣ କରିବାପାଇଁ ସେ ଅଙ୍ଗୀକାରବଦ୍ଧ ହୋଇଥିଲେ (୧୪) । କୁନ୍ତଳାକୁମାରୀ ମଧ୍ୟ ସ୍ୱରାଜ୍ୟକୁ ମାନବର ଜନ୍ମଗତ ଅଧିକାର ବୋଲି ସାବ୍ୟସ୍ତ କରିଥିଲେ । ସ୍ୱରାଜ୍ୟ ହାସଲ ପାଇଁ ଗାନ୍ଧୀଜୀଙ୍କ 'କର ବା ମର' ଧ୍ୱନି ତାଙ୍କୁ ଅନୁପ୍ରେରିତ କରିଥିଲା (୧୫) । ସେଥିପାଇଁ ହିନ୍ଦୁସ୍ଥାନର ଅପମାନକୁ ଅନ୍ତରାତ୍ମାରେ ଉପଲବ୍ଧି କରିବାପାଇଁ ଜାତି, ଧର୍ମ ନିର୍ବିଶେଷରେ ହିନ୍ଦୁ, ମୁସଲମାନ, ଶିଖ, ବୌଦ୍ଧ, ଇହୁଦୀ ଓ

ଖ୍ରୀଷ୍ଟିଆନ ସମେତ ସମଗ୍ର ଭାରତବାସୀଙ୍କୁ ସେ ଆହ୍ୱାନ ଦେଇଥିଲେ (୧୬) । ବସ୍ତୁତଃ ସ୍ୱରାଜ୍ୟ ପ୍ରାପ୍ତିପାଇଁ କର୍ତ୍ତବ୍ୟନିଷ୍ଠା ଓ ଆତ୍ମତ୍ୟାଗ ଥିଲା, ତତ୍କାଳୀନ ଜାତୀୟବାଦୀ କାବ୍ୟଚେତନାର ମାର୍ମିକ ବାର୍ତ୍ତା ।

## ୨—ଦେଶ ମିଶ୍ରଣ

ସର୍ବଭାରତୀୟସ୍ତରର ଜାତୀୟ ମୁକ୍ତି ଆନ୍ଦୋଳନ ସହ ଉତ୍କଳର ଆଞ୍ଚଳିକ ସମସ୍ୟା ସମ୍ପର୍କରେ କବିର ଲେଖନୀ ସକ୍ରିୟ ହୋଇ ଉଠିଥିଲା । ଛିନ୍ନବାହୁ, ଛିନ୍ନମସ୍ତା ଉତ୍କଳ ଜନନୀର ବିଚ୍ଛିନ୍ନାଞ୍ଚଳ ସମୂହର ଏକତ୍ରୀକରଣ ଓଡ଼ିଶାର ଜାତୀୟ ନେତୃବର୍ଗଙ୍କର ଆଭିମୁଖ୍ୟ ଥିଲା । ସେଥିପାଇଁ ଓଡ଼ିଶାର ଦୁଇଟି ବିଶିଷ୍ଟ ସମସ୍ୟା କବିଚେତନାରେ ପ୍ରତିଫଳିତ ହୋଇଥିଲା ।

ଅ—ଉତ୍କଳର ବିଚ୍ଛିନ୍ନାଞ୍ଚଳ ସମୂହର ଏକତ୍ରୀକରଣ ।

ଆ—ସ୍ୱାଭିମାନ ପ୍ରତିଷ୍ଠା ପାଇଁ ମାତୃଭାଷାର ଉନ୍ନତିବିଧାନ ।

### ଅ—ଉତ୍କଳର ବିଚ୍ଛିନ୍ନାଞ୍ଚଳ ସମୂହର ଏକତ୍ରୀକରଣ

ଓଡ଼ିଶାରେ ଇଂରେଜ ଶାସନ ପ୍ରଚଳିତ ହେଲାପରେ ସେମାନେ ସୁଯୁକ୍ତି ଓଡ଼ିଆ ଜାତିର ଏକତାକୁ ଛିନ୍ନ ବିଚ୍ଛିନ୍ନ କରିବା ପାଇଁ ଉତ୍ତରାଞ୍ଚଳରେ ମେଦନୀପୁର ଓ ମାନଭୂମ୍ ଜିଲ୍ଲାକୁ ବଙ୍ଗଳା ସହିତ, ପଶ୍ଚିମାଞ୍ଚଳର ବସ୍ତର, ଫୁଲଝର ପ୍ରଭୃତି ଅଞ୍ଚଳକୁ ବର୍ତ୍ତମାନର ମଧ୍ୟପ୍ରଦେଶ ସହିତ ଓ ଗଞ୍ଜାମ, ବିଶାଖାପାଟଣା ଆଦି ଜିଲ୍ଲାକୁ ତତ୍କାଳୀନ ମାନ୍ଦ୍ରାଜ ପ୍ରଦେଶ ସହିତ ମିଶାଇ ଦେଇଥିଲେ । ଏଣୁ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ବିଶାଳ ଉତ୍କଳ ସାମ୍ରାଜ୍ୟ କଟକ, ପୁରୀ, ବାଲେଶ୍ୱର ଆଦି ଅଞ୍ଚଳରେ ସୀମିତ କରାଯାଇ ବିହାର-ଓଡ଼ିଶା ପ୍ରଦେଶ ଗଠନ କରାଯାଇଥିଲା ।

ଜାତୀୟ ଜୀବନର ସମସ୍ୟା ସଙ୍କୁଳ ପରିବେଶ ମଧ୍ୟରେ ଓଡ଼ିଶାର କବିମାନସ ଅତୀତ ଉତ୍କଳର ଗୌରବୋଜ୍ଜ୍ୱଳ ପରମ୍ପରାର ସ୍ମୃତିଚାରଣ ନ କରି ଜାତୀୟ ସଂକଟର ସମାଧାନ ପାଇଁ କାବ୍ୟ କବିତା ମାଧ୍ୟମରେ ପ୍ରେରଣା ଦେଇଥିଲେ । ଫକୀର ମୋହନଙ୍କ 'ଉତ୍କଳ ଭ୍ରମଣଂ'ରେ ଉତ୍କଳର ବିଚ୍ଛିନ୍ନାଞ୍ଚଳର ବାସ୍ତବଚିତ୍ର ପ୍ରଦତ୍ତ ହୋଇଥିଲା (୧୭) ।

ଉତ୍କଳ ଗୌରବ ମଧୁସୂଦନ ଦାସ ଓ ତତ୍କାଳର ନେତୃବର୍ଗ 'ଉତ୍କଳ ସମ୍ମିଳନୀ' ମାଧ୍ୟମରେ ବିଚ୍ଛିନ୍ନାଞ୍ଚଳର ଏକୀକରଣ ପାଇଁ ପ୍ରବଳ ଉଦ୍ୟମ କରିଥିଲେ । ଜାତି ନନ୍ଦଘୋଷର ଅବାରିତ ଯାତ୍ରାପାଇଁ ଆତ୍ମକେନ୍ଦ୍ରିକ ସ୍ୱାର୍ଥପର ମନୋବୃତ୍ତିର ପରିହାର ଥିଲା ତାଙ୍କର ମାର୍ମିକ ଆହ୍ୱାନ (୧୮) । 'ଉଠ କଙ୍କାଳ' କବିତାରେ ଓଡ଼ିଆ ଜାତିର କଙ୍କାଳସାର ମୁମୂର୍ଷୁ ଚେତନାକୁ ଗୋଦାବରୀଶ ମହାପାତ୍ର, ଦେଶ ମିଶ୍ରଣ ପାଇଁ ଜାଗ୍ରତ ହେବାକୁ ଉଦ୍‌ବୋଧନ ଦେଇଥିଲେ (୧୯) ।

## ଆ-ସ୍ୱାଭିମାନ ପ୍ରତିଷ୍ଠା ପାଇଁ ମାତୃଭାଷାର ଉନ୍ନତି ବିଧାନ

ଗୋଟିଏ ଜାତିର ଉତ୍ଥାନ ପାଇଁ ତାର ନିଜସ୍ୱ ଭାଷା, ସଭ୍ୟତା, ଓ ସଂସ୍କୃତି ପ୍ରତି ସ୍ୱାଭିମାନ ରହିବା ଆବଶ୍ୟକ । ଉତ୍କଳ ସାମ୍ରାଜ୍ୟ ପରାଧୀନ ହେବାପରେ ତାର ଭାଷା ଉପରେ ଆରବୀ, ପାର୍ସି, ଇଂରାଜୀ ତଥା ବଙ୍ଗଳା ଭାଷାର ପ୍ରଭୂତ ଆକ୍ରମଣ ହୋଇଥିଲା । ବଙ୍ଗୀୟମାନେ 'ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ' ବୋଲି ଆକ୍ଷେପ କରି ଇଂରେଜମାନଙ୍କ ସହାୟତାରେ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ବଙ୍ଗଳା ଭାଷା ପ୍ରଚଳନ କରାଇବା ପାଇଁ ପ୍ରଚ୍ଛନ୍ନ ଉଦ୍ୟମ କରିଥିଲେ । ଏଣୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକୀ-କରଣ ଆନ୍ଦୋଳନ ସଙ୍ଗେ ଓଡ଼ିଆ ଭାଷାର ଉନ୍ନତି ବିଧାନ ଏକ ଅପରିହାର୍ଯ୍ୟ ପନ୍ଥାରୂପେ ବିବେଚିତ ହୋଇଥିଲା । ଉତ୍କଳ ଭାଷାର ସ୍ୱରୂପକୁ ଅବିକୃତ ରଖିବା ପାଇଁ ଏବଂ ଉପାନ୍ତ ଅଞ୍ଚଳମାନଙ୍କରେ ଓଡ଼ିଆ ଭାଷାର ସୁରକ୍ଷା ପାଇଁ 'ଉତ୍କଳ ସଭା' (୧୯-କ) ଗଠିତ ହେବା ସଙ୍ଗେ ସଙ୍ଗେ ଓଡ଼ିଶାର ଜାତୀୟତାବାଦୀ କବିପ୍ରାଣ ମାତୃଭାଷାର ଉନ୍ନତି ପାଇଁ ଆହ୍ୱାନ ଦେଇଥିଲେ ।

ଫକୀର ମୋହନ ସ୍ପଷ୍ଟଭାବେ ପ୍ରକାଶ କରିଥିଲେ—ମାତୃଭାଷାର ଉନ୍ନତି ନ ଘଟିଲେ ଜାତୀୟ ଦୁର୍ଗତିର ମୂଳୋତ୍ପାଟନ ଅସମ୍ଭବ (୨୦) । ଗଙ୍ଗାଧର ମାତୃଭୂମି, ମାତୃଭାଷା ପ୍ରତି ମମତ୍ୱବୋଧ ଜାତିର କର୍ତ୍ତବ୍ୟ ବୋଲି ବିଚାର କରିଥିଲେ (୨୧) । ମଧୁସୂଦନଙ୍କ କାବ୍ୟ ଚେତନାରେ ମାତୃଭାଷା ପ୍ରତି ଗୌଣ ମନୋଭାବକୁ କଟାକ୍ଷପାତ କରାଯାଇଥିଲା (୨୨) । ବସ୍ତୁତଃ ଭାରତର ଜାତୀୟ ସଂଗ୍ରାମ ସହ ଓଡ଼ିଶାର ଦେଶମିଶ୍ରଣ ଆନ୍ଦୋଳନ କାବ୍ୟ କବିତାର ଧାରାକୁ ପୁଷ୍କଳ କରିଥିଲା ।

## (ଖ)-ସାମାଜିକ ଜୀବନର ବାସ୍ତବ ସ୍ୱରୂପ

ଆଧୁନିକ ଯୁଗର ଉନ୍ମେଷ ପର୍ବରେ କଥା ସାହିତ୍ୟ ଭଳି କାବ୍ୟ ସାହିତ୍ୟରେ ମଧ୍ୟ ସାମାଜିକ ଜୀବନର ବାସ୍ତବ ସ୍ୱରୂପ ପ୍ରକଟିତ ହୋଇଥିଲା । ଓଡ଼ିଶାରେ ବ୍ରାହ୍ମଧର୍ମ ଓ ଆର୍ଯ୍ୟ ସମାଜର ପ୍ରସାର ସହ ବିଭିନ୍ନ ସାମାଜିକ ଅନୁଷ୍ଠାନ ତଥା ସାହିତ୍ୟ ସମିତିର ସଂଗଠନ ଫଳରେ ସାମାଜିକ ସଚେତନତା ତ୍ୱରାନ୍ୱିତ ହୋଇଥିଲା (୨୩) । ଏହି ଅନୁଷ୍ଠାନ ତଥା ସମିତି ସମୂହ ସାମାଜିକ ଜୀବନରେ ଅନ୍ଧ କୁସଂସ୍କାରର ବିଲୋପ ସାଧନ କରି ନୂତନ ଭାବଧାରାର ଆବାହନ କରିଥିଲେ । ବ୍ରାହ୍ମ ଧର୍ମ ଏକେଶ୍ୱରବାଦର ପ୍ରତିଷ୍ଠା ସହ ବହୁବିବାହ, ବାଲ୍ୟବିବାହ ତଥା ସତୀଦାହ ପ୍ରଥାର ଘୋର ବିରୋଧ କରିଥିଲେ । ଆର୍ଯ୍ୟ ସମାଜ ଜାତିର ସାଂସ୍କୃତିକ ବିକାଶ କ୍ଷେତ୍ରରେ ବଳିଷ୍ଠ ସହାୟକ ହୋଇଥିଲା । ବାଲ୍ୟବିବାହ, ବୃଦ୍ଧବିବାହ, ଆଚରଣଗତ ସଂକୀର୍ଣ୍ଣତା, ପୁରୋହିତ-

ସର୍ବସ୍ୱ ସମାଜ, ଗାଁ ମୁଖିଆ, ଜମିଦାର ମହାଜନମାନଙ୍କ ବିରୁଦ୍ଧରେ ସଚେତନତା ନୂଆ ଯୁଗର କବିମାନସକୁ ପ୍ରଭାବିତ କରିଥିଲା । ଏହା ସହ ତତ୍କାଳୀନ ଯୁବଗୋଷ୍ଠୀ-ଙ୍କର ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତିର ଅନ୍ଧାନୁକରଣକୁ କବିଚେତନା ଶାଣିତଭାବେ ଆକ୍ଷେପ କରିଥିଲା । ଏହି ଚିନ୍ତାଧାରାଗୁଡ଼ିକ ନିମ୍ନଲିଖିତ କ୍ରମରେ ଆଲୋଚନା କରାଯାଉଛି—

୧-ବାଲ୍ୟ ବିବାହ ଓ ବୃଦ୍ଧ ବିବାହ ବିରୋଧରେ ଚେତାବନୀ
୨-ପୌରୋହିତ୍ୟବାଦ ବିରୋଧରେ ବିଦ୍ରୋହ
୩-ସାମାଜିକ ବୈଷମ୍ୟ ବିରୁଦ୍ଧରେ ଆହ୍ୱାନ
୪-ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତିର ଅନ୍ଧାନୁକରଣପ୍ରତି ଶ୍ଳେଷ ।

## ୧-ବାଲ୍ୟବିବାହ ଓ ବୃଦ୍ଧବିବାହ ବିରୋଧରେ ଚେତାବନୀ

ଫକୀର ମୋହନ ସେନାପତିଙ୍କ 'ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ' କବିତାରେ ବାଲ୍ୟବିବାହ ଓ ବୃଦ୍ଧବିବାହ ପ୍ରଥା ବିରୋଧରେ କଟୁ କଟାକ୍ଷ ପ୍ରକାଶ କରାଯାଇଥିଲା । ଷାଠିଏ ବର୍ଷ ବୟସ୍କ ବୃଦ୍ଧ ବିଶୁରଥଙ୍କର ଆଠବର୍ଷ ବୟସ୍କା ଚନ୍ଦ୍ରପ୍ରଭା ସହିତ ବିବାହ ଓ ବିଶୁରଥଙ୍କ ମୃତ୍ୟୁପରେ ବୈଧବ୍ୟ ଦଶା ଭୋଗ କରିବା ପାଇଁ ଚନ୍ଦ୍ରପ୍ରଭା ଉପରେ ସମାଜର ନିର୍ମମ ଅତ୍ୟାଚାର ବିରୁଦ୍ଧରେ କବିତାଟିରେ ତୀବ୍ରସ୍ୱର ଉତ୍ତୋଳନ କରା-ଯାଇଥିଲା (୨୪) । ଫକୀର ମୋହନ ବ୍ରାହ୍ମ ଧର୍ମରେ ଦୀକ୍ଷିତ ହୋଇ ନ ଥିଲେ । କିନ୍ତୁ ବ୍ରାହ୍ମ ଧର୍ମର ମାନବିକ ଆବେଦନ ତାଙ୍କୁ ବିଶେଷ ଭାବେ ପ୍ରଭାବିତ କରିଥିଲା । ଏଣୁ ସାମାଜିକ ଜୀବନର ଅବହେଳିତ ଚରିତ୍ରଗୁଡ଼ିକର ଅଶ୍ରୁଳ ଉଚ୍ଚାରଣ ତାଙ୍କ କବିତାରେ ପ୍ରତିଧ୍ୱନିତ ହୋଇଥିଲା ।

ନନ୍ଦକିଶୋର ବଳଙ୍କ 'ବାଲ୍ୟବିଧବା' କବିତା, ବିଧବା ବିବାହ ସପକ୍ଷରେ ଏକ ଆହ୍ୱାନ । 'କନକଲତା' ଉପନ୍ୟାସରେ ନନ୍ଦକିଶୋର ବିଧବା ଉମା ସହ ସଂସ୍କାରିକ ରାଜେନ୍ଦ୍ରର ବିବାହ ସମ୍ବନ୍ଧ ସ୍ଥାପନ କରିବା ପାଇଁ ଉଦ୍ୟମ କରିଥିଲେ । ମାତ୍ର ସମାଜପତିମାନଙ୍କ ଆକ୍ରମଣ ଭୟରେ ତାହା ଅସଂପୂର୍ଣ୍ଣ ରହିଥିଲା । ଉମା ଜୀବନର କରୁଣ ପରିଣତିର ସମାଧାନ 'ବାଲ୍ୟବିଧବା' କବିତାରେ ରୂପାୟିତ ।

## ୨-ପୌରୋହିତ୍ୟବାଦ ବିରୋଧରେ ବିଦ୍ରୋହ

ରାଧାନାଥ, ଗଙ୍ଗାଧର ଓ କୁନ୍ତଳାକୁମାରୀ ପ୍ରମୁଖ କବିଙ୍କ ସୃଷ୍ଟିରେ ଧର୍ମ କବଳିତ ଆର୍ଥିକ ଶୋଷଣର ଏକ ଉପାୟ ତା'ର ସୂଚନା ପ୍ରଦତ୍ତ ହୋଇଛି । ରାଧାନାଥଙ୍କ 'ମହାଯାତ୍ରା'ର କଳି ଆଗମନ ପ୍ରସଙ୍ଗରେ ଧର୍ମଧ୍ୱଜୀ ପୁରୋହିତ

ସଂପ୍ରଦାୟର ଶୋଷଣ ପ୍ରବୃତ୍ତି ପ୍ରତି ଶାଣିତ ଅଙ୍ଗୁଳି ନିର୍ଦ୍ଦେଶିତ ହୋଇଛି (୨୫) । ଗଙ୍ଗାଧରଙ୍କ 'ପ୍ରେତର ଅନୁତାପ' କବିତାରେ ମଧ୍ୟ ପୌରୋହିତ୍ୟବାଦ ବିରୁଦ୍ଧରେ ପ୍ରତିକ୍ରିୟା ପ୍ରକଟିତ । ଗଙ୍ଗାଧର ପରଲୋକଗତ ଏକବ୍ୟକ୍ତିର ପ୍ରେତାତ୍ମାର ପଶ୍ଚାତାପ ଛଳରେ ପୁରୋହିତ ସମାଜର ଛଦ୍ମରୂପ ଉଦ୍‌ଘାଟନ କରିଛନ୍ତି । ପ୍ରେତାତ୍ମାର ମୁକ୍ତି ଅର୍ଥଲୋଲୁପ ପୁରୋହିତମାନଙ୍କର କ୍ରିୟା କର୍ମ ଦ୍ୱାରା ସମ୍ଭବ ନୁହେଁ । କାରଣ ଏହି କ୍ରିୟା କର୍ମ ଏକ ବାହ୍ୟାଡ଼ମ୍ବର । ପୁରୋହିତ ସଂପ୍ରଦାୟର ଅର୍ଥ ଓ ଭୋଗ୍ୟ ବସ୍ତୁ ସଂଗ୍ରହର ଏହା ଏକ ପନ୍ଥା (୨୬) । କୁନ୍ତଳା କୁମାରୀ ସାବତଙ୍କ 'ଗଡଜାତ କୃଷକ' କବିତାରେ ମଧ୍ୟ ଧର୍ମୀୟ ଅନୁଷ୍ଠାନକୁ ଦରିଦ୍ର ଜନସାଧାରଣଙ୍କ ଶୋଷଣର ମାର୍ଗରୂପେ ଅବତାରଣା କରାଯାଇଛି (୨୭) ।

### ୩-ସାମାଜିକ ବୈଷମ୍ୟ ବିରୁଦ୍ଧରେ ଆହ୍ୱାନ

ଗଙ୍ଗାଧର ଓ କୁନ୍ତଳା କୁମାରୀ ପ୍ରମୁଖଙ୍କ କବିତାରେ ସାମାଜିକ ବୈଷମ୍ୟ ଓ ସମାଜ ଉପରେ ତା'ର ପ୍ରତିକୂଳ ପ୍ରଭାବର ସୂଚନା ମିଳିଥିଲା । ଗଙ୍ଗାଧରଙ୍କର 'ଜ୍ୟେଷ୍ଠ ଜାତିର ଅପକର୍ମର ପରିଣାମ' ଓ 'ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ-ଅବତାର' (୨୮) । କବିତା । ଦୁଇଟିରେ ସାମାଜିକ ବୈଷମ୍ୟ ପାଇଁ ତଥାକଥିତ ଉଚ୍ଚବର୍ଗ ଉପରେ ଦୋଷାରୋପ କରାଯାଇଛି । ସମାଜରେ ଉଚ୍ଚ ପଦାଧିଷ୍ଠିତ ପରସ୍ୱାପହରଣରତ ନେତୃବର୍ଗ ତଥା ଦୁରାଗ୍ରହୀ ଶାସକ ଓ ପ୍ରଶାସକ ବର୍ଗଙ୍କୁ ଗଙ୍ଗାଧର 'ଧର୍ମାବତାର' କହି ଆକ୍ଷେପ କରିଅଛନ୍ତି । ସମାଜର ଜ୍ୟେଷ୍ଠ ଜାତିର ଏହି ଅପକର୍ମ ହେତୁ ସାଧାରଣ କୃଷକ ସଂପ୍ରଦାୟ କିଭଳି ଦୁରବସ୍ଥାର ସମ୍ମୁଖୀନ ହୋଇଛନ୍ତି ତାହା ତାଙ୍କର 'କୃଷକ ସଙ୍ଗୀତ'ରେ ଅଭିବ୍ୟକ୍ତ ହୋଇଛି (୨୯) ।

'ଗଡ଼ଜାତ କୃଷକ'ରେ କୁନ୍ତଳା କୁମାରୀ ଗଡ଼ଜାତ ଶାସିତ ଅଞ୍ଚଳର ନିମ୍ନ-ବର୍ଗର ଜନସାଧାରଣଙ୍କର ଆର୍ଥିକ ଅନଗ୍ରସରତାର ମର୍ମସ୍ପର୍ଶୀ ଚିତ୍ର ଉପସ୍ଥାପିତ କରିଛନ୍ତି । ସମାଜ ଜୀବନରେ ଧନୀ ଓ ଦରିଦ୍ର ଭେଦଭାବ ହେତୁ କୃଷକ ସମାଜର ଅସହାୟ ଅବସ୍ଥା ପ୍ରତି ଶଂସିତ କବିତାରେ ଏକ ମାନବଧର୍ମୀ ସମ୍ବେଦନଶୀଳତା ପ୍ରକଟିତ ହୋଇଛି—

"ଖାଇବା ବିହୁନେ କି ନୁହେଁ ମଣିଷ
ମଞ୍ଚ ଭୂଇଁରେ
ସବୁ ରୋଗ ଦୁଃଖ ଓଷଧ ମୌଷଧି
ଖାଇବା ତଳେ

ଧନବନ୍ତ ଜନେ ବୁଝୁଥାନ୍ତେ ଯେବେ
ଏହି କଥାଟି
ପୋକ ପ୍ରାୟେ କମ୍ପା ମଣିଷ ମରନ୍ତା
ଭୂଇଁ ସାଉଁଟି (୩୦) ।"

'ସ୍ଫୁଲିଙ୍ଗ'ରେ ସାମାଜିକ ବୈଷମ୍ୟର ସ୍ୱରୂପ ମଧ୍ୟ ସ୍ପଷ୍ଟଭାବେ ପ୍ରତିଫଳିତ ହୋଇଛି । ଉଚ୍ଚ ଆସନରେ ବସିବାକୁ ବୋଲିଉଥିବା ଲୋକେ ତନ୍ତୀ ଓ କୃଷକର ବସନ ଓ ଅନ୍ନରେ ପ୍ରତିପାଳିତ ହୁଅନ୍ତି । କିନ୍ତୁ ଉଚ୍ଚବର୍ଗର ଲୋକେ ରୁହନ୍ତି ତୁଙ୍ଗ ପ୍ରାସାଦରେ । ନିମ୍ନବର୍ଗର ଲୋକେ ରୁହନ୍ତି ଅନାବୃତ୍ତ ମାଟି ଉପରେ (୩୧) ।

**୪-ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତିର ଅନ୍ଧାନୁକରଣ ପ୍ରତି ଶ୍ଳେଷ**

'ଦରବାର'ରେ କବିବର ରାଧାନାଥ ରାୟ ତତ୍କାଳୀନ ଶିକ୍ଷିତ ସମାଜର ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତିର ଅନ୍ଧାନୁକରଣକୁ ବ୍ୟଙ୍ଗ କରିଛନ୍ତି । ଶିକ୍ଷିତ ଗୋଷ୍ଠୀଙ୍କର ସାହେବ ପୋଷାକ ଓ ସାହେବ ଠାଣି ହାସ୍ୟରସର ଉପାଦାନ ଯୋଗାଇଛି (୩୨) । ଫକୀର ମୋହନ ଇଂରାଜୀ ଶିକ୍ଷା ପ୍ରତି ଯୁବସମାଜର ଅହେତୁକ ଅନୁରକ୍ତିକୁ ବିଦ୍ରୂପ କରିଛନ୍ତି (୩୩) । ଯୁବ ମାନସର ଗୌଣ ମନୋଭାବ ଏହି କବିତାଗୁଡ଼ିକରେ ଉନ୍ମୋଚିତ ହୋଇଛି । ଦେଶର ସ୍ୱାଧୀନତା ବୈଦେଶିକ ଶକ୍ତିଦ୍ୱାରା ଅପହୃତ ହୋଇଥିବାବେଳେ ଶିକ୍ଷିତ ଯୁବଗୋଷ୍ଠୀଙ୍କର ନିଶା-ପଶା-ବେଶ୍ୟା-ଆଦି ଆସକ୍ତି କବିମନକୁ ଅତିଷ୍ଠ କରିଛି (୩୪) । ବ୍ୟଙ୍ଗ, ବିଦ୍ରୂପ ମାଧ୍ୟମରେ ଏହି ପ୍ରବୃତ୍ତିଗୁଡ଼ିକୁ ସେମାନେ ତୀବ୍ର ସମାଲୋଚନା କରିଛନ୍ତି ।

**ସବୁଜ କାବ୍ୟଚେତନାରେ ବାସ୍ତବବାଦ**

ବିଂଶ ଶତାବ୍ଦୀର ତୃତୀୟ ଦଶକ ବେଳକୁ ସବୁଜ କାବ୍ୟ ଚେତନାର ଅଭ୍ୟୁଦୟ ଘଟିଥିଲା । ଅନ୍ନଦାଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ, କାଳିନ୍ଦୀଚରଣ ପାଣିଗ୍ରାହୀ, ଶରତଚନ୍ଦ୍ର ମୁଖାର୍ଜୀ ଓ ହରିହର ମହାପାତ୍ରଙ୍କ ସମ୍ମିଳିତ ଉଦ୍ୟମରେ ଏହାର ସୃଷ୍ଟି ହୋଇଥିଲା । ରବୀନ୍ଦ୍ରନାଥଙ୍କ ଧାରାରେ ରୋମାଣ୍ଟିକ ଚେତନାର ରୂପାୟନ ସବୁଜ କବିତାର ଏକ ସ୍ୱାତନ୍ତ୍ର୍ୟ । କାଳ୍ପନିକ ସ୍ୱପ୍ନଲୋକକୁ ଯାତ୍ରା କରିବା ପାଇଁ ସବୁଜ କବି ସତତ ଉନ୍ମୁଖ (୩୫) । କିନ୍ତୁ କୌତୂହଳର ବିଷୟ ଏହି ଯେ ରୋମାଣ୍ଟିକ କବିତା ରଚନାର ସମକାଳରେ ସବୁଜ କବିଗଣ ସାମାଜିକ ଜୀବନର ବୈଷମ୍ୟ ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି । ଅନ୍ନଦାଶଙ୍କରଙ୍କ 'ପ୍ରଳୟ ପ୍ରେରଣା' କବିତାରେ ଏହି ବୈପ୍ଳବିକ ଆହ୍ୱାନ ମୂର୍ତ୍ତିମନ୍ତ ହୋଇଛି—

"ଅଗ୍ନିକଣା ! ଅଗ୍ନିକଣା
ଦେହଦୀପେ ଜାଳ ଦୀପ୍ତ ଶିଖା,
ତୀବ୍ର ତେଜେ ଦହିବ ମୁଁ
ଜଡ଼ତାର ଅନ୍ଧ-କୁଜ୍‌ଝଟିକା (୩୬) ।"

'ଅଗ୍ନିକଣା' ଏଠାରେ ବୈପ୍ଲବିକ ଚେତନାର ରୂପକ । କବି, କୁଜ୍‌ଝଟିକା-ପକ୍ଷାନ୍ତରେ ନିଜର ସୁପ୍ତ ଚେତନାକୁ ବିପ୍ଳବର ଅଗ୍ନିକଣାର ସଂଯୋଗଦ୍ୱାରା ଚଳଚଞ୍ଚଳ କରିବା ପାଇଁ ଚାହିଁଛନ୍ତି । ସମାଜର ତଥାକଥିତ ଧର୍ମ ତଥା ନୈତିକ ସଙ୍କୀର୍ଣ୍ଣତା ବିରୋଧରେ ତାଙ୍କର ସଂଗ୍ରାମ ଅଭିପ୍ରେତ । ମାନବର ଏହି କଳଙ୍କିତ ଆଚରଣର ସ୍ତୂପରେ କବି ପ୍ରଳୟର ଇନ୍ଧନ ସଂଯୋଗ କରିବା ପାଇଁ ଅଙ୍ଗୀକାରବଦ୍ଧ । କବିଙ୍କର ପ୍ରଳୟ କାମନା ଏକ ଧ୍ୱଂସ-ମୁଖୀ ପ୍ରକ୍ରିୟା ମାତ୍ର ନୁହେଁ, ପକ୍ଷାନ୍ତରେ ପ୍ରଗତିଶୀଳ ଜନଶକ୍ତିର ଜୀବନସ୍ରୋତକୁ ରୁଦ୍ଧ କରୁଥିବା ପାରମ୍ପରିକ ମୂଲ୍ୟବୋଧ ବିରୁଦ୍ଧରେ ଏହା ଏକ ସଙ୍ଗଠିତ ବିପ୍ଳବ । 'ସବିତା' ଅନ୍ନଦାଶଙ୍କରଙ୍କର ଅନ୍ୟଏକ ବାସ୍ତବଧର୍ମୀ କବିତା । 'ସବିତା' ବା ସୂର୍ଯ୍ୟ ଏଠାରେ ତାରୁଣ୍ୟ ଶକ୍ତିର ଏକ ଉତ୍ସ । ଜରାଜୀର୍ଣ୍ଣ, ସଂକୀର୍ଣ୍ଣ ସାମାଜିକ ଚେତନାକୁ ଭସ୍ମକରି ଏହି ତରୁଣ ଶକ୍ତି ନୂତନ ସମାଜର ସର୍ଜନା କରି-ପାରନ୍ତି (୩୭) । 'କମଳବିଳାସୀର ବିଦାୟ' ରେ ରୋମାଣ୍ଟିକ ସ୍ୱପ୍ନଚେତନାରୁ ବାସ୍ତବ ଜୀବନ ଭୂମିରେ ଅବତରଣ କରିବାର କାବ୍ୟିକ ଇଙ୍ଗିତ ପ୍ରସ୍ଫୁଟିତ (୩୮) । ଏହା ପରେ ଅନ୍ନଦାଶଙ୍କରଙ୍କର କବିମାନସ ଓଡ଼ିଆ କାବ୍ୟ ପରମ୍ପରାରେ ଅଧିକ ଅଗ୍ରଗତି କରିପାରି-ନାହିଁ । 'କମଳବିଳାସୀର ବିଦାୟ'ରୁ ହିଁ ଆଧୁନିକ ଓଡ଼ିଆ କବିତାରୁ ଅନ୍ନଦାଶଙ୍କରଙ୍କର କାବ୍ୟପ୍ରତିଭାର ଯବନିକା ପତନ ଘଟିଛି । ଏହାପରେ ବଙ୍ଗଳା ଭାଷାରେ ତାଙ୍କର ଲେଖନୀ ପରିଚାଳିତ ହୋଇଛି ।

ହିନ୍ଦୀ ସାହିତ୍ୟରେ ଛାୟାବାଦୀ କବି ସୁମିତ୍ରାନନ୍ଦନ ପନ୍ଥ, ଗିରିଜା କୁମାର ମାଥୁର, ନିରାଲା (ସୂର୍ଯ୍ୟକାନ୍ତ ତ୍ରିପାଠୀ), ହରିବଂଶ ରାୟ ବଚ୍ଚନ ପ୍ରମୁଖ ଛାୟାବାଦରୁ ପ୍ରଗତିବାଦୀ ଚିନ୍ତାଧାରାକୁ ଗତିପରିବର୍ତ୍ତନ କଲାଭଳି, ଓଡ଼ିଆ ସାହିତ୍ୟରେ ସବୁଜ କବି କାଳନ୍ଦୀ ଚରଣ ପାଣିଗ୍ରାହୀ ଓ ବୈକୁଣ୍ଠନାଥ ପ୍ରମୁଖ କବିଗଣ ବିଂଶ ଶତାବ୍ଦୀର ଚତୁର୍ଥ ଦଶକରେ ରୋମାଣ୍ଟିକ ଚେତନାରୁ ବାସ୍ତବବାଦୀ ଚେତନାକୁ ଗତି ପରିବର୍ତ୍ତନ କରିଛନ୍ତି । ଏହି ନବ-ଅନ୍ୱେଷାର ଆଦ୍ୟ ପ୍ରସ୍ତୁତି ତୃତୀୟ ଦଶକରେ ଆରମ୍ଭ ହୋଇଥିବାର ସୂଚନା ମିଳେ ।

## ପ୍ରଗତିବାଦୀ ଓଡ଼ିଆ କବିତାର ପୃଷ୍ଠପଟ୍ଟ

ଆନ୍ତର୍ଜାତୀୟସ୍ତରରେ କମ୍ୟୁନିଜମ୍‌ର କ୍ରମପ୍ରସାର ଭାରତର କବିମାନସ ପରି ଓଡ଼ିଶାର କବିଚେତନାକୁ ପ୍ରଭାବିତ କରିଥିଲା । ବିଶେଷତଃ ରୁଷିଆରେ ମାର୍କସ୍‌ବାଦର

ଅପୂର୍ବ ସାଫଲ୍ୟ ପୃଥିବୀର ପଦାନତ, ଶୋଷିତ, ଅବହେଳିତ ସମାଜ ମଧ୍ୟରେ ନବଉଦ୍ଦୀପନାର ସନ୍ଧାନ ଦେଇଥିଲା । 'ସମାଜ'ର 'ସଂବାଦ ସଂକେତ'ରେ ଉତ୍କଳମଣି ଗୋପବନ୍ଧୁ ରୁଷ୍ ବିପ୍ଳବକୁ ସ୍ୱାଗତ ଜଣାଇ କହିଥିଲେ—"କମ୍ୟୁନିଷ୍ଟମାନେ ଯାହା କହୁଛନ୍ତି ତାହା ଦୋଷାବହ ନୁହେଁ । ବିଶେଷତଃ ଏମାନଙ୍କ ନୀତି ଭାରତପକ୍ଷେ ନୂଆ ନୁହେଁ । ସେମାନେ କୁହନ୍ତି ଦେଶରେ ଜଣକର କାହିଁକି ପାଞ୍ଚବାଟି ଜମି ରହିବ ? ଅଥଚ ତା'ଘରେ ଖାଇବାକୁ ଦିଜଣ ଲୋକ × × × ତା ପାଖରେ ଆଉଜଣକର ଦଶଜଣ କୁଟୁମ୍ବ, ଦିମାଣ ଜମି । ସମାଜରେ ଏ ବିଷମ ଅବସ୍ଥା ରହିବା ଉଚିତ ନୁହେଁ । ଦେଶର ସବୁ ସଂପତ୍ତି ସମଗ୍ର ଜାତିର (୩୯) ।"

ଓଡ଼ିଶାରେ ବିଧିବଦ୍ଧ ଭାବେ କମ୍ୟୁନିଷ୍ଟ ପାର୍ଟିର ଗଠନପୂର୍ବରୁ କାଳିନ୍ଦୀଚରଣ ପାଣିଗ୍ରାହୀ, ବୈକୁଣ୍ଠ ନାଥ ପଟ୍ଟନାୟକ, ସଚ୍ଚି ରାଉତରାୟ ଓ ଅନନ୍ତ ପଟ୍ଟନାୟକ ପ୍ରମୁଖଙ୍କ କବିତାରେ ସାମ୍ୟବାଦର ସଂକେତ ପ୍ରକଟିତ ହୋଇଥିଲା । ୧୯୨୬ରେ ପ୍ରକାଶିତ କାଳନ୍ଦୀଚରଣଙ୍କର 'ପୁରୀ ମନ୍ଦିର' କବିତାରେ ପାଷାଣ ଦେବତା ପରିବର୍ତ୍ତେ ପାଷାଣ ଦେବମୂର୍ତ୍ତିର ସ୍ରଷ୍ଟା ଶ୍ରମଜୀବୀମାନଙ୍କ ପାଇଁ କବିପ୍ରାଣ ସମ୍ବେଦନଶୀଳ ହୋଇପଡ଼ିଥିଲା (୪୦) । ବୈକୁଣ୍ଠନାଥ ପଟ୍ଟନାୟକଙ୍କ 'ବନ୍ୟା ବିପ୍ଳବ' କବିତାରେ ବନ୍ୟାର ପୃଷ୍ଠପଟରେ ସାମାଜିକ ବିପ୍ଳବର ସଂକେତ ମିଳିଥିଲା । ପ୍ରବଳ ବୃଷ୍ଟିପାତ ମଧ୍ୟରେ ବନ୍ୟା ପ୍ରପୀଡ଼ିତ ଲୋକେ ଗଛତଳେ ଆଶ୍ରୟ ନେଇଥିଲାବେଳେ ଧନିକଗୋଷ୍ଠୀ ବିଳାସବ୍ୟସନପୂର୍ଣ୍ଣ ସୌଧରେ ନିଶ୍ଚିନ୍ତରେ ନିଦ୍ରିତ । ସାମ୍ୟବାଦୀ କବିଙ୍କ ଭାଷାରେ ଦରିଦ୍ରର ଶ୍ରମପୁଷ୍ଟ ଏହି ଧନିକ ଗୋଷ୍ଠୀର ଧ୍ୱଂସ ସାଧନ ଅନିବାର୍ଯ୍ୟ (୪୧) । 'ପାଥେୟ'ର କେତେକ ପଂକ୍ତିରେ ମଧ୍ୟ କବି ରାଉତରାୟ ଶ୍ରେଣୀ ବୈଷମ୍ୟର ବିଲୋପସାଧନ ପାଇଁ ଆଶାପୋଷଣ କରିଛନ୍ତି (୪୨) ।

କିନ୍ତୁ ଉଭୟ 'ବନ୍ୟାବିପ୍ଳବ' ଓ 'ପାଥେୟ'ରେ ସାମ୍ୟବାଦୀ ବିପ୍ଳବର ସ୍ୱର ପୂର୍ଣ୍ଣାଙ୍ଗ ଭାବେ ବିକଶିତ ହୋଇପାରିନାହିଁ । କାରଣ 'ପାଥେୟ' ମୁଖ୍ୟତଃ ରହସ୍ୟ ଓ ରୋମାଣ୍ଟିକବାଦର ଏକ କାବ୍ୟିକ ସମନ୍ୱୟ । 'ବନ୍ୟାବିପ୍ଳବ'ରେ ବନ୍ୟା ପ୍ରପୀଡ଼ିତ ବୃନ୍ଦଙ୍କର ତ୍ୟାଗପୂତ ଭାବନା ଓ ନୀରବରେ ସାମାଜିକ ଭେଦଭାବକୁ ବରଣ କରିନେବାର କାମନା ସାମ୍ୟବାଦୀ ବିପ୍ଳବବିରୋଧୀ (୪୩) ।

୧୯୩୬–୩୭ ମସିହାରେ ବୈକୁଣ୍ଠନାଥଙ୍କ 'ରିକ୍ସାବାଲା', 'ଗର୍ଜି', ୧୯୩୫ ମସିହାରେ କାଳନ୍ଦୀ ଚରଣଙ୍କର 'ଜୟ ଭଗବାନ', ୧୯୩୬–୩୭ ମସିହାରେ ଲକ୍ଷ୍ମୀଧର ନାୟକଙ୍କ 'ପ୍ରଳୟର ପଥେ', 'ବଞ୍ଚିତର ଆଶା', 'ପ୍ରଭାତର ଯାତ୍ରୀ', ୧୯୩୫

ମସିହାରେ ଅନନ୍ତ ପଟ୍ଟନାୟକଙ୍କ 'ଫୁଟାଇବ୍ ଆଜି ରକ୍ତ ପ୍ରଭାତ' ଆଦି କବିତା ରଚିତ ହୋଇଥିଲା । ୧୯୩୧ ମସିହାରେ ରଚିତ କବି ରାଉତରାୟଙ୍କ 'ଭଗବାନ୍ ଅଛ କାହିଁ', ୧୯୩୮ ମସିହାରେ ପ୍ରକାଶିତ 'ଅଭିଯାନ'ରେ ଅନ୍ତର୍ଭୁକ୍ତ ହୋଇଥିଲା । ୧୯୩୮ ଓ ତତ୍ପରବର୍ତ୍ତୀ କାଳରେ ଏହି କାବ୍ୟସ୍ୱର ଅଧିକ ସଂଗଠିତ ଓ ଶାଣିତ ହୋଇଥିଲା ।

ସାହିତ୍ୟରେ ସାମାଜିକ ବିପ୍ଳବର ସ୍ୱର ଝଂକୃତ ହେବା ପୂର୍ବରୁ ଭାରତର ସାମାଜିକ ପରମ୍ପରାରେ ରକ୍ତାକ୍ତ ବିପ୍ଳବର ସୂତ୍ରପାତ ହୋଇଥିଲା । ୧୯୨୨ ମସିହାରେ ଉତ୍ତର ପ୍ରଦେଶର ଚଉରିଚଉରା ଠାରେ ଏକ ହିଂସାକାଣ୍ଡ ଘଟିଥିଲା । ଜାତୀୟ କଂଗ୍ରେସର ନେତୃବର୍ଗ କ୍ଷୁବ୍ଧ ହୋଇ ଏଥିରେ ହିଂସା ରହିଗଲା ବୋଲି ନିନ୍ଦା କଲେ । ମାତ୍ର ଉଦ୍‌ବେଳିତ ଯୁବଶକ୍ତି ଏଥିରେ ଏକମତ ହୋଇ ପାରିଲେ ନାହିଁ । ମାର୍କସ୍‌ଙ୍କ ତତ୍ତ୍ୱ ଓ ଚିନ୍ତାଦର୍ଶ ସେମାନଙ୍କୁ କର୍ମ-ପ୍ରଲୁବ୍ଧ କରିଥିଲା । ଦୁର୍ବାର ଯୁବଶକ୍ତି ଭାରତର ସ୍ୱାଧୀନତା ପାଇଁ ଅଙ୍ଗୀକାରବଦ୍ଧ ହୋଇଥିଲେ । ତରୁଣମାନଙ୍କର ଅସଂଗଠିତ ବିପ୍ଳବକୁ ସଂଗଠିତ କରିବାପାଇଁ ଜାତୀୟ କଂଗ୍ରେସ ମଧ୍ୟରେ ବାମପନ୍ଥୀ ଚେତନାର ଅଭ୍ୟୁଦୟ ଘଟିଥିଲା । ବାମପନ୍ଥୀ ଚିନ୍ତାନାୟକଗଣ ଅନୁଭବ କରିଥିଲେ, ରାଜା, ଜମିଦାର, ସାହୁକାର ଓ ଶିଳ୍ପପତି ଗଣ ଇଂରେଜ ସାମ୍ରାଜ୍ୟବାଦର ଗୋଟିଏ ଗୋଟିଏ ଭିତ୍ତିସ୍ତମ୍ଭ । ଏଣୁ ଏହି ଭିତ୍ତିସ୍ତମ୍ଭକୁ ଉତ୍ଖାତ କରିବାପାଇଁ ତୀବ୍ରତର ଆନ୍ଦୋଳନ ସୃଷ୍ଟି କରିବାକୁ ହେବ । ଏହି ଚେତନାବୋଧ ଓ ଜାଗରଣର ପ୍ରତିକ୍ରିୟାସ୍ୱରୂପ ଭାରତର ରାଜଶକ୍ତି ତଥା ଓଡ଼ିଶାର ରାଜା, ଜମିଦାରଙ୍କ ବିରୁଦ୍ଧରେ ଆନ୍ଦୋଳନର ସୂତ୍ରପାତ ହେଲା । ବନ୍ୟାପ୍ରପୀଡ଼ିତ କ୍ଷୁଧିତ କନିକାର ପ୍ରଜାମାନଙ୍କ ଉପରେ ଚାଲିଥିବା ଶୋଷଣ ବିରୋଧରେ ପ୍ରବଳ ଜନମତ ଉଦ୍‌ବେଳିତ ହେଲା । 'ଦୁଃଖିନୀ କନିକା'ର କରୁଣ କାହାଣୀ କବି ବାଞ୍ଛାନିଧିଙ୍କ କଣ୍ଠରେ ପ୍ରତିଧ୍ୱନିତ ହେଲା—

"ଅତ୍ୟାଚାରୀ ନର ପିଶାଚ ମାନସ
ଅତ୍ୟାଚାରେ ସିନା ଲଭଇ ସନ୍ତୋଷ
ପାପୀ ପାପକର୍ମ ଦିନେ ନ କରିଲେ
ଆହାର କି ତା'କୁ ରୁଚିବ ?
କେତେଦିନ ଆଉ ଦୁଃଖିନୀ କନିକା
ଅନୀତି କଷଣ ସହିବ ?"

୧୯୩୦ ମସିହାରେ ଗାନ୍ଧୀଜୀ ଗୋଲ୍‌ଟେବୁଲ୍ ବୈଠକରୁ ଶୂନ୍ୟ ହସ୍ତରେ ଫେରିବା ପରେ

ଜାତୀୟତାବାଦୀ କବି ବାଞ୍ଛାନିଧି ଭାଷାରେ ପ୍ରକାଶ କରି ଗାଇଥିଲେ—

"କହ କହ କେଉଁ ଜାତି
ପାଇଛି ମୁକତି
କରିଛି ହାର ହର ଗୁହାରି"

**ନବ ଯୁଗ ସାହିତ୍ୟ ସଂସଦର ପ୍ରତିଷ୍ଠା**

ଜାତୀୟତାବାଦୀ କବିମାନଙ୍କର ବୈପ୍ଳବିକ କାବ୍ୟସ୍ୱର ତତ୍କାଳୀନ ଜାତୀୟତାବାଦୀ ପରିସର ପରିପ୍ରେକ୍ଷୀରେ ପ୍ରେରଣାପ୍ରଦ ହୋଇଥିଲେ ମଧ୍ୟ, ଏହା ମୂକ ଜନତାର ନିର୍ଯ୍ୟାତନା ଓ ନିଷ୍ପେଷଣର ବାହକ ହୋଇପାରିନଥିଲା । ଏଣୁ ଓଡ଼ିଶାର କମ୍ୟୁନିଷ୍ଟ ଭାବାପନ୍ନ ଯୁବଗୋଷ୍ଠୀ ୧୯୩୫ ମସିହାରେ ନବଯୁଗ ସାହିତ୍ୟ ସଂସଦ ଗଠନ କରିଥିଲେ । ଏହାର ପ୍ରତିଷ୍ଠାତା ଥିଲେ କମ୍ରେଡ଼୍ ଭଗବତୀ ପାଣିଗ୍ରାହୀ । ୧୯୩୬ ମସିହାରେ ନବଯୁଗ ସାହିତ୍ୟ ସଂସଦର ମୁଖପତ୍ର 'ଆଧୁନିକ'ରେ ସାହିତ୍ୟର ପ୍ରଗତିବାଦୀ ଆଭିମୁଖ୍ୟ ସଂପର୍କରେ ସୂଚନା ଦେଇ ସେ କହିଥିଲେ—"ଜାତିର ସବୁ ଅଂଶରେ ଏକ ତୁମୂଳ ପରିବର୍ତ୍ତନର ଆଭାସ ମିଳୁଛି । ଏହି ପରିବର୍ତ୍ତନ ନାନା ସ୍ଥଳରେ ଯେପରି ଆତ୍ମପ୍ରକାଶ କରୁଛି ଓଡ଼ିଶାରେ 'ଆଧୁନିକ'ର ଆବିର୍ଭାବ ସେହିପରି ଗୋଟିଏ ପ୍ରାଥମିକ ଉପାୟର ଚିହ୍ନମାତ୍ର । × × × ସମାଜର ବିଭିନ୍ନ ଶ୍ରେଣୀ ଓ ସ୍ୱାର୍ଥର ସଂଘର୍ଷରୁ ଯେଉଁ ସବୁ ସମସ୍ୟା ଜାତ ହେଉଛି ତାହାର ସମାଧାନ ସ୍ୱତଃସିଦ୍ଧ । × × × ପ୍ରଗତିବାଦୀ ସାହିତ୍ୟ ବ୍ୟକ୍ତିବିଶେଷର ଆସ୍ଥା ବା ଅନାସ୍ଥା ଉପରେ ଗୁରୁତ୍ୱ ଆରୋପ କରିବ ନାହିଁ । ସାହିତ୍ୟରେ ଗଣଚେତନା ସୃଷ୍ଟି କରିବା ଏହାର ଲକ୍ଷ୍ୟ ।" (୪୪)

'ଆଧୁନିକ' ଭଳି ବିଂଶ ଶତାବ୍ଦୀର ଚତୁର୍ଥ ଦଶନ୍ଧିରେ ପ୍ରକାଶିତ 'ମୁକ୍ତିଯୁଦ୍ଧ', 'ସଂକେତ', 'କୃଷକ', 'ସବୁହରା' ଓ 'ପ୍ରଗତି' ଆଦି ପତ୍ରିକା ଦୀର୍ଘକାଳ ସ୍ଥାୟୀ ହୋଇପାରିନଥିଲେ ମଧ୍ୟ ଓଡ଼ିଶାର ବୈପ୍ଳବିକ କାବ୍ୟାକାଶରେ ନବଦିଗ୍‌ବଳୟର ସନ୍ଧାନ ଦେଇଥିଲେ । ଏଣୁ ପରକାଳରେ ରାଜନୈତିକ ଅନୁବନ୍ଧନରହିତ ବସ୍ତୁନିଷ୍ଠ ବାସ୍ତବବାଦୀ କବିତା ଲେଖିବା ପାଇଁ ତତ୍ପର ହୋଇଉଠିଥିଲେ ।

## ପାଦଟୀକା

(୧)—"ଯେଉଁ ଇଉରୋପୀୟ ଭାବଧାରା ଷୋଡ଼ଶ ଶତକରୁ ଆରମ୍ଭକରି ବିଂଶ ଶତକ ପର୍ଯ୍ୟନ୍ତ ଦୀର୍ଘ ଚାରିଶହ ବର୍ଷର ବହୁସାଧନା ନବନବ ଉଦ୍ଭାବନ ଓ ଆବିଷ୍କାର ଫଳରେ ସମ୍ଭବ ହୋଇଥିଲା, ତାହାର ସାରାଂଶ ଭାରତବର୍ଷର ଅଗ୍ରଗାମୀ ଶିକ୍ଷିତ ସମାଜ ଗୋଟିଏ ଶତାବ୍ଦୀ ବା ତାହାଠାରୁ ଆହୁରି ଊଣାକାଳ ମଧ୍ୟରେ ଗ୍ରହଣ କରିଥିଲେ ।"

ଡ଼କ୍ଟର ନରେନ୍ଦ୍ର ନାଥ ମିଶ୍ର—ଆଧୁନିକ ଓଡ଼ିଆ କାବ୍ୟଧାରା—୧୯୬୩-ପୃ ୭୫

(୨)—"ସାମ୍ରାଜ୍ୟବାଦୀ ସାହିତ୍ୟ ଦାସ-ସାହିତ୍ୟ, ଘୃଣ୍ୟ, ନିନ୍ଦନୀୟ ଓ ସର୍ବଥା ବର୍ଜନୀୟ, ଏବଂ ସାମନ୍ତବାଦୀ ଯୁଗରେ ଜାତୀୟବାଦ ନ ଥାଏ । ତେଣୁ ତାହା ଉକ୍ତ ସାହିତ୍ୟରେ ପ୍ରକାଶ ପାଏ ନାହିଁ ।

× × ×

କିନ୍ତୁ 'ଭାରତଗୀତିକା', 'ଦରବାର' ଏବଂ 'ମହାଯାତ୍ରା' ପ୍ରଭୃତି ଜାତୀୟବାଦୀ ସାହିତ୍ୟର ଅନ୍ତର୍ଗତ ।

× × ×

ଏହାଦ୍ୱାରା ସାହିତ୍ୟିକ ତତ୍କାଳୀନ ଅବସ୍ଥାରେ ଲୋକଙ୍କର ରୁଚି, ଆଶା, ଆକାଙ୍କ୍ଷା ଫୁଟାଇବାରେ କେତେକ ପରିମାଣରେ ସମର୍ଥ ହୋଇଛନ୍ତି ।

ପ୍ରାଣନାଥ ପଟ୍ଟନାୟକ (ଆସନ୍ତା କାଲିର ସାହିତ୍ୟ-ପୃ ୧୩, ୧୫)

(୩)—"ଏହିକି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେଟିକି ଆର୍ଯ୍ୟନାମ ଦାୟାଦ ଜଗତେ

× × ×

ଭୀରୁତା ଯେ ସେହିପରି ଧୀରର ମରଣ
ଭୀରୁଭାବ ବହିତୁମ୍ଭେ ମୃତ ଏ ଜଗତେ,"

ରାଧାନାଥ ଗ୍ରନ୍ଥାବଳୀ—ମହାଯାତ୍ରା-ସପ୍ତମ ସର୍ଗ ପୃ-୧୯୨

(୪)—"ଉପାଧି-ଜଡ଼ିତେ ଉପାଧି ଜଡ଼ିତ
ଉପାଧିରେ ଆଜି କରିବେ ଜଡ଼ିତ

× ×

ଏହି ଗୁରୁ ଏହି କଳ୍ପିତକର
ସମ୍ମାନ ସକାଶେ ଏଡ଼େ ବ୍ୟସ୍ତନର ।

ରାଧାନାଥ ଗ୍ରନ୍ଥାବଳୀ—ଦରବାର ପୃ-୨୫୪

(୫)—"ଭାରତ ଶର୍ମଣି କୃତ ମସ୍ତ୍ରାଭନ—
ର୍ନବମିଦ ମୈକ୍ୟ ବିଧାନମ୍
ଉତ୍କଳ ଗୌଡ଼ାନ୍ଧ୍ରୀୟାଃ ସଂସଦ
ଯେବସ୍ତୁମନ୍ତ ସମେତାଃ
ଏତେ ରୂପର ଜନ ପଦଜା ନନୁ
ଭାରତ-ବାନ୍ଧବ-ନିକେତାଃ"
ରାଧାନାଥ ଗ୍ରନ୍ଥାବଳୀ—ଭାରତଗୀତିକା ପୃ-୧

(୬)—"ଓଳତଳେ ଲୁଣ କୋଟିଏ ମହଣ ଥାଉ ମୋହ କଥା ଶୁଣ,
ବୋଇଲେ କି ହେବ ଖାଇବାକୁ ହେବ ଲିଭରପୁଲର ଲୁଣ ।
ମାଞ୍ଚେଷ୍ଟର ତନ୍ତ୍ରୀ ଲୁଗା ବୁଣୁଛନ୍ତି ତୁମ୍ଭମାନଙ୍କ ସକାଶେ,
ବୃତ୍ତ୍ୟୁ ତନ୍ତ୍ରୀ ବଂଶ ହେଉ ସର୍ବନାଶ ଯାଆନ୍ତୁ ସେ ବନବାସେ ।
ଫକୀରମୋହନ ଗ୍ରନ୍ଥାବଳୀ—୨ୟ—ଭାଗ ପୃ-୭୩୪

(୭)—"ଭାରତକୁ କାର୍ପାସ ପଳାଇଛୁ ଛାଡ଼ି
ନ ପାରିଲ ଦେଇ ସେ ବିଦେଶକୁ ଧାଡ଼ି
କପାକ୍ଷେତ୍ର ସ୍ୱଦେଶେ ନ ପାରିଲେ କରି
ଭାବିଦେଖ ଭାଇହେ ସମସ୍ତେ ହେବ ତ
ପଶୁ ସରି ହେ"
ଗଙ୍ଗାଧର ଗ୍ରନ୍ଥାବଳୀ—କୃଷକ ସଙ୍ଗୀତ—କପା—ପୃ-୪୧୧

(୮)—"ଲୁଣଗଣ୍ଡା ପାଇଁ କରିଦେଲ ମନା
କହିବାକୁ ମୋତେ ମାଡ଼ୁଛି ଲାଜ
ହେ ବ୍ରିଟିଶ ରାଜ
ମୋ ବାଡ଼ି ଭିତରେ ଲୁଣର ଅମଳ
ଅଲଣା ଖା'ନ୍ତି ଦୁଃଖୀ ଓଡ଼ିଆ"
ନନ୍ଦକିଶୋର ଗ୍ରନ୍ଥାବଳୀ—ପୃ-୩୧୮

(୯)—"ଗୃହରେ ଅରଟ ଗ୍ରାମେ ପଞ୍ଚାୟତ
ଗ୍ରାମବାସୀଗଣ ମଧ୍ୟେ ଏକ ମତ
× × ×
ବିଦେଶୀ ଅମେଧ୍ୟ ବସ୍ତ୍ର ଛାଡ଼ି ଆଗେ
ହାତ ସୂତା ଲେଢ଼ା ଏ ସ୍ୱରାଜ୍ୟ ମାଗେ"
ବନ୍ଦୀର ଆତ୍ମକଥା—ଗୋପବନ୍ଧୁ ଦାସ—ପୃ-୧୭, ୧୮

(୧୦)—',ଖାଇ ଏବେ ଅରଟ ନାଟ
ଆଉ କିଛି ଭରସା ନାହିଁ
ଅରଟ ଏକା ମୁକତି ବାଟ'

କାନ୍ତ ସାହିତ୍ୟ ମାଳା—ପୃ-୧୧୮୫

(୧୧)—"ଚନ୍ଦ୍ରୀଙ୍କ ଆଙ୍ଗୁଠି କାଟି ମାଞ୍ଚେଷ୍ଟର ଲୁଗାରେ
ଆମ ଘର କଲେ ଭଣ
ଯେଉଁ ଆମ ଘର ଲୁଣି ପାଉଁବାରେ
ଗନ୍ତାଘର ଭରି କୋମଳ କପାରେ
ଲଭରପୁଲ ଲୁଗା ପେଡ଼ି କଉଡ଼ିରେ
ନ କିଣିଲେ ଆଉ ଗତି ନାହିଁରେ"

ଆହ୍ୱାନ-କୁନ୍ତଳାକୁମାରୀ ଗ୍ରନ୍ଥମାଳା-୧ମଖଣ୍ଡ—ପୃ-୬୧୭

(୧୨)—"ସୁନାର ଭାରତ ହେଲା ଛାରଖାର
ଖାଇବାକୁ ନପାଇଲୁ ଆହାର
ବିଦେଶୀ ଦରବେ ଆମ ଘର ଗଲା ଭରି
ସତ କହିବାକୁ ଲୋକେ ମରୁଛନ୍ତି ଡ଼ରି ।"

ମୋହନ ବଂଶୀ—ପୃ-୨

(୧୩)—"ସ୍ୱାଧୀନତା ମାନବର ଜନ୍ମ ଅଧିକାର
ସ୍ୱାଧୀନ ଭାଷଣ ଆଦି ସ୍ୱାଧୀନ ବିହାର
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି
ଗୃହ ଧର୍ମେ ମାନବର ସମାଜ ସଂସ୍ଥିତି"

କାରାକବିତା—ପୃ-୧୦

(୧୪)—"ମିଶୁମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼"

ବନ୍ଦୀର ଆତ୍ମକଥା—ପୃ-୧

(୧୫)—"ସ୍ୱରାଜ୍ୟ ଆମର ଜନ୍ମ ଅଧିକାର
ନମିଳେ ଯଦି ତା ଧ୍ୱଂସ ଆପଣାର

× × ×

ସାଧନା ଆମର ଭାରତ ଉଦ୍ଧାର
ମହାଶକ୍ତି ଅସ୍ତ୍ରେ ମ୍ଳେଚ୍ଛର ସଂହାର"

ଆହ୍ୱାନ—କୁନ୍ତଳାକୁମାରୀ ଗ୍ରନ୍ଥମାଳା ପ୍ରଥମଭାଗ—ପୃ-୬୧୯

(୧୬)—"ଆସ ଏକ ସଙ୍ଗେ ହିନ୍ଦୁ, ମୁସଲମାନ
ଶିଖ, ପାର୍ସୀ, ବୌଦ୍ଧ, ଇହୁଦୀ, ଖ୍ରୀଷ୍ଟାନ
ଏହି ହିନ୍ଦୁସ୍ଥାନେ ତୁମ ବାସସ୍ଥାନ
ତାର ଅପମାନେ ତୁମ ଅପମାନ"

ଉନ୍ନୈବ—ପୃ-୬୧୧

(୧୭)—"ଉତ୍କଳ ପବିତ୍ର ଭୂମି ଭାରତ ମଧ୍ୟରେ
କରନ୍ତି ଏଥିରେ ବାସ ପୁଣ୍ୟବନ୍ତ ନରେ
ମାତ୍ର ଆହା ଏହି ଜାତି ହୋଇ ଖଣ୍ଡ ଖଣ୍ଡ
ସକଳ ସୌନ୍ଦର୍ଯ୍ୟ ହୋଇଅଛି ଲଣ୍ଡଭଣ୍ଡ"

ଫକୀର ମୋହନ ଗ୍ରନ୍ଥାବଳୀ—ଉତ୍କଳ ଭ୍ରମଣଂ ପୃ-୬୦୧

(୧୮)—"ଜାତି ନାଦଘୋଷ ଚଳାବ କି ହାଇ
ସ୍ୱାର୍ଥକୁ ସାରଥୀ କଲେ
ଟାଣେ କରେ ଭାଇ ଦାନାର ତୋବଡ଼ା
ଘୋଡ଼ା ମୁହେଁ ବନ୍ଧା ଥିଲେ ।"

ଉତ୍କଳ ସନ୍ତାନ—ମଧୁସୂଦନ ଦାସ

(୧୯)—"ଉଠକଙ୍କାଳ, ଭେଦ ମହାକାଳ
ଜାଗ ଦୁର୍ବଳ ଆଜ
ଉଠୁ ଗତ ଗୌରବ, ହୃତ ଗୌରବ
ମୃତ ଗୌରବ ରାଜ ।"

ଉଠ କଙ୍କାଳ—ଗୋଦାବରୀଶ ଲେଖାବଳୀ—ପୃ-୬୧୪

(୧୯—କ) "ପଡ଼ୋଶୀ ପ୍ରଦେଶ ସଙ୍ଗେ ରହିଥିବା ଓଡ଼ିଆ ଭାଷୀ ଅଞ୍ଚଳରୁ ଓଡ଼ିଆ ଭାଷା ଓ ସଂସ୍କୃତିକୁ ଲୋପ କରିଦେବା ପାଇଁ କ୍ରମାଗତ ଷଡ଼ଯନ୍ତ୍ର ଚାଲିଲା । × × × × ସେତେବେଳେ ମଧୁସୂଦନ ଦାସ, ଗୋକୁଳାନନ୍ଦ ଚୌଧୁରୀ ଓ ଗୌରୀଶଙ୍କର ରାୟଙ୍କ ନେତୃତ୍ୱରେ ୧୮୮୨ରେ ଗଠିତ 'ଉତ୍କଳ ସଭା' ଓଡ଼ିଆ ଭାଷା ଉଠାଇ ଦେବା ପ୍ରସ୍ତାବର ତୀବ୍ର ବିରୋଧ କରିଥିଲେ ଓ ସେଥିପାଇଁ ଆନ୍ଦୋଳନ ଚଳାଇଥିଲେ ।"

(ଓଡ଼ିଶାର ରାଜନୈତିକ ଇତିହାସ-ଶ୍ରୀ ବଳରାମ ମହାନ୍ତି-ପୃ ୪୨) ।

(୨୦)—"ନ କରିଲେ ମାତୃଭାଷା ଉନ୍ନତି
ଘୁଞ୍ଚିବଙ୍କ କେବେ ଦେଶ ଦୁର୍ଗତି ?
(ଫକୀର ମୋହନ ଗ୍ରନ୍ଥାବଳୀ-ପୃ ୮୬୯-୮୭୦—ଦ୍ୱିତୀୟ ଭାଗ)

(୨୧)—"ମାତୃଭୂମି ମାତୃ-ଭାଷାରେ ମମତା
ଯା ହୃଦେ ଜନମି ନାହିଁ
ତାକୁ ଯେବେ ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନୀ ରହିବେ କାହିଁ ?
(ଗଙ୍ଗାଧର ଗ୍ରନ୍ଥାବଳୀ-ପୃ ୩୩୬)

(୨୨)—"ମାତୃଭାଷା ପୋଥି ଛୁଇଁବାକୁ କରେ
ଅନ୍ୟ କେଉଁ ଜାତି ଲଜ୍ଜା ବେବେ କରେ ।
(ମଧୁସୂଦନ ଗ୍ରନ୍ଥାବଳୀ-ପୃ ୩୦୪)

(୨୩) – (କ) ଓଡ଼ିଶାରେ ବ୍ରାହ୍ମଧର୍ମର ପ୍ରତିଷ୍ଠା-୧୮୪୯ ମସିହା
(ଖ) ଓଡ଼ିଶାରେ ଆର୍ଯ୍ୟ ସମାଜର ସ୍ଥାପନା-୧୮୭୬ ମସିହା
(ଗ) ଆଲୋଚନା ସଭା-୧୮୯୩ ମସିହା ଓ ପରବର୍ତ୍ତୀ କାଳରେ ଏହା ଉତ୍କଳ ସାହିତ୍ୟ ସମାଜ (୧୯୦୩)ରେ ରୂପାନ୍ତରିତ ।
(ଘ) ଦେଶହିତୈଷିଣୀ ସଭା-୧୮୭୪ ମସିହା ।

(୨୪)—"ଧନ୍ୟ ଧନ୍ୟ ହେ ସମାଜ କୁଠାର ତୁମଙ୍କୁ
କୁହାଉଛ ପୁଣି ତୁମ ବିଧି ବିଧାନକୁ
ଜାଣିଥିବ, ଚନ୍ଦ୍ରପ୍ରଭା ପ୍ରତ୍ୟେକ ନିଶ୍ୱାସ
କରି ପକାଇବ କେତେ କୁଳକୁ ବିନାଶ"
(ଚନ୍ଦ୍ରପ୍ରଭାର ନିର୍ଜ୍ଜଳା ଏକାଦଶୀ—ଫକୀର ମୋହନ ଗ୍ରନ୍ଥାବଳୀ-ଦ୍ୱିତୀୟ ଭାଗ-ପୃ ୮୪) ।

(୨୫)—"କେହ୍ବ ବା ଠାପୁଆ ପଣେ ଧର୍ମଧ୍ୱଜ ଧରି
ପରଠାରୁ ସଦା ଅର୍ଥ ଶୋଷଣ-ପ୍ରୟାସୀ,
ଧର୍ମ ନାମେ ନିଜ ପେଟ ପୋଷଣ ସକାଶେ;
(ମହାଯାତ୍ରା—ରାଧାନାଥ ଗ୍ରନ୍ଥାବଳୀ-ପୃ ୧୬୩)

(୨୬)—"ପ୍ରେତ ବୋଲେ ମୋର ନାମେ ମୋ ପଣ୍ଡାଙ୍କ
ନେଲେ କୂଳ ପୁରୋହିତ
ମୋ ନାମରେ ଧନ ନେଇ ଖାଇଥିବି
ନିଷ୍ଚିନ୍ତେ ହେଲେ ନିଦ୍ରିତ"
(ପ୍ରେତର ଅନୁତାପ-ଗଙ୍ଗାଧର ଗ୍ରନ୍ଥାବଳୀ-ପୃ ୩୩୯)

(୨୭)—"ଏ ଦଉଁ ଦେବତା ଧରମତ ସବୁ
ତୁମ ବଇରୀ,
ଗରବ ଦଳିବା ପାଇଁ କରେ ବାବୁ
ଜନ୍ମ ତାଙ୍କରି"
(ଗଡ଼ଜାତ କୃଷକ-କୁନ୍ତଳାକୁମାରୀ ଗ୍ରନ୍ଥମାଳା—ପୃ ୩୦୪)

(୨୮)—ଗଙ୍ଗାଧର ଗ୍ରନ୍ଥାବଳୀ-ପୃ ୩୨୪, ୩୨୭

(୨୯)—"ସତ କରି କହନ୍ତୁ ଖାନ୍ତ କି ନା ଘିତ
କାହା ହାତେ ହେଉଛୁ ଭୂମିରୁ ତା ଜାତ
ନେବେ ପଡ଼ୁଅଛୁ କି ତାହାଙ୍କ ଦୁର୍ଦ୍ଦଶା
କାହୁଁ ଦେଖି ପାରିବେ ସେ ଆଡ଼େ ଲଗିତ
ଅଛୁ ପଶା ହୋ"
(କୃଷକର ଆତ୍ମକଥା-କୃଷକ ସଙ୍ଗୀତ-ଗଙ୍ଗାଧର ଗ୍ରନ୍ଥାବଳୀ—ପୃ-୩୯୩)
(୩୦)—(ଗଡ଼ଜାତ କୃଷକ-କୁନ୍ତଳା କୁମାରୀ ଗ୍ରନ୍ଥମାଳା-ପ୍ରଥମ ଖଣ୍ଡ ପୃ ୩୦୩)

(୩୧)—"ବୋଲଉଛ ବାବୁ ବସି ଉଚ୍ଚ ଆସନରେ
ଲଜ ଲୁଚୁଅ କନ୍ତୁ ମୋ ଦରିଦ୍ର ବସନରେ,
ମୋ ଦରିଦ୍ର ଅଶନ ପୁଣି ନିସ୍ୱତ ଭୋଜନ
ତୁଙ୍ଗ ପ୍ରାସାଦରେ ତୁମେ, ତଳେ ମୋ ରୋଦନ"
(ସ୍ଫୁଲିଙ୍ଗ-କୁନ୍ତଳାକୁମାରୀ ଗ୍ରନ୍ଥମାଳା-ପୃ ୨୦୭)

(୩୨)—ସାହେବ ପୋଷାକ କେହ୍ନ ଅବା ପିନ୍ଧି
ସମ୍ପୃତେ କହଇ ବଙ୍କା ବଙ୍କା ହିନ୍ଦୀ,
ଥରେ ଥରେ କାସି ସାହେବ-ଠାଣିରେ
ପୋଛଇ ବଦନ ରୋମାଲ କାନ୍ନରେ,
ପ୍ରକଟାଇ ପୂରା ସାହେବ ଧଣିଆ
ଫରକଟା ଗୋଡ଼େ ହୁଏ ପୁଣିଠିଆ ।
(ଦରବାର—ରାଧାନାଥ ଗ୍ରନ୍ଥାବଳୀ—ପୃ-୨୫୬)

(୩୩)—"ଏ ସବୁ ପାଠର ଗୁଣ ଓଲଟା
ଦେହ ସରୁହୁଏ ବୁଦ୍ଧି ଟା ମୋଟା"
(ମୁଁ ହାଣ୍ଟ ବାହୁଡ଼ା—ଫକୀର ମୋହନ ଗ୍ରନ୍ଥାବଳୀ—୨ୟ ଖଣ୍ଡ—ପୃ-୪୭୫)

(୩୪)—"ପଣା ଖେଳ ସଭକେ ବସି ବାବୁମାନେ
ଦେଖୁଛନ୍ତି ରାଜ୍ୟକୁ ସ୍ୱରଗ ସମାନେ
× × ×
ଟାଣିଥାନ୍ତି ପଣାରେ ଅପସରମନ
କେବେ ସୁରାଳୟକୁ କରନ୍ତି ଗମନ"
(କୃଷକର ଆତ୍ମକଥା-ଗଙ୍ଗାଧର ଗ୍ରନ୍ଥାବଳୀ—ପୃ-୩୯୨)

(୩୫)—"ଯିବା ପଳାଇ ଦୂରେ ସୁଦୂରେ
ସ୍ୱପନ ଲୋକେ ଗୋପନ ପୁରେ
ଚନ୍ଦ୍ରତାରକା ଏଡ଼ାଇ
ଘଞ୍ଚବନରେ ଝରଣାକୂଳେ
ମଳୟ ଯହିଁ ନଷ୍ଟତ ବୁଲେ
କୁସୁମ କେଉ ଉଡ଼ାଇ
ନୂତନ ସ୍ୱପ୍ନ—ସବୁଜ କବିତା ପୃ-୧୩

(୩୬)—(ପ୍ରଳୟ ପ୍ରେରଣା—ସବୁଜ କବିତା ପୃ-୧)

(୩୭)—"ଆମେ ସରବେ ସବିତା ଶିଖା
ଆମ ଲଲାଟେ ବହ୍ନି ଟୀକା
ସ୍ରଷ୍ଟା ଆମେ
ଆମେ ପ୍ରଳୟଙ୍କର ଗୋ"
(ସବିତା—ସବୁଜ ଅକ୍ଷର—ପୃ-୧୯)

(୩୮)—"ନିଷ୍ଠୁର ବାସ୍ତବରଣେ ଆସିଛୁ ଆହ୍ୱାନ
ଥାଅ ମୁର୍ଦ୍ଧା ପ୍ରଣୟିନୀ, ସ୍ୱପ୍ନାଳସୀ ରାଣୀ
କମଳବିଳାସୀ କବି ମାଗଇ ମେଲାଣି।
(ସବୁଜ କବିତା—କମଳ ବିଳାସୀର ବିଦାୟ-ପୃ ୪୫)

(୩୯)—'ସମାଜ'—ସଂବାଦ ସଂକେତ—୨/୧/୧୯୨୬

(୪୦)—"ତାହାର ସକାଶେ
ଏ ପାଷାଣ ପାଶେ
ନମସ୍କାର
ବାରମ୍ବାର"
(ପୁରୀ ମନ୍ଦିର ୧୯୨୬—ସବୁଜ କବିତା-ପୃ ୧୨୯)

(୪୧)—"ସାମ୍ୟବାଦୀ ଦେଶସେବୀ ଧନୀ ସୌଧେ ଅଙ୍ଗୁଳି ଦର୍ଶାଇ
ତର୍ଜିକହେ ଧ୍ୱଂସ ବିନା ଦରିଦ୍ରର ଅନ୍ୟଗତି ନାହିଁ।
ପରଅଙ୍ଗ ପୁଷ୍ଟ ଯେତେ ନିବସନ୍ତି ବିଳାସ ବ୍ୟସନେ
ଗତ୍ୟନ୍ତର ନାହିଁ ଯେବେ ନ ମିଶିବେ ମାଟିରେ ସେ ରଣେ।
(ବନ୍ୟା ବିପ୍ଳବ ୧୯୩୩—ବୈକୁଣ୍ଠନାଥ ଗ୍ରନ୍ଥାବଳୀ—୧ମ ଭାଗ—ପୃ ୪୨୪).

(୪୨)—"ଦାରିଦ୍ର୍ୟର ଅଭିଶାପେ ଧରଣୀ ମଳିନ
ଦୁର୍ବଳର ଅଶ୍ରୁଧାରେ ସୃଷ୍ଟି ହେବ ଲୀନ
ପ୍ରବଳର ଅତ୍ୟାଚାର, ଉତ୍ପୀଡ଼ନ ତ୍ରାସ
ଦୀନର ଲୋତକ ଲାଗି ଦିନେ ହେବ ଧ୍ୱଂସ।"
(ପାଥେୟ ୧୯୩୧-ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ—ପୃ-୮୬୬)

(୪୩)—"..................ଲୋଡ଼ା ନାହିଁ ବାବୁ ଅଭିଶାପେ
ସୃଷ୍ଟିର ମଙ୍ଗଳ ହେଉ ଆମେ ପଛେ ମରୁଁ ଆତ୍ମପାପେ
× × ×
ଉଦ୍ଦେଶ୍ୟ ତା ହେଉ ସିଦ୍ଧ ଏ ଜୀବନ ଯାଉ ଦିଆ ନିଆ
ଜଗନ୍ନାଥ, ଜଗନ୍ନାଥ, ସେହି ଏକା ଭରସା ଜୀବନେ
କହି ନୀରବିଲେ ବୃଦ୍ଧ ଶାନ୍ତ ନେତ୍ରେ ନମେ କବି ଜଣେ।"
(ବନ୍ୟା ବିପ୍ଳବ—ବୈକୁଣ୍ଠନାଥ ଗ୍ରନ୍ଥାବଳୀ—ପୃ ୪୨୪, ୪୨୫)

(୪୪)—"ଆଧୁନିକ"—ପ୍ରଥମବର୍ଷ—ପ୍ରଥମ ସଂଖ୍ୟା।

## ପଞ୍ଚମ ପରିଚ୍ଛେଦ

# ପ୍ରଗତିବାଦୀ କବିତାରେ ବାସ୍ତବବାଦୀ ଚେତନା

ପ୍ରଗତିବାଦୀ କବିତାରେ ବାସ୍ତବବାଦ ଏକ ମିଶ୍ରିତ କାବ୍ୟିକ ପ୍ରତିକ୍ରିୟାର ବହିଃପ୍ରକାଶ । ବାମପନ୍ଥୀ ଚିନ୍ତାଧାରା, ଭାରତର ମୁକ୍ତି ସଂଗ୍ରାମ, ଓଡ଼ିଶାରେ ଗଡ଼ଜାତ-ପ୍ରଜାଆନ୍ଦୋଳନ, ଦ୍ୱିତୀୟ ବିଶ୍ୱଯୁଦ୍ଧ, ଭାରତର ସ୍ୱାଧୀନତା ପ୍ରାପ୍ତି, ସ୍ୱାଧୀନତା ପରବର୍ତ୍ତୀ କାଳରେ ଗଣତନ୍ତ୍ରର ସୁରକ୍ଷା ଦ୍ୱାରା ସାମାଜିକ ପ୍ରଗତି ସଂସାଧନ—ଏହି କାବ୍ୟ-ପ୍ରତି-କ୍ରିୟାର ଏକ ଏକ ବିଶିଷ୍ଟ ପାର୍ଶ୍ୱ ।

**୧୯୩୮-୭୦ ମଧ୍ୟରେ ବିବର୍ତ୍ତିତ କବିତାର ସାମାଜିକ ଓ ରାଜନୈତିକ ଭିତ୍ତିଭୂମି**

୧୯୩୮-୭୦—ଏହି ଦୀର୍ଘ ବତିଶ ବର୍ଷ ମଧ୍ୟରେ ଓଡ଼ିଶାର ସାମାଜିକ ଓ ରାଜନୈତିକ ଜୀବନ ବହୁ ଘାତ-ପ୍ରତିଘାତ, ସଂଗ୍ରାମ-ସଂଘର୍ଷ, ଆଶା-ଆକାଙ୍‌କ୍ଷା, ଉତ୍ସାହ-ଉଦ୍ଦୀପନା ଓ ବିଷାଦ-ବେଦନାରେ ବିଧୂର । ଏହି ଘଟଣାବହୁଳ ଯାତ୍ରା ପଥରେ କବିମାନସ ସ୍ୱର୍ଣ୍ଣୀହଂସପୁରର ହଂସତୂଳୀ ଶଯ୍ୟାର ସ୍ୱପ୍ନ ବିଭୋରତା ଭଙ୍ଗ କରି ରୂଢ଼ ବାସ୍ତବତାର ରୌଦ୍ର ଦଗ୍‌ଧ ମଧ୍ୟାହ୍ନରେ ଉପନୀତ ହୋଇଛି । ଶାଶ୍ୱତ ଜଗତର ସତ୍ୟ, ଶିବ, ସୁନ୍ଦର ଭାବନା ପରିବର୍ତ୍ତେ ତାପ-ତୃଷା-ତପ୍ତ ମଣିଷ ମନର ଅବୁଝା ବ୍ୟଥା ପ୍ରଗତିବାଦୀ କାବ୍ୟ ଚେତନାର ଉପଜୀବ୍ୟ ହୋଇଅଛି । କବିତା ସୁକୁମାରୀ ରାଜକନ୍ୟା ପରି ପୁଷ୍ପ ପରାଗର ସ୍ୱପ୍ନିଳ ଆବେଶରେ ବିହରଣ ନ କରି ପରିଣତ ହୋଇଛି, ମାଟିର ଅଶ୍ରୁରେ/ମାଟିର ମର୍ମ ବାଣୀରେ (୧) ।'

୧୯୩୬ ମସିହା ଅପ୍ରେଲ ପହିଲାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେବା ସଙ୍ଗେ ସଙ୍ଗେ ଭାରତ ଶାସନ ସଂସ୍କାର ଆଇନ ଫଳରେ ନିର୍ବାଚିତ ଲୋକ ପ୍ରତିନିଧି-ବର୍ଗଙ୍କୁ ପ୍ରାଦେଶିକ ଶାସନ ଅଧିକାର ଦିଆଯାଇଥିଲା । ଶହ ଶହ ବର୍ଷର ପରାଧୀନତା ପରେ ଏହି ସ୍ୱାୟତ୍ତଶାସନ ପ୍ରତିଷ୍ଠା ଓଡ଼ିଆ ଜାତି ମଧ୍ୟରେ ଏକ ଆଶାପ୍ରଦ ଦାତାବରଣ ସୃଷ୍ଟି କରିଥିଲା । ସୁତରାଂ ନୂତନ ଓଡ଼ିଶା ପ୍ରଦେଶ ଗଠନ ପରେ ଉତ୍କଳ-କେନ୍ଦ୍ରିକ

ଜାତୀୟତାବୋଧକୁ ଭିତ୍ତିକରି ଅଧିକ ଜାତୀୟତାବାଦୀ କବିତା ସୃଷ୍ଟି ହୋଇ ପାରିନଥିଲା । କିନ୍ତୁ ସ୍ୱତନ୍ତ୍ର ଉତ୍କଳପ୍ରଦେଶ ଗଠିତ ହେବା ସତ୍ତ୍ୱେ ଷଡ଼େଇକଳା, ଖରସୁଁଆ ଆଦି ଅଞ୍ଚଳକୁ ବାଦ ଦିଆଯାଇଥିବା ହେତୁ ଉତ୍କଳ ଜନନୀ ଅପୂର୍ଣ୍ଣାଙ୍ଗ ଓ ଖଣ୍ଡିତ ହୋଇ ରହିଲେ । ପରବର୍ତ୍ତୀ କାଳରେ ରାଜ୍ୟ ପୁନର୍ଗଠନ ବା ସୀମା କମିଶନ ରିପୋର୍ଟ (୨) । ର ପ୍ରତିକୂଳ ମନ୍ତବ୍ୟ ହେତୁ ଉପରୋକ୍ତ ଅଞ୍ଚଳ ଓଡ଼ିଶା ସଙ୍ଗେ ସଂଯୁକ୍ତ ହୋଇ ପାରି ନ ଥିଲା । ଫଳରେ ଓଡ଼ିଶାରେ ଜନ ଅସନ୍ତୋଷ ପ୍ରକାଶ ପାଇଥିଲା ଏବଂ ଓଡ଼ିଆ କବିତାରେ ଏହାର ପ୍ରତିଫଳନ ଘଟିଥିଲା ।

ଇଂରେଜ ଶାସନ ଅମଳରେ ପ୍ରାକୃତିକ ଓଡ଼ିଶାର ଶାସନକୁ ମୋଗଲବନ୍ଦୀ ଓ ଗଡ଼ଜାତ ଭେଦରେ ବିଭକ୍ତ କରାଯାଇଥିଲା । ଢେଙ୍କାନାଳ, ନୀଳଗିରି, ନୟାଗଡ଼, ରଣପୁର, ତାଳଚେର ଇତ୍ୟାଦି ଗଡ଼ଜାତ ଅଞ୍ଚଳଗୁଡ଼ିକ କରଦ ରାଜବଂଶ ଦ୍ୱାରା ଶାସିତ ହେଉଥିଲା । ଏହି ସମୟରେ ସମଗ୍ର ଭାରତବର୍ଷରେ ଗଡ଼ଜାତ ଅଞ୍ଚଳର ରାଜ-ରାଜୁଡ଼ାଙ୍କ ବିରୁଦ୍ଧରେ ବିପ୍ଳବର ଯେଉଁ ଆବାଜ ଉଠିଥିଲା ତାର ପ୍ରତିଧ୍ୱନି ଓଡ଼ିଶାର ଗଡ଼ଜାତ ଅଞ୍ଚଳର ବଣ ପାହାଡ଼କୁ ନିନାଦିତ କରିଥିଲା । ସେମାନେ ସାଧାରଣ ଶାସନ କ୍ଷେତ୍ରରେ ମୋଗଲବନ୍ଦୀ ପ୍ରଜାମାନଙ୍କ ପରି ବିବେଚିତ ହେବା ସଙ୍ଗେ ସଙ୍ଗେ ସାମଗ୍ରିକ ସ୍ୱାଧୀନତା ପାଇଁ ଅତିଷ୍ଠ ହୋଇ ଉଠିଥିଲେ । ଏଣୁ ଓଡ଼ିଶାର ଗଡ଼ଜାତ ଅଞ୍ଚଳ ମାନଙ୍କରେ ଆନ୍ଦୋଳନର ତୀବ୍ରତା ପ୍ରକାଶ ପାଇଥିଲା । ଜନସାଧାରଣ ଶାସକଗୋଷ୍ଠୀର ଲାଠି, ଗୁଳି, ଗୋଳା, ବନ୍ଧୁକ ଓ ବାୟୋନେଟକୁ ଭୟ ନ କରି ଆଗେଇ ଚାଲିଥିଲେ । ଏହି ଅଗ୍ରଗାମୀ ପ୍ରଜା ଆନ୍ଦୋଳନର ତୀବ୍ର ଧାସରେ ଗଡ଼ଜାତ ଅଞ୍ଚଳର ମୁଖ୍ୟ ଶାସକ (ପଲିଟିକାଲ ଏଜେଣ୍ଟ) ବେଜେଲ୍‌ଗେଟ୍ ସାହେବ ରଣପୁରରେ ଟଳି ପଡ଼ିଥିଲେ । ଏହାର ପରିଣାମ ସ୍ୱରୂପ ରଣପୁରର ନିରୀହ ଜନସାଧାରଣ ନିର୍ମମ ଅତ୍ୟାଚାରର ସମ୍ମୁଖୀନ ହୋଇଥିଲେ । ରଘୁ, ଦିବାକର ଫାଶି କାଠରେ ଝୁଲିଲେ । ବହୁ ପ୍ରଜା ଦୀର୍ଘ କାରାବାସର ଯନ୍ତ୍ରଣା ଭୋଗକଲେ । ମୋଗଲବନ୍ଦୀର ବାମପନ୍ଥୀ ନେତୃବର୍ଗଙ୍କ ପ୍ରତ୍ୟକ୍ଷ ଓ ପରୋକ୍ଷ ସାହାଯ୍ୟରେ ଗଡ଼ଜାତ ଅଞ୍ଚଳରେ ବିପ୍ଳବର ଦାବାନଳ ଜଳି ଉଠିଲା । ଦେଶର କୃଷକ, ଶ୍ରମିକ ଓ ଗୃହିମାନଙ୍କ ମଧ୍ୟରେ ଅଭୂତପୂର୍ବ ଜାଗରଣ ସୃଷ୍ଟି ହେଲା । କବି ଚେତନା କାବ୍ୟଧାରାରେ ଏହି ବିପ୍ଳବ ଓ ଜନଜାଗରଣ ପାଇଁ ପ୍ରେରଣା ଦେଲା ।

ହଠାତ୍ ୧୯୩୯ ମସିହା ସେପ୍‌ଟେମ୍ବର ମାସରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ବ୍ରିଟେନ୍ ଏହି ଯୁଦ୍ଧରେ ବ୍ୟାପୃତ ହେବାରୁ ଭାରତର ଜନସାଧାରଣଙ୍କର

ମତାମତ ନ ନେଇ ସେମାନଙ୍କୁ ବିଶ୍ୱଯୁଦ୍ଧରେ ବ୍ୟାପୃତ କରିଦେଲା । ସୁତରାଂ ଯୁଦ୍ଧ ବିରୋଧୀ ହାଓ୍ୱା ସୃଷ୍ଟି କରି ଦେଶକୁ ଧନଜନ କ୍ଷୟରୁ ମୁକ୍ତ କରିବାର ଚିନ୍ତା ଭାରତର ଜନନାୟକମାନଙ୍କୁ ପ୍ରଭାବିତ କରିଥିଲା । ଏହି ସମୟରେ ହିଟ୍‌ଲାର ହଠାତ୍ ରୁଷ ଆକ୍ରମଣ କରିଦେବା ଫଳରେ କମ୍ୟୁନିଷ୍ଟମାନଙ୍କ ସ୍ୱର ପରିବର୍ତ୍ତିତ ହୋଇଗଲା । ଦ୍ୱିତୀୟ ବିଶ୍ୱଯୁଦ୍ଧକୁ ସେମାନେ 'ମୁକ୍ତିଯୁଦ୍ଧ' ଆଖ୍ୟା ଦେଇ 'ଫାସିବାଦ୍' ଓ 'ନାଜିବାଦ' ବିରୋଧରେ ସ୍ୱର ଉତ୍ତୋଳନ କଲେ । ଆମେରିକୀମାନେ ପରମାଣୁ ବୋମା ପ୍ରକ୍ଷେପଣ ଓ ବର୍ଲିନ ପତନପରେ ଅକ୍ଷଶକ୍ତି (axis powers)ର ଅଣ୍ଟା ଭାଙ୍ଗି ପଡ଼ିଲା । ଜାପାନ ସହାୟତାରେ ସୁଭାଷବୋଷଙ୍କ ଦ୍ୱାରା ଗଠିତ ଆଜାଦ ହିନ୍ଦ୍ ବାହିନୀର 'ଦିଲ୍ଲୀ ଚଲୋ' ଧ୍ୱନି ଧୂଆଁରେ ମିଶିଗଲା । ଏକ ବିମାନ ଦୁର୍ଘଟଣାରେ ନେତାଜୀଙ୍କର ଦେହାବସାନ ହେଲା ବୋଲି ପ୍ରଚାରିତ ହେଲା । ଏହିପରି ଏକ କରୁଣ ଓ ନିର୍ମମ ପରିବେଶ ମଧ୍ୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଲେଲିହାନ ଅଗ୍ନିଶିଖା ନିର୍ବାପିତ ହେଲା । ବିଶ୍ୱଯୁଦ୍ଧର ଘନଘଟା ଫଳରେ ପୃଥିବୀର ପ୍ରାକ୍ତନ ଚିନ୍ତାଧାରାରେ ଘୋରତର ପରିବର୍ତ୍ତନ ସଂଘଟିତ ହୋଇଥିଲା । ଇଟାଲି ଓ ଜର୍ମାନୀ ଜାତିର ଉପନିବେଶ ପ୍ରତିଷ୍ଠାର ଆକାଙ୍କ୍ଷା ସେମାନଙ୍କର ପତନର କାରଣ ରୂପେ ପ୍ରମାଣିତ ହେଲା । ଏଣୁ ପୃଥିବୀ ବ୍ୟାପୀ ଉପନିବେଶ-ଗୁଡ଼ିକରେ ଜନ ଜାଗୃତି ସୃଷ୍ଟି ହେଲା ।

୧୯୪୨ ମସିହାରେ ଗାନ୍ଧୀଜୀଙ୍କ ଭାରତଛାଡ଼ ଆନ୍ଦୋଳନ ସାରା ଦେଶରେ ବିଦ୍ରୋହର ଅନଳ ଜାଳିଦେଲା । ୧୯୪୭ ମସିହା ଅଗଷ୍ଟ ମାସ ପନ୍ଦର ତାରିଖ ଦିନ ଭାରତ ସ୍ୱାଧୀନ ହେଲା । କିନ୍ତୁ ଦେଶ ସ୍ୱାଧୀନ ହେବାର ଅବ୍ୟବହିତ ପୂର୍ବରୁ ଓ ପରେ ସାମ୍ପ୍ରଦାୟିକ ବିଦ୍ୱେଷ ଜାତୀୟ ଉତ୍ସାହ ଓ ଉନ୍ମାଦନାକୁ ମ୍ଳାନ ଓ ବିପର୍ଯ୍ୟସ୍ତ କରିଦେଲା । ସତ୍ୟ, ସେବା ଓ ଅହିଂସାର ପୂଜାରୀ ଗାନ୍ଧୀଜୀ ଆତତାୟୀର ଗୁଳିରେ ଢଳି ପଡ଼ିଲେ । ସ୍ୱାଧୀନତା ସଙ୍ଗେ ସ୍ୱରାଜ୍ୟ ଓ ରାମରାଜ୍ୟର ଆଶା ମଉଳି ପଡ଼ିଲା । ବ୍ୟବସାୟ, ବାଣିଜ୍ୟ, ଶାସନ, ପ୍ରଶାସନ ଛଳରେ ପୁଞ୍ଜିବାଦୀ ଶୋଷଣ ପ୍ରବୃତ୍ତି ଅନାହତ ରହିଲା । ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁଙ୍କ ପଞ୍ଚଶୀଳ ନୀତିକୁ ବିରୋଧ କରି ଚୀନ ଭାରତ ଉପରେ ଆକ୍ରମଣ କଲା । ଫଳରେ ସ୍ୱାଧୀନ ଭାରତର ରାଷ୍ଟ୍ରୀୟ ସୁରକ୍ଷା ବାଧାପ୍ରାପ୍ତ ହେବାର ସମ୍ଭାବନା ଉପୁଜିଲା । ଭାରତୀୟ କାବ୍ୟଧାରା ଭଳି ଓଡ଼ିଆ କାବ୍ୟ-ଚେତନାରେ ଏହି ଗୁରୁତ୍ୱପୂର୍ଣ୍ଣ ସାମାଜିକ ତଥା ରାଜନୈତିକ ସଙ୍କେତ କାବ୍ୟାୟିତ ହୋଇ ରାଷ୍ଟ୍ରୀୟ ତଥା ସାମାଜିକ ପ୍ରଗତିର ବାର୍ତ୍ତା ସଂପ୍ରେରିତ ହେଲା ।

ଓଡ଼ିଆ ପ୍ରଗତିବାଦୀ କବିତାରେ ଯେଉଁ ବିଶିଷ୍ଟ ଘଟଣା ତଥା ସମସ୍ୟାଗୁଡ଼ିକ ପ୍ରତି ସଚେତନତା ପ୍ରକଟିତ ହୋଇଥିଲା; ସେଗୁଡ଼ିକ ହେଉଛି—

୧—ମାର୍କସୀୟ ବାସ୍ତବବାଦ

୨—ଗଡ଼ଜାତ ପ୍ରଜାଆନ୍ଦୋଳନ

୩—ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରଭାବ

୪—ଭାରତର ମୁକ୍ତି ସଂଗ୍ରାମ

୫—ସ୍ୱାଧୀନତା ପ୍ରାପ୍ତି : ପ୍ରତିକ୍ରିୟା ଓ ପ୍ରତିଛବି : ସାମ୍ପ୍ରଦାୟିକ ବିଦ୍ୱେଷ

୬—ସୀମାକମିଶନ ରିପୋର୍ଟ ଜନିତ କ୍ଷୋଭ

୭—ଚୀନ ଭାରତ ଯୁଦ୍ଧ

୮—ଉତ୍ତର ସ୍ୱାଧୀନତା ଯୁଗର ବେଦନା

## ୧—ମାର୍କସୀୟ ବାସ୍ତବବାଦ

ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ, କାଳନ୍ଦୀ ଚରଣ ପାଣିଗ୍ରାହୀ, ବୈକୁଣ୍ଠନାଥ ପଟ୍ଟନାୟକ, ଗୋଦାବରୀଶ ମହାପାତ୍ର, ସୁନନ୍ଦ କର, ରଘୁନାଥ ଦାସ, କୁଞ୍ଜବିହାରୀ ଦାସ, ମନୋଜ ଦାସ, ଦୁର୍ଗା ଚରଣ ସାମନ୍ତ, ଲକ୍ଷ୍ମୀଧର ନାୟକ, ଦୁର୍ଗା ଚରଣ କୁଅଁର, ରବି ସିଂହ ପ୍ରମୁଖଙ୍କ କାବ୍ୟ ଚେତନାରେ ମାର୍କସ୍-ପ୍ରବର୍ତ୍ତିତ ବାସ୍ତବବାଦୀ ଚିନ୍ତାଧାରା ଲକ୍ଷ୍ୟ କରାଯାଏ । ସଚ୍ଚି ରାଉତରାୟଙ୍କ ଅଭିଯାନ (୧୯୩୮), ପାଣ୍ଡୁଲିପି (୧୯୪୭), ଅଭିଜ୍ଞାନ (୧୯୪୮), ହସନ୍ତ (୧୯୪୮), ଅନନ୍ତ ପଟ୍ଟନାୟକ ଓ ସଚ୍ଚି ରାଉତରାୟଙ୍କ ଯୁଗ୍ମ ଉଦ୍ୟମରେ ପ୍ରଣୀତ 'ରକ୍ତଶିଖା' (୧୯୩୯), ଗୋଦାବରୀଶ ମହାପାତ୍ରଙ୍କ 'ବିପ୍ଳବ' (୧୯୩୮), ଗୃହୀଭାଇ (୧୯୩୮), କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ଯାଦୁଘର' (୧୯୩୮), 'ଛୁରୀଟିଏ ଲୋଡ଼ା' (୧୯୩୯), ଆଗାମୀ, (୧୯୪୨)' 'କିଏ ଶଳା ସଇତାନ' (୧୯୪୪), ବୈକୁଣ୍ଠନାଥ ପଟ୍ଟନାୟକଙ୍କ 'ମେହେନ୍ତର' (୧୯୪୭), 'ସାବଧାନ ଶ୍ରମଜୀବୀ' (୧୯୪୭), 'ରାଷ୍ଟ୍ରରହସ୍ୟ' (୧୯୪୬), 'ଖେଳାଉଛୁ କାଳୀୟ ନାଗ' (୧୯୪୬), ମାୟାଧର ମାନସିଂହଙ୍କ 'ଚକଅା ଜୀବର ବିଳାପ' (ସହକାର-ନଭେମ୍ବର ୧୯୪୨-ଜାନୁଆରୀ ୧୯୪୩ ମଧ୍ୟରେ ପ୍ରକାଶିତ), ରଘୁନାଥ ଦାସଙ୍କ ସହକାର ୨୦ । ୩, ୨୦ । ୧୦, ୨୧ । ୪, ୨୨ । ୨ ଆଦି ସଂଖ୍ୟାରେ ପ୍ରକାଶିତ ବିଭିନ୍ନ ବୈପ୍ଳବିକ କବିତା, କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ 'ଅଗ୍ନିଶଙ୍ଖ' (୧୯୫୫), 'ମାଟିଦୀପ'

(୧୯୫୬), କୃଷ୍ଣବିହାରୀ ଦାଶଙ୍କ 'ସେ ଏକ ଲେମଣ ନୀଳ ହାତ' (୧୯୫୧), ଯତନ ନଗର (୧୯୫୧), 'ଲଣ୍ଠାର ଛଠି' (୧୯୫୨), 'ସୁନନ୍ଦ କରଙ୍କ 'ଆଗାମୀ କାଲି' (୧୯୪୭), ମନମୋହନ ମିଶ୍ରଙ୍କର 'କୋଟିକଣ୍ଠେ' (୧୯୫୧), 'ମୁକ୍ତି ଡ଼ାକରା' (୧୯୫୧) 'ଆବାଜ' (୧୯୫୪), ମନୋଜ ଦାସଙ୍କ 'ପଦଧ୍ୱନି' (୧୯୫୪), ଲକ୍ଷ୍ମୀଧର ନାୟକଙ୍କ 'ଖୋଲଝରକା' (୧୯୬୯), ରବି ସିଂହଙ୍କ 'ଚରମ ପନ୍ଥ' (୧୯୬୧), 'ଶିଥିଳ ବଲ୍‌ଗା, (୧୯୬୨), 'ଭ୍ରୂକୁଟି' ୧୯୬୩), 'ବିପାର୍ଣ୍ଣି' (୧୯୬୪), 'ପାଦଟିକା' (୧୯୬୫) 'ଜ୍ୱାଳାରମାଳା' (୧୯୬୭) ଓ 'ବିଷବାଣୀ' (୧୯୬୯) ଆଦି କବିତାରେ ଏହି ପ୍ରଗତିବାଦୀ କାବ୍ୟଭାବନା ପ୍ରକଟିତ ହୋଇଛି ।

ଏହି କବିତା ପରମ୍ପରାରେ ପ୍ରତିଫଳିତ ବାସ୍ତବବାଦୀ ଚେତନାକୁ ନିମ୍ନଲିଖିତ ପର୍ଯ୍ୟାୟରେ ଆଲୋଚନା କରାଯାଇପାରେ:—

କ—ଗଣ ଶକ୍ତିର ଉତ୍ଥାନ

ଖ—ସାମାଜିକ ବୈଷମ୍ୟର ଚିତ୍ର

ଗ—ସାମ୍ୟବାଦର ଆବାହନ

ଘ—ବୈପ୍ଲବିକ ଜୀବନ ଦର୍ଶନ

ଙ—ଧର୍ମ ଓ ଈଶ୍ୱରଙ୍କ ପାରମ୍ପରିକ ଭୂମିକା

ଚ—ସମାଜର ନିମ୍ନବର୍ଗରୁ ଚରିତ୍ର ଆହରଣ

ଛ—ମିଥ୍‌ର ବିଶିଷ୍ଟ ପ୍ରୟୋଗ

ଜ—ରୋମାଣ୍ଟିକ୍-ବାସ୍ତବବାଦ

**କ—ଗଣଶକ୍ତିର ଉତ୍‌ଥାନ**

ମାର୍କସ ପ୍ରବର୍ତ୍ତିତ ସମାଜବାଦୀ ବାସ୍ତବବାଦ ସାମାଜିକ ଜୀବନର ସାମ୍ୟାୟନ ପାଇଁ ଗଣଶକ୍ତିର ଉତ୍‌ଥାନ ଉପରେ ଗୁରୁତ୍ୱ ଆରୋପ କରିଥାଏ । ସଚ୍ଚି ରାଉତରାୟଙ୍କ 'ବନ୍ଦୀର ବନ୍ଦନା', 'ନବଜାତକ', ବୈକୁଣ୍ଠନାଥ ପଟ୍ଟନାୟକଙ୍କ 'ଖେଳାଉଛୁ କାଳୀୟ ନାଗ', ରାଧା ମୋହନ ଗଡନାୟକଙ୍କ 'କବି ହେବା ପାଇଁ ବାସନା ମୋର', ମନୋଜ ଦାସଙ୍କ 'ଅଗ୍ର ପଥିକ', ରଘୁନାଥ ଦାସଙ୍କ 'ପଦଧ୍ୱନି', 'ସାଂଘାଇ' ଓ ମନମୋହନ

ମିଶ୍ରଙ୍କ 'ଜନତା ସାକ୍ଷୀ' ଆଦି କବିତାରେ ଗଣ ଜୀବନର ଦୁଃଖ ଓ ଦୈନ୍ୟର କରୁଣ ଚିତ୍ର ଉପସ୍ଥାପିତ ହେବା ସଙ୍ଗେ ସଙ୍ଗେ ଜନଶକ୍ତିକୁ ପ୍ରଚଳିତ ସାମାଜିକ ବ୍ୟବସ୍ଥା ବିରୋଧରେ ଦୃପ୍ତସ୍ୱର ଉତ୍ତୋଳନ କରିବାକୁ ଆହ୍ୱାନ ଦିଆଯାଇଛି ।

"ବନ୍ଦୀର ବନ୍ଦନା' ରେ ଗଣଜୀବନ ଉପରେ ବ୍ୟକ୍ତିକୈନ୍ଦ୍ରିକ ପୁଞ୍ଜିବାଦୀ ଶକ୍ତିର ନିର୍ମମ ଅତ୍ୟାଚାର ଅଧିକ କାଳ ରହିପାରିବ ନାହିଁ ବୋଲି କବି ରାଉତରାୟ ଆଶା ପୋଷଣ କରିଛନ୍ତି । କ୍ଷୟମାଣ ଗଣଶକ୍ତି ଉପରେ ପୁଞ୍ଜିବାଦୀ ରଥଚକ୍ରର ଘର୍ଷିତ ପଦପାତ ଏକାନ୍ତ ଅସହ୍ୟ (୩) । ଦଳିତ ଓ ନିଷ୍ପେଷିତ ଜନତାର ଜାଗୃତିର ଯୁଗ ଉପାଗତ । ଜନତାର ଦୁର୍ବାର ବିପ୍ଳବ ହେବ ଏହି ନୂତନ ଯୁଗ ଚେତନାର ବାହକ । ମନମୋହନ ମିଶ୍ରଙ୍କ ମତରେ—"ନିର୍ଖିକ ଜନଶକ୍ତି ହିଁ ହେବ ଏହି ଯୁଗାବତରଣର ସାକ୍ଷୀ । ସେଥିପାଇଁ ନିରନ୍ନ ବାସ୍ତୁହରା 'ଛତରଖିଆ' ହାତରେ ନିଶାଣ ତୋଳିବା ପାଇଁ ସେ ଆହ୍ୱାନ ଦେଇଛନ୍ତି (୪) ।"

ବୈକୁଣ୍ଠନାଥ ଶୋଷକ ଗୋଷ୍ଠୀକୁ କୁଶଳୀ ଖେଳକାର ସହ ତୁଳନା କରିଛନ୍ତି । ପଦ୍ମତୋଳା ଶୁଣାଇ ସାଧାରଣ ଜନତାକୁ ଏହି ଖେଳକାର ବଶୀଭୂତ କରିବାକୁ ଚେଷ୍ଟା କରିଥାଏ । କିନ୍ତୁ ସମୟ ଆସିବ—ସୁପ୍ତ ଜନଶକ୍ତି ଜାଗ୍ରତ ହେବ । କାଳୀୟ ନାଗ ପରି ବିଦ୍ରୋହର ଫୁତ୍କାର ତୋଳିବ । ତାର ତୀକ୍ଷ୍ଣ ବିଷଦାନ୍ତର ଘାତରେ ପୁଞ୍ଜିବାଦ ଭୂଲୁଣ୍ଠିତ ହେବ (୫) ।

ସଚ୍ଚି ରାଉତରାୟଙ୍କ 'ନବଜାତକ'ରେ ଗଣଚେତନା ପ୍ରତି ବିଶ୍ୱସ୍ତ ରହିବାକୁ ଯୁବଶକ୍ତିଙ୍କୁ ଉଦ୍‌ବୋଧନ ଦିଆଯାଇଛି । କନ୍ୟା ସଂଘମିତ୍ରା ଏଠାରେ କବିଙ୍କର ନବ-ଜାତକ । ସଂଘମିତ୍ରା ନବଯୁଗର ଅଗଣିତ ଯୁବଶକ୍ତିଙ୍କର ଏକ ପ୍ରତୀକ । କବି ଏହି ଅମୃତ ସଂଘମିତ୍ରାକୁ ବ୍ୟକ୍ତିଗତ ଜୀବନର ସୁଖ ଓ ସମ୍ଭାବନାକୁ ପରିହାର କରି ସଂଘର ଚରଣରେ ଆଶ୍ରୟ ନେବା ପାଇଁ ଆହ୍ୱାନ ଦେଇଛନ୍ତି । ନବଜାତକରେ ସଂଘବଦ୍ଧ ଜୀବନଧାରାର ମୃତ୍ୟୁଞ୍ଜୟୀ ମୂଲ୍ୟବୋଧ ସୂଚିତ ହୋଇଛି (୬) ।

ସେଥିପାଇଁ ବିପ୍ଳବୀ କବି ରଘୁନାଥ ଦାସ ଦେଶ କାଳର ସୀମା ସରହଦ ଭୁଲି ମାଟିର ପ୍ରତ୍ୟେକ ସନ୍ତାନକୁ ହାତରେ ରକ୍ତ ରଞ୍ଜିତ ପତାକା ଧରି ବିପ୍ଳବ କରିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ପୁଞ୍ଜିବାଦୀ ଆମେରିକା ପୁଷ୍ଟ କୋମିଣ୍ଟାଙ୍ଗ ସରକାର ବିରୁଦ୍ଧରେ ଶୋଭାଯାତ୍ରା, ଧର୍ମଘଟ ଓ ସମ୍ମୁଖ ସମର କରି କେବଳ ସାଙ୍ଘାଇର ଜନତା ନୁହେଁ, ସାଙ୍ଘାଇର ଜନତା ପରି ନିଷ୍ପେଷିତ ଅଗଣିତ ଜନତାଙ୍କୁ ସାହାଯ୍ୟ କରିବାକୁ ସେ କାମନା କରିଛନ୍ତି(୭) । ଧରଣୀର କେଉଁ ଅଜ୍ଞାତ କୋଣରେ କବି ଜନ୍ମ ନେଇଥାଏ ।

କିନ୍ତୁ ସେଇ ଗୋଟିଏ କଣ୍ଠରେ କୋଟିଏ ହୃଦୟର କାହାଣୀ ପ୍ରତିଧ୍ୱନିତ ହୁଏ । ସେ କାହାଣୀ ହୁଏ କବିତାର ଉତ୍ସ । ଗଣ ଜୀବନର ଲହୁ-ଲୁହକୁ କବି ମଧୁକୋଷର ମଧୁ ସ୍ୱରୂପ ସଞ୍ଚୟ କରିଥାଏ ବୋଲି କବି କୃଷ୍ଣଚନ୍ଦ୍ର ତ୍ରିପାଠୀ ଉଲ୍ଲେଖ କରିଛନ୍ତି (୮) । ବ୍ୟକ୍ତି ବିଶେଷର ସୁଖ-ସ୍ୱାଚ୍ଛନ୍ଦ୍ୟ ଜୀବନର ଲକ୍ଷ୍ୟ ନୁହେଁ । ଜୀବନର ଲକ୍ଷ୍ୟ 'ବହୁଜନ ହିତାୟ' । ସୁତରାଂ ସାମାଜିକ ଶୋଷଣରେ ନିର୍ଯ୍ୟାତିତ ମିଲ୍ ବସ୍ତିର ଶ୍ରମିକ, ଖଟିଖିଆ ମଜୁରିଆ ଓ ଗ୍ରାମର କୃଷୀକୁଳଙ୍କ ମଧ୍ୟରେ ଜାଗ୍ରତର ବହ୍ନି ଜାଳିବା ପାଇଁ କବି ମନୋଜ ଦାସ ଶପଥ ନେଇଛନ୍ତି (୯) । ପୁଞ୍ଜିପତି ସମାଜ ସ୍ୱାଳକ ନିଜକୁ ଗଣ ଜୀବନର ଭାଗ୍ୟବିଧାତା ରୂପେ କଳନା କରେ । ତା ଦୃଷ୍ଟିରେ ଜନସମାଜ ଜଡ଼ ଓ ନିଷ୍କ୍ରିୟ । କିନ୍ତୁ ଗଣଚେତନା ମଧ୍ୟରେ ହିଁ ଅନନ୍ତ ଶକ୍ତି ସଞ୍ଚିତ । କବି ବୈକୁଣ୍ଠନାଥ ସେହି ବିପୁଳ ମହାନ ପ୍ରାଣ ଶକ୍ତିକୁ ପ୍ରଣାମ ଜଣାଇଛନ୍ତି (୧୦) । ପୁଞ୍ଜିବାଦୀ ଶକ୍ତି ବିରୁଦ୍ଧରେ ଆଗାମୀ ଜନତା କିଭଳି ଦୃପ୍ତ ପଦପାତରେ ଆଗେଇ ଆସିବେ ତାର ପଦଧ୍ୱନି କବି ରଘୁନାଥ ଦାସ ଶୁଣିଛନ୍ତି । ସମାଜରେ ଥିବା ବାଧାବିଘ୍ନର ହିମଗିରିକୁ ଅତିକ୍ରମ କରି ଏହି ବିପ୍ଳବୀ ଗଣଶକ୍ତି କିପରି ଜଳ, ସ୍ଥଳ ଓ ଆକାଶ ମାର୍ଗରୁ ସମୁଦ୍ର ଲହରୀ ପରି ନବୀନ ଉଚ୍ଛ୍ୱାସ ଓ ଆବେଗରେ ଅଗ୍ରଗାମୀ ହେବେ ତାର ସମ୍ଭାବ୍ୟ ସୂଚନା ସେ ଦେଇଛନ୍ତି । ସେମାନଙ୍କ କଣ୍ଠରେ ମୁକ୍ତିର ସଙ୍ଗୀତ ନିନାଦିତ ହୋଇଛି । ବିଷଣ୍ଣ ବିଶ୍ୱକୁ ହୃଦୟାଶ୍ରୁରେ ଅଭିଷିକ୍ତ କରି ସେମାନେ ଅବତୀର୍ଣ୍ଣ ହୋଇଛନ୍ତି (୧୧) । କବି ଲକ୍ଷ୍ମୀଧର ଅଧିକ ଆଶାବାଦୀ ହୋଇ ଶତ ବ୍ୟର୍ଥତା ଓ ଶତ ପରାଭବ ମଧ୍ୟରୁ ଲକ୍ଷ-କୋଟି ଶ୍ରେମିକ ମଣିଷର ନେତୃତ୍ୱ ନେଇ ବିପ୍ଳବର ଅଭିଯାନରେ ଆଗେଇ ଆସିବେ ବୋଲି ସମ୍ଭାବନା ବ୍ୟକ୍ତ କରିଛନ୍ତି (୧୨) ।

ଗଣ ସାହିତ୍ୟ ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ଶ୍ରୀ ଗୋପିନାଥ ମହାନ୍ତି କହିଛନ୍ତି—

"ଗଣ ସାହିତ୍ୟର ଅର୍ଥ ମଣିଷର ସାହିତ୍ୟ, ଯାହା ମଣିଷର ସୂକ୍ଷ୍ମ ମୂଳ ଧେଇ ଚଳେ । ଏପରି ସାହିତ୍ୟ କଦାପି escapist ନୁହେଁ । escapist ହେବ ଯାହା ସତକୁ ଡରି ମିଛ ଘରକରଣାରେ ମନ ଭୁଲାଇ ରଖିବ । × × × ସବୁ ବାଦର ସାହିତ୍ୟକୁ ଆମେ ଗଣସାହିତ୍ୟ କହିବୁ ଯେଉଁ ପରିମାଣରେ ସେଥିରେ ଚିରନ୍ତନ ଗଣର ଛାଇ ପଡ଼ିଛି (୧୩) ।

ବସ୍ତୁତଃ ଗଣଜୀବନର ନିଛକ ଚିତ୍ର କବିତାରେ ଅଙ୍କନ କରି ନବଜାଗୃତି ସୃଷ୍ଟି କରିବା ପ୍ରଗତିବାଦୀ କବିର ଧର୍ମ । ଏଥିପାଇଁ ସେ ଅବହେଳିତ ଜନତାର ସଙ୍ଗଠିତ ଶକ୍ତିର ଉତ୍‌ଥାନ ପାଇଁ ଆହ୍ୱାନ ଦିଏ ।

## ଖ—ସାମାଜିକ ବୈଷମ୍ୟର ଚିତ୍ର

ସମାଜର ଭେଦଭାବ ଓ ବର୍ଣ୍ଣ ବ୍ୟବସ୍ଥା ମୁଖ୍ୟତଃ ଆର୍ଥିକ ବୈଷମ୍ୟରୁ ଉଦ୍‌ଭୂତ ହୋଇଥାଏ । ପ୍ରଗତିବାଦୀ କବିତାରେ ଏହି ଭେଦଭାବ ଓ ବୈଷମ୍ୟର ଚିତ୍ର ପ୍ରତିଫଳିତ ହୋଇଥାଏ । କ୍ରାନ୍ତିକାମୀ କବିମାନସ ସାମାଜିକ ବୈଷମ୍ୟର ଉତ୍କଟ ଚିତ୍ରର ଅଭିବ୍ୟକ୍ତି ମାଧ୍ୟମରେ ସାମାଜିକ ସାମ୍ୟର ପ୍ରତିଷ୍ଠା ପାଇଁ ଉଦ୍‌ବୋଧନ ଦିଏ ।

ଅନନ୍ତ ପଟ୍ଟନାୟକଙ୍କ 'ଆସିଚି ମୁଁ ଆସିଚି' କବିତାରେ ପୁଞ୍ଜିବାଦୀ ସମାଜ ବ୍ୟବସ୍ଥାର ଭେଦଭାବର ସ୍ୱରୂପ ପ୍ରକଟିତ । ମଣିଷ ଜୀବନରେ ଅଗ୍ରଗତିର ଲଙ୍ଗଳ ସିଆର, ଆଶା-ଆକାଙ୍‌କ୍ଷା ରୂପକ ଶସ୍ୟର ସିଂହଦ୍ୱାସ୍ୟ ତଥା ଆତ୍ମିକ ବିକାଶର ପଥକୁ ଶୋଷକ ପୁଞ୍ଜିବାଦୀ ସମାଜ କିପରି ବାଧା ଦିଅନ୍ତି, ଅନନ୍ତ ପଟ୍ଟନାୟକ ଶଂସିତ କବିତାରେ ତାର ଏକ ମାର୍ମିକ ବର୍ଣ୍ଣନା ଦେଇଛନ୍ତି । ସେମାନେ ଲଙ୍ଗଳ ଆଗରେ ପଥର, ଶସ୍ୟର ପ୍ରାଚୁର୍ଯ୍ୟ ମଧ୍ୟରେ ସର୍ବଭୁକ୍ ପଙ୍ଗପାଳ ଓ ଆତ୍ମାର ବିକାଶ ପଥରେ ନିଷ୍ଠୁର ଆତତାୟୀ ରୂପେ ପ୍ରତିଭାତ ହୋଇଥାନ୍ତି (୧୪) ।

ସୁନନ୍ଦ କରଙ୍କ 'ଆଗାମୀ କାଲି' ରେ ମଧ୍ୟ ଶୋଷକ ଓ ଶୋଷିତ ସମ୍ପ୍ରଦାୟର ସ୍ଥିତି ଓ ବୈଷମ୍ୟ ସୂଚିତ । ତାଙ୍କ ଭାଷାରେ ଦିନ ମଜୁରିଆ ଶ୍ରମିକ ଯେଉଁଠାରେ ନିରନ୍ନ ଭାବେ ମୃତ୍ୟୁ ବରଣ କରେ ପୁଞ୍ଜିପତି ଗୋଷ୍ଠୀ ତାର ଲହୁ ଲୁହ ଶୋଷଣ କରି ଅଳସ ବିଳାସରେ ଜୀବନଯାପନ କରେ (୧୫) ।

ଦୁର୍ଗାଚରଣ ସାମନ୍ତଙ୍କ 'ଦୁଇ ଶିବିର' କବିତାରେ ସାମାଜିକ ବୈଷମ୍ୟର ଚିତ୍ର ଏକାନ୍ତ ସ୍ପଷ୍ଟ ଓ ବଳିଷ୍ଠ । ଦୁର୍ଗାଚରଣଙ୍କ ଭାଷାରେ-ସମାଜରେ ଦୁଇଟି ଶିବିର ସ୍ଥାପିତ—ଗୋଟିଏ ଶୋଷକ ପୁଞ୍ଜିପତିର, ଅନ୍ୟଟି ଶୋଷିତ ସର୍ବହରାର । ଗୋଟିଏ ଶିବିରରେ ରହିଛି ମୁନାଫା ଉଠାଇବାର ନିଶା । ଅନ୍ୟ ଶିବିରରେ ରହିଛି ମୁକ୍ତିର ଆକାଙ୍‌କ୍ଷା—ଶତଭିଷା ନକ୍ଷତ୍ରର ଦ୍ୟୁତି । ଗୋଟିଏ ଶିବିରରେ ରହିଛି ଶକୁନିର ଲୋଲୁପ ଆଖିରେ ରାଜ୍ୟଲାଭର ସର୍ବଗ୍ରାସୀ କାମନା, ଅନ୍ୟ ଶିବିରରେ ରହିଛି ନିଖିଳ ବିଶ୍ୱର ମିଳନ ଓ ତ୍ୟାଗର ପବିତ୍ର ରାଖୀ ବନ୍ଧନର ସମାରୋହ—

ସେ ପାଖରେ ଅଛି ପୁଞ୍ଜିପତିର ମୁନାଫାନିଶା
ଏ ପାଖେ ଶୋଷିତ ମୁକ୍ତିର ଜଳେ କି ଶତଭିଷା !
ସେ ପାଖରେ ଅଛି ରାଜ୍ୟ ଲୋଲୁପୀ ଶକୁନି ଆଖି
ଏ ପାଖେ ଶୋଭଇ ନିଖିଳ ମାନବ ମିଳନ ରାଖୀ (୧୬) ।"

କାଳିନ୍ଦୀ ଚରଣଙ୍କ 'କିଏ ଶଳା ସଇତାନ' କବିତାରେ ସାମାଜିକ

ବୈଷମ୍ୟକୁ ତୀବ୍ର ଭାବେ ଆକ୍ଷେପ କରାଯାଇଛି । ଓଡ଼ିଆ ଭାଷାରେ ଶଳା ଶାଳୀ ଶବ୍ଦ ଦୁଇଟି ନିବିଡ଼ ଆତ୍ମୀୟତାର ଦ୍ୟୋତକ ହୋଇଥିଲେ ମଧ୍ୟ ନିଜ ଶଳା ଶାଳୀ ବ୍ୟତୀତ ଅପର ପ୍ରତି ଏହାର ପ୍ରୟୋଗ ନିଜର ବଳିଷ୍ଠ ପୌରୁଷର ପ୍ରତୀକ ରୂପେ ଗୃହୀତ ଓ ଅନ୍ୟ ପ୍ରତି ତଚ୍ଛିଲରେ ତାହାର ମନୋଭାବ ପରିପୂର୍ଣ୍ଣ । ସେହି ଭଳି ଲାଟିନ୍ ସାତାନ୍ (satan) ଶବ୍ଦଟି ଆରବି-ଉର୍ଦ୍ଦୁ-ହିନ୍ଦୀ ଭାଷା ଦେଇ ଓଡ଼ିଆ ଭାଷାରେ ସଇତାନରେ ପରିଣତ । ଏହି ଶବ୍ଦର ସାଧାରଣ ଅର୍ଥ ନରାଧମ । ଆମ ଦେଶରେ ଶୋଷିତ, ଲାଞ୍ଛିତବର୍ଗଙ୍କର ଦାରିଦ୍ର୍ୟର ସୁଯୋଗ ନେଇ ସମାଜର ଶୋଷକ ଓ ପୁଞ୍ଜିପତିଗଣ କପରି ସେମାନଙ୍କୁ ଶଳା, ଶାଳୀ, ସଇତାନ ଶବ୍ଦ ପ୍ରୟୋଗ କରିଥାନ୍ତି ତାହା କବି କାଳନ୍ଦୀ ଚରଣଙ୍କୁ ବ୍ୟଥିତ କରିଛି । ଖଟିଖିଆ ଶ୍ରମିକଶ୍ରେଣୀର ଲହୁ ଲୁହରେ ପୁଞ୍ଜିପତିର ଅଳିନ୍ଦରେ ସୁଖ ସମ୍ଭୋଗର ଦୀପାଳି ଝଲସି ଉଠେ, ଅଥଚ ମେହେନତି ମଣିଷର ଗୃହ-ମେଧିନୀ ଉଁଆସ ରାତିର ଅମା ଅନ୍ଧାରରେ ଆଚ୍ଛନ୍ନ ରହେ । ନିଜର ଭୋକିଲା ଛୁଆଙ୍କୁ ଆଡେଇ ଦେଇ ସାହୁକାର, ଜମିଦାର ପିଲାଙ୍କ ପାଇଁ ସେ ସରସ ସୁନ୍ଦର ଭୋଜନ ସମ୍ଭାର ସଜାଡେ । ସମାଜର ଏହି ଭେଦ ଭାବ ବିଚାର ଫଳରେ ଜଣେ ହୁଏ 'ହଜୁର', 'ମଣିମା' ଓ ଅନ୍ୟ ଜଣେ ହୁଏ, 'ଶଳା', 'ସଇତାନ' (୧୭) ।

ଚକ୍ରଧର ରାଉତଙ୍କ 'ଜାଗ ଜାଗ ମଣିଷ ଦେବତା'ରେ ସମାଜର ଏହି ବୈଷମ୍ୟ ବିରୋଧରେ ସ୍ୱର ଉତ୍ତୋଳନ କରାଯାଇଛି । ସମାଜର ଦୁଇଟି ଶ୍ରେଣୀ-ଶୋଷକ ଓ ଶୋଷିତ ମଧ୍ୟରୁ ଶୋଷିତ ଗୋଷ୍ଠୀ ଧୂଳିର କୀଟ ରୂପେ ବିବେଚିତ । ଶୋଷକ ଧନିକ ଗୋଷ୍ଠୀ, ନନ୍ଦନ କାନନର କୁସୁମ ଭଳି ଆଦରଣୀୟ ଓ ସମ୍ମାନିତ । ଅନାହାର, ଅତ୍ୟାଚାର, ନିଷ୍ପୀଡ଼ନର ଶିକାର ହେଉଥିବା ଶୋଷିତ ମଣିଷ-ସମାଜର ଲାଞ୍ଛନାର ନିଖୁଣ ଚିତ୍ର ଦେବା ସଙ୍ଗେ ସଙ୍ଗେ କବି ଚକ୍ରଧର ରାଉତ ଦଳିତ ସମାଜକୁ ଦେବତାର ଆସନରେ ଆସୀନ କରାଇଛନ୍ତି । ଯେଉଁଲୋକ ହାତରେ ଅନ୍ନପୂର୍ଣ୍ଣା ଭଣ୍ଡାରର ଚାବିକାଠି ଅଛି ତାର କନ୍ୟା ଭୋକ ଉପାସରେ କାଉଳି ଡ଼ହଳ ବିକଳ ହୁଏ ଓ ରୂପ ଯୌବନକୁ ପଣ୍ୟ ରୂପରେ ବିକ୍ରୟ କରେ ତାର କରୁଣ ଚିତ୍ର ସେ ଉପସ୍ଥାପିତ କରିଛନ୍ତି (୧୮) ।

ଧନୀ ଓ ଦରିଦ୍ରର ଚଳଣିର ବୈଷମ୍ୟରେ ପ୍ରଗତିବାଦୀ କବି କୃଷ୍ଣଚନ୍ଦ୍ର ଅଧୀର, ଅସ୍ଥିର ହୋଇ ଧନିକ ଶ୍ରେଣୀକୁ ରାକ୍ଷସ, ପିଶାଚର ଆଖ୍ୟା ଦେଇଛନ୍ତି । ଜଣେ ଘିଅ-ମହୁରେ ଭାସୁଥିବା ବେଳେ ଅନ୍ୟ ଜଣେ ଅନାହାର, ଅର୍ଦ୍ଧାହାରର ହାହାକାରରେ ସଢ଼ୁଥିବାର ଦୃଶ୍ୟ ତାଙ୍କୁ ମର୍ମାହତ କରିଛି (୧୯) । କବି ଗୋପାଳ ଚନ୍ଦ୍ର ମିଶ୍ର ସକଳ ମତବାଦର ଊର୍ଦ୍ଧ୍ୱରେ ମନୁଷ୍ୟକୁ ଶ୍ରେଷ୍ଠ ସ୍ଥାନ ଅର୍ପଣ କରିଛନ୍ତି । ଶସ୍ୟ କ୍ଷେତ୍ରରେ

ମାନବର ଜନ୍ମଗତ ଅଧିକାର ସାବ୍ୟସ୍ତ କରି ସାମାଜିକ ସାମ୍ୟାସ୍ଥାପନ ପାଇଁ ସେ ପ୍ରେରଣା ଦେଇଛନ୍ତି—ମତବାଦ ଠାରୁ ବଡ଼ ମତବାଦ/ମଣିଷକୁ ତୁମେ କାହିଁକି ନ ଦେବ ସ୍ୱୀତ ?/ମଣିଷକୁ ତୁମେ କାହିଁକି ନଦେବ/ଏ ମାଟିର କ୍ଷେତେ ଉପହାର ତା'ର ଜନ୍ମଗତ (୨୦) ।"

କୃଷ୍ଣଚନ୍ଦ୍ର ଦାଶଙ୍କ 'ନଣ୍ଡାର ଚିଠି'ରେ ଏହି ଶ୍ରେଣୀ ବୈଷମ୍ୟର ଉତ୍କଟ ଚିତ୍ର ଉପସ୍ଥାପିତ । ଓଡ଼ିଶାର ଜନୈକ ପଲ୍ଲୀବାସୀ 'ନଣ୍ଡା' ସୁଦୂର କଲିକତାକୁ ଜୀବିକା ଅର୍ଜନ ପାଇଁ ଯାତ୍ରା କରିଛି । କଲିକତାର ଜୀବନଧାରାରେ ସାମାଜିକ ବୈଷମ୍ୟର ସ୍ୱରୂପ 'ନଣ୍ଡାର ଚିଠି'ରେ ପ୍ରତିଫଳିତ ହୋଇଛି । କଲିକତା ନଗରୀରେ ଆଲୋକମାଳାର ମହୋତ୍ସବ, ଉତ୍ତୁଙ୍ଗ ଅଟ୍ଟାଳିକା ଗୁଡ଼ିକର ରୂପବୈଭବ ଓ ଯାନ-ବାହନର ଯମକ ଅଭିଜାତ ସମାଜର ଚିତ୍ର ବହନ କରିଛି—"ଧନ୍ୟରେ ବଙ୍ଗାଳି ଗଢ଼ିଛି ଏ ମୁଲକ/ଚଉଦିଗ ଦିଶଇ ଆଲୁଅ ଜକଜକ । ଗାଡ଼ି ଘୋଡ଼ା ଶବଦେ ଦୁଲୁକୁ ଅଛି ପୃଥ୍ୱୀ/ଅଲପକେ ମଉସାଲୋ ଦେବେ ଚକଟି ମାରି । କୋଠା ଉପରେ କୋଠା ହୋଇଛି ନଦାନଦ/ମେଳଣ ଯାତ୍ରା ପରି ମଣିଷ ଖୁନ୍ଦା ଖୁନ୍ଦି (୨୧) ।" କିନ୍ତୁ କ୍ଷଣକରେ ନଣ୍ଡାର ମୋହ ଭାଙ୍ଗି ଯାଇଛି । ବଡ଼ ରାସ୍ତା ଗୁଡ଼ି ଗଳି କନ୍ଦି ରାସ୍ତାରେ ତା'ର ଦୃଷ୍ଟି ପଡ଼ିଛି । ସେ ଦେଖିଛି ସରୁ ଗାତରୁ ପିମ୍ପୁଡ଼ି ଧାଡ଼ି ଲାଗିଲା ପରି ବଙ୍ଗାଳି ଶ୍ରମିକ ଶ୍ରେଣୀ ଧାଡ଼ି ବାନ୍ଧି ଚାଲିଛନ୍ତି । ସେମାନଙ୍କର କ୍ଷୁଦ୍ର ବସାଘର ଗୁଡ଼ିକରେ ପୋକ ଯୋକ ପରି ଖୁନ୍ଦା ଖୁନ୍ଦି ହୋଇ ସେମାନେ ରହୁଛନ୍ତି । ନଣ୍ଡାକୁ ମନେହେଲା ସତେ ଅବା ଜୀଅନ୍ତା ମଣିଷଗୁଡ଼ା ନରକରେ ପଡ଼ିଛନ୍ତି (୨୨) ।

ପ୍ରଗତିବାଦୀ କବି ରବିସିଂ ତାଙ୍କର 'ସର୍ବହରା' କବିତାରେ ଶ୍ରେଣୀବାଦ ତଥା ସାମାଜିକ ବୈଷମ୍ୟର ବାସ୍ତବ ଚିତ୍ର ପ୍ରଦାନ କରିଛନ୍ତି । ସଭ୍ୟତାର ଆଦ୍ୟ ପାଦରେ, ସମାଜରେ ଶ୍ରେଣୀ ବୈଷମ୍ୟ ଅଥବା ଶୋଷକ-ଶୋଷିତ, ଧନୀ-ଦରିଦ୍ର ଭେଦଭାବ ନ ଥିଲା । ସମଷ୍ଟିଗତ ଶ୍ରମ ଓ ପାରସ୍ପରିକ ସହଯୋଗ ଥିଲା ପ୍ରାଚୀନ ପ୍ରସ୍ତର ଯୁଗର ଧର୍ମ (୨୩) । ମଣିଷ ସମାଜର ପ୍ରଗତି-ଜୟଯାତ୍ରାରେ କାଳକ୍ରମେ ଶ୍ରେଣୀକ୍ଷତ ସୃଷ୍ଟି ହେଲା । ବିଶ୍ୱ ରୂପକ ବିରାଟ 'ଆପେଲ' ଦ୍ୱିଖଣ୍ଡିତ ହୋଇଗଲା । ଗୋଟିଏ ପାଖରେ ରହିଲେ ମୁଷ୍ଟିମେୟ ଶୋଷକ ସମାଜ । ଅପର ପାଖରେ ରହିଲେ ସମାଜର ଅଗଣିତ ମେହନତୀ ମଣିଷ—ଶୋଷିତ ସମାଜ । ଶୋଷକ ସମାଜ ହାତରେ ରହିଲା ଶାସନ ରୂପକଯନ୍ତ୍ର-ଦାନବ, ସୈନ୍ୟବଳ, କଳା ସଂସ୍କୃତିର ଦୁର୍ଭେଦ୍ୟ ବଳୟ । ପୁଞ୍ଜିପତିର ଶୋଷଣ କାଳରୁ ଶୃଙ୍ଖଳ--ଶୋଷିତର ଆର୍ତ୍ତନାଦ । ମୃତ୍ୟୁର ସମ୍ବାଦ(୨୪)' ।

ଏହି ଶୋଷଣ ଓ ଭେଦଭାବର ତୀବ୍ରତା ଦର୍ଶାଇ ପ୍ରଗତିବାଦୀ କବିଚେତନା ସାମାଜିକ ବୈଷମ୍ୟ ବିରୋଧରେ ସଚେତନତା ସୃଷ୍ଟି କରିବା ପାଇଁ ଉଦ୍ୟମ କରିଛି । ଏହାର ମଧ୍ୟରୁ ସାମାଜିକ ସାମ୍ୟପାଇଁ ଶୁଭ ଉଦ୍‌ବୋଧନର ସମ୍ଭବ ଘଟିଛି ।

**ଗ-ସାମ୍ୟବାଦର ଆବାହନ**

ସାମ୍ୟବାଦୀ ଚେତନା ପ୍ରଗତିବାଦୀ କବିତାର ଏକ ବିଶିଷ୍ଟ ବିଭାବ । ମାର୍କସବାଦ ଦ୍ୱାରା ପ୍ରଭାବିତ ଓଡ଼ିଶାର କବିମାନସ ଏହି ସାମ୍ୟବାଦୀ ଭାବନାକୁ କବିତାରେ ରୂପାୟିତ କରିଛି । ପୃଥିବୀର ଦୁଃଖ-ଦୈନ୍ୟ ଓ ବ୍ୟଥା-ବେଦନାର କାରଣ ହେଉଛି ସମାଜର ବୈଷମ୍ୟବୋଧ । ମଣିଷର ଆଖି ଅନ୍ଧ କୁସଂସ୍କାରରେ ଆଚ୍ଛନ୍ନ । ଏହି କୁସଂସ୍କାର ଓ ଅନ୍ଧ ବିଶ୍ୱାସବୋଧରୁ ମୁକ୍ତ ହେବା ପାଇଁ ଅନନ୍ତ ପଟ୍ଟନାୟକ ଆଶା ପୋଷଣ କରିଛନ୍ତି । ସାମ୍ୟବାଦୀ ଚେତନାକୁ ସମାଜର ସୁଖ-ଶାନ୍ତିର ଆବାହନୀ ରୂପେ ଆଖ୍ୟାତ କରିଛନ୍ତି —

"ଦୁନିଆରେ ତେବେ କା' ଆଗେ କହିବି କଥା
ସତେ କି ସାଥିରେ ! ଖୋଲିବ ମଣିଷ ଆଖି
ସତେ କି ଧରଣୀ ପାସୋରି ଦୁଃଖ ବ୍ୟଥା
ଶାନ୍ତିରେ ସୁଖ ସାମ୍ୟେ ଆଣିବ ଡାକି (୨୫) ।"

ସମାଜବାଦୀ କବି ଆଶାବାଦୀ । ବୈଷମ୍ୟ ପ୍ରପୀଡ଼ିତ ବିଶୃଙ୍ଖଳ ସୃଷ୍ଟିକୁ ସେ ସାମ୍ୟବାଦ ଭିତ୍ତିରେ ପୁନର୍ଗଠନ କରିବାକୁ ଚାହେଁ । ସେଥିପାଇଁ ପାରମ୍ପରିକ ସମାଜ ବ୍ୟବସ୍ଥାକୁ ପରିବର୍ତ୍ତିତ କରି ନୂତନ ସାମାଜିକ ବ୍ୟବସ୍ଥା ଗଠନ କରିବାକୁ ଆହ୍ୱାନ ଦିଏ । ସାମ୍ୟବାଦୀ ସମାଜର ଭିତ୍ତି ପ୍ରସ୍ତର ସ୍ଥାପନା ପାଇଁ ତଥାକଥିତ ଅଭିଜାତ ଶ୍ରେଣୀର ବିଲୋପ ସାଧନ ତା'ର କାମ୍ୟ । ଉତ୍ପାଦିତ ଦ୍ରବ୍ୟର ସମବଣ୍ଟନ ଦ୍ୱାରା ସାମାଜିକ ସାମ୍ୟର ପ୍ରତିଷ୍ଠା ତା'ର ଲକ୍ଷ୍ୟ । ମାନସିଂହଙ୍କର 'ବିଶୃଙ୍ଖଳ ସୃଷ୍ଟି' କବିତାରେ ଏହି ଭାବନା ପ୍ରତିଫଳିତ । ନିଖିଳ ବିଶ୍ୱର ଜନସାଧାରଣଙ୍କ ମୁଖରେ ସ୍ମିତ ହାସ୍ୟରେଖାର ଆବିଷ୍କାର ପାଇଁ କବି ମାନସିଂହ ଅଙ୍ଗୀକାରବଦ୍ଧ ହୋଇଛନ୍ତି (୨୬) । ଜନ୍ମଜନ୍ମାନ୍ତରେ ପୀଡ଼ିତ ଜନସାଧାରଣଙ୍କ ଦୁଃଖ ମୋଚନ ପାଇଁ ସେ କୃତସଙ୍କଳ୍ପ ହେବା ପାଇଁ କାମନା କରିଛନ୍ତି (୨୭) ।

ମାନସିଂହଙ୍କ କବିତାରେ ଲଳିତ କୋମଳ ସ୍ୱର କାଳନ୍ଦୀ ଚରଣଙ୍କ 'ଆଗାମୀ' କବିତାରେ ଅଧିକ ଉଦାତ୍ତ ଓ ସ୍ପଷ୍ଟ—

"କବିତା ଗଢ଼େ ଏକ ବିରାଟ ସମାଜର
ସବୁରି ଅଛି ଯହିଁ ବଖୁରେ ହେଲେ ଘର
ସକଳେ ଲଭିବାକୁ ମୁଠାଏ ଦୁଧ ଘିଅ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକାଙ୍କ (୬୮) ।"

ବସ୍ତୁତଃ ସାମ୍ୟବାଦୀ ସମାଜର, ସର୍ବନିମ୍ନ ଆବଶ୍ୟକତାର ଏହା ଏକ ନିଖୁଣ ମାନଚିତ୍ର । ଖାଦ୍ୟ, ବସ୍ତ୍ର, ବାସଗୃହ, ଶିକ୍ଷା ସଂସ୍କୃତି ସମେତ ସମାଜର ପ୍ରତ୍ୟେକ ବ୍ୟକ୍ତିର ସର୍ବାଙ୍ଗୀନ ବିକାଶ, ସାମ୍ୟବାଦୀ ରାଷ୍ଟ୍ରର ଧର୍ମ ହେବା ବାଞ୍ଛନୀୟ । ବେକାର ସମସ୍ୟାର ଉଚ୍ଛେଦ ସହ ପ୍ରଗତିଶୀଳ ଜୀବନର ବିକାଶ ପାଇଁ ବାକ୍-ସ୍ୱାଧୀନତା କବିଙ୍କର ସ୍ୱପ୍ନର ସାମ୍ୟବାଦୀ ସମାଜର ଏକ ବିଶିଷ୍ଟ ପାର୍ଶ୍ୱ (୬୯) ।

କବି ମାନସିଂହ ଓ କାଳନ୍ଦୀ ଚରଣ ଏଠାରେ ମାର୍କସ୍‌ଙ୍କ ଅପେକ୍ଷା ଗାନ୍ଧୀ ଓ ଟଲଷ୍ଟୟଙ୍କ ଚିନ୍ତାଦର୍ଶ ଦ୍ୱାରା ଅଧିକ ପ୍ରଭାବିତ ହୋଇଥିବା ପରି ମନେହୁଏ । ସେମାନଙ୍କ ଅଭିବ୍ୟକ୍ତିରେ ପ୍ରଜ୍ଞା ଓ ସଂଯମର ସ୍ୱର ସୁସ୍ପଷ୍ଟ । ମାତ୍ର ସେମାନଙ୍କଠାରୁ କନିଷ୍ଠାନ୍ କବିଗଣଙ୍କ ଚିନ୍ତାଧାରା ଅଧିକ କ୍ରାନ୍ତିଧର୍ମୀ, ଦୁର୍ବାର, ସାଲିସହୀନ, ପ୍ରତିଶୋଧପରାୟଣ, ହିଂସ୍ର ଓ କ୍ଷିପ୍ର । କବି ରାଉତରାୟଙ୍କ 'ବାର୍ତ୍ତା'ରେ ଏହି ଉଗ୍ର ଚିନ୍ତାଦର୍ଶ ଉଲ୍ଲେଖନୀୟ —

"ଶତାବ୍ଦୀର ସିଂହଦ୍ୱାରୁ ଆସିଅଛି ଦୂତ
ଆଣିଅଛି ବାର୍ତ୍ତା ଭବିଷ୍ୟର
ଜୀବନର ସମ୍ଭାବନା ଯହିଁ ମୂର୍ତ୍ତିମାନ
ନାହିଁ ଯହିଁ ପ୍ରାଚୀର ପ୍ରାନ୍ତର (୭୦) ।"

ସମାଜ ଜୀବନର ପ୍ରାଚୀରାଙ୍କିତ ପ୍ରାନ୍ତର ଭେଦ ଭାବନାକୁ କବି ଏଠାରେ ପ୍ରତ୍ୟାଖ୍ୟାନ କରିଛନ୍ତି । ଚଳନ୍ତି ଶତାବ୍ଦୀର ସିଂହଦ୍ୱାରରୁ ସେ ନୂତନ ଯୁଗର ଏହି ବାର୍ତ୍ତା ବହନ କରି ସମୁପସ୍ଥିତ । ତହିଁରେ ଆଗାମୀ ଭବିଷ୍ୟତର ସାମ୍ୟବାଦୀ ଜୀବନ ଦୃଷ୍ଟି ମୂର୍ତ୍ତିମନ୍ତ । ଏହି ବାର୍ତ୍ତାର ସଫଳ ସାମାଜିକ ରୂପାୟନ ପାଇଁ ସେ ଲକ୍ଷ ଲକ୍ଷ ମେହନତୀ ମଣିଷକୁ ଜାଗ୍ରତ ହେବାପାଇଁ ଆହ୍ୱାନ ଦେଇଛନ୍ତି । ଯୁଗ ଯୁଗ ବ୍ୟାପୀ ହୀନ ଦାସତ୍ୱ ବନ୍ଧନର ପ୍ରତିଶୋଧ ନେବା ତାଙ୍କର ଲକ୍ଷ୍ୟ :—

× × ×

ଜାଗଧରି ଲୌକିକର ଜ୍ଞାନ
ଦୃଢ଼ ହୁଅ, ରୂଢ଼ ହୁଅ
ନିଅ ପ୍ରତିଶୋଧ
ଯୁଗବ୍ୟାପୀ ହୀନ ଦାସତ୍ୱର (୭୧) ।"

ସାମ୍ୟବାଦୀ ସମାଜ ଗଠନ ପାଇଁ ଏକ ବିଦ୍ରୋହୀ ପ୍ରାଣର ବାର୍ତ୍ତା ଏଠାରେ ପ୍ରତିବିମ୍ବିତ । ଅଲୌକିକ ଅତୀନ୍ଦ୍ରିୟ ଶକ୍ତିର ଆବାହନ କରିବା ପରିବର୍ତ୍ତେ ମାନବ ଶିଶୁ କଣ୍ଠରେ ମଣିଷ ମନର ଭାଷା ଉଚ୍ଚାରିତ ହେବା ପାଇଁ ଏବଂ ନୂତନ ସମାଜ ନିଜର ଲକ୍ଷ୍ୟ ହାସଲ ଦିଗରେ ଦୃଢ଼, ମାର୍ମିକ ଓ ପ୍ରତିଶୋଧ ପରାୟଣ ହେବାପାଇଁ ଏଠାରେ ଆହ୍ୱାନ ଦିଆଯାଇଛି ।

ଶ୍ରେଣୀ ସଂଘର୍ଷର ବିଜୟ-ଉତ୍ସବ କିପରି ହର୍ଷୋଲ୍ଲାସରେ ପାଳିତ ହେବ, ସାମ୍ୟବାଦର ସଂଗ୍ରାମରେ ବିଜୟ ରକ୍ତରଞ୍ଜିତ ସୂର୍ଯ୍ୟ ପୂର୍ବାଶାରେ ଉଦିତ ହେବେ ଏବଂ ଶୋଷିତ ଶ୍ରେଣୀ ଏହି ଉତ୍ସବରେ ଗାଣ୍ଡିବୀ ପରି ପୁରୋଭାଗରେ ଉଭାହେବେ ତା'ର ରଙ୍ଗୀନଚିତ୍ର ଦୁର୍ଗାଚରଣ କୁଅଁରଙ୍କ 'ଶଙ୍ଖନାଦ' କବିତାରେ ଅଙ୍କିତ ହୋଇଛି (୩୨) ।

ଏହି ସାମ୍ୟବାଦୀ ସମାଜରେ ସଂପଦର ଉପଭୋକ୍ତା କିଏ ଓ କିପରି ହେବେ ତାହା ସୁନନ୍ଦ କରଙ୍କ 'ଆଗାମୀ କାଲି' କବିତାରେ ଉଚ୍ଚାରିତ ହୋଇଛି :—

"ସବୁ ସଂପଦ ରହିବ ମୁକ୍ତ
କୋଟି ଜନତାର ସମ ଉପଭୋଗ ପାଇଁ (୩୩) ।"

ସ୍ୱାଧୀନତା ଓ ସାମ୍ୟବାଦର ଦୁଆ ଦେଇ ଯେଉଁମାନେ ଶୋଷଣ ଓ ପ୍ରତାରଣା ମାଧ୍ୟମରେ ସ୍ୱାର୍ଥରୁଢ଼ି କରିବାକୁ ଚାହାନ୍ତି, ସେମାନଙ୍କର ଛଦ୍ମାବରଣକୁ ସାମ୍ୟବାଦୀ ସୂର୍ଯ୍ୟଙ୍କର ସହସ୍ର କରରେ ଖଣ୍ଡିତ କରି ସର୍ବଜନ ଭୋଗ୍ୟ, ସର୍ବ ଅନ୍ଧାରନିବାରକ ଜ୍ୟୋତି ଇସ୍ତାହାର ପ୍ରତିଷ୍ଠା କରିବା ପାଇଁ କବି ସୁନନ୍ଦ କର ପ୍ରତୀକ୍ଷା କରିଛନ୍ତି (୩୪) । ତ୍ରିଷାଂପତି ସୂର୍ଯ୍ୟ ଏଠାରେ ବିପ୍ଳବର ପ୍ରତୀକ । ସାମ୍ୟବାଦର ଆବାହନ ପାଇଁ ବିପ୍ଳବୀ କବିର ଅଭିଯାନ ଅଭିପ୍ରେତ । ଜୀବାନନ୍ଦ ଆଚାର୍ଯ୍ୟଙ୍କ 'ଅଭିଯାନ' କବିତାରେ ଏହା ମାର୍ମିକ ବକ୍ତବ୍ୟ (୩୫) ।

କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର 'ହେ ମୋର ଉନ୍ମୁକ୍ତ ଜାତି' କବିତା, ମହାଭାରତୀୟ ଚେତନା ପରିପ୍ରେକ୍ଷୀରେ ଏକ ସାମ୍ୟବାଦୀ ଚିନ୍ତାରେ ଉଦ୍‌ବୁଦ୍ଧ । ଗୋଟିଏ ଅବିଚ୍ଛିନ୍ନ ପରିବାର ଭଳି ଭାରତୀୟ ନରନାରୀଙ୍କର ନିବିଡ଼ ସମ୍ବନ୍ଧ ସ୍ଥାପନ ତାଙ୍କର ଆଭିମୁଖ୍ୟ । ସେଇ ପ୍ରାଣପାଚୁର୍ଯ୍ୟପୂର୍ଣ୍ଣ ସମ୍ବନ୍ଧର ସୌରଭରେ ଏ ମାଟିର ଦିଗଦିଗନ୍ତ ପରିପୂର୍ଣ୍ଣ । ଏକଚ୍ଛତ୍ର ଶାସନ ପରିବର୍ତ୍ତେ ସାମ୍ୟ, ମୈତ୍ରୀ ଓ ପାରସ୍ପରିକ ସେବାପରାୟଣତା କବି କୃଷ୍ଣଚନ୍ଦ୍ରଙ୍କ ପରିକଳ୍ପିତ ସାମ୍ୟବାଦୀ ରାଷ୍ଟ୍ରର ମହତ୍ତ୍ୱ (୩୬) ।

ସାମାଜିକ ଜୀବନର ଭେଦଭାବ ଓ ବୈଷମ୍ୟର ସ୍ତୂପରେ କବି ରବିସିଂ ଧ୍ୱଂସର ଦାବଦାହ ସୃଷ୍ଟି କରିବା ପାଇଁ କାମନା କରିଛନ୍ତି । ସେଇ ଧ୍ୱଂସ ସ୍ତୂପ ଉପରେ

ସାମ୍ୟବାଦର ବୀଜ ବପନ କରିବାର ଦାୟିତ୍ୱ ତରୁଣ ଗୋଷ୍ଠୀ ଉପରେ ସେ ନ୍ୟସ୍ତ କରିଛନ୍ତି । କବିଙ୍କ ମତରେ ତରୁଣ ସମାଜ ହିଁ ସାମ୍ୟବାଦୀ ଚେତନାର ଯଥାର୍ଥ ବାହକ । ସେମାନେ ହେଉଛନ୍ତି ପ୍ରଗତିର ରକ୍ତ ତାରକା, ମର୍ତ୍ତ୍ୟରେ ସ୍ୱର୍ଗର ରୂପକାର । ସାମ୍ୟବାଦୀ ଯୁଗ ଚେତନାର ସେମାନେ ଇନ୍ଦ୍ର,—ଯୌବନ ସେମାନଙ୍କର ଅନ୍ୟନାମ । କବିଙ୍କ ଭାଷାରେ—

"ଆଗାମୀ ଯୁଗର ତମେ କାରିଗର
ତମେ ତ ରକ୍ତତାରା
ତମେରେ ଗଢ଼ିବ ସାମ୍ୟସମାଜ
ଧରାରେ ସ୍ୱର୍ଗଧାମ
ତମେ ମର୍ତ୍ତ୍ୟରେ ଇନ୍ଦ୍ରର ଦଳ
ଯୌବନ ତମ ନାମ (୩୭) ।"

ପ୍ରଗତିବାଦୀ କବିଚେତନା ଏକ ନଦୀର ଧାରା ଭଳି । ଧ୍ୱଂସ ଓ ସୃଷ୍ଟି ତାର ଦୁଇଟି ପାର୍ଶ୍ୱ । ସାମାଜିକ ସାମ୍ୟର ପ୍ରତିଷ୍ଠା ପାଇଁ ଶ୍ରେଣୀ ବୈଷମ୍ୟ ବିରୋଧରେ ସେ ବିପ୍ଳବ ଘୋଷଣା କରେ । ତାର ଚେତନା ଅନ୍ତଃସଲିଳା ଫଲ୍‌ଗୁର ଜଳଧାରା ପରି ବିପ୍ଳବର ଦାବଦାହ ଓ ଧ୍ୱଂସ ସ୍ତୂପରେ ସାମ୍ୟର ମନ୍ତ୍ର ଶୁଣାଏ (୩୮) ।

## ଘ—ବୈପ୍ଳବିକ ଜୀବନ ଦର୍ଶନ

ସମାଜବାଦୀ ବାସ୍ତବବାଦର ଲକ୍ଷ୍ୟ ଶ୍ରେଣୀ ବୈଷମ୍ୟର ବିଲୋପ ସାଧନ । ସେଥିପାଇଁ ବିପ୍ଳବକୁ ଏକ ଅସ୍ତ୍ରରୂପେ ଏହି ଦର୍ଶନରେ ପ୍ରୟୋଗ କରାଯାଇଥାଏ । ସାମ୍ୟବାଦୀ କବି ପାଇଁ କାବ୍ୟ ସାଧନା ଏକ ସ୍ୱପ୍ନବିଳାସ ନୁହେଁ । ତାହା ବିପ୍ଳବ ବିକ୍ଷୁବ୍ଧ ଜୀବନର ଫେନିଳ ଉର୍ମି । କବିତା 'ମୃଦୁଳ ବୟସୀ', ରୂପଶୀଳା ନୁହେଁ, ସେ ଏକ ନର୍ତ୍ତନଶୀଳ ଝଞ୍ଜାମୟୀ ବନିତା । କୁଞ୍ଜବିହାରୀଙ୍କ ଭାଷାରେ—

"ନୁହେଁ ମଳୟ ଅନିଳ କୋକିଳର କଳ କୂଜନ
ନୁହେଁ ମୃଦୁଳ ବୟସୀ ମଧୁର ମଦିର ସପନ ।
ନୁହେଁ ଚନ୍ଦ୍ରାଲୋକର ତନ୍ଦ୍ରାମୟୀ କି କାହାଣୀ
ନୁହେଁ ଅଭିଜାତ ଶ୍ରେଣୀ ଧନ ଗର୍ବିତା ଗୃହିଣୀ

× × ×

ତୁମେ ଚିର ବିଦ୍ରୋହୀ ବନିତା
ଚିର ମୁକ୍ତିର ବାଟ ଦେଖାଅ ବିଶ୍ୱେ କବିତା (୩୯) ।

ପ୍ରଗତିବାଦୀ କବିତାର ବୈପ୍ଳବିକ କାବ୍ୟସ୍ୱର ମଧ୍ୟରେ କବିତା ତାର ମୁଗ୍‌ଧା, ନବୋଢ଼ା ରୂପ ପରିହାର କରି କିଭଳି ସଂଗ୍ରାମ-ସଂଘାତର ବାଣୀମୂର୍ତ୍ତି ପରିଗ୍ରହଣ କରିଛି ତାହା ଏଠାରେ ପ୍ରକଟିତ । ଏହି ବିଦ୍ରୋହ ଶାଣିତ ଚେତନା ସମାଜବାଦୀ କବିଙ୍କୁ ସାମାଜିକ ବୈଷମ୍ୟ ବିରୋଧରେ ଶତଜିହ୍ୱ କରିଛି । କବି ସ୍ୱପ୍ନଭରପୁର ବଂଶୀର କୋମଳ ସ୍ୱନ ପରିବର୍ତ୍ତେ ବୁଭୁକ୍ଷିତ ଜନତାର ରଣଭେରୀର ଡ଼ାକରାକୁ ସ୍ୱାଗତ କରିଛନ୍ତି—

"ସାମନାରେ ବୁଭୁକ୍ଷିତ ଜନତାର ଇସାରା

× × ×

ବଂଶୀ ତୋ ରଖି ଦେଇ ଦେ' ରଣ ଡାକରା (୪୦) ।"

ବସ୍ତୁତଃ ନିଷ୍ପେଷିତ ଓ ପୀଡ଼ିତ ପ୍ରାଣ ଅଶକ୍ତ ନୁହେଁ, ତାହା ଅନନ୍ତ ଶକ୍ତିର ଉତ୍ସ । ସେହି ପୀଡ଼ିତ ପ୍ରାଣରେ ସଞ୍ଚିତ ଅନନ୍ତ ଶକ୍ତିର ଜୟଗାନ କରିବା ପାଇଁ କବି ଆହ୍ୱାନ ଦିଅନ୍ତି । ସେଥିପାଇଁ ପ୍ରତିକ୍ରିୟାଶୀଳ ଦକ୍ଷିଣ ପନ୍ଥା ତ୍ୟାଗ କରି ପ୍ରଗତିଶୀଳ ବାମପନ୍ଥୀ ଚେତନାକୁ ଯାଞ୍ଚା କରିବା ପାଇଁ ଉଭୟ ଅସି ଓ ମସୀର ବିପ୍ଳବକୁ କବି ସ୍ୱପ୍ନଭରପୁର ସମାନ୍ତରାଳ ଭାବେ ଗୁରୁତ୍ୱ ଦେଇଛନ୍ତି (୪୧) । ଏହି ବିପ୍ଳବର ସଫଳ ରୂପାୟନ ପାଇଁ କବି ଅନନ୍ତ ପଟ୍ଟନାୟକ ଶ୍ୱେତବର୍ଣ୍ଣର ମାଧବୀ ଫୁଲର ମୃଦୁ କମ୍ପନ ପରିବର୍ତ୍ତେ, ଶାଳ୍ମଳୀ ଫୁଲର ରକ୍ତିମ ରାଗରେ ଚଞ୍ଚଳତାର ସନ୍ଧାନ କରିଛନ୍ତି (୪୨) । 'ଝରିରେ ରୁଧିର' କବିତାରେ ନାରୀ ସମାଜକୁ ଖୋପାରେ ଶ୍ୱେତ ବର୍ଣ୍ଣର ମଲ୍ଲୀ, ମରୁଆ ପରିବର୍ତ୍ତେ ରକ୍ତାକ୍ତ ଶିମୁଳି ଫୁଲ ଖୋଷି ସଂଗ୍ରାମର ପ୍ରେରଣା ଦେବାକୁ ଆହ୍ୱାନ ଦେଇ-ଛନ୍ତି (୪୩) । ଶ୍ୱେତ ବର୍ଣ୍ଣର ମାଧବୀ, ମଲ୍ଲୀ, ମରୁଆକୁ ଏଠାରେ ବିଳାସ ଓ ଶାଳ୍ମଳୀ, ପଳାଶ ଫୁଲକୁ ବିପ୍ଳବର ରୂପକ ଭାବରେ ଅବତାରଣା କରାଯାଇଛି । ଶୋଷଣ ଓ ନିଷ୍ପେଷଣ ହେତୁ ନୀରବରେ ଅଶ୍ରୁ ମୋଚନ ନ କରି, ଶୋଷିତର ଅଶ୍ରୁସାଗରକୁ ଅଗ୍ନି-ବାଣୀରେ ଅଭିମନ୍ତ୍ରିତ କରିବା ପାଇଁ ଅନନ୍ତ ପଟ୍ଟନାୟକ ଉଦ୍‌ବୋଧନ ଦେଇଛନ୍ତି—

"ଅଶ୍ରୁ ସାଗରେ ଅଗ୍ନିବାଣୀ ତୁ
ଅନ୍ତରେ ମୋର ଜଳରେ ଜଳ (୪୪) ।"

ପୁଞ୍ଜିବାଦର ହୀନ ଶୋଷଣ ଯୋଗୁଁ ପରାଜୟ ବରଣ କରିବା ଜୀବନର ଧର୍ମ ନୁହେଁ । ପଶ୍ଚାନ୍ତରେ ଜୀବନର ତୃଷା ରାଜ୍ଞନ୍ତି ପରିବେଶର ହିମ ଶୀତଳତା ମଧ୍ୟରେ ଶସ୍ୟର ଶ୍ୟାମଳ ହାସ ସୃଷ୍ଟି କରିବା ତାହାର ଲକ୍ଷ୍ୟ—

"ତୃଷାରେ ତୃଷାରେ ଶସ୍ୟର ହାସ
ନଗ୍ନ ଉଷାର ରକ୍ତ ପ୍ରଶ୍ୱାସ

ସ୍ୱପ୍ନ ଭାଙ୍ଗିଲେ ଫୁଟାଇଲା ଯେହ୍ନେ ଶିଳ୍ପୀ ସୃଜନୀ ତୂଳିକା ବହ୍ନି !
ରକ୍ତରେ ! ମୋର ହୃଦୟେ ଥାଉଁ ତୁ, ପଡ଼ିବ ନାହିଁ କି ପଡ଼ିବ ନାହିଁ (୪୫) ।"

ତୁଷାର ଏଠାରେ ଏକ ପ୍ରତିକୂଳ ପରିବେଶର ପ୍ରତୀକ । ପ୍ରତିକୂଳ ବାତାବରଣ ମଧ୍ୟରେ 'ଶସ୍ୟର ହାସ' ପରି ଏକ ସମୃଦ୍ଧି-ସରଣୀ ସୃଷ୍ଟି କରିବା ପାଇଁ କବିଙ୍କର ରୁଧିରକ୍ତ ସଂଗ୍ରାମ ଅଭିପ୍ରେତ ।

ବିପ୍ଳବର ଏ ଯାତ୍ରାପଥ ସରଳ ବା କୋମଳ ନୁହେଁ । ଏହା କର୍କଶ, କଙ୍କରିଳ ଓ କଣ୍ଟକିତ । କିନ୍ତୁ ଯାତ୍ରା ପଥର କ୍ଷତ ବିକ୍ଷତ ଦେହ ଓ ମନକୁ ବିପ୍ଳବର ପ୍ରେରଣାରେ ଉଦ୍‌ବୁଦ୍ଧ କରିବା ପାଇଁ ପ୍ରାଣର ବଂଶୀ ବଜାଇବାକୁ କୃଷ୍ଣଚନ୍ଦ୍ର ଉଲ୍ଲେଖ କରିଛନ୍ତି (୪୬) । କବି ମନମୋହନ ମିଶ୍ର ସେଥିପାଇଁ କଳ କାରଖାନା, ଖାଦାନ ଓ ବାଗାନର ଶ୍ରମଜୀବୀମାନଙ୍କୁ ସଂଗ୍ରାମର ମଇଦାନରେ ଏକତ୍ରିତ ହେବାପାଇଁ ଆହ୍ୱାନ ଦେଇଛନ୍ତି :—

"କାରଖାନା, ଖଳାବାଡ଼ି, ଖାଦାନ, ବାଗାନରେ
ଏକ ହୁଅ, ଏକ ହୁଅ ତୁ ଭାରତଜନତା ସଂଗ୍ରାମ ମଇଦାନରେ(୪୭) ।"

ସଂଗ୍ରାମର ସଫଳତା ପାଇଁ କଳା ମଚମଚ ବନ୍ଧୁକ ଭଳି ମାରଣାସ୍ତ୍ର ଆବଶ୍ୟକ । ଖୋସାମତ, ହାତଗୁହାରି ଦ୍ୱାରା ଶୋଷକ-ଶୋଷିତ ସମସ୍ୟାର ସମାଧାନ ସମ୍ଭବ ନୁହେଁ । ତୁଚ୍ଛ କାକରରେ ଘଡ଼ା ପୂରାଇବା ଅଥବା ପାଟିର ଠାକରା ଫୁଟାଇ ଘୋଡ଼ାର ଗତିକୁ ବଦଳାଇବା ପରି ଏହା ଏକ ବ୍ୟର୍ଥ ପ୍ରୟାସ । ସେଥିପାଇଁ ପ୍ରତ୍ୟେକ ଗୃହୀର କୁଆଁଳ ଓ ଗଉଡ଼ ପିଲାର ଲଗୁଡ଼ ବନ୍ଧୁକ ଭଳି ଶୋଷିତ ଶ୍ରେଣୀର ପ୍ରତିରୋଧ କରିବା ପାଇଁ ମନମୋହନ ଚେତାବନୀ ଦେଇଛନ୍ତି (୪୮) । ପାଶବିକ ଶକ୍ତିଦ୍ୱାରା ନିଷ୍ପେଷିତ ଗୋଷ୍ଠୀର ପ୍ରାଣର ଆଶାବାଡ଼ିକୁ ଯେଉଁ ଶୋଷକ ସମାଜ ଅପହରଣ କରି ନିଏ, ସେ ଯେତେ ବଳବାନ ହେଲେ ମଧ୍ୟ ବିପ୍ଳବର ତୋଫାନ ନିଶ୍ଚିତ ଭାବରେ ତାକୁ ଧ୍ୱସ୍ତ ବିଧ୍ୱସ୍ତ କରିଦେବ । କବି ମନମୋହନ ଅବନୀତ ଓ ନିର୍ଭୀକ ଭାବେ ବିପ୍ଳବର ମାର୍ଗ ସଂଧାନ କରି ନବ ଚେତନାରେ ଅଭିଷିକ୍ତ ହେବାପାଇଁ ପ୍ରେରଣା ଦେଇଛନ୍ତି (୪୯) । ପୁଞ୍ଜିପତି ଶୋଷକଙ୍କ ଶୋଷଣ ଜାଲ ବିରୁଦ୍ଧରେ ରକ୍ତାକ୍ତ ବିପ୍ଳବ ସୃଷ୍ଟି କରିବା ପାଇଁ ପ୍ରକୃଷ୍ଟ ସମୟ ଉପସ୍ଥିତ ବୋଲି ସେ ଶ୍ରମିକ ସମାଜକୁ ଚେତାଇ ଦେଇଛନ୍ତି (୫୦) ।

ସମାଜର ଶ୍ରେଣୀ ବୈଷମ୍ୟ ରଘୁନାଥ ଦାସଙ୍କ କବିପ୍ରାଣକୁ ଅତିଷ୍ଠ କରିଛି । କ୍ଷୋଭ ଓ କ୍ରୋଧରେ ପ୍ରାଣକୁ ଉଦ୍‌ବେଳିତ କରିଛି । ସାମାଜିକ ବୈଷମ୍ୟର ବିଲୋପ ପାଇଁ ଆତ୍ମଶକ୍ତିରେ ଦୀପ୍ତ ଓ ଦୃପ୍ତ ହେବା ପାଇଁ ସେ ଅଙ୍ଗୀକାରବଦ୍ଧ ହୋଇଛନ୍ତି ।

କାରଣ ସାମ୍ୟବାଦର ସୂର୍ଯ୍ୟ ଏକ ବିପ୍ଳବ ଶାଣିତ ରକ୍ତ ପ୍ରଭାତରେ ହିଁ ଉଦିତ ହୁଏ (୫୧) । ମନୋଜ ଦାସଙ୍କ ଭାଷାରେ ଜାଗରଣର ରକ୍ତ ପ୍ରଭାତରେ ଶ୍ମଶାନ ଭୂମିରୁ ଉତ୍ଥିତ ଦୁଃଖର କଳାଧୂଆଁ ପ୍ରଳୟବୈଶାଖରେ ରୂପାନ୍ତରିତ । ପ୍ରତ୍ୟେକ ଶୋଷିତ ଦଳିତ ମୁଖରେ ସମ୍ଭାବ୍ୟ ବିଜୟର ଶଂଖ ନିର୍ଘୋଷିତ (୫୨) । ଅବଶ୍ୟ ଶୋଷିତ ଗୋଷ୍ଠୀର ଏ ବିଜୟ ଅଭିଯାନକୁ ବ୍ୟର୍ଥ କରିଦେବାର ପ୍ରୟାସ ହୋଇଛି । ତାର ଜୀବନର ପ୍ରାଣବନ୍ତ ଜୁଆରକୁ ନିଷ୍କ୍ରିୟ କରିଦେବାର ପ୍ରଚେଷ୍ଟା ହୋଇଛି । ତା'ର ସ୍ୱପ୍ନକୁ ଖଣ୍ଡ ବିଖଣ୍ଡିତ କରିଦିଆଯାଇଛି । କୃତ୍ତିଚନ୍ଦ୍ର ତ୍ରିପାଠୀଙ୍କ ଅଗ୍ନିଶଙ୍ଖରେ ଏହି ବେଦନାବିଧୂର ସତ୍ୟ ଅଭିବ୍ୟକ୍ତ (୫୩) । କିନ୍ତୁ ନିଷ୍ଫଳ ଶିଳାଖଣ୍ଡ ଭିତରେ ମଧ୍ୟ ଅସୀମ ବିକ୍ରମର ଅଗ୍ନିଶିଖା ଅନ୍ତର୍ନିହିତ ହୋଇପାରେ । 'ନିଭିବାର ନୁହେଁ ତାହା/ ତାକୁ କିଏ/ମାଡ଼ି କୁହ ଗିଳିଯିବ କିହ (୫୪) । ସୁତରାଂ କବିଙ୍କର ଆହ୍ୱାନ—

"ତୁମେ ଆଜି
ଶତ ଓ ସହସ୍ର ଗୁଣ ଉଠ ଜଳି
ତୁମେ ଆଜି ହୁଅ ଦୁର୍ବିସହ ।" (୫୫)

ରବି ସିଂଙ୍କ ଭାଷାରେ—'ବିନା ସଂଗ୍ରାମେ ମୁକ୍ତି କେଭେ ହେଁ ନାହିଁ ମିଳି ।" ତେଣୁ ସେ ଉଦାତ୍ତ କଣ୍ଠରେ ଉଚ୍ଚାରଣ କରିଛନ୍ତି—

"ଶମଶାନୁ ଧରି ଜୀବନ୍ୟାସର ସତ୍ତି ହେ
ହୁଙ୍କାରେ ନାଚ ମୁର୍ଦ୍ଦାର (୫୬) ।"

ପୁଞ୍ଜିପତିଙ୍କ ଶୋଷଣ ଜାଲରେ ଯନ୍ତ୍ରଣା ଜର୍ଜ୍ଜରିତ ଶୋଷିତ ସମାଜକୁ ଏଠାରେ ମୁର୍ଦ୍ଦାର ରୂପେ ଅଭିହିତ କରାଯାଇଛି । କିନ୍ତୁ ଦୁଃଖ ଓ ଯନ୍ତ୍ରଣାର ଶ୍ମଶାନରୁ, ସମୃଦ୍ଧ ଜୀବନର ସମ୍ଭାବନା ନେଇ ଶୋଷିତ ଶ୍ରେଣୀକୁ ବିପ୍ଳବର ହୁଙ୍କାର ଦେବାପାଇଁ, କବିଙ୍କର ବାର୍ତ୍ତା ସଂପ୍ରେରିତ । ଯୁଗ ଯୁଗର କୁସଂସ୍କାର ଓ ଶୋଷଣ, ପେଷଣର ସ୍ତୂପରେ ଏହି ପ୍ରଳୟ, ବିପ୍ଳବର ଇନ୍ଧନ ସଂଯୋଗ କରିବ ।

**ଙ—ଧର୍ମ ଓ ଈଶ୍ୱରଙ୍କର ପାରମ୍ପରିକ ଭୂମିକା ବିରୋଧରେ ବିଦ୍ରୋହ**

ପ୍ରଗତିବାଦୀ କବିତାରେ ପୌରୋହିତ୍ୟବାଦୀ କର୍ମକାଣ୍ଡସର୍ବସ୍ୱ ଧାର୍ମିକ ଅନୁଷ୍ଠାନ ବିରୋଧରେ ସ୍ୱର ଉତ୍ତୋଳନ କରାଯାଇଥାଏ । ମାର୍କସ୍ ଓ ଲେନିନ୍ ଏହି ମତବାଦର ଅଗ୍ରଦୂତ । ଜନସାଧାରଣଙ୍କୁ ଧାର୍ମିକ ଅହିଫେନର ନିଶାରୁ ମୁକ୍ତ ହେବା ପାଇଁ ସେମାନେ ଆହ୍ୱାନ ଦେଇଥିଲେ । ଧର୍ମଭୀରୁ ଜନତା ଆଖିରେ ଈଶ୍ୱର ବିଶ୍ୱାସ-ବୋଧର ଅନ୍ଧପୁଟୁଳି ବାନ୍ଧି ଦେଇ ପୁଞ୍ଜିପତି ଶୋଷକ ତାକୁ ନିର୍ବିକାରରେ ଶୋଷଣ କରେ । ସଚ୍ଚି ରାଉତରାୟଙ୍କ ଭାଷାରେ—

"ଧର୍ମର ମଦ ଖୁଆଇ କରିଛ ଭାଇ
ମଣିଷ ଜାତକୁ ଚିରଦିନ ମସଗୁଲ୍
ଅଫିମ ନିଶାରେ ଖୋଲି ସେ ନପାରେ ଆଖି
ତମେ ଶୋଷ ତାର ବୁକୁର ଜୀବନ ଫୁଲ (୬୭) ।"

"ବୁକୁର ଜୀବନ ଫୁଲ" ଏଠାରେ ଦଳିତ ଗୋଷ୍ଠୀର ପ୍ରାଣସତ୍ତାର ପ୍ରତୀକ । ପୁଞ୍ଜିବାଦୀ ଗୋଷ୍ଠୀର ଧର୍ମ ଓ ତାର ଅନ୍ଧ ପ୍ରତିପାଳିତ ଧର୍ମଯାଜକ ସଂପ୍ରଦାୟକୁ ଉତ୍ପାଟିତ ଓ ଉତ୍ଖାତ କରିବାପାଇଁ କବି ସର୍ବହରା ସମାଜକୁ ଚେତାଇ ଦେଇଛନ୍ତି (୬୮) । ନାମାବଳୀ ଛପା ଗୈରିକ ବସନ ଅନ୍ତରାଳରେ ଶୋଷକଶ୍ରେଣୀ, ଦଳିତ ଜନତାର ସୁଖ ଓ ସମୃଦ୍ଧିର ଅନ୍ତରାୟ ହୋଇଥାନ୍ତି । ଶୋଷକ ସମାଜର ନିମୀଳିତ ଚକ୍ଷୁର ଭଗବତ୍ ନାମଜପ, ଏକ ଛଳନା—ଏକ ନଗ୍ନ ବାହ୍ୟାଡ଼ମ୍ବର (୬୯) । ଧର୍ମଶାସ୍ତ୍ର, ଗୁଡ଼ିକ ମଧ୍ୟ ନିଛକ ଛଳନା ଓ ପ୍ରତାରଣାପୁଷ୍ଟ । ସମାଜର ତଥାକଥିତ ଉଚ୍ଚବର୍ଗର ଫରମାସ ଅନୁଯାୟୀ ଏହି ଶାସ୍ତ୍ରଗୁଡ଼ିକ କଳ୍ପିତ । ସେହି ଧର୍ମଶାସ୍ତ୍ର, ପୌରୋହିତ୍ୟ ତଥା ଭଗବତ୍ ବିଶ୍ୱାସ-ବୋଧର ସନ୍ଧିବନ୍ଧନକୁ ଧ୍ୱଂସ କରିବା ପାଇଁ ସର୍ବହରା ସମାଜ ମୃତ୍ୟୁଦୂତ ରୂପେ ଅବତୀର୍ଣ୍ଣ (୭୦) ।

ଧର୍ମ ଶୋଷକଶ୍ରେଣୀର ଏକ ଶୋଷିନ୍ଦ୍ର । ଧନିକ ହାତମୁଠାରେ ସେ ଶୋଷିନ୍ଦ୍ର କାଠି ରହିଛି । ଧର୍ମରୂପକ ଶୋଷଣ ମନ୍ତ୍ରରେ ନିରପରାଧ ଧର୍ମବିଶ୍ୱାସୀ ଜନତାର ଆତ୍ମାକୁ ନୈରାଶ୍ୟବାଦୀ ବୈରାଗ୍ୟର ଗୈରିକ ପୁଟରେ ରଂଜିତ କରି ସେମାନେ ନିଷ୍କ୍ରିୟ କରି ଦେଇଥାନ୍ତି (୭୧) ।

ଧର୍ମାନୁଷ୍ଠାନର ନାନାଦି ଧର୍ମବିଧାନ କେବଳ ଧନିକ ଗୋଷ୍ଠୀର ସ୍ୱାର୍ଥକୁ ସୁରକ୍ଷିତ କରିବାପାଇଁ ଉଦ୍ଦିଷ୍ଟ । ଗୀର୍ଜା, ମସ୍‌ଜିଦ ଓ ମନ୍ଦିର ଧନିକ ସଂପ୍ରଦାୟର ନିର୍ଦ୍ଦେଶରେ ପରିଚାଳିତ (୭୨) ।

ଧର୍ମନାମରେ ଧନିକ ଗୋଷ୍ଠୀ ତଥା ପୁରୋହିତ ସଂପ୍ରଦାୟର ଯାବତୀୟ କ୍ରିୟାକାଣ୍ଡ ସୌଦାଗରୀ ବୃତ୍ତିର ପରିଚାୟକ (୭୩) । ଭଗବାନ ଧନିକର ହାତଗଢ଼ା ଏକ ଶୋଷଣ ଯନ୍ତ୍ର । ଧନିକ ସଂପ୍ରଦାୟର ଶୋଷଣ ବିଧାନକୁ ଧ୍ୱଂସ କରିବାକୁ ହେଲେ ତଥାକଥିତ ଭଗବତ୍‌ବୋଧର ଉପେକ୍ଷା ଏକାନ୍ତ ପ୍ରୟୋଜନ । ଏଣୁ କୁସଂସ୍କାରଗ୍ରସ୍ତ ଭଗବତ୍ ବିଶ୍ୱାସବୋଧର ବିନାଶ ପାଇଁ କବି ରାଉତରାୟ ଆହ୍ୱାନ ଦେଇଛନ୍ତି (୭୪) ।

ଧର୍ମ ଶବ୍ଦ ଧୃ ଧାତୁରୁ ନିଷ୍ପନ୍ନ । ସମଗ୍ର ବିଶ୍ୱକୁ ଏହା ଧାରଣ କରେ । ସୁତରାଂ ହିନ୍ଦୁ, ଖ୍ରୀଷ୍ଟ ଓ ଇସଲାମ ଆଦି ସମ୍ପ୍ରଦାୟ ଭେଦରେ ଧର୍ମ, ବିଶ୍ୱକଲ୍ୟାଣ ପାଇଁ ଉଦ୍ଦିଷ୍ଟ ।

କିନ୍ତୁ ସାମ୍ପ୍ରତିକ କାଳରେ ଧର୍ମର ଏହି କଲ୍ୟାଣମୟ ସ୍ୱରୂପ କଳୁଷିତ । କାଳନ୍ଦୀଚରଣ ପାଣିଗ୍ରାହୀଙ୍କ 'ଯାଦୁଘର' କବିତା ଧର୍ମର ଏହି କଳଙ୍କିତ ସ୍ୱରୂପ ବିରୋଧରେ ଏକ କାବ୍ୟିକ ପ୍ରତିବାଦ । ଗୋଡ଼ତରାୟଙ୍କ ପରି କାଳନ୍ଦୀଚରଣ ଧର୍ମର ତଥାକଥିତ ଶାସ୍ତ୍ରୀୟ ମହତ୍ତ୍ୱକୁ ଉପେକ୍ଷା କରିଛନ୍ତି । ତାଙ୍କ ମତରେ ସାମ୍ପ୍ରତିକ କାଳରେ ଧର୍ମ ଏକ ଜଡ ଅକ୍ଷରରେ ପର୍ଯ୍ୟବସିତ । ଏହା ବିଗ୍ରହବିହୀନ ଆଶ୍ରମସମୂହରେ ସ୍ତୂପୀଭୂତ (୬୫) । ଧର୍ମାନୁଷ୍ଠାନର ଗୃହକାଠି ଯୁଦ୍ଧଖୋର ରାଷ୍ଟ୍ରନାୟକ, ପ୍ରଶାସକ, ବିତ୍ତୁର ବିଲାସ ତଥା ଧନିକ ସମ୍ପ୍ରଦାୟର ହାତମୁଠାରେ ସୀମାବଦ୍ଧ (୬୬) । ପୁରୋହିତ ସମ୍ପ୍ରଦାୟ ପାଇଁ ଏହା ଏକ ଅର୍ଥକରୀ ବ୍ୟବସାୟ । ଉଚ୍ଚବର୍ଗ ପାଇଁ ପୋଷାକ ପରିଚ୍ଛଦ ଭଳି ଏହା ଏକ ସୌଖୀନ ବେହରଣ । ଦେଶ ଦେଶ ଭେଦରେ ପୋଷାକ, ଆହାର ଓ ଜଳବାୟୁର ପରିବର୍ତ୍ତନ ଭଳି ଧର୍ମର ସ୍ୱରୂପ ମଧ୍ୟ ନିତ୍ୟ ପରିବର୍ତ୍ତିତ । କବିଙ୍କ ଭାଷାରେ—

"ଦୁନିଆ ଯାକର ମଣିଷ ପାଇଁ ତ ଧର୍ମ ନ ମିଳେ ଏକ
ସବୁ ପୂଜା ସବୁ ଧ୍ୟାନ ଭଜନ ନୁହେଁ କ ଭୋଜନ ଭେକ ?
ସବୁ ଦେଶେ ଅବା ସମାନ ଧର୍ମ ସତ୍ୟ ଆସିବ କାହୁଁ
ସମାନ ନୁହେଁ ତ ପୋଷାକ ଆହାର ସବୁ ଦେଶ ଜଳବାୟୁ" (୬୭)

ଶୋଷକ ସମ୍ପ୍ରଦାୟପୁଷ୍ଟ ଧର୍ମଗୁରୁର ଶୋଷଣ-ପେଷଣ ମଧ୍ୟରେ ଧର୍ମ ଏକ ପ୍ରାଣହୀନ ଯାଦୁଘରରେ ରୂପାନ୍ତରିତ । ସେଥିରେ ଶୋଷିତ ଶ୍ରେଣୀର ନିର୍ଜୀବ କଙ୍କାଳ ମାତ୍ର ସଂଚିତ, ଅଥଚ ଜଡ ପ୍ରାଣରେ ଜୀବନ ସଞ୍ଚାର କରିବା ଧର୍ମର ଲକ୍ଷ୍ୟହେବା ବାଞ୍ଛନୀୟ । ଧର୍ମର ସେହି ମହତ୍ତମ ଆଭିମୁଖ୍ୟ ଆଜି ଲୁଣ୍ଠିତ ଓ ବିଡ଼ମ୍ବିତ—

"ଜୀବର ଲାଗିଜେ ଧର୍ମ ସେ ଖାଲି ଜୀବହୀନ ଯାଦୁଘର
ନୁହେଁ ଆଉ କିଛି ସଞ୍ଚିତ ତହିଁ କଙ୍କାଳ ଜଗତର" (୬୮) ।

ସୁତରାଂ କବି ବିନୋଦ ନାୟକ, ଦେବ ପୂଜାର ଫଳ ପାଇବାକୁ ହେଲେ, କାଷ୍ଠ, ପାଷାଣ ମୂର୍ତ୍ତି ପାଖରେ ଭୋଗ, ନୈବେଦ୍ୟ ଅର୍ପଣ ନ କରି, ସେ ନୈବେଦ୍ୟ ହୀନ ଦରିଦ୍ରଠାରେ ଅର୍ପଣ କରିବାକୁ ସୂଚାଇଛନ୍ତି (୬୯) । ପାଷାଣ ଦେବତାର ଆରାଧନା ପରିବର୍ତ୍ତେ ନର-ଦେବତାର ସେବା ଓ ପରିଚର୍ଯ୍ୟା ହିଁ ଯଥାର୍ଥ ଦେବପୂଜା । ମାନସିଂହଙ୍କ 'ଦେବପୂଜା' କବିତାର ଏହା ମର୍ମବାଣୀ (୭୦) । ମନ୍ଦିର ଓ ମସଜିଦର ପବିତ୍ର ପାଷାଣ ପୀଠ ଠାରୁ ଦରିଦ୍ର କୁଟୀର ଓ ଶୋଷଣ ବିରୁଦ୍ଧରେ ଲଢି କାରାବାସ ଦଣ୍ଡ ଭୋଗୁଥିବା ଶୋଷିତର ଅନ୍ଧ କାରାଗୃହ ଅଧିକ ପବିତ୍ର ଓ ଅଧିକ ରୁଚସମ୍ପନ୍ନ ବୋଲି ଜ୍ଞାନୀନ୍ଦ୍ର ବର୍ମା ଅଭିହିତ କରିଛନ୍ତି (୭୧) । ପାଷାଣ-ଦେବତାର ମନ୍ଦିରରେ ଶଙ୍ଖ

ବଜାଇବା ପରିବର୍ତ୍ତେ, ନିରନ୍ନ ଜନତାର କୁଟୀର ମନ୍ଦିରରେ ସେବା ଶୁଶ୍ରୂଷା ପାଇଁ ସମୁପସ୍ଥିତ ହେବାକୁ କବି ଗୋଦାବରୀଶ ମହାପାତ୍ର ଭକ୍ତମାନଙ୍କୁ 'ଦେବପୂଜା' କବିତାରେ ଚେତାଇ ଦେଇଛନ୍ତି । ତାଙ୍କ ମତରେ ନିରନ୍ନ ଜନତାର ପୀଡ଼ିତଆତ୍ମା ମଧ୍ୟରେ ହିଁ ଯଥାର୍ଥ ଦେବ ଦର୍ଶନ ସମ୍ଭବ (୭୨) । ବିଂଶ ଶତାବ୍ଦୀର ବାସ୍ତବବାଦୀ ବ୍ୟକ୍ତି-ସତ୍ତା ପାଇଁ ଦେବମୂର୍ତ୍ତି ଅର୍ଥ, ଜଡ଼, ପାଷାଣ ଓ କଳ୍ପନାଶ୍ରୟୀ । ଜାନକୀବଲ୍ଲଭ ମହାନ୍ତିଙ୍କ 'ହେ ମୂକ ଦେବତା' କବିତାରେ ଏହି ଚେତନା ଅଭିବ୍ୟକ୍ତ (୭୨ କ) । କୃତ୍ତିବାସ ଦାଶଙ୍କ ଭାଷାରେ ଧର୍ମୀୟ ବିଡ଼ମ୍ବନାର ପୃଷ୍ଠପଟରେ ରହିଛି ଏକ 'ଲୋମଶମାଳ ହାତ'ର ହୀନ ଚକ୍ରାନ୍ତ ଓ କୁତ୍ସିତ ଷଡ଼ଯନ୍ତ୍ର-—

"ତୋର ଏହି ବିପଦ/ଏଇ ଦୁର୍ଦ୍ଦଶା
ଭାଗ୍ୟର ଅଭିଶାପ ନୁହେଁ
ଏକ ଲୁହା ଲୋମଶ ହାତର କାରସାଦି
ନୁହେଁ ଭଗବାନ/ସଇତାନ ତୋର ପ୍ରତିବାଦୀ (୭୩) ।"

ଶୋଷିତ ସମ୍ପ୍ରଦାୟର ଦୁଃଖ-ଦୁର୍ଦ୍ଦଶା ଭାଗ୍ୟର ଅଭିଶାପ ଅଥବା ବିଧିର ବିଡ଼ମ୍ବନା ନୁହେଁ । ଏହା ପୁଞ୍ଜିବାଦୀ ଓ ସାମନ୍ତବାଦୀ ଗୋଷ୍ଠୀର ପରିକଳ୍ପିତ ଆରୋପ ମାତ୍ର । ମନୁଷ୍ୟକୃତ ଦୁଃଖ, ଦୁର୍ଦ୍ଦଶାକୁ ନୀରବରେ ଓ ନିର୍ବିବାଦରେ ସହିନେବା ପାଇଁ ଶୋଷକ ଶ୍ରେଣୀ, ଭଗବାନଙ୍କୁ ସୁଖ-ଦୁଃଖର ହର୍ତ୍ତା କର୍ତ୍ତା ଭାବରେ ଚିତ୍ରିତ କରି ପ୍ରବଞ୍ଚନା ଓ କୁହେଳିକା ସୃଷ୍ଟି କରିଛନ୍ତି । ପ୍ରଗତିବାଦୀ କବି ଯୁଗ ଯୁଗର ସେଇ ଆରୋପିତ ଭଗବତ୍ ଚେତନା ଉପରେ କୁଠାରାଘାତ କରିଛନ୍ତି—

"ଭଗବାନ ସ୍ୱର୍ଗବାସୀ
ସଇତାନ ଏଇ ମାଟି ପୃଥିବୀର ମାଲିକ

× × ×

ଭଗବାନ ଆକାଶୀ କଳ୍ପନା"
ସଇତାନ ନିଷ୍ଠୁର ବାସ୍ତବ
କମାଣର ଧ୍ୱନି ପରି ନିର୍ମମ
ଆଟମ୍ ବୋମା ପରି ସତ୍ୟ (୭୪) ।"

'ଭଗବାନ' ଓ 'ସଇତାନ'–ଏହି ଦୁଇଟି ପରସ୍ପର ବିରୋଧୀ ଚେତନା ମଧ୍ୟରୁ ଭଗବାନ ମଣିଷର ଚିନ୍ତା–ପ୍ରସୂତ ଓ ସମ୍ପୂର୍ଣ୍ଣ କାଳ୍ପନିକ । 'ସଇତାନ' ହିଁ ସାମ୍ପ୍ରତିକ ସମାଜର ପ୍ରତ୍ୟକ୍ଷ ଓ ପ୍ରମାଣଯୋଗ୍ୟ ସତ୍ୟ । ସମାଜର ଶୋଷକ ସମ୍ପ୍ରଦାୟ ଏଠାରେ 'ସଇତାନ'

ଚରିତ୍ର ରୂପେ ଅଭିବ୍ୟଞ୍ଜିତ । ଧର୍ମର ସ୍ୱରୂପ ସେମାନଙ୍କର ଅପକର୍ମକୁ ଘୋଡ଼ାଇଲା ଭଳି ବିନ୍ୟସିତ । କମାଣର ବିକଟଧ୍ୱନି ଓ ଆଟମ୍ ବୋମାର ଧ୍ୱଂସ କ୍ରିୟା ସହିତ ସଇତାନ ଶୋଷକ ଶ୍ରେଣୀର ଅନ୍ତଃରୂପକୁ ଏଠାରେ ତୁଳନାତ୍ମକ ଖିଅରେ ଚିତ୍ରିତ କରାଯାଇଛି ।

'ବନ୍ଧୁ ଓ ସିନ୍ଧୁ'ର 'ନମସ୍କାର' କବିତାରେ କବି ମାନସିଂହଙ୍କର ଉଦ୍‌ଘୋଷିତ ସ୍ୱର ଅଧିକ ଶାଣିତ ଓ କଟାକ୍ଷଯୁକ୍ତ । ତାଙ୍କ ମତରେ ମୌଲବୀ, ମୁଲ୍ଲା ଓ ପୁରୋହିତଙ୍କ ଦ୍ୱାରା ମନ୍ଦିର, ମସ୍‌ଜିଦ୍ ଓ ଗୀର୍ଜାରେ ବନ୍ଦୀ ହୋଇଥିବା ଈଶ୍ୱର ଅଥର୍ବ ଓ ସ୍ଥାଣୁ । କବି ସେ ଈଶ୍ୱରଙ୍କୁ ନମସ୍କାର ଜଣାଇବାକୁ କୁଣ୍ଠାବୋଧ କରିଛନ୍ତି (୭୫) ।

## ଚ—ସମାଜର ନିମ୍ନ ବର୍ଗରୁ ଚରିତ୍ର ଅାହରଣ

ପ୍ରାଚୀନ ତଥା ମଧ୍ୟଯୁଗୀୟ ପରମ୍ପରାରେ ଉଚ୍ଚକୂଳ ସମ୍ଭୂତ ଚରିତ୍ର ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ନାୟକ ସେଠାରେ 'ରୁଦ୍ରସୁଧାନିଧି' ଅଥବା 'ଚନ୍ଦ୍ରଭାନୁ' ଭଳି ରାଜକୁମାର ଓ ନାୟିକା 'ଲାବଣ୍ୟବତୀ' ଅଥବା 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ପରି ରାଜଦୁଲାଳୀ । ଏହି କାବ୍ୟ ପରମ୍ପରାରେ ଯେଉଁଠାରେ ନିମ୍ନବର୍ଗରୁ ଚରିତ୍ର ଆହୃତ ହୋଇଥିଲା, ସେଠାରେ ତାହା ମାଳିନୀ, ଦୂତୀ ଅଥବା ଦାସ-ଦାସୀଙ୍କ ଭଳି ଗୌଣ ଭୂମିକା ସମ୍ପନ୍ନ ।

କେବଳ ମଧ୍ୟ ଯୁଗୀୟ ଓଡ଼ିଆ କାବ୍ୟ ପରମ୍ପରା ନୁହେଁ, ଆଧୁନିକ ଯୁଗର ଅନ୍ୟତମ ପ୍ରବର୍ତ୍ତକ ରୂପେ ପରିଗଣିତ ରାଧାନାଥ ରାୟଙ୍କ କାବ୍ୟର ଚରିତ୍ର ଗୁଚ୍ଛ ମଧ୍ୟ ଅଭିଜାତ ବର୍ଗରୁ ଆହୃତ । ନନ୍ଦିକା, ଉଷା, ପାର୍ବତୀ, କୌଶଲ୍ୟା—ଏ ସମସ୍ତେ ରାଜବଂଶ ସଂଭୂତା । ସେହିଭଳି ଚିତ୍ରୋତ୍ପଳ, ଜୟନ୍ତ ପ୍ରମୁଖ ନାୟକ ରାଜବଂଶ ସଂଭୂତ । ନୀଳକଣ୍ଠଙ୍କ 'କୋଣାର୍କେ' ଓ 'ଖାରବେଳ' କାବ୍ୟରେ ମଧ୍ୟ ସେହି ରାଜ ପରିବାରର ଚରିତ୍ର ଗୁଚ୍ଛର ସମାବେଶ । 'କୋଣାର୍କେ'ର ମାୟାଦେବୀ, ନରସିଂହ ଦେବ ଓ କମ୍ପୁରାଜ କେମା ଓ 'ଖାରବେଳ' ରାଜ ଦରବାର ଅନ୍ତର୍ଭୁକ୍ତ । ସାହିତ୍ୟରେ ଅଭିଜାତ ଗୋଷ୍ଠୀର ଚରିତ୍ର ଚୟନ ଫଳରେ ତାହା ସାଧାରଣ ଜନଜୀବନଠାରୁ ବିଚ୍ଛିନ୍ନ ହୋଇଯାଏ । ସମାଲୋଚକ ରାମପ୍ରସାଦ ସିଂହଙ୍କ ଭାଷାରେ "ଓଡ଼ିଆ ସାହିତ୍ୟ ବର୍ତ୍ତମାନ ପରମୁଖାପେକ୍ଷୀ ଓ ପରାଙ୍ଗପୁଷ୍ଟ । ମଲଙ୍ଗ ପରି ଏହା ଏକ ବ୍ୟର୍ଥ ଅସ୍ତିତ୍ୱ ରୂପେ ବିରାଜିତ । ଧନୀ ଜମିଦାର, ରାଜା, ରାଜନ୍ୟବର୍ଗ ଯେନ ଏହାର ଅଙ୍ଗ ସଜ୍ଜିତ । ଏ ସାହିତ୍ୟ ଜନ ସାଧାରଣଙ୍କର ନୁହେଁ ବା ଜନସାଧାରଣଙ୍କ ସହିତ ଏହାର କୌଣସି ସମ୍ପର୍କ ନାହିଁ (୭୬) ।"

କିନ୍ତୁ ପ୍ରଗତିବାଦୀ ଗଳ୍ପ, ଉପନ୍ୟାସ ପରି ପ୍ରଗତିବାଦୀ କବିତାରେ ମଧ୍ୟ ସମାଜର ଅବହେଳିତ ଗୋଷ୍ଠୀର ଚରିତ୍ର ଚିତ୍ରିତ ହୋଇଥାଏ । ନବମ-ଦଶମ

ଶତାବ୍ଦୀରେ ବୌଦ୍ଧଚର୍ଯ୍ୟାଗୀତି ସମୂହରେ ଡୋମ୍ବୀ, ଚଣ୍ଡାଳୀ ଓ ଶବରୀ ଆଦି ନିମ୍ନ-ବର୍ଗର ଚରିତ୍ର ସ୍ଥାନ ପାଇଥିଲେ ମଧ୍ୟ, ସେଗୁଡ଼ିକ ସେଠାରେ ଥିଲେ ଏକ ଏକ ପ୍ରତୀକାତ୍ମକ ଚରିତ୍ର ଓ ସାମାଜିକ ସମସ୍ୟାବଳୀର ସଙ୍କେତ ବିବର୍ଜିତ । ଅଥଚ ସମାଜବାଦୀ କବିତାରେ ଆହୃତ ପ୍ରତ୍ୟେକ ଚରିତ୍ରର ପୃଷ୍ଠପଟ୍ଟରେ ଏକ ଏକ ଜୀବନ୍ତ ମଣିଷର ମର୍ମର କରୁଣ ଆକୁତି ଅନ୍ତର୍ନିହିତ ।

ଏହି ପରିପ୍ରେକ୍ଷୀରେ ମାନସିଂହଙ୍କ 'ଓଳିଆ ଜୀବର ବିଳାପ'ରେ 'ରିକ୍‌ସାବାଲା', 'ମଜଦୁର', 'କୃଷକ', 'ସ୍କୁଲ ଶିକ୍ଷକ' ଆଦି କବିତାରେ ନିମ୍ନ ମଧ୍ୟବିତ୍ତ ତଥା ନିମ୍ନ-ବର୍ଗର ଚରିତ୍ରମାନଙ୍କର ଦୁଃଖ, ଦୈନ୍ୟ ଓ ଆର୍ଥିକ ଅନଟନର ଚିତ୍ର ପ୍ରକଟିତ । 'ଓଳିଆ ଜୀବର ବିଳାପ' ରେ ଆର୍ଥିକ ଅଭାବଗ୍ରସ୍ତ ମଜଦୁର, ସତେ ଅବା ମଣିଷ ନୁହେଁ—'ସେ କଳର ଏକ ଚକ' । ପରିବାରର ଭରଣପୋଷଣ ପାଇଁ ସେ ତାର ପତ୍ନୀ ଓ ସନ୍ତାନ-ମାନଙ୍କ ଠାରୁ ଦୀର୍ଘସ୍ଥାୟୀଭାବେ ବିଚ୍ଛିନ୍ନ । ସୁଦୂର କଲିକତାର ପୂତିଗନ୍ଧମୟ ଶ୍ରମିକ ବସ୍ତି ତାର ଆବାସସ୍ଥଳୀ । ମାନସିଂହଙ୍କ 'ମଜଦୁର' କବିତାରେ ଏହି ଭଳି ଏକ ଶ୍ରମିକର ମର୍ମବାଣୀ ଝଂକୃତ—

"ଚଟକଳେ ମୁଁ ଓଡ଼ିଆ କୁଲି କଳର ଏକ ଚକ
ଖଟି ଖଟିକା ସାରିଦିନ, ଉଡ଼ିଯାଏ ମୋ ଧକ
ଛାଡ଼ି ଆସିଛି ଦୂରଗ୍ରାମେ ମୋ ପତ୍ନୀ ପିଲିପିଲି
ସନ୍ଧ୍ୟାନ ପାରି ଭୋକରେ ତାଙ୍କ ହୋଇବା କଲବଲ (୭୭) ।"

'କୃଷକ' କବିତାରେ ସାଧାରଣ କୃଷକ ସଂପ୍ରଦାୟର ଦୁଃଖ ଦୁର୍ଦ୍ଦଶାର ଚିତ୍ର ପ୍ରତିଫଳିତ । ମୁଣ୍ଡ ଝାଳ ତୁଣ୍ଡରେ ମାରି ସମାଜ ପାଇଁ ଶସ୍ୟ ଉତ୍ପନ୍ନ କରିଥିବାରୁ କୃଷକ କି ଭଳି ଅନ୍ନ ବିନା 'ହା ଅନ୍ନ' ଚିତ୍କାର କରେ, ମାନସିଂହ ତାର ବାସ୍ତବ ଚିତ୍ର ପ୍ରଦାନ କରିଛନ୍ତି (୭୮) । ଜ୍ୱରାକ୍ରାନ୍ତ ପୁଅ ପାଇଁ ସୁଷୀ ଔଷଧ ବା ପଥ୍ୟର ବ୍ୟବସ୍ଥା କରିପାରେ ନାହିଁ, ଅନ୍ୟ ପକ୍ଷରେ ଜମି ଦୁଇମାଣ ବନ୍ଧକ ଦେଇ ଝିଅକୁ ପୁଆଣି ଘର ପଠାଇବାକୁ ବାଧ୍ୟ ହୁଏ । ସ୍ତ୍ରୀ ଏକ ମାତ୍ର ଲୁଗାରେ ଲଜ୍ଜା ନିବାରଣ କରିବାକୁ ଯାଇ ଘର କୋଣରେ ଲୁଚି ରହିବାକୁ ବାଧ୍ୟ ହୁଏ—

"ପିଲମୋର ଜରେ, ଜରଜର
ଦେବି କାହୁଁ ଓଷଦ ପତର
ଦୁଇମାଣ ଜମି ବନ୍ଧା ଦେଇ
ଅଛି ଝିଅ ପୁଆଣି ପଠାଇ
ସ୍ତ୍ରୀ ମୋର ଗୋଟିଏ ଲୁଗାରେ
ବରଷକ ଚଳାଇ ଲଜ୍ଜାରେ (୭୯) ।"

ଅଭାବୀ ମଣିଷର ସ୍ୱଭାବ ସ୍ୱାଭାବିକ ଭାବେ ନଷ୍ଟ ହୁଏ । ସ୍ୱଳ୍ପ ବେତନରେ ଚଳିବା କଷ୍ଟକର ହେତୁ ଶିକ୍ଷକଙ୍କୁ ଟ୍ୟୁସନ କରିବାକୁ ପଡ଼େ । ଏହି ଟ୍ୟୁସନର ଗ୍ରାହକ ବଢ଼ାଇବା ପାଇଁ ଶ୍ରେଣୀରେ ଉପଯୁକ୍ତ ଶିକ୍ଷା ନ ଦେଇ ବିଦ୍ୟାର୍ଥୀମାନଙ୍କୁ ସେ ଟ୍ୟୁସନ-ମୁଖାପେକ୍ଷୀ କରେ (୮୦) । ବିଦ୍ୟାର୍ଥୀ, ସମାଜ ଓ ସଭ୍ୟତା ସହ ଏଭଳି ପ୍ରତାରଣା କଲାବେଳେ ତା'ର ବିବେକ ଅବଶ୍ୟ ପ୍ରତିରୋଧକରେ କିନ୍ତୁ ଦୁର୍ନୀତିର ଏହି ବୀଜ କେବଳ ଏକ ନିମ୍ନ ପ୍ରାଥମିକ ଦୁଃସ୍ଥ ଶିକ୍ଷକଙ୍କୁ ନୁହେଁ ସମାଜର ଉଚ୍ଚସ୍ତରକୁ ମଧ୍ୟ କିଭଳି ଗ୍ରାସ କରିଛି ତା'ର ସଂକେତ 'ସ୍କୁଲ ମାଷ୍ଟର' କବିତାରେ ପ୍ରତିଫଳିତ (୮୧) । ସମାଜର ତଥାକଥିତ ତୁଙ୍ଗ ରାଜନୀତିଜ୍ଞ, ସରକାରୀ ତଥା ବେସରକାରୀ ସଂସ୍ଥାର ଉଚ୍ଚ ପଦସ୍ଥକର୍ମଚାରୀ ଓ ଜନମତର ଜାଗ୍ରତ ପ୍ରହରୀ ରୂପେ ପରିଗଣିତ ସାମ୍ବାଦିକଗଣ ମଧ୍ୟ ଦୁର୍ନୀତି ପ୍ରବଣ । ଏଇ ପରିପ୍ରେକ୍ଷୀରେ ପରିବାରର ସର୍ବନିମ୍ନ ଆବଶ୍ୟକତାର ପରିପୂରଣ ପାଇଁ ନିମ୍ନ ପ୍ରାଥମିକ ବିଦ୍ୟାଳୟର ଦରିଦ୍ର ଶିକ୍ଷକର ଦୁର୍ନୀତି କ୍ଷମଣୀୟ । ମାତ୍ର ସମାଜର ଉଚ୍ଚ ଆସନରେ ଅଧିଷ୍ଠିତ ତୁଙ୍ଗ ବ୍ୟକ୍ତିମାନଙ୍କର ଦୁର୍ନୀତି ଓ ହୀନ ଚକ୍ରାନ୍ତ ଅଧିକ ଭୟଙ୍କର ।

ମାନସିଂହଙ୍କ 'ଯଦୁ ସ୍ୱାଇଁର ଗାଥା'ରେ ଯଦୁସ୍ୱାଇଁ ହୀରାକୁଦର ଏକ ଶ୍ରମିକ । ହୀରାକୁଦ ବନ୍ଧ ନିର୍ମାଣ ବେଳେ ଦୁର୍ଘଟଣା ଘଟିବା ଫଳରେ ସେ ମୃତ୍ୟୁମୁଖରେ ପତିତ । କିନ୍ତୁ ତାର ମୃତ୍ୟୁ ପାଇଁ କର୍ତ୍ତୃପକ୍ଷ ଏକ ବରଫ ସ୍ତୂପପରି ନିର୍ବେଦ ଓ ନିର୍ବିକାର । ତା'ର ରୁଗ୍ଣାପତ୍ନୀ ଓ ଅର୍ଦ୍ଧଭୁକ୍ତ ଶିଶୁ ଅସହାୟ ଆକୁଳ କ୍ରନ୍ଦନ କରୁଥିବା ବେଳେ ସେହି ହୀରାକୁଦର ଅତିଥିଶାଳାରେ ନେତୃବର୍ଗଙ୍କର ସ୍ୱାଗତ ସମ୍ବର୍ଦ୍ଧନା ପାଇଁ ଷୋଡ଼ଶ ପ୍ରକାର ପ୍ରସ୍ତୁତି ଏକାନ୍ତ ଦୁଃଖଦାୟକ (୮୨) । ଯେଉଁ ଶ୍ରମିକ ଗୋଷ୍ଠୀ ଜାତି ଗଠନର ନିର୍ମାତା, ସେମାନେ ଏହି ଆନନ୍ଦ ଉତ୍ସବରୁ ବିଚ୍ଛିନ୍ନ, ଅପାଂକ୍ତେୟ । ମାନସିଂହଙ୍କ ଯଦୁସ୍ୱାଇଁ ଏଠାରେ ସେହି ନିର୍ଯ୍ୟାତିତ, ଅପାଂକ୍ତେୟ ଗୋଷ୍ଠୀର ଜୀବନ୍ତ ପ୍ରତିନିଧି । ଗଣତନ୍ତ୍ରର ଡ଼େଣା ତଳେ ଯେଉଁଠାରେ ପୁଞ୍ଜିବାଦୀର ଶୋଷଣ ପ୍ରବୃତ୍ତି ଲେଲିହାନ, ସେଠାରେ ଅବହେଳିତ ଶ୍ରମିକର ମୃତ୍ୟୁ ଅବଶ୍ୟ ଭବିତବ୍ୟ (୮୩) ।

କୁଞ୍ଜବିହାରୀଙ୍କ ନିମ୍ନବର୍ଗର ଚରିତ୍ର 'ରିକ୍ସାବାଲା'ର ମାନବିକତା ଧୃଷ୍ଟ ସ୍ୱାଭିମାନବୋଧ, ତଥାକଥିତ ସଭ୍ୟ ଓ ଶିକ୍ଷିତ ସମାଜ ପ୍ରତି ଏକ ଆହ୍ୱାନ । କବିତାଟିରେ ଅହେତୁକ ଭାବେ ଆସ୍ଫାଳନ କରୁଥିବା 'ବାବୁ' ଙ୍କର ରିକ୍ସାବାଲା ପ୍ରତି ତାଗିଦ୍—

"ପଶୁ ତୁମେ ମଣିଷ ନୁହଁ ରେ
ସହ ତେଣୁ ଯେତେକ ଯାତନା
× × ×
ପଚାରିଲୁ ଯେବେ ଶୁଣ ତେବେ
ଦୁଇଶତ ମୁଦ୍ରା ମୋର ଆୟ (୮୪) ।"

କିନ୍ତୁ ରିକ୍ସାରୁ ଓହ୍ଲାଇ ରିକ୍ସାବାଲାକୁ ତା'ର ପ୍ରାପ୍ୟ ଦେବାକୁ ଯିବାବେଳେ ସେ ଉତ୍ତର ଦିଏ—

"ବାବୁ ତୁମ ଦୟାବଳେ ନିତି
ଦଶମୁଦ୍ରା କରେ ଅୟୋଜନ
ତୁମ ହାତୁଁ ନେବାକୁ ପଇସା
କାହିଁକି ଯେ ବଳେ ନାହିଁ ମନ (୮୫) ।"

ସେତେବେଳେ ତଥାକଥିତ ଥିଲବାଲା ଗୋଷ୍ଠୀର ପ୍ରତିନିଧି 'ବାବୁ'ଙ୍କର ଉପଲବ୍‌ଧି;—

" × × ×

ରିକ୍‌ସାବାଲା ବାହାର ପଶୁରେ
ବଞ୍ଚିଛି କି ଅପୂର୍ବ ମଣିଷ (୮୬) ।"

'କୋଇଲା ଖଣିର କୁଲି' କବିତାରେ ଖଣିର ସୁଡ଼ଙ୍ଗ ଭିତରେ କୁଲି କାଗୁଜେନା ପରି ବହୁ ଶ୍ରମିକଙ୍କ କୋଇଲା କାଟିବା ଦୃଶ୍ୟ କୁଞ୍ଜବିହାରୀଙ୍କୁ ସମ୍ବେଦନଶୀଳ କରିଛି । (୮୭) । ବିଦ୍ୟୁତ୍‌ପ୍ରଭା ଦେବୀଙ୍କ 'ରିକ୍‌ସାବାଲା' ଓ 'କଲିକତା କୁଲି' (୮୮) କବିତାରେ, ସମାଜର ଅବହେଳିତ ଶ୍ରମିକ ଗୋଷ୍ଠୀର ଚରିତ୍ର ଚିତ୍ରଣ ମାଧ୍ୟମରେ ସେମାନଙ୍କ ଦୁଃଖ ଓ ଦୈନ୍ୟ ବିରୋଧରେ ସ୍ୱର ଉତ୍ତୋଳନ କରାଯାଇଛି (୮୯) ।

ସମାଜର ଅବହେଳିତ ଦରିଦ୍ର ମଥିତ ଶ୍ରେଣୀର ଆକୁଳ ଆକୃତି କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ହୃଦୟତନ୍ତ୍ରୀକୁ ମଧ୍ୟ ପରିସ୍ପନ୍ଦିତ କରିଛି । ଏଣୁ ସେହି ମୂକ ଜନତାର କରୁଣ ଚିତ୍ର 'ମୂଷା ହାଡ଼', 'କୁଲି' ଓ 'ଫକୀରା ଜେନା' ଆଦି ଚରିତ୍ରରେ ରେଖାଙ୍କିତ ହୋଇଛି । କୃଷ୍ଣଚନ୍ଦ୍ରଙ୍କ 'ମୂଷା ହାଡ଼' ଖଲକୋଟ୍ ରାଜବଗିଚାର ମାଳି । ଦୈନନ୍ଦିନ ଜୀବନର ଅଭାବ ଅନଟନ ସତ୍ତ୍ୱେ ସ୍ୱଳ୍ପ ବେତନ ମଧ୍ୟରେ ତାର ସୁଖୀ ପରିବାରର ଚିତ୍ର କବିତାର ପ୍ରାରମ୍ଭ ପର୍ଯ୍ୟାୟରେ ପ୍ରତିଫଳିତ (୯୦) । କିନ୍ତୁ ଉପର ହାକିମଙ୍କ ଅନ୍ୟାୟ ରୋଷ କଷାଘାତର ଶିକାର ହୋଇ ଚାକିରି ହରାଇବା ପରେ ସେ ଅବଲମ୍ବନ ହୀନ ହୋଇ ପଡ଼ିଛି । ତା'ର ନିଃସ୍ୱ ଜୀବନଚିତ୍ର ମଧ୍ୟରେ ଅବହେଳିତ ସମାଜ ପ୍ରତି କବିପ୍ରାଣର ଦରଦ ପ୍ରକଟିତ ହୋଇଛି—

"ପଡ଼ିଯାଇଚି ମୁଁ ପଡ଼ିଯାଇଚି ମୁଁ ଉଠି ତ ପାରୁନି ବାରେ
ଗୃହିଁ ମୁଁ ରହିଛି ଗୃହଆଡେ ଖାଲି ସୀମାହୀନ ହା ହା କାରେ
ହସ ଖେଳ ଆଉ ଆନନ୍ଦର ଦିନ ମରିଯାଇଅଛି ମୋର

ଖାଇ ନ ଖାଇଲାପରି ମୁଁ ରହିଚି ହୋଇ ବାରି ନାରଖାର !

× × ×

ବାପ ହୋଇ ଯେବେ ଜନ୍ମ ଦେଇଚ ଅନ୍ନ ନ ଦେଲେ ମୁଖେ

ଏ ଜୀବନ ମୋର ମରିଯିବାଠାରୁ ବଳି (୧୧) ।''

'ମୂଷା ହାଡ଼' ପରି 'ମୂଲିଆ' ଓ 'କୁଲିବାହିଯାଜୀଗାଡ଼' କବିତାର ମୂଲିଆ ଓ କୁଲି ସମାଜର ଆଉ ଦୁଇଟି ଅବହେଳିତ ଓ ନିର୍ଯାତିତ ଚରିତ୍ର । ଛିନ୍ନବାସ, ରୁକ୍ଷକେଶ, ଦୈନ୍ୟ ଓ ଅଭାବବୋଧ ସେମାନଙ୍କ ସାରା ଶରୀରରେ ସୁସ୍ପଷ୍ଟ । ରୋଗ, ଦୁଃଖ କବଳରେ ପୀଡ଼ିତ ଏହି ହତଭାଗ୍ୟ ପ୍ରାଣୀଗୁଡ଼ିକ ଜୀବନର ସୁଖ ସୌରଭରୁ ବଞ୍ଚିତ (୧୨) ।

ସମାଜବାଦୀ କାବ୍ୟଧାରାରେ କୁଲି, ମୂଲିଆ, ମଜଦୁର ଓ ରିକ୍ସାବାଲାମାନେ ନାୟକ ଭୂମିକାରେ ଅବତୀର୍ଣ୍ଣ ହେଲା ଭଳି ଛତରଖାଈ, ଭାନୁବାଈ ଓ ଭିକାରୁଣୀ ପ୍ରମୁଖ ନାୟିକା ଭୂମିକାରେ ପରିଦୃଷ୍ଟ । ଅଲଙ୍କାର ଶାସ୍ତ୍ରର ମୁଗ୍ଧା, ପ୍ରଗଲ୍ଭା ଓ ମଧ୍ୟା ଆଦି ନାୟିକା ଭେଦ ମଧ୍ୟରୁ ସେମାନେ କୌଣସି ପର୍ଯ୍ୟାୟଭୁକ୍ତ ନୁହନ୍ତି । ସେମାନଙ୍କ 'ରମ ଚରମରେ ବେଣୀ' ବ୍ୟସ୍ତ ହୁଏ ନାହିଁ । ସେମାନଙ୍କ କେଶପାଶ ଧୂଳି ଧୂସରିତ, ରୁକ୍ଷ, ଆଲୁଳାୟିତ । ଚକ୍ଷୁ କୋଟରଗତ । କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ 'ଛତରଖାଈ' କବିତାର ଛତରଖାଈ ବିରାଟ ବିଶ୍ୱରେ ଏହିଭଳି ଏକ ଅସହାୟା, ପରିତ୍ୟକ୍ତା ନାରୀ (୧୩) । କିନ୍ତୁ ନାରୀ ସଦାନାରୀ । ତାର ଅନ୍ତରତଳେ ସ୍ନେହର ଉତ୍ସ ତରଙ୍ଗାୟିତ । ହୃଦୟରେ ତାର ଅବାରିତ ମାତୃତ୍ୱର କାମନା, ଯାହା ସୁଦୂର ପରାହତ (୧୪) ।

କୃଷ୍ଣଚରଣ ବେହେରାଙ୍କ ଭାନୁବାଈ ଲେନ୍ (୧୫)ର ଭାନୁବାଈ, କଲିକତାର ଏକ କୁଖ୍ୟାତ ଗଳିର ବାରବଧୂ । ଜନନୀ, ଭଗିନୀ ଓ ଜାୟାଭେଦରେ ନାରୀତ୍ୱର ସମସ୍ତ ସମ୍ଭାବନା ତା' ପାଇଁ ଅବରୁଦ୍ଧ । ପରିସ୍ଥିତିର ତାଡ଼ନାରେ ସେ ଭାନୁବାଈ । ବରବଧୂ ଭାନୁମତୀ ଭାନୁବାଈରେ ରୂପାନ୍ତରିତ ହେବାର ପୃଷ୍ଠପଟରେ ରହିଛି ସମାଜର ଅର୍ଥନୈତିକ ବୈଷମ୍ୟ ଓ ଭେଦଭାବ ।

ରମାକାନ୍ତ ରଥଙ୍କ 'ଭିକାରୁଣୀର ବିରାନୁଗମନ ଦର୍ଶନ'ର ନାୟିକା ଏକ ଭିକାରୁଣୀ । ସଚେତନଭାବେ କବି ରମାକାନ୍ତ ସମାଜବାଦୀ ଅଥବା ବାମପନ୍ଥୀ ନୁହନ୍ତି । କିନ୍ତୁ ଶଂସିତ କବିତାରେ 'ଭିକାରୁଣୀ' ପରିପ୍ରେକ୍ଷୀରେ ଯେଉଁମାନବିକ ସମ୍ବେଦନା ପ୍ରକଟିତ ହୋଇଛି, ତାହା ଉଲ୍ଲେଖନୀୟ । ତଥାକଥିତ କୁଳଗୋତ୍ର ବିବର୍ଜିତ ଭିକାରୁଣୀକୁ ବିବାହ କରିବାପାଇଁ ସମାଜ ସ୍ୱୀକୃତ ଦିଏ ନାହିଁ । ଅଥଚ ତଥାକଥିତ କୁଳଗୋତ୍ର ସଂପନ୍ନ ଅଭିଜାତ ସମାଜର ଜୈବିକ ଲାଳସାର ପରିପୂର୍ତ୍ତି ପାଇଁ ତାକୁ ଅବୈଧ ସନ୍ତାନର ମାତୃତ୍ୱ ବରଣ କରିବାକୁ ପଡ଼େ । ବିରାନୁଗମନ, ବିବାହ,

ବରଣମାଳା ଆଉ ସାମାଜିକ ସ୍ୱୀକୃତି ତା ପାଇଁ ସ୍ୱପ୍ନରେ ପର୍ଯ୍ୟବସିତ ହୁଏ । ଏଣୁ ସତୃଷ୍ଣ ନୟନରେ ପଥଧାରରେ ଠିଆ ହୋଇ ସେ ଏକ ବରାନୁଗମନ ଦର୍ଶନ କରେ । ପୁଷ୍ପମାଳା ସଜ୍ଜିତ 'ମଟର ଗାଡ଼ି' ତାକୁ ଆହୁରି ସ୍ୱପ୍ନାତୁର କରେ । କିନ୍ତୁ ନିତିରଖାଇ ପରି ସେ ମଧ୍ୟ ସମାଜପରିତ୍ୟକ୍ତା ଏକ ଅସହାୟା ନାରୀ । ସୁତରାଂ ପୁଞ୍ଜୀକୃତ ଦୁଃଖ ଓ ବେଦନା ମଧ୍ୟରେ ତାର ସ୍ୱପ୍ନ ଭଙ୍ଗ ହୁଏ (୧୬) ।

ବସ୍ତୁତଃ ନିମ୍ନବର୍ଗର ଚରିତ୍ର ଚିତ୍ରଣ ମାଧ୍ୟମରେ ଅବହେଳିତ ସମାଜପ୍ରତି ସଂବେଦନା ଉଦ୍ରିକ୍ତ ହେବା ସଙ୍ଗେ ସଙ୍ଗେ ଦୁଃଖପୂର୍ଣ୍ଣ ସ୍ଥିତି ମଧ୍ୟରୁ ସେମାନଙ୍କର ସମୁଦ୍ଧାର ପାଇଁ ପ୍ରଗତିବାଦୀ କବିତାରେ ସଚେତନା ପ୍ରକଟିତ ।

**ଛ—ମିଥ୍‌ର ବିଶିଷ୍ଟ ପ୍ରୟୋଗ**

ସ୍ୱତନ୍ତ୍ରତାସ୍ୱ ସମାଜବାଦୀ କାବ୍ୟଧାରା ପରି ପ୍ରଗତିବାଦୀ ଓଡ଼ିଆ କବିତାରେ ମିଥ୍‌ର ପ୍ରୟୋଗ ଉଲ୍ଲେଖନୀୟ । ପ୍ରଗତିବାଦୀ କବିତାର ବୈପ୍ଳବିକ କାବ୍ୟ ଦର୍ଶନର ଏହା ଏକ ଶକ୍ତିଶାଳୀ ମାଧ୍ୟମ । ଶ୍ରୀକୃଷ୍ଣ, ଅର୍ଜୁନ, ଅଭିମନ୍ୟୁ ଆଦି ମିଥିକ୍ ଚରିତ୍ର ବାମପନ୍ଥୀ ଓଡ଼ିଆ କବିତାରେ ଯୁଗ ବିପ୍ଳବୀ ଭୂମିକାରେ ଅବତୀର୍ଣ୍ଣ ।

ସଚ୍ଚିଦାନନ୍ଦଙ୍କ 'ରକ୍ତବୀଜର ଅଭିଯାନ'ରେ ଦେବକୀର ଗର୍ଭ ଦ୍ୱାର ଜନ୍ମ ନେଇଥିବା ନୂଆ ଯୁଗର ମଣିଷ ଜାତିକୁ ବିପ୍ଳବ ପାଇଁ ଅଗ୍ରଗାମୀ ହେବାକୁ ଆହ୍ୱାନ ଦିଆଯାଇଛି (୧୭) । ଅତ୍ୟାଚାରୀ, ଏକଛତ୍ରବାଦୀ ଶାସକ କଂସର ନିର୍ଦ୍ଦେଶରେ ମଥୁରାର ରାଜପ୍ରାସାଦକୁ ସେମାନେ ଲକ୍ଷ ଲକ୍ଷଭର ପଦ୍ମଫୁଲ ଯୋଗାଇ ଆସିଛନ୍ତି । ତଥାପି ପଦ୍ମାବତୀର ଧନର୍ଜୀ ଓଷା ଶେଷ ହୋଇନାହିଁ—

"ଲକ୍ଷଭର ପଦ୍ମ ଯୋଗାଇଛୁଁ
ଏତେ ଦିନ
× × ×
ପଦ୍ମାବତୀର କି
ସରିଗଲା ଅଭିମାନ
ଶେଷ ହେଲା ଧନର୍ଜୀ ଓଷା (୧୮) ?"

କଂସରାଣୀ ପଦ୍ମାବତୀ ଏଠାରେ ପ୍ରତିକ୍ରିୟାଶୀଳ ସମାଜର ପ୍ରତିଭୂ । ତା'ର ଖିଆଲରେ ଶୋଷିତ ଶ୍ରେଣୀ ପରିଚାଳିତ । କିନ୍ତୁ କବିଙ୍କ ଭାଷାରେ ସେହି ଖିଆଲୀ ନିର୍ଦ୍ଦେଶକୁ ନତମସ୍ତକରେ ପାଳନ କରିବାର ସମୟ ସମୁତ୍ତୀର୍ଣ୍ଣ । ସମ୍ମୁଖରେ ପ୍ରଭାତର ଛଳ ଛଳ କୋମଳ ଆବେଶ-ସ୍ନେହସୁଖ-ସମୃଦ୍ଧିର ଭାଷାକୁ ଉପଲବ୍ଧି କରିବା ପାଇଁ ମଜଦୁର

ଓ କୃଷୀକୁଳ ଦାଆ, ହଳ ଓ ମୁଗୁର ଭଳି ହାତ ହତିଆର ଧରି ବିପ୍ଳବ ପାଇଁ ଅଗ୍ରଗାମୀ ହେବା ପ୍ରୟୋଜନ । ଦ୍ୱାପର ଯୁଗର ହଳଧରଙ୍କ ପରି ସେମାନେ ଅସୀମ ଶକ୍ତିବାନ । ସେମାନଙ୍କର ବିଜୟ ସୁତରାଂ ସୁନିଶ୍ଚିତ (୯୯) ।

'ବାଜି ରାଉତ' କବିତାରେ କବି ରାଉତରାୟ ବିପ୍ଳବୀ ବାଜି ରାଉତକୁ ଭଗିରଥଙ୍କ ସହ ତୁଳନା କରିଛନ୍ତି । ପୁରାଣର ଭଗିରଥ, ମନ୍ଦାକିନୀଙ୍କୁ ମର୍ତ୍ତ୍ୟଗାମୀ କରାଇଥିଲେ । ଫଳରେ ସଗର ବଂଶର ସୁରକ୍ଷା ସଙ୍ଗେ ପୃଥିବୀ, ଗଙ୍ଗାଙ୍କର ସ୍ପର୍ଶରେ ପବିତ୍ର ହୋଇଥିଲା । ରାଉତରାୟଙ୍କ ଭାଷାରେ ବାଜି ରାଉତ ବୈପ୍ଳବିକ ସାଧନା ପଥରେ ସୃଜନ-ଭଗିରଥୀର ବାହକ । ସମାଜର ଲୁଣ୍ଠିତ, ଆବିଳ ଜୀବନ ସ୍ରୋତ ବିରୋଧରେ ସେ ଏକ କ୍ରାନ୍ତିକାରୀ ଆହ୍ୱାନ (୧୦୦) ।

ଏହି କ୍ରାନ୍ତି ସାରଥୀକୁ କବି ପୁଣି ମହାଭାରତର ଫାଲଗୁନି ରୂପେ ପରିକଳ୍ପନା କରିଛନ୍ତି । ବୃଷ ସ୍କନ୍ଧରେ ତା'ର ଅଗ୍ନି-ତୂଣୀର । ରାଜ-ଅତ୍ୟାଚାରର ରୂପକ ଅନ୍ଧକାରମୟ ରାତ୍ରି ଭିତରେ ତାର ଧନୁଟଙ୍କାର ଉଷାର ବିଜୟ ଶଙ୍ଖର ଆବାହନ କରେ ।

"ତେଣୁ ତ ଫାଲ୍‌ଗୁନି
ବୃଷସ୍କନ୍ଧେ ତବ ଅଗ୍ନି-ତୂଣୀ
ଟଙ୍କାରଇ ରାତ୍ରିର ପ୍ରାଚୀରେ,
ଜୟର ଝଙ୍କୃତ ଶଙ୍ଖ ବାଜେ ଦୂରେ
ଉଷାର ଶିବିରେ (୧୦୧) ।"

ସଚ୍ଚି ରାଉତରାୟଙ୍କ 'ପଦ୍ମଭୂକ୍' କବିତାରେ ମିଥ୍ର ପ୍ରୟୋଗ ସବହରାର ସୁପ୍ତ ବ୍ୟକ୍ତିତ୍ୱକୁ ଜାଗ୍ରତ କରିବା ପାଇଁ ଉଦ୍ଦିଷ୍ଟ—

"ସହର ତଳାର ଉଷା ରୁଗ୍‌ଣ ମ୍ଳାନ କଣ୍ଠେ ଗୁଡ଼େ ଡ଼ାକ
ଜାଗ ପଳାୟନପନ୍ଥୀ ନଷ୍ଟ ପକ୍ଷ ହେ ମୂଢ଼ ମୈନାକ !
ଜାଗ ଆତ୍ମ ଭୋଳା
ଘୃଣ୍ୟ ଏ ନର୍ତ୍ତକୀର ବେଶ (୧୦୨) ।

ପାଣ୍ଡବମାନଙ୍କର ଅଜ୍ଞାତବାସ ସମୟରେ ଅର୍ଜ୍ଜୁନ, ବିରାଟରାଜାଙ୍କ ପ୍ରାସାଦରେ, ବୃହନ୍ନଳା ଛଦ୍ମବେଶରେ ଆତ୍ମଗୋପନ କରିଥିଲେ । ଏହି ସମୟରେ ତାଙ୍କର ଯୋଦ୍ଧୃ-ଶକ୍ତିର ବିସ୍ମରଣ ଘଟିଥିଲା । କବି ଆଧୁନିକ ଯୁଗର ବୃହନ୍ନଳାକୁ ନାରୀସୁଲଭ ବିଳାସ ପରିତ୍ୟାଗ କରି ବିପ୍ଳବ ପାଇଁ ଜାଗ୍ରତର ବାର୍ତ୍ତା ଦେଇଛନ୍ତି ।

କବି ବେଣୁଧର ରାଉତଙ୍କ 'ବୃହନ୍ନଳା' କବିତାରେ ଅନୁରୂପଭାବେ ହୃତଶକ୍ତି ମାନବକୁ ବୃହନ୍ନଳା ରୂପେ ଆକ୍ଷେପ କରାଯାଇଛି । ଜୀବନର ଆପାତଃ ମଧୁର ମାଦକତା ମଧ୍ୟରେ ସେ ତାର ଯୌବନ ଶକ୍ତି ହରାଇଛି—

"ହାଇରେ ମଣିଷ ପିଇଲୁ କାହିଁକି ମିଛ ମିଛକାର ସୁରା

× × ×

ସୁଖେ କ୍ଲୀବ ହୋଇ କରୁନାଚ, ଧରୁ ତାନ ପୁରା !

ତୋହର ଭିତରେ ମଣିଷ ପଣର ଅର୍ଜୁନ ଗଲା କାହିଁ ?

କାହିଁ ସେ ସବ୍ୟସାଚୀ (୧୦୩) ?

ମାନବର ସୁପ୍ତ ବିପ୍ଳବୀ ବ୍ୟକ୍ତି ସତ୍ତାକୁ ବୃହନ୍ନଳାରୂପ ପରିତ୍ୟାଗ କରି, ତାର ସବ୍ୟସାଚୀତ୍ୱର ପୁନରାବର୍ତ୍ତନ ପାଇଁ କବି ଆଶା ଓ ବିଶ୍ୱାସ ପୋଷଣ କରିଛନ୍ତି (୧୦୪) । କବି ରାଉତ, ଈଶ୍ୱରଙ୍କ ପରିବର୍ତ୍ତେ ସେହି ସବ୍ୟସାଚୀ ମାନବର ଜୟଗୀତ ଗାନ କରିଛନ୍ତି (୧୦୫) । ବୈକୁଣ୍ଠନାଥଙ୍କ 'ରୁଦ୍ର ଦେବତା' କବିତାରେ 'ରୁଦ୍ର' ଏକ ବୈପ୍ଳବିକ ଶକ୍ତି । ସାମ୍ୟମୈତ୍ରୀ ବିଚ୍ୟୁତ ଜଗ, ପାପ ପରିପୂର୍ଣ୍ଣ କଳୁଷିତ ସୃଷ୍ଟିର ସେ ସଂହାରକ (୧୦୬) । ରବିସିଂଙ୍କ ଅଭିମନ୍ୟୁ କବିତାରେ 'ଅଭିମନ୍ୟୁ' ସମାଜବାଦୀ ଶ୍ରେଣୀ ସଂଗ୍ରାମର ଏକ ବିପ୍ଳବୀ ପ୍ରତିଭୂ । ସେ ଚିର ଅଜେୟ । ସପ୍ତରଥୀର ବ୍ୟୂହ ମଧ୍ୟରେ ସେ ଚିର ଦୁର୍ମଦ (୧୦୭) । ମହାଭାରତର ଦୁଃଶାସନ 'ଅଭିମନ୍ୟୁ' କବିତାରେ ଶୋଷକ ଗୋଷ୍ଠୀର ପ୍ରତିନିଧି । 'ନାରାୟଣୀ ସେନା' ତାର ପଦଲେହନକାରୀ ଚାଟୁକାର । ଏହି ଉଭୟ ଗୋଷ୍ଠୀକୁ କବି ଶାଣିତଭାବେ ଆକ୍ଷେପ କରିଛନ୍ତି—

"ନାରାୟଣୀ ସେନା

ସମସ୍ତେ ତ ଭଡ଼ାଟିଆ, ମୀତହୀନ ପଦଲେହୀ

ଦୁଃଶାସନ ଦ୍ୱାରା ସବୁ କିଣା (୧୦୮) ।"

ଦୌର୍ଯୋଧନୀ—ସମାଜର ଅର୍ଥ ଓ ରାଷ୍ଟ୍ରଯନ୍ତ୍ର ସମାଜବାଦୀ ଅଭିମନ୍ୟୁ ଦ୍ୱାରା ପ୍ରତ୍ୟାଖ୍ୟାତ । ସମାଜବାଦର ସମ୍ଭାବ୍ୟ ସୂର୍ଯ୍ୟୋଦୟ ପାଇଁ ସେ ପ୍ରଚଣ୍ଡ ଆଶାବାଦୀ (୧୦୯) ।

## ଜ—ମାର୍କସ୍‌ବାଦୀ କବିତାରେ ରୋମାଣ୍ଟିକ ବାସ୍ତବବାଦ

ବାସ୍ତବବାଦ ଓ ରୋମାଣ୍ଟିକବାଦ ତତ୍ତ୍ୱ ଦୃଷ୍ଟିରୁ ପରସ୍ପରର ପରିପନ୍ଥୀ । ବିଶେଷତଃ ପ୍ରଗତିବାଦୀ କବିତାର ବାମପନ୍ଥୀ ପକ୍ଷ, ରୋମାଣ୍ଟିକ ଚେତନାକୁ ତୀବ୍ରଭାବେ ବିରୋଧ କରେ । ଓଡ଼ିଆ ମାର୍କସବାଦୀ କବିତାରେ କିନ୍ତୁ ଏହି ଉଭୟ ଚେତନା ଅନେକାଂଶ ସମାନ୍ତରାଳ ଭାବରେ ପ୍ରତିଫଳିତ । କବି ରାଜେନ୍ଦ୍ରକିଶୋର 'କବିତାର ଏକ ସଙ୍ଗୀ'ରେ ଉଲ୍ଲେଖ କରିଛନ୍ତି—

"ମୁଁ କବି ଧରଣୀର ମାଟିର ଓ ମଣିଷର
ଗାଇବା ମୋ ଧର୍ମ ମଣେ, ଏ ପୃଥିବୀ ଏ ଆକାଶ କଥା
ତଥାପି ମୁଁ ମୁକ୍ତ ପକ୍ଷୀ ଅବା ମୁଁ କି ସୁକେଷ୍ଟିଙ୍କ ରଥ
ଭୁଇଁଠୁ ଆଙ୍ଗୁଳେ ଉଡ଼ି ଗତି କରେ ସମସ୍ୱର ପଥ (୧୧୦) ।"

ଧରଣୀର ମାଟି ଓ ମଣିଷର ସମସ୍ୟାକୁ କେନ୍ଦ୍ର କରି ସ୍ୱର ଉତ୍ତୋଳନ କରୁଥିବା କବି-ଚେତନା ଆକାଶର ସ୍ୱପ୍ନିଳ ରୋମାଣ୍ଟିକ ଭାବବିଳାସରେ ନିମଜ୍ଜିତ । କେତେବେଳେ ଅବା ତହିଁରୁ ମୁକ୍ତ ହୋଇ ତାର ଚେତନା ଜୀବନର ବାସ୍ତବ ପରିଧିରେ ସଞ୍ଚରଣଶୀଳ ।

ରାଉତରାୟଙ୍କ 'ଲାବଣ୍ୟବତୀକୁ ଚନ୍ଦ୍ରଭାନୁର ଚିଠାଉ' ରେ 'ଲାବଣ୍ୟବତୀ' ଓ 'ଚନ୍ଦ୍ରଭାନୁ'ଙ୍କର ରୋମାଣ୍ଟିକ ପ୍ରଣୟର ପୃଷ୍ଠପଟ୍ଟରେ କଳାହାଣ୍ଡି ଭୁକାଗ୍ରସ୍ତ ଦୁଃଖିଜଣଙ୍କର ଚିତ୍ର ବାସ୍ତବଧର୍ମୀ ଚେତନାର ପ୍ରଖ୍ୟାପକ । ରାସ୍ତାରେ 'ପଳାଶଫୁଲର ସମାରୋହ' ସିନେମାଘରେ ବାଦଶାହୀ ପ୍ରଣୟର ନାଟ ଲାବଣ୍ୟବତୀ ଓ ଚନ୍ଦ୍ରଭାନୁଙ୍କ ପ୍ରଣୟବିଳାସକୁ ଉଦ୍ଦୀପ୍ତ କରୁଥିଲାବେଳେ ବୁଭୁକ୍ଷୁ ଜନତାର ଅନ୍ନପାଇଁ ଚିତ୍କାର ପରସ୍ପର ବିପରୀତଧର୍ମୀ ପରିବେଶ ସୃଷ୍ଟି କରିଛି—

"ରାସ୍ତାରେ ପଳାଶ ଫୁଲ ପଳାଶର ଡାଳ

× × ×

ଅଦୂରେ ସିନେମା ଘରେ ଖୁଲିବ କି ବନ୍ଧ
ହୁଏ ତ କେଉଁ ବାଦଶାହୀ ପ୍ରଣୟର ନାଟ

× × ×

ଭିକ୍ଷୁକଙ୍କ ଭିତରେ କୋଳାହଳ
× × × ନାହିଁ ଭାତ ନାହିଁ ରୁଟି
କଣ୍ଠରେ ଗୋଟିଏ ଶବ୍ଦ ଦିଅ ଅନ୍ନ, ଆହୁ ଅନ୍ନ (୧୧୧) ।"

ସଚ୍ଚି ରାଉତରାୟଙ୍କ 'କୋଣାର୍କ' କବିତାରେ ରୋମାଣ୍ଟିକ ସ୍ୱପ୍ନାତୁର ଆବେଗ ସହ ସମାଜବାଦୀ କବିର ବାସ୍ତବଧର୍ମୀ ଦୃଷ୍ଟି ସମାନ୍ତରାଳ ଭାବେ ପ୍ରମୂର୍ତ୍ତ । କୋଣାର୍କ ପରିପ୍ରେକ୍ଷୀରେ ନୀଳକଣ୍ଠ ଅଥବା ମାନସିଂହଙ୍କ ରୋମାଣ୍ଟିକ ବେଦନାବୋଧ ଓ ସ୍ମୃତି-ଚାରଣ ପରିବର୍ତ୍ତେ ରାଉତରାୟଙ୍କ 'କୋଣାର୍କ'ରେ ଶ୍ରମଜୀବୀ ସମାଜର ଦୁଃଖ ଓ ବେଦନାର ଚିତ୍ର ପ୍ରତିଫଳିତ । ବଢ଼େଇ, ମିସ୍ତ୍ରୀ ଓ କମାରଙ୍କ ନିହାଣ ଓ ମୁଗୁରର ଧ୍ୱନି ଏଠାରେ ପ୍ରତିଧ୍ୱଂକୃତ ।

କବିଙ୍କ ଭାଷାରେ ମନ୍ଦିର ନିର୍ମାଣ ପାଇଁ ଯେଉଁ ରାଜକୋଷର ଅର୍ଥ ବିନିଯୁକ୍ତ ତାହା କୃଷକ ଦ୍ୱାରା ଉତ୍ପନ୍ନ ଶସ୍ୟରେ ପରିପୁଷ୍ଟ । ଶ୍ରମିକର ରକ୍ତସ୍ୱେଦ ବିନିମୟରେ କଳାର କୋଣାର୍କ ସୁଗଠିତ । କିନ୍ତୁ ମନ୍ଦିର ଗାତ୍ରରେ ଏହି କୃଷକ ଅଥବା ଶ୍ରମିକ ସମାଜର ଚିହ୍ନ ଦୃଷ୍ଟିଭୂତ—

"ଗଢ଼ିବାକୁ ଏଇ ମନ୍ଦିର କଳା
ଶ୍ରମିକ ରକ୍ତ ଦାନ,
କୃଷକ ଦେଲା ତା କନକ ଶସ୍ୟ
ରାଜକୋଷେ ଅକଳନ ।
ଅଥଚ କଳାର ଦରବାରେ ନାହିଁ
ତାଙ୍କ ବ୍ୟଥାର ସ୍ଥାନ
ହାସ୍ୟ ବା ଲୁହ, ଅଥବା କେଉଁଠି
ଫସଲ କଟାର ଗାନ (୧୧୨) ।"

'କୋଣାର୍କ' ରେ ପ୍ରକଟିତ ହୋଇଥିବା ଅନ୍ୟ ଦୃଷ୍ଟିଟି ହେଉଛି ବିଳାସୀ ଦର୍ଶକଶ୍ରେଣୀଙ୍କର । ତନ୍ଦ୍ରାଅଳସ ସ୍ୱପ୍ନାବେଶରେ ସେମାନେ କୋଣାର୍କରୁ ଜୀବନ-ମଦିରା ଆସ୍ୱାଦନ କରନ୍ତି । ଜୀବନର ସେ ମଦିରା ସ୍ରୋତରେ ଉଚ୍ଛ୍ୱସିତ ହୁଅନ୍ତି—'ସୁନ୍ଦରୀନର୍ତ୍ତକୀ' 'ଯକ୍ଷବଧୂ' 'ନାଗକନ୍ୟା ସମୂହ' । ନନ୍ଦନ ବନର ତୋରଣ ଓ ଯକ୍ଷପୁରୀର ଲତାରେ ସେମାନଙ୍କର ସୌନ୍ଦର୍ଯ୍ୟପିପାସୁ ମନ ପରିତୃପ୍ତ ହୁଏ । ଏକ ପକ୍ଷରେ ନିମ୍ନବର୍ଗର ଜନଜୀବନ ପ୍ରତି ସମ୍ବେଦନଶୀଳତା ଓ ଅନ୍ୟପକ୍ଷରେ ସୌନ୍ଦର୍ଯ୍ୟ ପିପାସୁ ରୋମାଣ୍ଟିକ ଦୃଷ୍ଟିଭଙ୍ଗୀର ବିଳାସ ଶଂସିତ କବିତାରେ ଏକତ୍ର କାବ୍ୟାୟିତ ।

'ହେ ବନ୍ଧୁ ମିଳାଅ ହାତ' କବିତାରେ ସଙ୍ଗଠିତ ଜନଶକ୍ତିର ସାମୂହିକ ଉଦ୍ୟମର ଉତ୍ସ ସଂଚରିତ—

ହେ ବନ୍ଧୁ ମିଳାଅ ହାତ
ଆଲୋକେ ଅନ୍ଧାରେ
ସୁଖେ ଦୁଃଖେ ସଙ୍କଟ ସମରେ ।
ସୂର୍ଯ୍ୟାସ୍ତ ବା ସୂର୍ଯ୍ୟୋଦୟ କିମ୍ବା କେଉଁ ପୂର୍ଣ୍ଣିମାର
ଚନ୍ଦ୍ରସ୍ମିତ ବର୍ଣ୍ଣାଢ଼୍ୟ ସନ୍ଧ୍ୟାରେ
ହେ ବନ୍ଧୁ ଏକାଠି ହୁଅ
ରାତ୍ରିର ଆବର୍ତ୍ତେ ଅବା ଅନ୍ଧକୃତ ଉଦ୍‌ଭେଦ ସାଗରେ (୧୧୩) ।"

କିନ୍ତୁ ସମ୍ମିଳିତ ଉଦ୍ୟମର ଏହି ସଂଘବଦ୍ଧ ଚେତନା ଖାଲ, ବିଲ, ପଦ୍ମବନ, ଗ୍ରୀଷ୍ମାପଥ ଓ ଚନ୍ଦ୍ରକଳାକୁ ସ୍ପର୍ଶ କରିବା ରୋମାଣ୍ଟିକ ଭାବୁକତାର ପରିଚାୟକ । ଘାସର ସବୁଜ ହ୍ରଦ, ପ୍ରବାଳ ସୈକତ, ମେଘବଲ୍ଲୀ ଓ ଆକାଶ ଜଳଦରେ ସମ୍ମିଳିତ ଚେତନାର ସଂଚରଣ ରୋମାଣ୍ଟିକ ଚେତନାକୁ ଘନୀଭୂତ କରୁଥିବା ବେଳେ (୧୧୪) ଲକ୍ଷ ମେହେନତି ହାତର ଅଗ୍ନିଦୀପ୍ତ ଈଶ୍ୱର ଶପଥ ବାସ୍ତବବାଦୀ ଚେତନାର ଦ୍ୟୋତକ । ଏହି ସଂଗ୍ରାମୀ ଜୀବନବୋଧ ମାନବିକ ମୈତ୍ରୀ ଓ ନୈକଟ୍ୟବୋଧ ସୃଷ୍ଟି କରେ—

"ଲମ୍ବି ଆସୁ ଲକ୍ଷ ମେହନତି ହାତ
ଅଗ୍ନିଗର୍ଭ ଈଶ୍ୱର ଶପଥ

× × ×

ଭୁଲି ଭ୍ରାନ୍ତ ନବ କାନ୍ତ ମଣିଷକୁ ଆଣେ
ମଣିଷର ଅତ୍ୟନ୍ତ ନିକଟେ ।
ସଂଗ୍ରାମେ ବା ସମାରୋହେ, ସମ୍ପଦେ ବିପଦେ ଭୟେ
ପ୍ରେମେ କର୍ମେ ହୃଦୟର ଗଭୀର ସଙ୍କଟେ (୧୧୫) ।

କବି ଅନନ୍ତ ପଟ୍ଟନାୟକଙ୍କ 'ନିଜ ବନ୍ଦନା ପଢେ' କବିତାର କାବ୍ୟନାୟକ ବାସ୍ତବଧର୍ମୀ ଚେତନା ପ୍ରଣୋଦିତ । ବାସ୍ତବ ଜୀବନ ପରିସର ମଧ୍ୟରେ ଭାଗ୍ୟ ଅଥବା ଭଗବାନଙ୍କ ଉପରେ ସେ ନିର୍ଭରଶୀଳ ନୁହେଁ, ପକ୍ଷାନ୍ତରେ ଆତ୍ମଶକ୍ତିରେ ଦୀପ୍ତ ଓ ଦୃପ୍ତ—

"ନିଜ ବନ୍ଦନା ପଢ଼େ ସଜନୀରେ
ନିଜ ବନ୍ଦନା ପଢେ
ରଶ୍ମି ଲୁଳିତ ରସ ଉତ୍ସବେ
ଝୁମି ଝୁମି ଆଜି ପ୍ରୀତିସଞ୍ଚରେ
ନବ ତୃଷ୍ଣାର ଝଡ଼େ (୧୧୬) ।"

ନିଜ ବନ୍ଦନା ପଢ଼ିବା ମଧ୍ୟରେ କାବ୍ୟନାୟକର ଆତ୍ମଶକ୍ତିରେ ବିଶ୍ୱାସବୋଧ ସୂଚିତ । କିନ୍ତୁ ଏହି ଆତ୍ମଶକ୍ତି ପ୍ରତି ବିଶ୍ୱାସବୋଧର ଉତ୍ସ ହେଉଛି ସଞ୍ଚ—ଯାହା ପ୍ରୀତିପ୍ରବଣତାରେ ରଂଜିତ । ତହିଁରେ ସୂର୍ଯ୍ୟରଶ୍ମିର ସଂକେତ ଥିଲେ ମଧ୍ୟ ଚେତନାର ରସୋତ୍ସବରେ ତାହା ପରିପ୍ଲୁତ । କବିତାର ପରିବେଶ ରୋମାଣ୍ଟିକ୍ ଚେତନାଧର୍ମୀ । କିନ୍ତୁ ଏହି ରୋମାଣ୍ଟିକ ଚେତନାକୈନ୍ଦ୍ରିକ ପରିବେଶ ମଧ୍ୟରେ କାବ୍ୟନାୟକ ଏକ ନୂତନ ଝଡର ତୃଷ୍ଣାରେ ଆକୁଳ । କବି ଗୁରୁଚରଣଙ୍କ 'ଝଡ଼' (୧୧୭) ପରି କବି ଅନନ୍ତ ପଟ୍ଟନାୟକଙ୍କ,'ଝଡ଼' ମଧ୍ୟ ସାମାଜିକ ବିପ୍ଳବର ଝଡ଼ । ବିପ୍ଳବୀ କାବ୍ୟ ନାୟକର

ଜୀବନ ଚିର ଚଳମାନ । ତାହା କେବଳ ଫୁଲର ଫସଲ ନୁହେଁ, ସ୍ୱପ୍ନର ମୀନାର ମଧ୍ୟ ନୁହେଁ । ସେଠାରେ ଜୀବନର ଏକ ପାର୍ଶ୍ୱରେ ଶୋଷକର ଖଡ୍‌ଗାଘାତ, ଅନ୍ୟ ପାର୍ଶ୍ୱରେ ଶୋଷିତର ଅଶ୍ରୁଧାର, ପଶ୍ଚାତ ଜଗତରେ ନୈରାଶ୍ୟଦଗ୍ଧ ଜୀବନର ଯନ୍ତ୍ରଣା—ମରୁଭୂମିର ମୃତ୍ୟୁନାଚ । ସମ୍ମୁଖରେ ସମର ବିଧ୍ୱସ୍ତ ବିଶ୍ୱର ଘନ କୁହେଳିକା :—

"ତମେ କି ଜାଣିଛ ସେ ପାଖେ ଖଡ୍‌ଗ,
ଏ ପାଖେ ଅଶ୍ରୁଧାର
ପଶ୍ଚାତେ ନାଚେ ମରୁ
ସମ୍ମୁଖେ ଥରେ ଘନ କୁଜଝଟି
ରଣ ହୁଙ୍କାର ତାର (୧୧୮) ।"

ଉଦ୍ଧୃତ ପଂକ୍ତିର 'ତମେ' ରୋମାଣ୍ଟିକ୍ କାବ୍ୟନାୟିକା । କାବ୍ୟନାୟକ ତାହାଙ୍କୁ ବାସ୍ତବଜୀବନ-ସଚେତନ ହେବାପାଇଁ ଆହ୍ୱାନ ଦିଏ । ଅବଶ୍ୟ ନାୟକ ପାଇଁ ରୋମାଣ୍ଟିକ୍ ସ୍ୱପ୍ନ ଓ ବାସ୍ତବ ଜୀବନସଂଗ୍ରାମ—ଉଭୟ ଏକ ଅନିବାର୍ଯ୍ୟ ଆବଶ୍ୟକତା । କାରଣ ରୋମାଣ୍ଟିକ ସ୍ୱପ୍ନଚେତନା, ତାକୁ ବାସ୍ତବଜୀବନ ସଂଗ୍ରାମ ପାଇଁ ଅନୁପ୍ରେରଣା ଦିଏ । ନୈରାଶ୍ୟଦଗ୍ଧ ଜନତାର ନୟନ ପଥରେ ସେ ଦିଏ ଆଶା ଓ ବିଶ୍ୱାସର କୁସୁମ-ଅର୍ଘ୍ୟ । ସାମାଜିକ ପ୍ରଗତି ରୂପକ କୋଣାର୍କର ରଥଚକ୍ର ହିମ ଶୀତଳତାରେ ସ୍ଥବିର ହୋଇପଡ଼ିବାବେଳେ ସେ ସୂର୍ଯ୍ୟର ରୋଷଣିରେ ତାହାକୁ ଦୀପ୍ତ ଓ ବେଗବାନ କରେ —

"ମୁଁ କି ଢ଼ାଳୁ ନାହିଁ କୁସୁମ ଅର୍ଘ୍ୟ
ଦଗ୍ଧ ନୟନପଥେ
ମୁଁ କି ଢାଳୁନାହିଁ ସୂର୍ଯ୍ୟରୋଷଣି
ହିମ କୋଣାର୍କ ରଥେ (୧୧୯) ।"

ରାଉତରାୟଙ୍କ ପରି ଅନନ୍ତ ପଟ୍ଟନାୟକଙ୍କ କବିତାରେ ରୋମାଣ୍ଟିକ ଚେତନା ସହ ବାସ୍ତବବାଦୀ ଚେତନା ନିବିଡ଼ ଭାବେ ସଂଶ୍ଳିଷ୍ଟ । ରୋମାଣ୍ଟିକ-ବାସ୍ତବବାଦୀ ଚେତନାର ଜଣେ ବିଶିଷ୍ଟ ରୂପକାର ହେଉଛନ୍ତି କବି ବେଣୁଧର ରାଉତ । 'କାଠ ଘୋଡ଼ା ପାଣି ପି' କବିତାର କାଠଘୋଡ଼ା ପ୍ରାଣସ୍ପନ୍ଦନହୀନ ସାଧାରଣ ଜନତାଙ୍କର ପ୍ରତୀକ । ନେତୃବର୍ଗଙ୍କ ପ୍ରତାରଣାର ସେ କେନ୍ଦ୍ରବିନ୍ଦୁ । ସୁବିଧାବାଦୀ ନେତୃବର୍ଗଙ୍କ ପରିକଳ୍ପିତ ସମୃଦ୍ଧ ସାମାଜିକ ସ୍ଥିତି ତା'ପାଇଁ ଏକ କାଳ୍ପନିକ ଭୂସ୍ୱର୍ଗ ମାତ୍ର । କାରଣ ସାଧାରଣ ଜନତାଙ୍କର ବାସ୍ତବ ଜୀବନଭୂମିରେ ଏହି କଳ୍ପନାର ସ୍ୱର୍ଗ କେବେହେଲେ ସାକାର

ରୂପ ପରିଗ୍ରହ କରିପାରେ ନାହିଁ । ପାଣି ପି' ପାରୁନଥିବା କାଠଘୋଡ଼ାକୁ ଏକ ଲୋଭନୀୟ ପୁଷ୍କରିଣୀ ତଟରେ ଠିଆ କରେଇ ଦେଲେ ବି ସେ ତା'ର ଝାଣୁତ୍ୱରୁ ମୁକ୍ତ ପାଇପାରେ ନାହିଁ । ଶୋଷକବର୍ଗଙ୍କର ଏହି ପ୍ରତାରଣାପୂର୍ଣ୍ଣ ଆଚରଣକୁ ଏଠାରେ ରୋମାଣ୍ଟିକ ପରିବେଶ ମଧ୍ୟରେ ପ୍ରତିଫଳିତ କରାଯାଇଛି

"କାଠଘୋଡ଼ା ପାଣି ପି'ରେ ପାଣି ପି'
ରଜାଘର ପୋଖରୀ ଏ' ଜାଣି ପି'
ଚନ୍ଦ୍ରରେ ବଳସିତ ଏହି ସର ନିଶାରେ
ଚନ୍ଦ୍ରର ମୃଗ ଆସି ମିଏ ଏଠି ତୃଷାରେ-

× × ×

ସକାଳ ଓ ସଂଜର ପରଶରେ ସ୍ୱର୍ଣ୍ଣ
ଖେଳଯାଏ ଚୋଳି ଏଠି ସପନର ବର୍ଣ୍ଣ
ଜାଣ, ପି'ରେ ଜାଣି ପି'
କାଠ ଘୋଡ଼ା ପାଣି ପି (୧୨୦) ।"

ରଜାଘର ପୋଖରୀ ଏଠାରେ ଐଶ୍ୱର୍ଯ୍ୟ ଓ ବିଳାସର ରୂପକ । ସକାଳ ଓ ସଞ୍ଜରେ ସେ ପୋଖରୀରେ ସୂର୍ଯ୍ୟର ସ୍ପର୍ଶ ଏକ ସ୍ୱପ୍ନିଳ ବର୍ଣ୍ଣବିଭା ସୃଷ୍ଟି କରେ । ରାତିରେ ଚନ୍ଦ୍ରାଲୋକର ବିଳାସରେ ତହିଁରେ ନିଶାଗ୍ରସ୍ତ ଚେତନାର ରହସ୍ୟମୟତା ଜନ୍ମେ । କିନ୍ତୁ ଜନସାଧାରଣଙ୍କ ପାଇଁ ଏହି ସରସୀ ଜଳ ମରୁଭୂମିର ମରୀଚିକା ମାତ୍ର । ସୁତରାଂ ନେତୃବର୍ଗଙ୍କ ସ୍ୱପ୍ନ-ମେଦୁର ଜୀବନଜଳ ସେ ପାନ କରିପାରେ ନାହିଁ । ଲୋକଗଳ୍ପର କଥନକୁ କବି ରଚିତ ସାମାଜିକ ବୈଷମ୍ୟର ସ୍ୱରୂପ ପ୍ରଦର୍ଶନ ପାଇଁ ଏଠାରେ ଯଥା-ଯଥ ଭାବେ ଉପଯୋଗ କରିଛନ୍ତି । ତାଙ୍କର 'ମଳୟର ଆତ୍ମହତ୍ୟା' କବିତାରେ ମଧ୍ୟ ସାମାଜିକ ବୈଷମ୍ୟର ସ୍ୱର ଏକ ରୋମାଣ୍ଟିକ-ବାସ୍ତବବାଦୀ ପରିବେଶ ମଧ୍ୟରେ ପ୍ରତିବିମ୍ବିତ—

"ବସନ୍ତର ଐନ୍ଦ୍ରଜାଲ ସୁବର୍ଣ୍ଣପ୍ଲାବନେ
ଧରଣୀର ସମାରୋହ ଜାଗେ,
ଅଗ୍ନି ଜାଳେ ରକ୍ତରେ ଯୌବନ,
ବହି ଆଣେ ଅସରନ୍ତି ଫୁଲଶର ମଳୟର ଢେଉ ।
ଚକ୍ରବାକ ଚକ୍ରବାକୀ ବିଦାୟର କରୁଣଶୀତ୍କାରେ
ଅଶରୀରେ ସ୍ୱପ୍ନାଳସ ରାତି, ଆଉ ସ୍ମୃତିର ବେଦନା (୧୨୧) ।"

କବିତାର ପ୍ରଥମ ସ୍ତବକରେ ବସନ୍ତର ପାରଂପରିକ ଉଦ୍ଦୀପନାମୟୀ ସ୍ୱରୂପ ପ୍ରକଟିତ ।

କିନ୍ତୁ ବସ୍ତିର ଶ୍ରମିକ ସମାଜ ପାଇଁ ବସନ୍ତ ଋତୁର ମଳୟ ପବନ ନିରର୍ଥକ । ଦାରିଦ୍ର୍ୟର କଷାଘାତ ମଧ୍ୟରେ ସେମାନେ ମ୍ରିୟମାଣ । କାରଖାନା କାହାଳୀର ମର୍ମଭେଦୀ ଉତ୍କଟ ଆବାଜହିଁ ସେଠାରେ ଜୀବନର ଶେଷ ସତ୍ୟ ରୂପେ ପ୍ରତିଷ୍ଠିତ (୧୬୨) ।

ବସ୍ତୁତଃ ମାର୍କସବାଦୀ କବିତାରେ ବାସ୍ତବବାଦ ସଂପୃକ୍ତ ଜନଶକ୍ତିର ଅଭ୍ୟୁଦୟ ପ୍ରତି ଉଦ୍ଦିଷ୍ଟ । କାବ୍ୟିକ କଳ୍ପନା ଓ ରୋମାଞ୍ଚର ସୂଚନା ତହିଁରେ ଇତସ୍ତତଃ ଗୁମ୍ଫିତ ହୋଇଥିଲେ ମଧ୍ୟ ମୁଖ୍ୟତଃ ଏହା ସାଧାରଣ ଜନଜୀବନର ଚିତ୍ର-ଚରିତ୍ର ତଥା ସମସ୍ୟା-ସଂକଟ ଉପରେ ଆଧାରିତ ।

ଓଡ଼ିଶାର ଗଡ଼ଜାତ ପ୍ରଜା ଆନ୍ଦୋଳନ ସଂପର୍କିତ କବିତା ଗୁଡ଼ିକରେ ରାଜ ଅତ୍ୟାଚାର ଓ ଶୋଷଣ ବିରୋଧରେ ସ୍ୱର ଉତ୍ତୋଳନ କରାଯାଇଥିବାରୁ ମାର୍କସ୍‌ବାଦୀ କବିର ବୈପ୍ଳବିକ ଆହ୍ୱାନ ସହ ଏହାର କାବ୍ୟିକ ଯୋଗସୂତ୍ର ସଂରକ୍ଷିତ ।

### ୨—ଗଡଜାତ ଆନ୍ଦୋଳନ

୧୯୩୬ ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହୋଇଥିଲେ ମଧ୍ୟ ଏହା କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଅନୁଗୁଳ ସମେତ ମାନ୍ଦ୍ରାଜ ପ୍ରେସିଡ଼େନ୍‌ସିରୁ ଆନୀତ ଗଞ୍ଜାମ, କୋରାପୁଟ ଅଞ୍ଚଳ ମଧ୍ୟରେ ସୀମାବଦ୍ଧ ହୋଇଥିଲା । ନୀଳଗିରି, ଢେଙ୍କାନାଳ, କଳାହାଣ୍ଡି, ତାଳଚେର, ରଣପୁର ସମେତ ଚବିଶଟି ଗଡ଼ଜାତ ରାଜ୍ୟ ସ୍ୱତନ୍ତ୍ର ଶାସିତ ଅଞ୍ଚଳ ଭାବରେ ରହିଲା । ବଟଲର କମିଟିଙ୍କ ସୁପାରିଶ ମତେ ଇଂରେଜ ସରକାରଙ୍କ ସନ୍ଧିସର୍ତ୍ତଗୁଡ଼ିକ ପୂରଣ କରି ଗଡଜାତ ଅଞ୍ଚଳର ରାଜାମାନେ ପ୍ରଜାମାନଙ୍କ ଉପରେ ନିରଂକୁଶ ଶାସନ ଚଳାଇ ଆସୁଥିଲେ । କ୍ରମେ କ୍ରମେ ବେଠି, ମାଗଣ ଓ ରସଦର ଅତିରିକ୍ତ ଅଭିବୃଦ୍ଧି ପ୍ରଜାମାନଙ୍କୁ ଉତ୍ତକ୍ଷିପ୍ତ କଲା । ସେମାନେ ସାଧାରଣ ମାନବିକ ଅଧିକାରବୋଧରୁ ବଞ୍ଚିତ ହେଲେ । ଭାରତର ସ୍ୱାଧୀନତା ସଂଗ୍ରାମ ସଙ୍ଗେ ଏହି ଅଞ୍ଚଳଗୁଡ଼ିକରେ ଅପୂର୍ବ ଜନଚେତନା ସୃଷ୍ଟି ହୋଇଥିଲା । ଜନସାଧାରଣଙ୍କର ବୈପ୍ଳବିକ ଚେତନା ସହ ସ୍ୱର ମିଳାଇ ପ୍ରଗତିବାଦୀ କବିଗଣ ଗଡ଼ଜାତ ଶାସନର ସ୍ୱେଚ୍ଛାଚାରର ବିରୋଧରେ ଦୃପ୍ତସ୍ୱର ଉତ୍ତୋଳନ କରିଥିଲେ । ସଚ୍ଚି ରାଉତରାୟଙ୍କ 'ମାର ତୁ ଯେତେ ଗୁଳି', 'ବାଜି ରାଉତ', 'ତୁମେ ମାର ଯେତେ ଆଜି ମାରିବ', 'ଦେଖିନେବୁଁ ତାକୁ', 'ଚନ୍ଦ୍ରିଥାରେ ଖାଇ ଠକ ରାଜାକୁ', 'ବାରୁଦ ଘରେ', କୁଞ୍ଜବିହାରୀ ଦାଶଙ୍କ 'ପତନ ନଗର' ଓ ଗୋଦାବରୀଶ ମହାପାତ୍ରଙ୍କ 'ଗଡ଼ଜାତ ହେବ ମୋଗଲବନ୍ଦୀ', 'ମୁକୁଟର ପରାଜୟ' ଆଦି କବିତାରେ ଏହି ସ୍ୱର ପ୍ରତିଧ୍ୱଂକୃତ ହୋଇଛି ।

କବି ରାଉତରାୟଙ୍କ 'ମାର ତୁ ଯେତେ ଗୁଳି'ରେ ଗଡ଼ଜାତ ରାଜ୍ୟର ହୁଙ୍କାପିଟା ଶାସନ ବିରୋଧରେ ବିପ୍ଳବର ଧ୍ୱନି ଉଟଙ୍କିତ—

"ମାର ତୁ ଯେତେ ଗୁଳି
ମରିବୁ ପଛେ ଡରିବୁ ନାହିଁ, ଯାଆନା ଏହା ଭୁଲି ।
ଘୋଡ଼ସବାର ସିପାହି ତୋର ଚଢ଼ାଉ ଯେତେ କରି
ପଡେଇ ଦେଇ ଛାତିର ହାଡ଼ ହୋଇବୁଁ ଆଗଭର ।
ବଂଶତୋ ଲାଠି, କାଠର ଲାଠି, ହାଡ଼ର ଆମ ଛାତି
ମରଣ ଆମ ମିତ ଜାଣ, କଷଣ ଆମ ସାଥୀ ।

× × × ×

ମାରନ୍ତୁ ଯେତେ ଗୁଳି
ହୁଂକାପିଠା ଶାସନ ଆମେ ଗୋଡ଼ରେ ଦେବୁ ଚୂରି(୧୨୩) ।"

ଶୋଷିତ ଜନତାର ରକ୍ତ-ଲୁହରେ ରାଜାର ରାଜସ୍ୱ ଭଣ୍ଡାର ବୃଦ୍ଧିମନ୍ତ । ସୈନ୍ୟବାହିନୀର ବଳିଷ୍ଠବାହୁ ପ୍ରଜାର ଅନ୍ନରେ ପରିପୁଷ୍ଟ । ଅଥଚ ସେହି ପ୍ରଜାମାନଙ୍କ ଅର୍ଥ ଓ ଅନ୍ନ ପରିପୁଷ୍ଟ ସୈନ୍ୟବାହିନୀକୁ ଗଡ଼ଜାତ ଶାସକଗଣ ପ୍ରଜାମାନଙ୍କ ବିରୁଦ୍ଧରେ ବ୍ୟବହାର କରିଥିଲେ । ବିଚାର ଅଦାଳତର ଅସାଧୁତା ହେତୁ ଏହି ଅନ୍ୟାୟ ବିରୁଦ୍ଧରେ ସାଧାରଣ ପ୍ରଜାବର୍ଗ ପ୍ରତିବାଦର ସ୍ୱର ଉତ୍ତୋଳନ କରିପାରୁ ନଥିଲେ । 'ମାର ତୁ ଯେତେ ଗୁଳି' କବିତାରେ ଗଡ଼ଜାତ ପ୍ରଜାଙ୍କର ସୁପ୍ତ ଶୀତଳ ରକ୍ତରେ ଜାଗରଣର ତୀବ୍ରତା ସୃଷ୍ଟି କରିବା ପାଇଁ କବି ରୌଦ୍ରରସ୍ୟ ଉଦ୍‌ବୋଧନ ଦେଇଥିଲେ—

"ମୂଲିଆ କୁଲି ହୁଅରେ ଠୁଳ, ଆସରେ ଚଷୀ ଚୂଲି
ଅନ୍ଧାର ଦେଶ ଆଲୁଅ କରି ବହ୍ନିଡ଼ ଦିଅ ଜାଳି ।
ବୁକୁର ରକ୍ତ ଢାଳି ତୁ ଏଥି ବନ୍ୟା ଯାଅ ରଚି
ଭସାଇ ନେଉ ମଇଳା ଆଉ ଜୁଲୁମ ଯେତେ ଅଛି (୧୨୪) ।"

କବିଙ୍କର 'ଦେଖି ନେବୁଁ ତାକୁ' କବିତାରେ ଏହି ଉଦ୍‌ବୋଧନର ସ୍ୱର ଅଧିକ ହୃଦୟସ୍ପର୍ଶୀ (୧୨୫) । ପ୍ରତ୍ୟେକ ହୀନ ପୋକ ମାଛି ପରି ସଢ଼ି ମରିବା ଠାରୁ ସିଂହପରି ସଂଗ୍ରାମ କରି ମୃତ୍ୟୁବରଣ କରିବା ବୀରତ୍ୱର ପରିଚାୟକ । ବିପ୍ଳବର ଏହି ବଡବାନଳ ଅନିର୍ବାପିତ (୧୨୬) । 'ଚର୍ଚ୍ଚିଲ ଥା ରେ ଖାଇ ଠକ ରଜାକୁ' କବିତାରେ 'ମାର୍ ତୁ ଯେତେ ଗୁଳି' ପରି ବିପ୍ଳବର ଅଗ୍ନିଶିଖା ପ୍ରଜ୍ୱଳିତ । ଗଡ଼ଜାତ ଶାସକଙ୍କର ସଖୀ କଣ୍ଢେଇ ସାଜିଥିବା ପ୍ରଜାବର୍ଗ ଏଠାରେ ବିଦ୍ରୋହର ରକ୍ତଧ୍ୱଜା ଧରି ଉପଗତ—

"ହୁଙ୍କାପିଠା ତା ରାଜୁଡ଼ିକୁ ଚୂରି
ଲଙ୍କାର ବଳ ଆମେ ଦେବୁ ଦଳି

ଜାଗିଛୁଁ ଯେ ଆମେ ଜାଗିଛୁଁ ଜାଗିଛୁଁ
ଜଗାଇ ରଗାଇ ସବୁ ପ୍ରଜାଙ୍କୁ
ଜାଣିନ ସେ ଆମ ବଳ ପଣଆର
ପିଛୁଳାକେ ଆମେ ପୋଛି ଦେବୁଁ ଧର
ପଞ୍ଜାବ ଝଲା ଯେ ମଂଗ୍ରାରୁ ତା' ଢ଼ର
ଦେଖି ଦେଲେ ଆମ ନାଲ ଧ୍ୱଜାକୁ
ଚହ୍ଲିଥା ଚହ୍ଲିଥା ଠକ ରଜାକୁ (୧୨୭) ।''

ଏହି ବିପ୍ଳବ ଓ ବିଦ୍ରୋହ ମଧ୍ୟରେ ଗଡ଼ଜାତରାଜ୍ୟର ଶାସକଗଣ ଏକ ବାରୁଦ ଘରର ରାଜା ପାଲଟିଛନ୍ତି ବୋଲି କବି ରାଉତରାୟ ଆକ୍ଷେପ କରିଛନ୍ତି । ଶୋଷିତ ପ୍ରଜା ଆଖିର କଣିକାଏ ମାତ୍ର ଅଗ୍ନି ସେଇ ବାରୁଦଘରେ ପ୍ରଳୟର ଇନ୍ଧନ ସଂଯୋଗ କରିପାରିବ । ସେହି ଅଗ୍ନିକଣାର ସ୍ପର୍ଶରେ ରାଜକୀୟ ସମସ୍ତ ଆଟୋପ, ଆଡ଼ମ୍ବର ଭସ୍ମୀଭୂତ ହୋଇଯିବ (୧୨୮) ।

କବି ରାଉତରାୟଙ୍କ 'ବାଜି ରାଉତ' କାବ୍ୟ ଗଡ଼ଜାତ ପ୍ରଜା ଆନ୍ଦୋଳନର ଏକ ବଳିଷ୍ଠ ଉଦାହରଣ । ଢେଙ୍କାନାଳ ଜିଲ୍ଲାର ନୀଳକଣ୍ଠପୁର ଗ୍ରାମର ଏକ ବାଳକ ବାଜି ରାଉତର ବୀରତ୍ୱପୂର୍ଣ୍ଣ ଜୀବନାହୁତି ଉପରେ କାବ୍ୟଟି ଆଧାରିତ ବୋଲି କବି ଉଲ୍ଲେଖ କରିଛନ୍ତି (୧୨୯) । 'ବାଜିରାଉତ' କାବ୍ୟର ନାୟକ ଢେଙ୍କାନାଳ ଅତ୍ୟାଚାରର ଏକ ନଗହରିକାର ହୋଇଥିଲେ ମଧ୍ୟ ରାଉତରାୟଙ୍କ ଲେଖନୀ ସ୍ପର୍ଶରେ ସେ ଏକ ଯୁଗ-ବିପ୍ଳବୀ ରୂପେ ଅବତୀର୍ଣ୍ଣ । ଧୂଳି ଖେଳର ବାଲ୍ୟଚପଳତା ଛାଡ଼ି ସେ ଇଂରେଜ ଫୌଜର ଗୁଳିଗୋଳା ତଥା ଗଡ଼ଜାତ ରାଜ୍ୟର ଅନ୍ଧାରି ଶାସନ ବିରୋଧରେ ସଂଗ୍ରାମ କରିଥିଲି ।

''ଏତିକି ସେ ଅମାନିଆ ପିଲି
ଫଉଜର ଗୁଳି, ଗୁଳା, ରଜା, ଝଡ଼ କିଛି ନ ମାନିଲି
ଧୂଳି ଖେଳ ଛାଡ଼ି
ଗୁଳି ଆଗେ ଜୀବନକୁ ହସି ହସି ଦେଲି ସିନା ବାଢ଼ି (୧୩୦) ।''

ଲୁହ ଲହୁ ବନ୍ଦନମୟରେ ବାଜି ରାଉତ ମୂର୍ତ୍ତିର ଯେଉଁ ଚିତ୍ର ଅଙ୍କନ କରିଥିଲି କବିଙ୍କ ଭାଷାରେ ତାହା ସ୍ୱୟଂ ବିପ୍ଳବର ଏକ ରକ୍ତ କରବୀ—

''ଲହୁ ଢ଼ାଳି ତହିଁ ପରେ ଲେଖିଲି ସେ
ମୁକ୍ତିର ଛବି
ଛବି ନୁହେଁ, ତୂଳି ନୁହେଁ, ନୁହେଁ ରଙ୍ଗ
ସେ ରକ୍ତ କରବୀ (୧୩୧) ।''

ଗଡ଼ଜାତ ରାଜାଙ୍କ ଖିଆଲରେ ଶତ ଶତ ପ୍ରଜାଙ୍କର 'ତାଲି ' ଲହୁପୂଟରେ ରଂଜିତ ଢେଙ୍କାନାଳର ଏକ ପାହାଡ଼ ଉପରେ ନିର୍ମିତ ପତନ ନଗର ରାଜ ଉଆସର କରୁଣ କାହାଣୀ କୁଞ୍ଜବିହାରୀ ଦାଶଙ୍କ 'ପତନ ନଗର' କବିତାରେ ଉଦ୍‌ବେଳିତ । ପତନ ନଗରର ନିଷ୍ପ୍ରାଣ ଅଟ୍ଟାଳିକା ମଧ୍ୟରେ କୁଞ୍ଜବିହାରୀ ଦେଖିଥିଲେ କେତେ ଝଡ ବିକ୍ଷୁବ୍ଧ ରାତି, କେତେ ଆଗ୍ନେୟଗିରିର ଉତ୍ତପ୍ତ ଲାଭା (୧୩୧କ), କେତେ କଙ୍କାଳର ସ୍ତୂପ । ପତନ ନଗରର ଶୂନ୍ୟ ପାଷାଣ ହାତ ମଣିଷର ଶିରା ଧମନୀ ନିଃଶେଷ କରି ପତେ ଅବା ରକ୍ତ ଶୋଷଣ କରିଥିଲା—

"ଏ ଏକ ପାଷାଣ ହାତ
ମଣିଷର ଧମନୀ ଓ ଶିରା ଶୂନ୍ୟ କରି
ଦୁହିଁଛୁ ରୁଧିର (୧୩୨) ।"

୧୯୪୮ ମସିହା ଜାନୁଆରୀ ମାସରେ ଗଡ଼ଜାତ ରାଜ୍ୟ ସମୂହର ମିଶ୍ରଣ ପରେ ପ୍ରଗତିବାଦୀ କବିତାରେ ଏହି ଆନ୍ଦୋଳନ ସଂକ୍ରାନ୍ତୀୟ ଆହ୍ୱାନୀ ସ୍ୱର ଧ୍ୱନିତ ହୋଇ ଆସିଥିଲା । ଗଡ଼ଜାତ ମିଶ୍ରଣର ଅବ୍ୟବହିତ ପୂର୍ବରୁ ଗୋଦାବରୀଶ ମହାପାତ୍ର ଗଡ଼ଜାତ ଶାସକମାନଙ୍କର ଅବସ୍ଥାର ଭାବୀ ସ୍ୱରୂପ ସମ୍ପର୍କରେ ଏକ ବ୍ୟଙ୍ଗ ଚିତ୍ର ଦେଇଥିଲେ—

"ଗଡ଼ଜାତ ହେବ ମୋଗଲବନ୍ଦୀ
ରାଜାରେ ପଡ଼ିବ ଖରା ।
ରଜା ରାଣୀ ରାଜ ପୋଷାକ ଛାଡ଼ିବେ
କମିଚ ବସିବ ଭଲ" (୧୩୩) ।

ନିଷ୍ପେଷିତ, ନିରନ୍ନ, କୌପୀନବନ୍ତ ପ୍ରଜାମାନଙ୍କର ଆନ୍ଦୋଳନ ଦ୍ୱାରା ଗଡ଼ଜାତ ଗୁଡ଼ିକର ପତନ ପରେ ଶହ ଶହ ବର୍ଷ ଧରି ଗଢ଼ି ଉଠିଥିବା ରାଜନ୍ୟ ପରମ୍ପରା କିଭଳି ଭାଙ୍ଗି ପଡ଼ିଲା ତା'ର ଏକ ବାସ୍ତବ ଚିତ୍ର ଗୋଦାବରୀଶ ମହାପାତ୍ରଙ୍କ 'ମୁକୁଟର ପରାଜୟ' କବିତାରେ ପ୍ରତିଫଳିତ—

"ଶତ ବର୍ଷର ଥିଲା ଏଠି ଯେତେ
ନବର ଚନ୍ଦ୍ର ଶାଳ
ଥିଲା ଶତ ଶତ ବିହାର ବାଟିକା
କାମିନୀ ହଂସ ପୁର,

ପାଟ ପ୍ରାଙ୍ଗଣ, ପାଟ ମହାଦେଈ
ପାଟ କେମା ପାଟ ହାତୀ
ଏ ନାମ ସମାଧି ହେଲା ଏଠି ଆଜି
ଲୁଚିଗଲା ପାଟ ଗ୍ରୁଡି ।

× × × × ×

ଲୁଚିଲା ମଣୋହି ପଦ୍ଧତି ଏଠାରେ
ଇତିହାସେ ହେବ ଲେଖା
ପଚ୍ଛଘୁଞ୍ଚାରେ 'ଗ୍ରୁମୁ' ଗଲେ ଚାଲି
ବଳେ ହେବେ ନାହିଁ ଦେଖା (୧୯୩୪) ।"

୧୯୩୮ ପୂର୍ବବର୍ତ୍ତୀ କାଳରେ ବାଞ୍ଛାନିଧିଙ୍କ 'ଦୁଃଖିନୀ କନକା', କୁନ୍ତଳା କୁମାରୀଙ୍କ 'ଗଡ଼ଜାତ କୃଷକ' ଆଦି କବିତାରେ ନିଷ୍ପେଷିତ ପ୍ରଜାବର୍ଗଙ୍କର ଦୁଃଖ ଦୁର୍ଦ୍ଦଶାର କରୁଣଚିତ୍ର ପ୍ରଦତ୍ତ ହୋଇଥିଲା । କିନ୍ତୁ ୧୯୩୮ ପରବର୍ତ୍ତୀ କାଳରେ ସଚ୍ଚି ରାଉତରାୟ, ଗୋଦାବରୀଶ ମହାପାତ୍ର ପ୍ରମୁଖଙ୍କ କବିତାରେ ଏହି କାରୁଣ୍ୟ ପରିବର୍ତ୍ତେ ପ୍ରଜାଆନ୍ଦୋଳନ ପାଇଁ ବୈପ୍ଳବିକ ପ୍ରେରଣା ଓ ବ୍ୟଙ୍ଗର ସ୍ୱର ଯୁଗପତ୍ ଉଦ୍‌ଘୋଷିତ । ଗଡଜାତ ଆନ୍ଦୋଳନର ଅନ୍ତିମ ପରିଣତି ମଧ୍ୟ ଏହି ପର୍ଯ୍ୟାୟର ଏକ ବିଶିଷ୍ଟ କାବ୍ୟସ୍ୱର ।

## ୩ । ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରଭାବ

ପ୍ରଗତିବାଦୀ ଓଡ଼ିଆ କବିତାରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରଭାବ ଦ୍ୱିବିଧ .— ଯଥା : (କ) ବିଶ୍ୱଯୁଦ୍ଧ ସମ୍ପର୍କୀୟ ଜାତୀୟ ତଥା ଆନ୍ତର୍ଜାତୀୟ ବିଭୀଷିକା ଓ (ଖ) ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳୀନ ଆର୍ଥନୀତିକ ପରିସ୍ଥିତି ।

### (କ) ଜାତୀୟ ତଥା ଅନ୍ତର୍ଜାତୀୟ ବିଭୀଷିକା

ବିଶ୍ୱଯୁଦ୍ଧର ଧ୍ୱଂସମୁଖୀ କ୍ରିୟାକଳାପ ପରମାଣୁ ତଥା ହାଇଡ୍ରୋଜେନ ଯୁଦ୍ଧର ବିଭୀଷିକା ସମଗ୍ର ପୃଥିବୀର ଚିନ୍ତାମାନସରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ସୁତରାଂ ସାମାଜିକ ଓ ରାଜନୀତିକ ସ୍ତର ପରି ସାହିତ୍ୟ ଚେତନା କ୍ଷେତ୍ରରେ ଯୁଦ୍ଧର ଭୟାବହତା ବିରୋଧରେ ସ୍ୱର ଉତ୍ତୋଳନ କରାଯାଇଥିଲା । ମାନବିକତା ବିରୋଧୀ ନାଜି ଶକ୍ତି ଓ ଫାସିବାଦ ବିପକ୍ଷରେ ଗଳ୍ପ ଉପନ୍ୟାସ ଭଳି କବିତାରେ ମଧ୍ୟ ସଚେତନତା ସୃଷ୍ଟି ହୋଇଥିଲା । ଓଡ଼ିଶାରେ ପ୍ରଗତିବାଦୀ କବି ଅନନ୍ତ ପଟ୍ଟନାୟକ, ବୈକୁଣ୍ଠ ନାଥ ପଟ୍ଟନାୟକ, ଗୋଦାବରୀଶ ମହାପାତ୍ର, ସଚ୍ଚି ରାଉତରାୟ ପ୍ରମୁଖଙ୍କ କବିତାରେ ଏହି ଚେତନାର ପ୍ରତିଧ୍ୱନି ଉଲ୍ଲେଖନୀୟ ।

ଅନନ୍ତ ପଟ୍ଟନାୟକଙ୍କ 'ସାଇରନ ବାଜେ' କବିତାରେ ଯୁଦ୍ଧକାଳୀନ ଆତଙ୍କ ଓ ଆକ୍ରମଣର ଭୟଙ୍କର ସଂକେତ ମଧ୍ୟରେ ଟ୍ରେଞ୍ଚ ଗର୍ଭରେ ଆଶ୍ରୟ ନେବାପାଇଁ ଏ. ଆର୍. ପି. ଘଣ୍ଟାର ଆହ୍ୱାନ ପ୍ରଦତ୍ତ—

"ସାଇରନ ବାଜେ ସ୍ତବ୍ଧ ସହର ପ୍ରାଣ
ଯାତ୍ରୀ ଯେ ଅଛ, ଶେଲ୍‌ଟରେ ଯାଅପଶି !
ଦୂର ଦିଗନ୍ତେ ଦିଶେ ବମ୍‌ମାରୀମାନ
ଏ. ଆର୍. ପି ମଟର ଛୁଟେ ଉଦ୍‌ବେଗେ ଶ୍ୱସି ।
ବିସ୍ତୃତ ଏହି ସହର ରାସ୍ତା ପାଶେ
ଜୀବିତ ଜନର ସମାଧି ସ୍ତମ୍ଭ ପରି
ନିର୍ବାକ ସ୍ତବ୍ଧେ ଭଗ୍ନ ସଉଧ ହାସେ
ସଭ୍ୟ ରୁଚିର ସୃଷ୍ଟିର ଚିହ୍ନ ଧରି (୧୩୫) !"

ଯୁଦ୍ଧର ଜୀବନନାଶକାରୀ ବୋମା ବିସ୍ଫୋରଣର ଆଶଙ୍କା ମଧ୍ୟରେ କୋଳାହଳପୂର୍ଣ୍ଣ ସହରର ସୁଦୃଶ୍ୟ ସୌଧମାଳା ସମାଧି ସ୍ତମ୍ଭ ରୂପେ ପରିକଳ୍ପିତ । ସାଇରନର ଆବାଜ ମଧ୍ୟରେ ମୃତ୍ୟୁର ଘନଘଟା ଆଚ୍ଛନ୍ନ ।

ଆଗାମୀ ଆକ୍ରମଣର ସୂଚନା ଦେଉଥିବା ସାଇରନର ଶବ୍ଦ ମଧ୍ୟରେ ଜୀବନର ପ୍ରାଣ ପ୍ରାଚୁର୍ଯ୍ୟ ଅସ୍ତମିତ । ଜୀବନ ପରିବର୍ତ୍ତେ ମୃତ୍ୟୁର ସଂଚରଣ ଭଙ୍ଗୀରେ ଅଧିକ ସୁସ୍ପଷ୍ଟ । ଯୁଦ୍ଧର ବିଭୀଷିକାର ଊର୍ଦ୍ଧ୍ୱରେ ନୀଳନଭ ଅଶାନ୍ତ । ଚତୁଃପାର୍ଶ୍ୱ ମୃତ୍ୟୁର ପୈଶାଚିକ ଲୀଳାରେ ଆଚ୍ଛନ୍ନ । ମୃତ୍ୟୁର ଏହି ପ୍ରେତାୟିତ ଆକ୍ରମଣ ଭିତରେ ତଥାକଥିତ ଜନନାୟକମାନଙ୍କର ଶାନ୍ତି ଓ ମୈତ୍ରୀର ମହୋତ୍ସବ ପରିପାଳିତ—

" × × × ମୃତ୍ୟୁରେ ହସେ ଶାନ୍ତିର ଗଉରବ
ତୁମ ମୈତ୍ରୀର ମଉଚ୍ଛବ (୧୩୬) ।"

'ହଟାଅ ହଟାଅ' କବିତାରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ପରମାଣୁ ଆକ୍ରମଣ ବିରୋଧରେ କବି ଅନନ୍ତ ପଟ୍ଟନାୟକ ଆହ୍ୱାନ ଦେଇଛନ୍ତି । ଜାପାନର ହିରୋସିମା ଓ ନାଗାସାକି ଉପରେ ପରମାଣୁ ବୋମା ପ୍ରକ୍ଷେପଣ ମାନବ ଜାତିର ଅମର ସ୍ୱପ୍ନକୁ କ୍ଷତ ବିକ୍ଷତ କରିଛି—

"ମହାମାରୀ ଆଜି ଆସିଛି ମୃତ୍ୟୁ ସଇନ
ବୁଣିଯାଏ ଖାଲି ପରମାଣୁ ବୋମା, ବୀଜାଣୁ
ଶୁଣିନାହିଁ ଲିବେ ଦୁର୍ବଳ ମନ-ଦଇନ
ଚୂରିଯାଏ ସବୁ ଅମର ସ୍ୱପ୍ନ ପରମାଣୁ (୧୩୭) ।"

ବୈକୁଣ୍ଠନାଥଙ୍କ 'ଶାନ୍ତିଅଭିଯାନ'ରେ ଦ୍ୱିତୀୟ ବିଶ୍ୱଯୁଦ୍ଧକାଳୀନ ପରମାଣୁ-ବୋମା ପ୍ରକ୍ଷେପଣ ପ୍ରତି ଶାଣିତ କଟାକ୍ଷ ସୁସ୍ପଷ୍ଟ । ଜନନାୟକମାନଙ୍କର ଶାନ୍ତିଅଭିଯାନର ବିଫଳତା ପ୍ରତି କବିଙ୍କର ଶ୍ଳେଷଶାଣିତ ବକ୍ତବ୍ୟ ଉଲ୍ଲେଖନୀୟ (୧୩୮) ।

ଗୋଦାବରୀଶ ମହାପାତ୍ରଙ୍କ 'ପୂଜା' କବିତାରେ ୧୯୪୦ ମସିହାରେ ବର୍ମା ଉପରେ ଜାପାନୀ ସୈନ୍ୟଙ୍କ ତୁମୂଳ ଆକ୍ରମଣର ସୂଚନା ଦିଆଯାଇଛି । ଗୋଦାବରୀଶଙ୍କ ମତରେ ଏ ଆକ୍ରମଣ ମାନବିକତା ବିରୋଧୀ । ଏହି ଅମାନବିକ ଯୁଦ୍ଧ ପିପାସା ବିରୁଦ୍ଧରେ ଶତ୍ରୁର ସଂହାର ପାଇଁ ସେ କାମନା କରିଛନ୍ତି । କାରଣ ସମର ବିମୁକ୍ତ ବିଶ୍ୱରେ ହିଁ ମାନବିକତାବୋଧର ଶୁଭ ଉତ୍ସବ ସଂଘଟିତ ହୋଇପାରିବ (୧୩୯) ।

ସଚ୍ଚି ରାଉତରାୟଙ୍କ 'ବୋମାରୁ' କବିତାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଭାରତର ଉପକୂଳବର୍ତ୍ତୀ ଅଞ୍ଚଳରେ ଜାପାନୀ ଆକ୍ରମଣର ସୂଚନା ପ୍ରଦତ୍ତ—

"ସେମାନେ ଧାଇଁ ଆସୁଛନ୍ତି ଉଡ଼ନ୍ତା ସାପପରି ଜିଭ ବଢାଇ
ଭାସମାନ ଉଲ୍‌କା ପରି ନିଆଁରେ ପୁଚ୍ଛ ଟୋଳି

× × ×

ମହିରେ ମହିରେ ଏ. ଆର. ପି. ସାବଧାନ ବଂଶୀ
ଟଳେ ଘାସର କାଚର ଜାପାନୀ ଆଲୁଅର ପ୍ରେତଗ୍ରୀଇ (୧୪୦) ।"

ଭାସମାନ ଉଲ୍‌କାର ଅଗ୍ନିପୁଚ୍ଛ ଓ ଉଡ଼ନ୍ତା ସାପର ଜିଭ ଜାପାନୀ ଆକ୍ରମଣର ଭୟାବହ ସ୍ୱରୂପକୁ ତୀକ୍ଷ୍ଣ ଓ ଶାଣିତ କରୁଛି । ଅନନ୍ତ ପଟ୍ଟନାୟକଙ୍କ କବିତା ପରି ଏଠାରେ ମଧ୍ୟ ଏ.ଆର୍. ପି.ର ସତର୍କ ଘଣ୍ଟିର ସୂଚନା ପ୍ରଦତ୍ତ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଜନିତ ବିଭୀଷିକାର ମୁଖ୍ୟନାୟକ ଥିଲେ ନାଜିନେତା ହିଟଲର । ଜର୍ମାନ ଜାତି ତାଙ୍କ ଦୃଷ୍ଟିରେ ଥିଲା ଆର୍ଯ୍ୟ ଜାତିର ଶ୍ରେଷ୍ଠ ଦାୟାଦ । ଏହି ଜାତିର ପ୍ରାଧାନ୍ୟ ପ୍ରତିଷ୍ଠା ପାଇଁ ସମଗ୍ର ବିଶ୍ୱରେ ପ୍ରଳୟ ତାଣ୍ଡବ ସୃଷ୍ଟି କରିବା ତାଙ୍କର ଲକ୍ଷ୍ୟ ଥିଲା । କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧର ଅନ୍ତିମ ପରିଣତି ମଧ୍ୟରେ ହିଟଲରଙ୍କର ଏହି ଆଶା ଭୂଲୁଣ୍ଠିତ ହୋଇଥିଲା । ମିତ୍ର ଶକ୍ତିର ଦୁର୍ମଦ ଆକ୍ରମଣରେ 'ତୃତୀୟ ରାଇକ୍' (ତୃତୀୟ ସାଧାରଣ ତନ୍ତ୍ର—ଜର୍ମାନୀ ରାଜ୍ୟ)ର ସବୁ ଗର୍ବ, ଦମ୍ଭ, ଅଭିମାନ, ଆଶା, ଆକାଙ୍‌କ୍ଷାର ମିନାର ତା'ସ ଘର ପରି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼ିଲା । ବିଜୟୀ ରୁଷୀୟମାନଙ୍କର ଲାଲଝଣ୍ଡା ଉଡ଼ିଲା ପରି ଶତ୍ରୁ ପକ୍ଷର ଗୁଳି ଗୋଳା ବୋମା ମାଡ଼ରେ ପୂର୍ବ ଦିଗରେ ଅଗ୍ନିର ହରିତାଭ ଶିଖା ଜଳି ଉଠିଲା । ଏଣୁ ସବୁ ଉଦ୍ୟମ ବ୍ୟର୍ଥ ଓ ବିଜୟର ଆଶା ସୁଦୂର ପରାହତ ହେଲା । ହିଟଲରଙ୍କର ଏହି ହତାଶା ମନୋଭାବ ସଚ୍ଚି ରାଉତରାୟଙ୍କ ନିମ୍ନୋକ୍ତ କବିତା ପଂକ୍ତିରେ ଅଭିବ୍ୟକ୍ତ ହୋଇଛି—

"ସୁଦୂରଦିଗେ ଅନ୍ଧକାର          ରାତି-ପରି ଜଣାଯାଏ ଦିବା
କାନ୍ଦିଗଲା ଆର୍ଯ୍ୟ ଭୂଇଁ          ଜର୍ମାନୀର ଆଗ୍ନେୟ ପ୍ରତାପ
ମୃତ କହେ ଆଜି ଫ୍ୟାସିବାଦ
ତୃତୀୟ ରାଇକ ଚୂନା          ଯଥା ଏକ ତା'ସର ପ୍ରାସାଦ
× × ×
ବ୍ୟର୍ଥ ସବୁ ନାଜି ଆଶା
ରକ୍ତକେତୁ ସମ ସ୍ୱସ୍ତିକା ଜଳି ଉଠେ ହରିତ ପୂର୍ବାଶା (୧୪୧) ।"

## (ଖ)—ଦ୍ୱିତୀୟ ବିଶ୍ୱଯୁଦ୍ଧକାଳୀନ ଅର୍ଥନୈତିକ ପରିସ୍ଥିତି

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଖାଦ୍ୟ ପଦାର୍ଥର ଦରଦାମ ବୃଦ୍ଧି, ଅତ୍ୟାବଶ୍ୟକ ଦ୍ରବ୍ୟର ଉତ୍ପାଦନ ହ୍ରାସ ହେତୁ ଦର ନିୟନ୍ତ୍ରଣ ପଦ୍ଧତିର ପ୍ରଚଳନ ସାଧାରଣ ଜନଜୀବନରେ ଅସନ୍ତୋଷ ସୃଷ୍ଟି କରିଥିଲା । ଖାଦ୍ୟ ପଦାର୍ଥରେ ବ୍ୟାପକ ଅପମିଶ୍ରଣ ଘଟିବାକୁ ଆରମ୍ଭ କଲା । ଗୋଦାବରୀଶ ମହାପାତ୍ରଙ୍କ 'କଣ୍ଟ୍ରୋଲ' କବିତାରେ ଏହାର ଏକ ବାସ୍ତବ ଚିତ୍ର ପ୍ରଦତ୍ତ—

"ବେମାର ପଡ଼ିଛି ପିଲା, ବିକଳ ପରାଣ,
'ପ୍ରଣୟିନୀ କହେ –
ଚାଉଳରେ ମିଶିଛି ମକା, କାଙ୍କୁ, ଚୂନା ଖାଲି
ପଥି କେମନ୍ତେ ଦିଏ ?
× × ×
× × ସାତପା ଚାଉଳ ଦେଲା କଣ୍ଟ୍ରୋଲ ଦୋକାନୀ
ଏହି ଟଙ୍କାକର
ଟଙ୍କାକର ଚାଉଳ ଏ ! ଅର୍ଦ୍ଧାଶନ ଯୋଗ !
ମରିଗଲା ଲୋକ × ×
× × ଘରେ ନାହିଁ କେରୋସିନି ବୋତଲ ଦି ଟଙ୍କା
ପୂଜାରୀ ବଖାଣେ × × (୧୪୨)।"

'ହେ କାଗଜ' କବିତାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ଓଡ଼ିଶାରେ କାଗଜ ଅଭାବ ପ୍ରସଙ୍ଗ ସୂଚିତ । କବିତାଟିର ପାଦଟୀକାରେ ଗୋଦାବରୀଶ ଉଲ୍ଲେଖ କରିଛନ୍ତି— "ଦ୍ୱିତୀୟ ମହାଯୁଦ୍ଧ ସମୟରେ କାଗଜ ଅଭାବଗ୍ରସ୍ତ 'ନଆଁଖୁଣ୍ଟା' ତା'ର କ୍ଷୀଣ

କଳେବରରେ କାଗଜର ବହୁମୂଲ୍ୟ ଚରିତ୍ର ସମ୍ପର୍କୀୟ ଏଇ କବିତାଟି ବହନ କରି ଜନସାଧାରଣଙ୍କ ନିକଟରେ ପହଞ୍ଚିଥିଲା (୧୪୩) ।'' ଆଲୋଚ୍ୟ କାଳରେ ଓଡ଼ିଶାରୁ ବାଉଁଶ ବହୁ ପରିମାଣରେ ରପ୍ତାନୀ ହୋଇଥିବା ଯୋଗୁଁ କାଗଜ ଉତ୍ପାଦନର ହ୍ରାସ ଘଟିଥିଲା । ଫଳରେ ପତ୍ର-ପତ୍ରିକା ଓ ପୁସ୍ତକ ପ୍ରକାଶନ କଷ୍ଟସାଧ୍ୟ ହୋଇଥିଲା । ସୁତରାଂ 'ନଅାଁ ଖୁଣ୍ଟା'ର କ୍ଷୀଣ କଳେବର କବିଙ୍କୁ ବ୍ୟଥିତ କରିଥିଲା (୧୪୪) । 'ବାଉଁଶକାଳା' କବିତାରେ ଯୁଦ୍ଧ ପାଇଁ ଭିନ୍ନ ଭିନ୍ନ ଦେଶର ଯୁଦ୍ଧ ଜାହାଜ, କମାଣ, ବାରୁଦ, ଗୁଳି, ଗୁଳା ଆଦି ସାହାଯ୍ୟ ପ୍ରସଙ୍ଗ ଉତ୍ଥାପିତ ହେବା ସଙ୍ଗେ ସଙ୍ଗେ ଓଡ଼ିଶାରୁ ବାଉଁଶ ରପ୍ତାନିର ସୂଚନା ଦିଆଯାଇଛି (୧୪୫) । ଯୁଦ୍ଧ ପାଇଁ ଓଡ଼ିଶାରୁ ପୁରୁଣା ସାଇକେଲ ପ୍ରେରଣ "ସାଇକେଲ" କବିତାର ବକ୍ତବ୍ୟ । 'ହେ କାଗଜ' କବିତା ପରି ଏହାର ପାଦଟୀକାରେ ଏ ସଂପର୍କରେ ସୂଚନା ଦେଇ କବି ଉଲ୍ଲେଖ କରିଛନ୍ତି— "ଯୁଦ୍ଧରେ ଅତ୍ୟଧିକ ରବର ଦରକାର ହେଉଥିବା ଯୋଗୁଁ ପୁରୁଣା 'ଟାୟାର' ସବୁ ଦାନ କରିଦେବା ପାଇଁ ଜନସାଧାରଣଙ୍କୁ ୧୯୪୨ ମସିହାରେ ସରକାର ନିବେଦନ କରିଥିଲେ (୧୪୬) ।

ଓଡ଼ିଶାର ଜନସାଧାରଣ ଦ୍ୱିତୀୟ ବିଶ୍ୱଯୁଦ୍ଧ ସହ ପ୍ରତ୍ୟକ୍ଷ ଭାବେ ସଂପୃକ୍ତ ନ ଥିଲେ ମଧ୍ୟ, ବାଉଁଶ, କାଗଜ, ସାଇକେଲ ଆଦି ଅତ୍ୟାବଶ୍ୟକ ଦ୍ରବ୍ୟର ପ୍ରେରଣ ତଥା ଦରଦାମର ବ୍ୟାପକ ଅଭିବୃଦ୍ଧି ହେତୁ ସାଧାରଣ ଜନତା ଆର୍ଥିକ ଅସୁବିଧାର ସମ୍ମୁଖୀନ ହୋଇଥିଲେ । 'ସାଇକେଲ୍' କବିତାରେ ଗୋଦାବରୀଶ ଏହାର ସୂଚନା ଦେଇଛନ୍ତି—

''ଦୂରକୁ କର ହେ ନିକଟ 'ଟାୟାର'
ନିକଟକୁ କର ଦୂର
ଦୂରର ସମର ନିକଟକୁ ଆସି
କରେ ଏବେ ହରବର (୧୪୭) ।''

ବସ୍ତୁତଃ ଦ୍ୱିତୀୟ ବିଶ୍ୱଯୁଦ୍ଧ ଭାରତର ରାଜନୈତିକ ତଥା ଅର୍ଥନୈତିକ ଜୀବନରେ ଘାତ ପ୍ରତିଘାତ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଆନ୍ତର୍ଜାତୀୟ ସ୍ତରରେ ବହୁ ବିପର୍ଯ୍ୟୟ, ବେଦନା, ଅବିଶ୍ୱାସ ବୋଧ ସୃଷ୍ଟି କରିଥିଲା । ପାଶ୍ଚାତ୍ୟ କାବ୍ୟ ପରମ୍ପରାରେ ଏହି ଚେତନାର ପ୍ରତିଫଳନ ଘଟିବା ପରି ଭାରତୀୟ କାବ୍ୟ ପରମ୍ପରାରେ ଏହାର ପ୍ରତିଧ୍ୱନି ଝଂକୃତ ହୋଇଥିଲା । ଓଡ଼ିଆ ପ୍ରଗତିବାଦୀ କାବ୍ୟଧାରାରେ ଏହି ଚେତନାର ସମାନ୍ତରାଳ ପ୍ରବାହ ଉଲ୍ଲେଖନୀୟ ।

## ୪—ଭାରତର ମୁକ୍ତି ସଂଗ୍ରାମ

### କ-ଅଗଷ୍ଟ ବିପ୍ଳବ

ଜାତୀୟ କଂଗ୍ରେସର ନେତୃତ୍ୱରେ ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନ (QuitIndia Movement) ଆରମ୍ଭ ହୋଇଥିଲା । ଏହି ଆନ୍ଦୋଳନ ଅଗଷ୍ଟ ମାସରେ ଆରମ୍ଭ ହୋଇ ଥିବାରୁ ଭାରତ ଇତିହାସରେ 'ଅଗଷ୍ଟ ବିପ୍ଳବ' ରୂପେ ପରିଚିତ । ଏହାର ସଫଳତା ପାଇଁ ଗାନ୍ଧୀଜୀ 'କର ବା ମର' ଧ୍ୱନି ଦେଇଥିଲେ । ଏଣୁ ବ୍ରିଟିଶ ଶାସନକୁ ଅଚଳ କରିବା ପାଇଁ ଜନସାଧାରଣ ଆପ୍ରାଣ ଉଦ୍ୟମ କରିଥିଲେ । ଓଡ଼ିଶାରେ ମଧ୍ୟ ଏହି ବିପ୍ଳବର ବହ୍ନି ପ୍ରଜ୍ଜ୍ୱଳିତ ହୋଇଥିଲା । କଟକ, ପୁରୀ, ବାଲେଶ୍ୱର ଓ କୋରାପୁଟ ଆଦି ଜିଲ୍ଲାରେ ଆତଙ୍କରାଜ ସୃଷ୍ଟି ହୋଇଥିଲା । କୋରାପୁଟ ଜିଲ୍ଲାରେ ମାଥିଲି ଗ୍ରାମରେ ଲକ୍ଷ୍ମଣ ନାୟକ ବିପ୍ଳବର ନେତୃତ୍ୱ ନେଇ ଫାଶି ଖୁଣ୍ଟରେ ଝୁଲି ଶହୀଦ ହେଲେ ।

ନିତ୍ୟାନନ୍ଦ ମହାପାତ୍ରଙ୍କ 'ପାଞ୍ଚଜନ୍ୟ', ବୈକୁଣ୍ଠନାଥ ପଟ୍ଟନାୟକଙ୍କ 'ଅଗଷ୍ଟ ବିପ୍ଳବ' ଓ ରାଧାମୋହନ ଗଡ଼ନାୟକଙ୍କ 'ମାତଙ୍ଗିନୀ ଦେବୀ' ଆଦି କବିତାରେ ଏହି ବିପ୍ଳବର ଆହ୍ୱାନ ପ୍ରତିଧ୍ୱନିତ । ନିତ୍ୟାନନ୍ଦ ମହାପାତ୍ରଙ୍କ 'ପାଞ୍ଚଜନ୍ୟ'ରେ ଓଡ଼ିଶାର ଅଗଷ୍ଟ ବିପ୍ଳବର ଅମର ଶହୀଦ ଲକ୍ଷ୍ମଣ ନାୟକ, ନିଧି ମାହାଲିକ, ମାଷ୍ଟର ସାନାୟା ପ୍ରମୁଖଙ୍କର ଆତ୍ମତ୍ୟାଗର ଚିତ୍ର ପ୍ରତିଫଳିତ । ବ୍ରିଟିଶ ସରକାରଙ୍କ ନିର୍ମମ ଆକ୍ରମଣ, ନିଷ୍ଠୁର ଦମନ ଓ ନୃଶଂସ ଅତ୍ୟାଚାରରେ ବିପ୍ଳବର ମୁଖୁହୀନ ଅଗ୍ନିଶିଖା ପ୍ରଜ୍ଜ୍ୱଳିତ ହେବା କବି ନିତ୍ୟାନନ୍ଦ ଲକ୍ଷ୍ୟ କରିଛନ୍ତି । ଏଣୁ ଲକ୍ଷ୍ମଣ ନାୟକଙ୍କର ଫାଶିପରେ ମଧ୍ୟ ବିପ୍ଳବ ପାଇଁ ଆଶା ଆଶ୍ୱାସନାର ସ୍ୱର ଝଂକୃତ ହୋଇଛି (୧୪୮) । ଲକ୍ଷ୍ମଣ ନାୟକର ଆତ୍ମାହୁତି ମଧ୍ୟରେ ମୁକ୍ତି ପାଞ୍ଚଜନ୍ୟର ମନ୍ଦ୍ର ନିନାଦ ସେ ଶୁଣିଛନ୍ତି (୧୪୯) ।

ଅଗଷ୍ଟ ବିପ୍ଳବ ସମୟରେ ଓଡ଼ିଶାର ଉପକଣ୍ଠ ତମଲୁକରେ ନାରୀ ନେତ୍ରୀ ମାତଙ୍ଗିନୀ ଦେବୀଙ୍କର ବୀରତ୍ୱପୂର୍ଣ୍ଣ ଅଭିଯାନ ଓ ଆତ୍ମତ୍ୟାଗର ଅନନ୍ୟ ସାଧାରଣ ଆଲେଖ୍ୟ, କବି ରାଧାମୋହନ ଗଡ଼ନାୟକଙ୍କର 'ମାତଙ୍ଗିନୀଦେବୀ' କବିତାରେ ଅନୁରଞ୍ଜିତ ହୋଇଅଛି—

"ତମଲୁକର ରାସ୍ତା ପରେ
ବିରାଟ ପଲ୍ଟୁଆର
ଅଗଷ୍ଟର ମୁକ୍ତି ରଣେ
ହେଉଛି ଆଗୁସାର ।

× × ×

ବନ୍ଦିମାନ କଣ୍ଠ ତୋଳି
ଡାକଇ ବୀର ନାଦି
ବିଦେଶୀ ମୁଖେ ଗୃହିଁନା ଆଉ
ମୁକ୍ତି ଆଣେ ଖାଲି··············(୧୫୦) ।”

ବୈକୁଣ୍ଠନାଥଙ୍କ 'ଅଗଷ୍ଟ ବିପ୍ଳବ' କବିତାରେ ବ୍ରିଟିଶ ସରକାରଙ୍କର ସମସ୍ତ ନିର୍ଯ୍ୟାତନା ମଧ୍ୟରେ ବିପ୍ଳବର ଧ୍ୱଜାକୁ ଉଚ୍ଚରେ ଉଡ଼ାଇବା ପାଇଁ ଉଦ୍‌ବୋଧନ ଦେଇଛନ୍ତି —

"ଦୁଃଖ କଷଣ କାହିଁ ବରିବା
ଉଚ୍ଚେ ତେବେ ବି ଧ୍ୱଜା ଧରିବା
ଆସ ସବୁ ସଂଗ୍ରାମ-ସାଥିରେ
ଏ ଗଗନ ଆମ ଗୀତେ ଭରିବା (୧୫୧) ।”

ଇଂରେଜ ଶାସନର ଗୁଳି, ଗୋଳା, କମାଣ ଅନ୍ତରାଳରେ ସ୍ୱାଧୀନତା ପଥର ଲୌହକବାଟ ବେଶିଦିନ ବନ୍ଦ ହୋଇ ରହିପାରିବ ନାହିଁ । ଭାରତର ନବ-ଜାଗରଣର ଆହ୍ୱାନରେ ଏହା ଆପେ ଆପେ ଖୋଲିଯିବ ଓ ସ୍ୱାଧୀନତାର ନବ ରବି ଚତୁର୍ଦ୍ଦିଗକୁ ଆଲୋକିତ କରି ଉଇଁ ଆସିବ ବୋଲି ବୈକୁଣ୍ଠନାଥ 'ଅଗଷ୍ଟ ବିପ୍ଳବ' କବିତାରେ ସୂଚାଇଛନ୍ତି (୧୫୨) ।

ବସ୍ତୁତଃ ଜାତୀୟ ଜୀବନକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ଭାରତରେ ଅଗଷ୍ଟ ବିପ୍ଳବ ଜାତୀୟ କଂଗ୍ରେସର ଏକ ଗୁରୁତ୍ୱପୂର୍ଣ୍ଣ ଅବଦାନ । ଇତିହାସର ଏହି ଇଙ୍ଗିତ କବି ଚେତନାରେ ରକ୍ତିମନ୍ତ । ଏହା କେବଳ ଭାରତୀୟ ମୁକ୍ତି ସଂଗ୍ରାମ ନୁହେଁ ବିଶ୍ୱର ଯେକୌଣସି ଔପନିବେଶିକ ଶୋଷଣ ବିରୋଧରେ ଏକ ସର୍ବକାଳୀନ ଆହ୍ୱାନ ।

**ଖ—ଆଜାଦ ହିନ୍ଦ୍ ଫୌଜର ପ୍ରତିଧ୍ୱନି**

ନେତାଜୀ ସୁବାସଚନ୍ଦ୍ର ବୋଷଙ୍କର ଆଜାଦ ହିନ୍ଦ ଫୌଜ ଗଠନ ଓ ପୂର୍ବ ଦିଗରୁ ଦିଲ୍ଲୀ ଅଭିଯାନ ଭାରତର ମୁକ୍ତି ସଂଗ୍ରାମକୁ କ୍ଷିପ୍ର ତଥା ତୀବ୍ରତର କରିଦେଲା । ଦୀର୍ଘଦିନ ନିରସ୍ତ ଥିବା ଜନସାଧାରଣଙ୍କର ସାମରିକ ଜାତି ଭାବରେ ଅଭ୍ୟୁଦୟ ଜନ-ଜୀବନରେ ନୂତନ ଆଶା, ନୂତନ ଆଲୋକ ସଞ୍ଚାର କରିଥିଲା । ଭାରତର ପୁରପଲ୍ଲୀରେ ଅଗଷ୍ଟବିପ୍ଳବର ଆବାଜ ଓ ଆଜାଦ ହିନ୍ଦ ଫୌଜର ରଣହୁଙ୍କାର ଆବେଗ, ଉନ୍ମାଦନାର ଉର୍ମି ସୃଷ୍ଟି କରିଥିଲା । ପ୍ରତି କଣ୍ଠରେ 'ଦିଲ୍ଲୀଚଲୋ, ଦିଲ୍ଲୀ ଚଲୋ', 'ହିନ୍ଦୁସ୍ଥାନ ହମାରା' ଧ୍ୱନି ନିନାଦିତ ହୋଇଥିଲା । ଏଣୁ ଓଡ଼ିଶାର ବିଶିଷ୍ଟ କବି ଗତାନୁଗତିକ ଏହି ଧ୍ୱନିର ପ୍ରତିଧ୍ୱନି ଦେଇଥିଲେ ।

"ଜୟ ହିନ୍ଦ୍
ଜୟ ହିନ୍ଦ୍
ସିନ୍ଧୁ ସେ ପାରୁ ସେନାନୀ ସୁଭାଷ ଡାକେ
ଆଜାଦ ଫଉଜ ମୃତ୍ୟୁ କବଚ ପିନ୍ଧ
ଜୟ ହିନ୍ଦ୍
ଜୟ ହିନ୍ଦ୍ (୧୫୩) ।

ସ୍ୱାଧୀନତା ପାଇଁ 'ଦିଲ୍ଲୀଚଲୋ' ଧ୍ୱନି ଥିଲା ନେତାଜୀଙ୍କର ଏକ ସମୟୋଚିତ ଆହ୍ୱାନ । କାରଣ ମୋଗଲ ସାମ୍ରାଜ୍ୟର ପତନ ପରେ ମଧ୍ୟ ବ୍ରିଟିଶ ଶାସନ କାଳରେ ଦିଲ୍ଲୀ ହିଁ ଥିଲା, ଶାସନ, ସଂସ୍କୃତି ଓ ବାଣିଜ୍ୟର ଏକ ମୂଳ କେନ୍ଦ୍ର । ମୋଗଲ ବାଦଶାହାଙ୍କ ନିର୍ମିତ ଲାଲକିଲ୍ଲାର ଉତ୍ତୁଙ୍ଗ ଶିଖରରେ ବିଜୟର ବୈଜୟନ୍ତୀ ପତାକା ଉତ୍ତୋଳନ କରିବା ପାଇଁ ନେତାଜୀ ଭାରତର ଜନସାଧାରଣଙ୍କୁ ଆହ୍ୱାନ ଦେଇଥିଲେ—

"ଦିଲ୍ଲୀ ସହର, ଦିଲ୍ଲୀ ସହର
ଭାରତର ରାଜଧାନୀ
ଦିଲ୍ଲୀ ଦଖଲ ଭାରତ ଦଖଲ
ଏକ ବୋଲିନେ ମାନି ।
ଦିଲ୍ଲୀ ଭୂଇଁର ଲାଲକିଲ୍ଲା ପରେ
ବୈଜୟନ୍ତୀ ପତାକା ଟେକି
କାଳ ବକ୍ଷରେ ଲାଲ ଅକ୍ଷରେ
ଇତିହାସ ନେ ଲେଖି (୧୫୪) ।

କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧର ଶେଷ ବେଳକୁ ନେତାଜୀଙ୍କର ଏହି ଆହ୍ୱାନ ସ୍ତିମିତ ହୋଇ ଆସିଛି । ହିରୋସୀମା ଓ ନାଗାସାକିରେ ଆଟମ ବମ୍‌ର ନିକ୍ଷେପଣ ହେତୁ ଅକ୍ଷ ବାହିନୀର ପରାଜୟ ଆସନ୍ନ ହୋଇ ଯାଇଛି । ଏହି ସମୟରେ ଏକ ବିମାନ ଦୁର୍ଘଟଣାରେ ସୁଭାଷଙ୍କ ମୃତ୍ୟୁ ସମ୍ବାଦ ଆଜାଦ ହିନ୍ଦ ଫୌଜର ସବୁ ଆଶା, ଆକାଙ୍କ୍ଷା ଓ ଉନ୍ମାଦନାକୁ ଚୂରମାର କରି ଦେଇଛି । ଇଂରେଜମାନଙ୍କ ହାତରେ ଆଜାଦହିନ୍ଦ୍ ଫଉଜର ମୁଖ୍ୟ ନେତୃବର୍ଗ ବନ୍ଦୀ ହୋଇଛନ୍ତି । ଇତିହାସ ପ୍ରସିଦ୍ଧ ଲାଲକିଲ୍ଲାରେ ଯୁଦ୍ଧ ଅପରାଧୀ ଭାବରେ ସେମାନଙ୍କର ବିଚାର ହୋଇଛି । ଇତିହାସର ବହୁ ଉତ୍‌ଥାନ ଓ ପତନର ମୂକ ସାକ୍ଷୀ ସେହି ଲାଲକିଲ୍ଲାର ଇତିହାସ ଗୋଦାବରୀଶ ମହାପାତ୍ରଙ୍କର 'ଲାଲକିଲା' କବିତାରେ ସୂଚିତ ହୋଉଛି—

"ଲାଲକିଲା, ତୋର ନିବିଡ଼ ନୀରବ
ଗମ୍ଭୀର ଗର୍ଭୋଦରେ
ବନ୍ଦୀରେ ବନ୍ଦୀ ବାହାଦୁର ଶାହା
ହେଲେ ବିଦ୍ରୋହୀନାମେ ।
ଏତେ ଦିନ ପରେ ତୋ କୋଳେ ଶୁଭିଲା
'ଜୟହିନ୍ଦ୍', 'ଜୟହିନ୍ଦ୍'
ଆକୁମାରୀ ହିମାଚଳ ଚହଲାଇ
ଇମ୍ଫାଲ ଠାରୁ ସିଂଧୁ (୧୫୫) ।"

ସଚ୍ଚି ରାଉତରାୟଙ୍କ 'ଜୟହିନ୍ଦ' କବିତାରେ ଆଜାଦ ହିନ୍ଦ ଫଉଜର ବିଫଳତାର ସୂଚନା ଦିଆଯିବା ସଙ୍ଗେ ସଙ୍ଗେ ମୁକ୍ତି ଅଭିଯାନକୁ ଜାଗରୂକ ରଖିବା ପାଇଁ ପ୍ରେରଣା ଦିଆଯାଇଛି—

"ଏବେ ବି ତ ଦିଲ୍ଲୀ ବହୁଦୂରେ ।
ଆଗେ ଅଛି ଦୀର୍ଘ ପଥ, ପଶ୍ଚାତ୍ ଯେ ତାହାପାଇଁ ଝୁରେ ।
ମନେ ରଖ ଅଭିଯାତ୍ରି ! ସଂଗ୍ରାମ ତୋ ହୋଇନାହିଁ ଶେଷ
ଏବେ ବି ତ ହୋଇନାହିଁ ଆଜାଦ ତୋ ଶୁଭ ମହାଦେଶ ।
ଲାଲକିଲ୍ଲା ହୋଇନାହିଁ କିଣା,
ବହୁ ଜନ୍ମ ମୃତ୍ୟୁ ଡେଇଁ ମୁକ୍ତି ଶେଷେ ହେବ ସିନା କିଣା (୧୫୬) ।

ବିପ୍ଲବର ରକ୍ତରାଗ ମାଧ୍ୟମରେ ସ୍ୱାଧୀନ ଭାରତର ଇତିହାସ ରଚନା କରିବା ଥିଲା ନେତାଜୀ ସୁଭାଷଙ୍କ ଆଜାଦ୍ ହିନ୍ଦ୍ ଫୌଜର ଲକ୍ଷ୍ୟ । ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷ ବେଳକୁ ନେତାଜୀଙ୍କ ଆକସ୍ମିକ ଅନ୍ତର୍ଦ୍ଧାନ ଏହି ବୈପ୍ଳବିକ ଉଦ୍ୟମକୁ ଅସମାହିତ ରଖିଥିଲା ।

### ଗ—ଗାନ୍ଧୀବାଦୀ ଚେତନା

ଭାରତୀୟ ମୁକ୍ତି ଆନ୍ଦୋଳନ ଇତିହାସ ତଥା ଭାରତର ଜନଜୀବନରେ ଗାନ୍ଧୀଜୀ ଏକ ଅପରିହାର୍ଯ୍ୟ ବ୍ୟକ୍ତିତ୍ୱ । ବ୍ରିଟିଶ ସରକାରଙ୍କ ସଙ୍ଗେ ସ୍ୱାଧୀନତା ଲାଭ ପାଇଁ ସେ ଯେଉଁ ସଂଗ୍ରାମ କରିଥିଲେ ତାହା ଥିଲା ଅଭୂତ ଓ ଅଶ୍ରୁତପୂର୍ବ । ଗୁଳି-ଗୋଳା, ସଙ୍ଗିନ, ବାୟୋନେଟର ହିଂସ୍ର ଆକ୍ରମଣ ବିରୁଦ୍ଧରେ ତାଙ୍କର ଅହିଂସ୍ର-ସହନ ପ୍ରତିରୋଧ (Passive Resistance) ଥିଲା ଅନନ୍ୟ । ସାମାଜିକ ଭେଦଭାବ ନୀତି ଉପରେ ପ୍ରତିଷ୍ଠିତ ବ୍ରିଟିଶ୍ ସାମ୍ରାଜ୍ୟବାଦକୁ ଦୁର୍ବଳ କରିବା ପାଇଁ ଜାତୀୟ ଜୀବନରେ ଏକତାର

ଆହ୍ୱାନ, ପୁଞ୍ଜିବାଦୀ ଅର୍ଥନୀତି ବିରୁଦ୍ଧରେ ସ୍ୱାବଲମ୍ବନଶୀଳ କୃଷି ଓ କୁଟୀରଶିଳ୍ପର ପ୍ରସାର ଥିଲା ତାଙ୍କ ଚିନ୍ତା ଓ କର୍ମର ମର୍ମବାଣୀ । ଜାତିପ୍ରଥା ଆଦି ଯେଉଁସବୁ ସାମାଜିକ କୁସଂସ୍କାର ସମ୍ପୃକ୍ତ ଜାତିକୁ ବେଗବାନ୍ କରିବାରେ ଅନ୍ତରାୟ ସୃଷ୍ଟି କରୁଥିଲା ତା'ର ଦୂରୀକରଣ, ସର୍ବୋପରି ସତ୍ୟ, ସେବା ଓ ଅହିଂସାର ଭିତ୍ତି ଉପରେ ଆଧାରିତ ସମାଜ ପ୍ରତିଷ୍ଠା ଥିଲା ଗାନ୍ଧୀଜୀଙ୍କର ସାମାଜିକ ଓ ଆର୍ଥନୀତିକ ଆଭିମୁଖ୍ୟ ।

ଗାନ୍ଧୀଜୀଙ୍କ ସଂଗ୍ରାମର ଦୁଇଟି ଦିଗଥିଲା । ଯଥା:—

ଅ—ସତ୍ୟ, ଅହିଂସା ତଥା ସଂଯମ ପୂତ ମାନସିକ ବିପ୍ଳବ,

ଆ—ସ୍ୱାବଲମ୍ବନଶୀଳ ସମାଜ ଗଠନ

**ଅ—ସତ୍ୟ, ଅହିଂସା ତଥା ସଂଯମ ପୂତ ମାନସିକ ବିପ୍ଳବ**

ଅହିଂସା ତଥା ସଂଯମ ମାଧ୍ୟମରେ ମାନସିକ ବିପ୍ଳବ ପାଇଁ ଶକ୍ତି ସଂଚୟନ ଥିଲା ଗାନ୍ଧୀଜୀଙ୍କ ମୁକ୍ତି ସଂଗ୍ରାମର ପ୍ରକୃଷ୍ଟ ମାର୍ଗ । ଗାନ୍ଧୀଜୀଙ୍କ ଭାଷାରେ—"ଦୁନିଆକୁ ମୋର କୌଣସି ନୂଆ କଥା ଦେବାକୁ ନାହିଁ । ସତ୍ୟ ଓ ଅହିଂସା ପର୍ବତ ସମ ପୁରାତନ । ମୁଁ କେବଳ ଏତିକି କରିଛି ଯେ, ଯେତେ ବ୍ୟାପକ ପରିସରରେ ମୁଁ ପାରେ, ଏ ଉଭୟଙ୍କୁ ପ୍ରୟୋଗ କରିଛି । × × × × ଅହିଂସା ମୁନି ଋଷିମାନଙ୍କର ଓ ମଠ, ମସ୍‌ଜିଦର ଧର୍ମ ନୁହେଁ (୧୫୭) ।

ଗାନ୍ଧୀଜୀଙ୍କର ସତ୍ୟାଗ୍ରହର ଅର୍ଥ—ସତ୍ୟ-ଶକ୍ତି । ଏହି ସତ୍ୟ-ଶକ୍ତି ଥିଲା ଗାନ୍ଧୀଜୀଙ୍କର ଆତ୍ମ-ବିଶ୍ୱାସର କେନ୍ଦ୍ରବିନ୍ଦୁ । ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସଫଳତା ପାଇଁ ଏହି ସତ୍ୟ-ଶକ୍ତି ବା ଆତ୍ମଶକ୍ତି ତାଙ୍କୁ ଅନୁପ୍ରାଣିତ କରିଥିଲା । ଇଂରେଜ ସରକାରଙ୍କ ପ୍ରଚଳିତ ଅନ୍ୟାୟ-ଅନୀତି ବିରୋଧରେ ସତ୍ୟାଗ୍ରହକୁ ସେ ବଳବତ୍ତର ରଖିଥିଲେ । ମାନସିଂହଙ୍କ 'ବାପୁ ତର୍ପଣ', 'କମଳାୟନ' ଓ ଗୋଦାବରୀଶ ମହାପାତ୍ରଙ୍କ 'ସାବରମତୀର ମହାମାନବର ଚରଣ ତଳେ', 'ସନ୍ନ୍ୟାସୀ ରାଜା', ନିତ୍ୟାନନ୍ଦ ମହାପାତ୍ରଙ୍କ 'ପାଞ୍ଚଜନ୍ୟ', 'କାଳରାତ୍ରି', 'ସ୍ୱରାଜ୍ୟ ସଂହିତା' ଆଦି କବିତା-ଗୁଡ଼ିକରେ ଗାନ୍ଧୀଜୀଙ୍କର ସତ୍ୟ, ଅହିଂସା ତଥା ସଂଯମ ପୂତ ବ୍ୟକ୍ତିତ୍ୱ ପ୍ରତି ଶ୍ରଦ୍ଧାଞ୍ଜଳି ସମର୍ପିତ । ସେଥିମଧ୍ୟରୁ କେତେକର ଦୃଷ୍ଟାନ୍ତ ନିମ୍ନରେ ଦିଆଗଲା—

"ଦେହ ଖାଲି ଯାର ସତ୍ୟ ପୁଣ୍ୟ
କରୁଣା ମୈତ୍ରୀ ସାଧନାବିହେ
ତା'ର ପଦରେଣୁ କେବଳ ପଥର
ଧୂଳି ମୃତ୍ତିକା ନୁହେଁତ ନୁହେଁ ।"

(ବାପୁଜୀ-୧୯୪୮-ବାପୁ ତର୍ପଣ-ମାନସିଂହ ଗ୍ରନ୍ଥାବଳୀ ୧ମ ଖଣ୍ଡ-ପୃ ୬୭୦)

"କୋଟି ଶରବର ଅଶ୍ରୁ କରିଲି କଣ୍ଠମାଳା
ବକ୍ଷେ ବହିଲି ନିର୍ଯ୍ୟାତନର ଉଦ୍ଦହନଜାଳା
ନିକ୍ଷେପିତର ଆସନ କରିଲି କୁସୁମମସ୍ତ
ପୁଲକେ ବିତରି ସତ୍ୟ, ଶାନ୍ତି—କ ବରାଭୟ ।"

(ଯାବରମତୀର ମହାମାନବର ଚରଣତଳେ—ହେ ମୋର କଲମ-୧୯୫୧-ଗୋଦାବରୀଶ ଲେଖାବଳୀ ପୃ ୪୬)—

"ଶବପୁରେ ଆଜି ଶାନ୍ତିର ମହାମୁନି
ପଣ କଲେ ଆହା ! ଦେବେ ପ୍ରାଣବୀଜ ବୁଣି ।
ଧ୍ୱଂସ ଉପରେ ସୃଷ୍ଟି କରିବେ ତାଙ୍କ,
ସାବରମତୀର ମୁନି ସନ୍ନ୍ୟାସୀ ରାଜା"

(ସନ୍ନ୍ୟାସୀ ରାଜା ୧୯-୬-୪୮-ବଙ୍କା ଓ ସିଧା-ଗୋଦାବରୀଶ ଲେଖାବଳୀ-ପୃ ୬୭୬)

ଶାରୀରିକ ଅକ୍ଷମତା ନୁହେଁ; ମାନସିକ ଦୁର୍ବଳତା ହିଁ ଶହ ଶହ ବର୍ଷ ଧରି ଭାରତୀୟ ଜନସାଧାରଣଙ୍କୁ କ୍ଳୀବ, ଅଥର୍ବ ଓ ଜଡବତ୍ ନିଷ୍କ୍ରିୟ କରିଦେଇଛି । ସେମାନଙ୍କର ମାନସିକ ସ୍ଥୈର୍ଯ୍ୟ ପରାଧୀନତାକୁ ନିର୍ବିକାର ଭାବେ ବରଣ କରିଛି । ସୁତରାଂ ଗାନ୍ଧୀଜୀଙ୍କ ଚିନ୍ତା ଓ ଭାବନାରେ ଅନୁପ୍ରାଣିତ କବିଚେତନା ଆତ୍ମବିଶ୍ୱାସ ବଳରେ ସ୍ୱାଧୀନତା ଲାଭପାଇଁ ଉଦ୍‌ବୋଧନ ଦେଇଛି । (୧୫୮)

ମାନସିଂହଙ୍କ 'କମଳାୟନ'ରେ ମଧ୍ୟ ଇଂରେଜ ସରକାରଙ୍କ ବିରୋଧରେ ଗାନ୍ଧୀଜୀଙ୍କର ନିରସ୍ତ୍ର ସଂଗ୍ରାମର ମହତ୍ତ୍ୱ ଉଦ୍‌ଘୋଷିତ—

"ଆଜି ହିଂସା-ମିଥ୍ୟା-ମସ୍ତ ଧରି-ଦ୍ୱାର୍ ଦେଶେ
ହୋଇ ଉଦ୍‌ଭାନ୍ତ, ନମ୍ର କୃଷକର ବେଶେ
ଉଦ୍‌ଭ୍ରାନ୍ତ ମାନବେ ସତ୍ୟ, ପ୍ରେମ ବାର୍ତ୍ତା ବହେ
ସେ ଲଗି ତାଚ୍ଛଲ୍ୟ, ଦୁଃଖ, ନିର୍ଯ୍ୟାତନା ସହେ
ତାହାରି ନିର୍ଦ୍ଦେଶେ ଏହି ନିରସ୍ତ୍ର ସମର
ଭାରତ ଚଳାଏ ବିରୁଦ୍ଧରେ ଇଂରେଜର (୧୫୯) ।"

ଗାନ୍ଧୀଜୀ, ସତ୍ୟ ଓ ଅହିଂସାର ମନ୍ତ୍ରରେ ମାନସିକ ଶକ୍ତିକୁ ଉଦ୍‌ବୁଦ୍ଧ କରିବା ସଙ୍ଗେ ସଙ୍ଗେ ସ୍ୱାବଲମ୍ବନଶୀଳ ସମାଜ ବ୍ୟବସ୍ଥା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଗାନ୍ଧୀବାଦୀ ବାସ୍ତବବାଦର ଏହା ଥିଲା ଏକ ବିଶିଷ୍ଟ ବ୍ୟାବହାରିକ ପକ୍ଷ ।

**ଅ—ସ୍ୱାବଲମ୍ବନଶୀଳ ସମାଜ ଗଠନ**

ଭାରତର ରାଜନୈତିକ ସ୍ୱାଧୀନତାସହ ଅର୍ଥନୈତିକ ସ୍ୱାବଲମ୍ବନଶୀଳତା ଗାନ୍ଧୀଜୀଙ୍କର ଚିନ୍ତା ଓ କଳ୍ପନାର କେନ୍ଦ୍ରବିନ୍ଦୁ ଥିଲା । ସେଥିପାଇଁ ସେ ଶାରୀରିକ ଶ୍ରମକୁ ଅଗ୍ରାଧିକାର ଦେଉଥିଲେ । ନିଶା ନିବାରଣ, ଯୌତୁକ ପ୍ରଥାର ନିରୋଧ, ନାରୀ ସମାଜର କଲ୍ୟାଣ ଓ ଅସ୍ପୃଶ୍ୟତା ନିବାରଣ ଆଦି ପ୍ରଗତିଶୀଳ ଚିନ୍ତାଧାରା ସହ ଶାରୀରିକ ଓ ମାନସିକ ଶ୍ରମର ସମନ୍ୱୟ ପାଇଁ ସେ ଆହ୍ୱାନ ଦେଇଥିଲେ । ଶାରୀରିକ ଶ୍ରମର ମହତ୍ତ୍ୱ ସମ୍ପର୍କରେ ଅଭିମତ ଦେଇ ସେ 'ହରିଜନ' ପତ୍ରିକାରେ ଉଲ୍ଲେଖ କରିଥିଲେ—"ବୌଦ୍ଧିକ କାର୍ଯ୍ୟ ଅତି ଗୁରୁତ୍ୱପୂର୍ଣ୍ଣ । ଜୀବନ ଯୋଜନାରେ ଏହାର ନିଶ୍ଚିତ ରୂପେ ସ୍ଥାନ ରହିଛି । କିନ୍ତୁ ଶରୀର ଶ୍ରମ ଉପରେ ମୁଁ ଜୋର ଦିଏ । ମୋର ଦୃଢ଼ ମତ, କୌଣସି ଲୋକ ଶରୀର ଶ୍ରମ ଦାୟିତ୍ୱରୁ ବାଦ ଯିବା ଉଚିତ ନୁହେଁ । ଏହା ଦ୍ୱାରା ମସ୍ତିଷ୍କର କାର୍ଯ୍ୟ-ମୂଲ୍ୟ ମଧ୍ୟ ବଢ଼ିବ (୧୬୦) ।"

ଶାରୀରିକ ଶ୍ରମର ଉତ୍କର୍ଷ ହେତୁ ଗାନ୍ଧୀଜୀ କୁଟୀରଶିଳ୍ପର ପ୍ରଚଳନ ସପକ୍ଷରେ ଆହ୍ୱାନ ଦେଇଥିଲେ । କୁଟୀର ଶିଳ୍ପର ସଂପ୍ରସାରଣ ମାଧ୍ୟମରେ ଜାତୀୟ ଅର୍ଥନୀତିର ଭିତ୍ତିକୁ ସୁଦୃଢ଼ କରିବା ଥିଲା ତାଙ୍କର ଲକ୍ଷ୍ୟ । ସର୍ବ ଭାରତୀୟ କାବ୍ୟ ପରଂପରା ଭଳି ଓଡ଼ିଆ କାବ୍ୟ ସମ୍ଭାରରେ ଏହାର ପ୍ରତ୍ୟକ୍ଷ ପ୍ରଭାବ ସଂଘଟିତ ହୋଇଥିଲା । ମାନସିଂହଙ୍କ 'କରୁଣା କଲେଜ' ଗାନ୍ଧୀଜୀଙ୍କ ଚିନ୍ତାଧାରାର ସାକାର ପୀଠ । ସାଧନାର ମୌନ ତପସ୍ୟା ମଧ୍ୟରେ ଗାନ୍ଧୀଜୀଙ୍କ ଚିନ୍ତା ଓ କର୍ମ ଉହିଁରେ ଯୁଗପତ୍ ପ୍ରତିଫଳିତ । ଓଡ଼ିଶାର ପଲ୍ଲୀ ଅଞ୍ଚଳରେ କମଳ ଓ କରୁଣାଙ୍କର କଲେଜ ସ୍ଥାପନ ଓ ମାନବ ସେବାରେ ଆତ୍ମ ନିୟୋଜନ ଗାନ୍ଧୀଜୀଙ୍କର ସାବରମତୀ ଆଶ୍ରମର ଏକ ପ୍ରତିରୂପ । 'କରୁଣା କଲେଜ'ରେ ବୃତ୍ତି ଭିତ୍ତିକ ଶିକ୍ଷାର ପ୍ରଚଳନ ଗାନ୍ଧୀଜୀଙ୍କ ବାସ୍ତବବାଦୀ ଚିନ୍ତାର ଏକ ଆଲେଖ୍ୟ—

"ହୋଇ ଅଛି ଖୋଲା ଗ୍ରାମେ ଶିଳ୍ପ ବିଦ୍ୟାଳୟ
ବାଳକ-ବାଳିକାଙ୍କର ଅଙ୍ଗୁଳି-ନିଚୟ
ଶୈଶବରୁ ଜ୍ଞାନ ସାଥେ କରେ ଧନାର୍ଜନ
ହାତପାଇଟିକି ଘୃଣା ହୋଇଛି ବର୍ଜନ (୧୬୧) ।"

ପୁଣି କୃଷି ଓ ଶିଳ୍ପ ଲବ୍ଧ ଅର୍ଥ ଗ୍ରାମର ଯୌଥ-କଲ୍ୟାଣ ଉଦ୍ଦେଶ୍ୟରେ ବିନିଯୁକ୍ତ ହୋଇ ଗ୍ରାମବାସୀଙ୍କୁ ଉଦ୍‌ବୁଦ୍ଧ କରିଛି । ଗ୍ରାମର ସୀମନ୍ତିନୀଗଣ ଅହେତୁକ କଳହ ଓ ପରଚର୍ଚ୍ଚାରେ କାଳ ଅପଚୟ ନକରି ହସ୍ତଶିଳ୍ପର ସଂପ୍ରସାରଣ ପାଇଁ ସମୟ ନିୟୋଜନ କରିଛନ୍ତି—

"× × × × ଗ୍ରାମ ନାରୀଗଣେ
କଳର ସମସ୍ତ ଏବେ ବଞ୍ଚନ୍ତି ଯୀବନେ,
ଅବା ଲାଗି ହସ୍ତ ଶିଳ୍ପେ କରନ୍ତି ଅର୍ଜନ,
ସଞ୍ଚିତ ଯା ହୁଏ ବ୍ୟାଙ୍କେ । ଆନନ୍ଦ ବର୍ଦ୍ଧନ (୧୬୨) ।"

ଗାନ୍ଧୀଜୀଙ୍କ ନିଶାନିବାରଣ ଆହ୍ୱାନ ମଧ୍ଯ 'କମଳାୟନ'ର 'ନିଶା ନୋହି ପ୍ରଭୁ/ ଗ୍ରାମେ ହୋଇଅଛି ବର୍ଣ୍ଣ୍ୟ' ପଂକ୍ତିରେ ପ୍ରମୂର୍ତ୍ତି । ବସ୍ତୁତଃ ଗାନ୍ଧୀଜୀଙ୍କର ସ୍ୱାବଲମ୍ବନଶୀଳ ସମାଜ ଗଠନ, ବଳିଷ୍ଠ ଚରିତ୍ରବତ୍ତା ଓ କର୍ମ ପ୍ରେରଣାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ମାନସିଂହଙ୍କ 'ସ୍ୱରାଜ୍ୟାଶ୍ରମ'ର ନିରଂଜନ ସ୍ୱାଈଁ ଗାନ୍ଧୀଜୀଙ୍କ ପରିକଳ୍ପିତ ରାମରାଜ୍ୟର ସ୍ୱପ୍ନରେ ଅଧୀର ହୋଇଛି । ଏହି ରାମରାଜ୍ୟରେ ଅଧର୍ମ, ଅନ୍ୟାୟ ଓ ମିଥ୍ୟାଚାରର ବିଲୟ ଘଟିବ । ପୀଡ଼କ-ପୀଡ଼ିତ, ଶୋଷକ-ଶୋଷିତ ସମ୍ପର୍କ ବିଦୂରିତ ହେବ । ଜନସେବା ହେବ ଗାନ୍ଧୀଜୀଙ୍କ ଅଭିପ୍ସିତ ସ୍ୱାୟତ୍ତ ଶାସନ ଓ ସ୍ୱରାଜ୍ୟର ଲକ୍ଷ୍ୟ ।

"ଅଧର୍ମ, ଅନ୍ୟାୟ, ମିଥ୍ୟା, ଦୌରାତ୍ମ୍ୟର ହେବ ସମାପନ
ରାମରାଜ୍ୟ ଗ୍ରାମରାଜ୍ୟ ହେବ ପ୍ରତିଷ୍ଠିତ,
ପୀଡ଼କ ରହିବେ ନାହିଁ, ନଥିବେ ଶୋଷିତ
ସମଗ୍ର ଶାସନ ହେବ ସତ୍ୟ ଆଉ ସେବା ମନୋହରି (୧୬୩) ।"

ବର୍ଣ୍ଣ ବୈଷମ୍ୟର ଦୂରୀକରଣ ତଥା ପ୍ରତ୍ୟେକ ବ୍ୟକ୍ତିର ଜାତିପ୍ରୀତି ହେବା ମନୋଭାବ ହିଁ ଗାନ୍ଧୀଜୀଙ୍କ ଜାତୀୟ ପ୍ରଗତିର ପରିମାପକ । କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ 'ହେ ମୋର ଉନ୍ମୁକ୍ତ ଜାତି' କବିତାରେ ଏହି ଗାନ୍ଧୀବାଦୀ ଚିନ୍ତା ପ୍ରତିଫଳିତ ।

ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଚେତନା ପରିପ୍ରେକ୍ଷୀରେ ଗାନ୍ଧୀଜୀଙ୍କର ଦୂରଦର୍ଶନ ଆଦର୍ଶବାଦ ଅପେକ୍ଷା ଅଧିକ ବାସ୍ତବବାଦୀ । ଭାରତର ରାଜନୈତିକ ସ୍ୱାଧୀନତା କେବଳ ତାଙ୍କର ଆଭିମୁଖ୍ୟ ନ ଥିଲା । ତାଙ୍କର ସଂଗ୍ରାମ ସ୍ୱାବଲମ୍ବନଶୀଳ ସମୃଦ୍ଧ ସ୍ୱରାଜ୍ୟ ଗଠନ ଉଦ୍ଦେଶ୍ୟରେ ଥିଲା ଅଭିପ୍ରେତ ।

**୫—ସ୍ୱାଧୀନତା ପ୍ରାପ୍ତି : ପ୍ରତିଭବ ଓ ପ୍ରତିକ୍ରିୟା : ସାମ୍ପ୍ରଦାୟିକ ବିଦ୍ୱେଷ**

ସ୍ୱାଧୀନତା ଲାଭ ପାଇଁ କରାଚି ଠାରୁ ଚଟ୍ଟାଗଙ୍ଗ, କୁମାରିକାଠାରୁ କାଶ୍ମୀର ପର୍ଯ୍ୟନ୍ତ ଜନ ଜାଗରଣ ଉଦ୍‌ବେଳ ହୋଇ ଉଠିଥିଲା । ହିନ୍ଦୁ ମୁସଲମାନ ଭାଇ ଭାଇ ଭାବେ ମୋହନ ଦାସ, ଗଫୁର ଖାଁ—ମହାତ୍ମା ଗାନ୍ଧୀ, ସୀମାନ୍ତ ଗାନ୍ଧୀ କାନ୍ଧରେ କାନ୍ଧ ମିଳାଇ ସ୍ୱାଧୀନତା ସଂଗ୍ରାମ ପାଇଁ ଲଢ଼ିଥିଲେ । କିନ୍ତୁ ଇଂରେଜ ସରକାରଙ୍କ ଭେଦାତ୍ମକ

କୂଟନୀତି ଫଳରେ ସମସ୍ତ ଆଶା ଆକାଙ୍‌କ୍ଷା ପଣ୍ଡ ହୋଇଗଲା । ହିନ୍ଦୁ-ମୁସଲମାନ-ମାନଙ୍କୁ ପୃଥକ୍ ଜାତି ଭାବେ ଚର୍ଚ୍ଚିତ କରାଯାଇ ଅଖଣ୍ଡ ଭାରତକୁ ଦ୍ୱିଖଣ୍ଡିତ କରାଗଲା । ଏହିପରି କାଳର କ୍ରୂର ଅଟ୍ଟହାସ୍ୟ ମଧ୍ୟରେ ଦିଲ୍ଲୀରେ ଅଗଷ୍ଟ ପନ୍ଦର ଓ କରାଚିରେ ଅଗଷ୍ଟ ଚଉଦ ତାରିଖ ୧୯୪୭ ମସିହାରେ ସ୍ୱାଧୀନତା ଉତ୍ସବର ଆନନ୍ଦ ଲହରୀ ଉଠିଥିଲା । ଲାଲକିଲ୍ଲାରେ ୟୁନିୟନ ଜାକ ପତାକା ସ୍ଥଳରେ ଭାରତର ତ୍ରିରଙ୍ଗା ପତାକା ନୂତନ ଆଶା ଓ ଆକାଙ୍‌କ୍ଷା ନେଇ ଉଡ଼ିଥିଲା । ଗୋଦାବରୀଶ ମହାପାତ୍ରଙ୍କ 'ଅଗଷ୍ଟ ପନ୍ଦର', ଗଡ଼ନାୟକଙ୍କ 'ମୁକ୍ତ ଭାରତ ଆଜି', କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର 'ହେ ମୋର ଉନ୍ମୁକ୍ତ ଜାତି' ଓ ସଚ୍ଚିଦାନନ୍ଦ ରାଉତରାୟଙ୍କର '୧୫ ଅଗଷ୍ଟ ୧୯୪୯' ଆଦି କବିତାରେ ଏହି ଉତ୍ସାହ ଓ ଉନ୍ମାଦନାର ଚିତ୍ର ପ୍ରତିଫଳିତ ।

''ତାହାର ଆଲୋକ ଆଜି ଚଉଦିଗ କରେ ଉଦ୍‌ଭାସିତ
ସିନ୍ଧୁ, ଗୋଦାବରୀ, ଗଙ୍ଗା, ବ୍ରହ୍ମପୁତ୍ର, ନର୍ମଦା ସେବିତ
ବିଦର୍ଭ, ଗୁର୍ଜର, ଅଙ୍ଗ, ବଙ୍ଗ, ରାଢ଼, କେରଳ, ଉତ୍କଳ
ନନ୍ଦିତ ଏ ଜାତି ଆଜି ଉଦ୍‌ବେଳିତ ପ୍ରାଣ ଛଳ ଛଳ ।''

(ଅଗଷ୍ଟ ପନ୍ଦର-କଣ୍ଟା ଓ ଫୁଲ-ଗୋଦାବରୀଶ ଲେଖାବଳୀ-ପୃ ୨୦୩)

''ମୁକ୍ତ ଭାରତ ଆଜି, ଲୁପ୍ତ ଆମର କାଳରାତ୍ରି
ବିଜୟର ଗୌରବ ଲଭିଅଛୁ ଆମ ଦେଶ ସଂଗ୍ରାମ ଯାତ୍ରୀ
ଆମ ଦେଶ ସୈନ୍ୟ
ନିଃଶେଷ ଆଜି ସକ୍ଷି, ଲାଂଛନା ଦୈନ୍ୟ ।''

(ମୁକ୍ତ ଭାରତ ଆଜି-ମୌସୁମୀ-ଗଡ଼ନାୟକ ଗ୍ରନ୍ଥାବଳୀ-ପୃ ୪୧୪)

''ଆଜି ତୁମେ ରୁଦ୍ଧ ନୁହ, ବନ୍ଧ ନୁହ, ଆଜି ତୁମେ ଉନ୍ମୁକ୍ତ ସୁନ୍ଦର
ପୃଥିବୀର ଚତୁର୍ଦ୍ଦିଗେ ନୂତନ ଜୀବନ ଢାଳ ସତ୍ୟ ଶୁଭଙ୍କର''

(ହେ ମୋର ଉନ୍ମୁକ୍ତ ଜାତି ୧୯୫୧-କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ ପୃ ୨୨୩) ।

''ଇତିହାସର ସେ ରକ୍ତ ତାରିଖ
ବହ୍ନିମାନ ଶିଖା ପରି ଜଳେ
ଆକାଶତଳେ
ବନହୁଲସୀ, ଶିମୁଳି ଫୁଲ,
କଦଳୀପତ୍ର ଓ ଶ୍ୱେତ ପଦ୍ମର ପତାକା ଉଡ଼େ''

(୧୫ ଅଗଷ୍ଟ ୧୯୪୯, ଅଭିଯାନ-ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ-ପୃ ୫୩୯)

ମାତ୍ର ଏହି ବିଜୟ ଉତ୍ସବ ସ୍ୱାଧୀନ ଭାରତର ମୁଖ୍ୟ ସେନାପତି ମହାତ୍ମା ଗାନ୍ଧୀଙ୍କୁ ସୁଖୀ କରି ପାରିନଥିଲା । ଭାରତ ଭୂଖଣ୍ଡରୁ ଦ୍ୱେଷ ଓ ଅଶାନ୍ତି ଦୂର କରିବା ପାଇଁ ସେ ଅଧୀର-ଆକୁଳ ହୋଇ ପଡ଼ିଥିଲେ । ପ୍ରାର୍ଥନାସଭାକୁ ଯିବାବେଳେ ଆତତାୟୀର ଗୁଳି ଷ୍ଟେଟରେ ସତ୍ୟ, ଶାନ୍ତି, ସେବା, ଅହିଂସାର ପୂଜାରୀ ଗାନ୍ଧୀଜୀ ଟଳି ପଡ଼ିଥିଲେ । ଏଣୁ ହର୍ଷ ବିଷାଦ, ଆଶା-ଆଶଙ୍କା ତଥା ଆତଙ୍କ-ଆଲୋଡ଼ନ ମଧ୍ୟରେ ନବଭାରତର ଜନ୍ମ ନେଇଥିଲା । ସାମ୍ପ୍ରଦାୟିକ ବିଦ୍ୱେଷର ଭିତ୍ତି ପ୍ରସ୍ତର ଉପରେ ଆରମ୍ଭ ହୋଇଥିଲା ତାର ପ୍ରଥମ ପଦଯାତ୍ରା ।

ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ସାମ୍ପ୍ରଦାୟିକ ସଂଘର୍ଷ ଭାରତୀୟ ଜନସାଧାରଣଙ୍କ ମଧ୍ୟରେ ତୀବ୍ର ଅଶାନ୍ତି ଓ ଅସ୍ଥିରତା ସୃଷ୍ଟି କରିଥିଲା । ୧୯୪୬ ମସିହାରେ କଲିକତାର ମାଟିଆ ବୁରୁଜଠାରେ ହିନ୍ଦୁ-ମୁସଲମାନ ଦଙ୍ଗା ଜାତୀୟ ଐକ୍ୟକୁ ଖଣ୍ଡ ବିଖଣ୍ଡିତ କରିଥିଲା । ମାନସିଂହଙ୍କର 'ମାଟିଆ ବୁରୁଜରେ ଓଡ଼ିଆମାନଙ୍କ ଐତିହାସିକ କୀର୍ତ୍ତି' କବିତାରେ ଏଇ ସାମ୍ପ୍ରଦାୟିକ ସଂଘର୍ଷର ଚିତ୍ର ପ୍ରତିଫଳିତ—

"ସାମ୍ପ୍ରଦାୟିକ ଦଙ୍ଗା ଚାଲିଛି,—
ହିନ୍ଦୁ, ମୁସଲମାନ,
ପାଗଲେ ଖୋଜଇ ଏକ ଆରେ କର
ରକ୍ତ ଉଷ୍ଣ ପ୍ରାଣ
ମଜଣ ହୋଇଛି ରାତା ରାତି
ଏଇ କଲିକତା ନଗରୀରେ
ବନ୍ୟ ପଶୁ ସେ-ରାକ୍ଷସ ତା'ର
ଜାଗ୍ରତ ଧମନୀରେ (୧୬୪) ।

"ମାଟିଆ ବୁରୁଜରେ ଜନ୍ମ' କବିତାରେ କବି ରାଉତରାୟ ଦଙ୍ଗାଗ୍ରସ୍ତ ମାଟିଆ ବୁରୁଜର କରୁଣ ବିଭତ୍ସ ପୃଷ୍ଠଭୂମିକାରେ ଆଶା-ଆଶ୍ୱାସନାର ଚନ୍ଦ୍ରୋଦୟର ସୂଚନା ଦେଇଛନ୍ତି (୧୬୫) । କିନ୍ତୁ ସ୍ୱାଧୀନତାର ପରବର୍ତ୍ତୀ କାଳରେ ଏହି ସାଂପ୍ରଦାୟିକ ଦଙ୍ଗାର ବିଭୀଷିକା ଅନବଦମିତ ରହିଛି । ଗଡ଼ନାୟକଙ୍କ 'ଗୁର୍ଖାସିପାହୀ' ଓ ରାଉତରାୟଙ୍କ 'ଫହିତା'ରେ ଏହାର ପ୍ରତିଫଳନ ଘଟିଛି । ହିନ୍ଦୁ-ମୁସଲମାନ ସଂଘର୍ଷରେ ପାକିସ୍ତାନର ପଶ୍ଚିମ ପଞ୍ଜାବରୁ ବିତାଡ଼ିତ ଓ ଭାରତର କୁଆଲାପୁରରେ ଆଶ୍ରିତ ହିନ୍ଦୁମାନଙ୍କର ପ୍ରତିଶୋଧ ପରାୟଣ ମନୋଭାବର ଚିତ୍ର ଗଡ଼ନାୟକ 'ଗୁର୍ଖାସିପାହୀ' କବିତାରେ ଅବତାରଣା କରିଛନ୍ତି (୧୬୬) । 'ଫହିତା'ରେ କବି ରାଉତରାୟ ଭାରତ-ପାକିସ୍ତାନ

ସୀମାନ୍ତରେ ସଂଘଟିତ ସାଂପ୍ରଦାୟିକ ଦଙ୍ଗାର ଅମାନବିକ ଉଦ୍ୟମ ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି । ଏହି ପରିପ୍ରେକ୍ଷୀରେ ରାଷ୍ଟ୍ରୀୟ ତଥା ଧର୍ମୀୟ ସଂକୀର୍ଣ୍ଣତାକୁ ସେ ଶାଣିତ ଭାବେ ଆକ୍ଷେପ କରିଛନ୍ତି—

"କମି କରିପ୍‌ର ରାଜ୍ୟେ
ନିରସ୍ତ୍ରୀ ସେ ମାନସାଙ୍କ ଦେଶେ
ନେଇ ନକ୍‌ସାର ଜାଲେ
ଛିନ୍ନ ହୋଇ ମରେ ଅବଶେଷେ ।
ପୁଣି ଦେଶ ଅଭ୍ୟନ୍ତରେ
ଜାତି, ଧର୍ମ, ମତର ଅନ୍ତରେ
ଧର୍ମ ସଙ୍ଗେ ଧର୍ମ ଯୁଝେ
ଈଶ୍ୱର ସଙ୍ଗରେ ଈଶ୍ୱର (୧୬୭) ।"

ସାମ୍ପ୍ରଦାୟିକ ବିଦ୍ୱେଷ ଭାରତର ଜାତୀୟ ଜୀବନର ଶାନ୍ତି, ମୈତ୍ରୀ ଓ ସଦ୍‌ଭାବନାକୁ ବିନଷ୍ଟ କରିଥିଲା । କୃଷ୍ଣଚ୍ଛାୟା ମଧ୍ୟରେ ରାହୁଗ୍ରସ୍ତ ସୂର୍ଯ୍ୟ ଉଦୟପରି ଏକ ବିଷାଦ ବିମର୍ଷ ପରିବେଶ ମଧ୍ୟରେ ଭାରତର ସ୍ୱାଧୀନତାର ସୂର୍ଯ୍ୟୋଦୟ ଘଟିଥିଲା ।

## ୭—ସୀମା କମିଶନ ରିପୋର୍ଟ ଜନିତ କ୍ଷୋଭ

୧୯୪୮ ମସିହା ଜାନୁଆରୀ ମାସରେ କେବଳ ମୟୂରଭଞ୍ଜକୁ ବାଦ ଦେଇ ପଚିଶିଟି ପୂର୍ବତନ ଗଡ଼ଜାତ ଓଡ଼ିଶା ସହିତ ମିଶିଗଲା । ଏହା ଫଳରେ ଓଡ଼ିଶାର ଜାତୀୟ, ରାଜନୈତିକ ତଥା ସାଂସ୍କୃତିକ ଚେତନାରେ ଅପୂର୍ବ ଉତ୍ସାହ, ଉନ୍ମାଦନା ସୃଷ୍ଟି ହୋଇଥିଲା । ମାତ୍ର ବିହାର ସରକାରଙ୍କ ସହାୟତାରେ ସରେଇକଳା ଓ ଖରସୁଆଁ ଗଡ଼ଜାତ ଅଞ୍ଚଳ ଦୁଇଟିକୁ ବିହାର ସହ ମିଶାଇଦେବା ପାଇଁ ଆନ୍ଦୋଳନ ଚାଲିଲା । ଭାରତ ସରକାର ୧୯୪୮ ମସିହା ମଇ ମାସରେ ସରେଇକଳା ଓ ଖରସୁଆଁକୁ ପୁଣି ଥରେ ବିହାରରେ ମିଶାଇ ଦେବା ପାଇଁ ନିଷ୍ପତ୍ତି କଲେ । ୧୯୪୯ ମସିହା ଅଗଷ୍ଟ ମାସଠାରୁ ଆଇନତଃ ସରେଇକଳା ଖରସୁଆଁ ବିହାର ସହ ମିଶିଗଲା ।

ଭାରତର ବିଭିନ୍ନ ଅଞ୍ଚଳରେ ଭାଷାଭିତ୍ତିକ ପ୍ରଦେଶ ଗଠନ ପାଇଁ ଆନ୍ଦୋଳନ ମୁଣ୍ଡଟେକି ଉଠିବାରୁ ଭାରତ ସରକାର ୧୯୫୩ ମସିହାରେ ସୟଦ୍ ଫଜଲ ଅଲ୍ଲୀଙ୍କ ଅଧ୍ୟକ୍ଷତାରେ ରାଜ୍ୟ ପୁନର୍ଗଠନ କମିଶନ ନିଯୁକ୍ତ କରି ଭାଷା ଭିତ୍ତିକ ପ୍ରଦେଶ ଗଠନ ଆନ୍ଦୋଳନର ଶେଷ ନିଷ୍ପତ୍ତି କରିବାକୁ ଚାହିଁଥିଲେ । କେନ୍ଦ୍ରସରକାରଙ୍କର ଏହି ଘୋଷଣା ହେତୁ ଓଡ଼ିଶାରେ ନୂତନ ଆଶା, ଆକାଙ୍‌କ୍ଷା ଜାଗ୍ରତ ହୋଇଥିଲା । ଓଡ଼ିଶା

ରାଜ୍ୟ ସରକାର ବିଭିନ୍ନ ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଗୋଷ୍ଠୀଙ୍କ ସହାୟତାରେ ନାନା ଗବେଷଣା ଓ ଅନୁସନ୍ଧାନ କରି ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ତଥ୍ୟ-ପୂର୍ଣ୍ଣ ସ୍ମାରକପତ୍ର ଉକ୍ତ କମିଶନଙ୍କ ସମ୍ମୁଖରେ ଉପସ୍ଥାପିତ କଲେ । ମାତ୍ର ଉକ୍ତ କମିଶନ ବିହାର ସହ ଷଡ଼ଯନ୍ତ୍ର କଲା ଓ ସେରାଇକଲା ଓ ଖରସୁଆଁ ମିଶ୍ରଣ ସପକ୍ଷରେ ନିଷ୍ପତ୍ତି ନେଲେ । କମିଶନଙ୍କ ରିପୋର୍ଟ ୧୯୫୫ ମସିହାରେ ପ୍ରକାଶିତ ହେଲାପରେ ଓଡ଼ିଶାରେ ପ୍ରବଳ ଜନ ବିକ୍ଷୋଭ ଜାଗରିତ ହୋଇଥିଲା । ଗୋଦାବରୀଶ ମହାପାତ୍ରଙ୍କ 'ଜଳରେ ଅନଳ', 'ରାସ୍ତା' 'ଖଣ୍ଡଗିରି ତଳେ' ଓ ରାଧାମୋହନ ଗଡ଼ନାୟକଙ୍କ 'ହେ ମୋର ଜାତୀୟ ବୀର' ଆଦି କବିତାରେ ଏହାର ସୂଚନା ପ୍ରଦତ୍ତ ।

ଓଡ଼ିଶାର ସଂଘବଦ୍ଧ ପ୍ରଗତି ପାଇଁ ଏହି ଭୌଗୋଳିକ ଐକ୍ୟର ଏକ ଐତିହାସିକ ଆବଶ୍ୟକତା ଥିଲା । ଏଣୁ ଗୋଦାବରୀଶ ମହାପାତ୍ର 'ଜଳରେ ଅନଳ' କବିତାରେ ଓଡ଼ିଶା ପ୍ରତି ହୋଇଥିବା ଏହି ଅନ୍ୟାୟ ବିରୋଧରେ ବିପ୍ଳବର ବହ୍ନି ପ୍ରଜ୍ଜ୍ୱଳିତ କରିବା ପାଇଁ ଆହ୍ୱାନ ଦେଇଥିଲେ —

''ଶାସକ ନିଷ୍ଠୁର ଆଜି ଅବିମୃଷ୍ୟ
ବିମୃରକ ଦଳ
ଧରିଛନ୍ତି ଟେକି ଏକ ସତ୍ୟ ନାମେ
ମିଥ୍ୟା କର ବାଳ

× × ×

ଖାଷ୍ଟ ତୁମ୍ଭେ ଭୟଙ୍କର ନ୍ୟାୟହୀନ
କମିଶନ ଲେଖା
ଉତ୍କଳର ଯାତ୍ରା ପଥେ ବନ୍ଧୁ ତୁମେ
ଏକ ମାତ୍ର ସଖା······(୧୬୮) ।''

ଓଡ଼ିଶାର ଦାବୀ ପାଇଁ ଯେଉଁ ଜନଜାଗରଣ ଦେଖାଦେଇଥିଲା ତାକୁ ଦବାଇବା ପାଇଁ ଶାସନରେ ଅଧିଷ୍ଠିତ ନେତୃବୃନ୍ଦ ଲାଠି, ଗୁଳି, ଲୁହବୁହା ଗ୍ୟାସ ଆଦି ପ୍ରୟୋଗ କରିଥିଲେ । ଜାତିପ୍ରାଣ ଜନତାର ରକ୍ତରେ ବିଚ୍ ରାସ୍ତା ରକ୍ତରଞ୍ଜିତ ହୋଇ ଯାଇଥିଲା । ଗୋଦାବରୀଶ ମହାପାତ୍ରଙ୍କ 'ରାସ୍ତା' କବିତାରେ ଏହି କରୁଣ ପରିସ୍ଥିତିର ସଙ୍କେତ ଦିଆଯାଇଛି—

"ଶାସନର ଚଣ୍ଡାଘାତେ ବୁଧିସିକ୍ତ
ହେଲ ତୁମେ ସ୍ରଷ୍ଟା
ସତ୍ୟ ଅହିଂସାର ନାମେ ରକ୍ତ
ଏଠି ଶସ୍ତା, ବଡ଼ ଶସ୍ତା (୧୬୯)।"

'ହେ ମୋର ଜାତୀୟ ବୀର' କବିତାରେ କବି ଗଡ଼ଜାତୀୟକ ମଧ୍ୟ ଝଡ଼େଇକଲା, ଖରସୁଆଁ ଅଞ୍ଚଳ ଦୁଇଟି ବିଚ୍ଛିନ୍ନ ହୋଇ ଯିବାରୁ ଖେଦ ପ୍ରକାଶ କରିଅଛନ୍ତି (୧୭୦)। ଉତ୍କଳର ବିଚ୍ଛିନ୍ନାଞ୍ଚଳ ସମୂହର ଏକୀକରଣ ଓ ଭାରତର ସ୍ୱାଧୀନତା ଲାଭ ପାଇଁ ଯେଉଁ ବ୍ୟଗ୍ରତା ଓ ଉନ୍ମାଦନା ସୃଷ୍ଟି ହୋଇଥିଲା, ତାହା ସ୍ୱାଧୀନତା ଲାଭ ଜନିତ ଆତ୍ମସନ୍ତୋଷ ତଥା ସୀମାକମିଶନ୍‌ର ଉପେକ୍ଷା ଯୋଗୁଁ କ୍ରମଶଃ ଶିଥିଳ ହୋଇ ପଡ଼ିଥିଲା।

## ୭—ଚୀନ-ଭାରତ ଯୁଦ୍ଧ

ଭାରତର ତତ୍କାଳୀନ ପ୍ରଧାନ ମନ୍ତ୍ରୀ ଜବାହାରଲାଲ ନେହେରୁ ଓ ଚୀନର ପ୍ରଧାନମନ୍ତ୍ରୀ ଚୁଓ-ଏନ୍-ଲାଇଙ୍କ ମଧ୍ୟରେ ସଂଘଟିତ ମୈତ୍ରୀ ଚୁକ୍ତି ବିଶ୍ୱଶାନ୍ତିର ବିକାଶ ପଥରେ ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଥିଲା। ଏହା ସତ୍ତ୍ୱେ ହିନ୍ଦ୍-ଚୀନ ଭାଇ ଭାଇ ଆହ୍ୱାନ ଅବସ୍ଥା ଚକ୍ରରେ ଭିନ୍ନ ମୋଡ ନେଇଥିଲା। ଉଭୟ ଦେଶ ମଧ୍ୟରେ ରାଷ୍ଟ୍ରୀୟ ସୀମାରେଖା ନେଇ ଦୁର୍ଭାଗ୍ୟବଶତଃ ଭୁଲ ବୁଝାମଣା ସୃଷ୍ଟି ହେଲା। ୧୯୬୨ ମସିହାରେ ଚୀନ ଭାରତର ସୀମାନ୍ତବର୍ତ୍ତୀ ଅଧିକାଂଶ ଅଞ୍ଚଳ ଦଖଲ କରିନେବା ପାଇଁ ତତ୍ପର ହେଲା। ଫଳରେ ଦୁଇ ପଡ଼ୋଶୀ ରାଷ୍ଟ୍ର ସଂଘର୍ଷରେ ବ୍ୟାପୃତ ହେଲେ। ଜାତୀୟ ପ୍ରଗତି, ଐକ୍ୟ ଓ ସଂହତିର ସୁରକ୍ଷା ତଥା ଜନମାନସରେ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି କରିବା ପାଇଁ ସର୍ବଭାରତୀୟ ସାହିତ୍ୟ ଚେତନାରେ ସେହି ସମୟରେ ଯେଉଁ ଉଦ୍‌ବୋଧନ ଦିଆଯାଇ-ଥିଲା, ଓଡ଼ିଆ କବିତାରେ ତା'ର ପ୍ରତିଧ୍ୱନି ଝଂକୃତ ହୋଇଥିଲା। ଦୁଇ ଦେଶ ମଧ୍ୟରେ ସଂଘର୍ଷ ଦୃଷ୍ଟିରୁ କବିତାଗୁଡ଼ିକରେ କ୍ଷୋଭ, ଆକ୍ଷେପ ଓ କଟୂକ୍ତି ପ୍ରକଟିତ ହେବା ସେହି ସମୟରେ ଅସ୍ୱାଭାବିକ ନ ଥିଲା। ତନ୍ମଧ୍ୟରୁ କେତେକ ବିଶିଷ୍ଟ କୃତି ନିମ୍ନରେ ଆଲୋଚିତ ହେଉଛି।

ପ୍ରଥମ ମହାଯୁଦ୍ଧକାଳୀନ "ଟ୍ରେଞ୍ଚ-ପୋଏଟ୍" ( Trench Poet )ମାନଙ୍କ କବିତା ଭଳି କୁମାର ମହାନ୍ତିଙ୍କ 'ପାଙ୍ଗଙ୍ଗ ହ୍ରଦ କୂଳେ' କବିତା ଯୁଦ୍ଧକାଳୀନ ପ୍ରତ୍ୟକ୍ଷ ଅନୁଭୂତିର ଏକ ବାସ୍ତବ ଚିତ୍ର। କିନ୍ତୁ ପ୍ରଥମ ବିଶ୍ୱଯୁଦ୍ଧ ପରିପ୍ରେକ୍ଷୀରେ ରୁପର୍ଟ ବ୍ରୁକ୍, ସିଗଫ୍ରେଡ୍ ଶାସୁନ୍, ଓ୍ୱିଲ୍‌ଫ୍ରେଡ୍ ଓନ୍ ପ୍ରମୁଖଙ୍କ କବିତାରେ ବିଷାଦଗ୍ରସ୍ତ ଜୀବନ

ପ୍ରତିଫଳିତ ହୋଇଥିବାବେଳେ 'ପାଙ୍ଗଙ୍ଗ୍ ହ୍ରଦ କୂଳେ' କବିତାରେ ଜାତୀୟ ଭାରତୀୟ ଓ ଐକ୍ୟର ସ୍ୱର ପ୍ରତିଧ୍ୱନିତ । କବିତାର ପ୍ରଥମ ପର୍ଯ୍ୟାୟରେ ଲଦାକର ତୁଷାରାଚ୍ଛନ୍ନ ପାର୍ବତ୍ୟ ଅଞ୍ଚଳରେ କବିସୁଲଭ ସ୍ୱପ୍ନ-ମେଦୁର ଭାବନା ଚୀନା ସୈନ୍ୟମାନଙ୍କ ଉପସ୍ଥିତିରେ ତୁଟି ଯାଇଛି—

"× × ହଠାତ୍ ମୋ ସ୍ୱପ୍ନ ଗଲା ତୁଟି
ଏକ ଅସମ୍ଭବ ଶବ୍ଦର ତୋଡ଼ରେ
ଆଉ ପାଖରେ ପାଙ୍ଗଙ୍ଗ୍ ହ୍ରଦର
× × ମୂର୍ତ୍ତି । ସଶସ୍ତ୍ର ଚୀନା କେଇଜଣ
ଘୂରୁଥିଲେ ଅଣ୍ଡା ଲୁର ଗରିଣୀ ନେଇ (୧୬୧) ।

ସମ୍ମୁଖରେ ଦେବତାତ୍ମା ହିମାଳୟର ଗମ୍ଭୀର ସ୍ତବ୍ଧତାଣୀରୁ ସୈନିକ କବି ଶକ୍ତି ସଂଚୟ କରିଛନ୍ତି । ଟ୍ରିଗାର ଉପରେ ଶକ୍ତ ଅଙ୍ଗୁଳି ରାଇଫଲ ଶିକାର ହୋଇଛନ୍ତି ଚୀନା ସୈନିକଗଣ ।

କୁଞ୍ଜବିହାରୀ ଦାଶଙ୍କ କବିତାରେ ଚୀନ ସୈନ୍ୟମାନଙ୍କ ଆକ୍ରମଣର ଦୃଢ଼ ମୁକାବିଲା ପାଇଁ ଉଦ୍‌ବୋଧନ ଦିଆଯାଇଛି । ଶତ୍ରୁ ସୈନ୍ୟମାନଙ୍କର କଳୁଷିତ ପଦଚିହ୍ନକୁ ମାନସରୋବର ଜଳରେ ନିଶ୍ଚିହ୍ନ କରିଦେଇ ସେମାନଙ୍କର ରକ୍ତଧାରରେ ନୂତନ ଗଙ୍ଗା ପ୍ରବାହିତ କରାଇବା ତାଙ୍କ କବିତାର ମର୍ମବାଣୀ (୧୬୨) । ଜାନକୀ ମହାନ୍ତିଙ୍କ କବିତାରେ ଭାରତରେ ଅନୁପ୍ରବେଶ କରିଥିବା ଚୀନା ସୈନ୍ୟମାନଙ୍କ ସମେତ ଚୀନର ରାଷ୍ଟ୍ରନାୟକମାନଙ୍କୁ ମଧ୍ୟ ଆଗ୍ନେୟ ସ୍ୱାଗତ କରାଯାଇଛି । ରଣାଙ୍ଗନରେ ଭାରତୀୟ ସୈନ୍ୟମାନଙ୍କର ବୀରତ୍ୱ ନିଶ୍ଚିତଭାବେ ଅନୁପ୍ରବେଶକାରୀ ଚୀନା ସୈନ୍ୟ-ମାନଙ୍କର ଦୁର୍ବିସହ ହେବ । ଏଣୁ କବି ସେମାନଙ୍କୁ ପ୍ରତ୍ୟାବର୍ତ୍ତନର ଚେତାବନୀ ଦେଇଛନ୍ତି (୧୬୩) ।

ଚନ୍ଦ୍ରମଣି ବେହେରାଙ୍କ 'ଦେବତାତ୍ମା ହିମାଳୟ'ରେ ଭାରତ-ଚୀନ ଯୁଦ୍ଧ ପରିପ୍ରେକ୍ଷୀରେ ଜାତୀୟ ଐକ୍ୟ ଓ ବୀରତ୍ୱବୋଧର ପ୍ରଦର୍ଶନ ପାଇଁ ଆହ୍ୱାନ ଦିଆ ଯାଇଛି—

" ତୁମର ଉଦ୍ଧାର ପାଇଁ
କଣ ଉଠିବନି ପରିବାର ସମେତ
ବଜ୍ର ଗମ୍ଭୀର ଐକ୍ୟର ସ୍ୱର
ଡ୍ରାଗନ ମାରିବୁ ନିଶ୍ଚେ
ଆମେ ତୁମ ଯୋଗ୍ୟ ବଂଶଧର (୧୬୪ ।"

ଚୀନା ସୈନ୍ୟମାନଙ୍କୁ ଏଠାରେ ଚୀନର ଅତିକାୟ ହିଂସ୍ର ଡ୍ରାଗନମାନଙ୍କ ସହ ତୁଳନା କରାଯାଇଛି ।

ଚୀନା ସୈନ୍ୟମାନଙ୍କର ଆକ୍ରମଣକୁ ପ୍ରତିରୋଧ କରିବା ପାଇଁ ପଦ୍ମିନୀ ଦାସଙ୍କ 'ଉଦ୍‌ବୋଧନୀ'ରେ ସ୍ୱର ଉତ୍ତୋଳନ କରାଯାଇଛି—

" ଏ ମାଟିରେ ମାତ୍ର ଚୈନିକ ସୈନ୍ୟ
ତୋଳେ ଉନ୍ମତ୍ତ ମଥା
ସୁପ୍ତ ବିଶ୍ୱର ଲୋଡ଼ଇ ଆମର
ସଂସ୍କୃତି ସ୍ୱାଧୀନତା

× × ×

ମୋ କାତର ବୀର ଦୁର୍ଜ୍ଜୟ ଅନୁପମ
ମାତୃଭୂମିର ଯାତନା ପୋଛରେ ଶତେକ ଦଧୀଚି ସମ" (୧୭୫)

ଦଧୀଚିଙ୍କ ଅସ୍ଥିରୁ ଶକ୍ତିଶାଳୀ ବଜ୍ର ସୃଷ୍ଟି ହେବା ପରି ମୃତ ପ୍ରତ୍ୟେକ ଭାରତୀୟ ସୈନିକଙ୍କ ଅସ୍ଥିରୁ ଶତ୍ରୁ ସୈନ୍ୟ ଧ୍ୱଂସର ମହାନ୍ ପ୍ରେରଣା ସୃଷ୍ଟି ହେବ ।

ମୃତ୍ୟୁ ଭୟକୁ ପଦାଘାତ କରି ଚୀନ ସୈନ୍ୟରୂପୀ ଦସ୍ୟୁଦଳଙ୍କୁ ଭାରତ ସୀମାରୁ ବିତାଡ଼ିତ କରିବା ପାଇଁ ପ୍ରତ୍ୟେକ ଭାରତୀୟ ରଣତାଣ୍ଡବ ପ୍ରିୟ ଧୂର୍ଜ୍ଜଟୀର ଭୂମିକା ଗ୍ରହଣ କରିବାକୁ ଗୋଦାବରୀଶ ମହାପାତ୍ର ଉଦ୍‌ବୋଧନ ଦେଇଛନ୍ତି (୧୭୬) । କାହ୍ନୁ ଚରଣ ସାହୁଙ୍କ 'ତିନି ଜଣ ଯୁଦ୍ଧ ଅପରାଧୀ' କବିତାରେ ଚୀନର ରାଷ୍ଟ୍ରପତି ଲିଉ-ସାଓଚି, ପ୍ରଧାନ ମନ୍ତ୍ରୀ ଚୁଓ-ଏନ୍-ଲାଇ ଓ ଦଳପତି ମାଓ-ସେ-ତୁଙ୍ଗଙ୍କୁ ଶାଣିତ ଭାବେ ଆକ୍ଷେପ କରାଯାଇଛି—

× × × ମାଓ-ସେ-ତୁଙ୍ଗ
ଲିଉ-ଶାଓ-ଚି
ଚୁଉ-ଏନ୍-ଲାଇ
ହେ ଯୁଦ୍ଧ ବିରୋଧୀ ଶାନ୍ତି ସେନାପତିତ୍ରୟ
ଏଇ କ'ଣ ତୁମ ଶାନ୍ତି ସଙ୍ଗୀତର ପ୍ରଥମ ପଂକ୍ତି (୧୭୭) ?

ଶାନ୍ତିର ଦୁଆ ଉଠାଉଥିବା ଏହି ରାଷ୍ଟ୍ରନାୟକଗଣଙ୍କର ଶାନ୍ତି ପ୍ରତ୍ୟାଶା କେବଳ ଏକ ପ୍ରତାରଣା, ତାର ସ୍ୱରୂପ ଏହି କବିତାରେ ଉନ୍ମୋଚିତ ।

ବସ୍ତୁତଃ ରାଷ୍ଟ୍ରୀୟ ପ୍ରଗତି, ଶାନ୍ତି ତଥା ଆନ୍ତର୍ଜାତୀୟ ମୈତ୍ରୀବୋଧକୁ ଯୁଦ୍ଧ ବ୍ୟାହତ କରିଥାଏ । ସୁତରାଂ ଯଦୁନାଥ ଦାସ ମହାପାତ୍ର 'ଏ ପୃଥିବୀ ପରିବାର'ରେ ଯୁଦ୍ଧର ପାଶବିକ ହୁଙ୍କାର ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି—

"ଏ ପୃଥିବୀ ଏକ ପଞ୍ଜୁରୀ
ବନ୍ଧ ହୋଇ ଅଛି ଘୃଣ୍ୟ
ପାଶବିକ ଯୁଦ୍ଧର ହୁଙ୍କାର (୧୬୮) ।"

ସ୍ୱାଧୀନତା ପରବର୍ତ୍ତୀ କାଳରେ ଭାରତ-ଚୀନ ଯୁଦ୍ଧକୁ ଜାତୀୟ ସ୍ୱାର୍ଥ ପ୍ରତି ଏକ ବିପଦ ରୂପେ ଗଣନା କରାଯାଇ କବିତା ପରଂପରାରେ ଦେଶାତ୍ମବୋଧର ସ୍ୱର ପ୍ରକଟିତ ହୋଇଥିଲା । ଏହି କବିତା ସମୂହରେ ଚିରନ୍ତନ ସୌନ୍ଦର୍ଯ୍ୟବୋଧ ପ୍ରାୟଶଃ ରହିନଥିଲେ ମଧ୍ୟ ତାତ୍କାଳିକ ଜୀବନର ବାସ୍ତବ ଚିତ୍ରର ଏଗୁଡ଼ିକ ଥିଲା ବିଶ୍ୱସ୍ତ ସଂବାହକ ।

କିନ୍ତୁ ଉତ୍ତର-ସ୍ୱାଧୀନତା କାଳରେ ଏହି ଯୁଦ୍ଧ ଭିତ୍ତିକ ଆହ୍ୱାନର ସ୍ୱରୂପ କବିତାର ମୁଖ୍ୟ ଆବେଦନ ନଥିଲା । ମୁଖ୍ୟତଃ ବାସ୍ତବବାଦୀ କବିତା ଏହି ସମୟରେ ଉତ୍ତର ସ୍ୱାଧୀନତା ଯୁଗର ବିଷାଦ ଓ ବେଦନା ଉପରେ ଥିଲା ଆଧାରିତ । ଗାନ୍ଧୀଜୀଙ୍କ ପରିକଳ୍ପିତ ରାମରାଜ୍ୟର ବିଫଳତା ପ୍ରତି ତହିଁରେ ଶ୍ଳେଷର ସ୍ୱର କିଭଳି ପ୍ରଖର ଥିଲା ତାହା ପରବର୍ତ୍ତୀ ପର୍ଯ୍ୟାୟର ଆଲୋଚ୍ୟ ବିଷୟ ।

## ୮—ଉତ୍ତର ସ୍ୱାଧୀନତା ଯୁଗର ବେଦନା

ନବ ଭାରତର ନେତୃବର୍ଗ ସ୍ୱାଧୀନତା ଲାଭପରେ ଭାରତକୁ ଏକ ଧର୍ମନିରପେକ୍ଷ ସମାଜବାଦୀ ଗଣତାନ୍ତ୍ରିକ ରାଷ୍ଟ୍ର ଗଠନ କରିବା ପାଇଁ ସମ୍ବିଧାନ ପ୍ରଣୟନ କରିଥିଲେ । ଯୋଜନା ପରେ ଯୋଜନାର ପରିକଳ୍ପନା କରି, ଭାରତବାସୀଙ୍କ ମନରେ ସାମାଜିକ, ଆର୍ଥନୀତିକ ସମେତ ସାମୂହିକ ବିକାଶର ସମ୍ଭାବନା ଜଗାଇ ଦେଇଥିଲେ । ସାବାଳକ ଭୋଟ ପ୍ରଥାର ପ୍ରଚଳନ ଫଳରେ ଭାରତର ସଂଖ୍ୟାଗରିଷ୍ଠ ଭୋଟଦାତାଙ୍କୁ ପ୍ରଭାବିତ କରିବା ରାଜନୀତିଜ୍ଞମାନଙ୍କର ପରମ ଧ୍ୟେୟ ହୋଇ ପଡ଼ିଲା । ଏଣୁ ବିଭିନ୍ନ ଗୋଷ୍ଠୀ ତଥା ସମ୍ପ୍ରଦାୟ ମଧ୍ୟରେ ସଙ୍କୀର୍ଣ୍ଣ ସ୍ୱାର୍ଥ ହାସଲର ଆକାଙ୍କ୍ଷା ପ୍ରବଳ ହୋଇ ଉଠିଲା । ପ୍ରଚାରସର୍ବସ୍ୱ ରାଜନୀତି ହେତୁ ରାଜନୈତିକ ପ୍ରଚାର ପ୍ରଭାବ ପାଇଁ ପୁଞ୍ଜିପତିବର୍ଗଙ୍କ ଠାରୁ ଅର୍ଥ ସଂଗ୍ରହ ଓ ସେଥିପାଇଁ ସେମାନଙ୍କୁ ସାଧାରଣ ଜନତାକୁ ଶୋଷଣ କରିବା ପାଇଁ ଅବାଧ ସୁଯୋଗ ଦିଆଗଲା । ଫଳରେ ଭାଷା, ଧର୍ମ, ସାମ୍ପ୍ରଦାୟିକ ଭେଦଭାବର ଅଭିବୃଦ୍ଧି ସଙ୍ଗେ ଅଭାବ, ଅନଟନ ଓ ଭୋଟସର୍ବସ୍ୱ ରାଜନୀତି, ସ୍ୱାଧୀନତାର ଆଶା, ଆକାଙ୍କ୍ଷା ଓ ସ୍ୱପ୍ନ ସମୂହକୁ ବିଫଳତାରେ ପର୍ଯ୍ୟବସିତ କରିଥିଲା । ସ୍ୱରାଜ୍ୟ, ସ୍ୱାଧୀନତା, ସ୍ୱାବଲମ୍ବନଶୀଳତା, ରାମରାଜ୍ୟ, ସତ୍ୟ, ସେବା ଅହିଂସା—ଏ ସବୁ କେବଳ ଫାଙ୍କା ଆବାଜରେ ପରିଣତ ହେଲା । ଏଣୁ ଜନସାଧାରଣଙ୍କର ଅସନ୍ତୋଷ,

ନୈରାଶ୍ୟ, ତିକ୍ତ ଅନୁଭୂତି ସ୍ୱାଧୀନତା ପରବର୍ତ୍ତୀ କାଳରୁ ଏ ଯାବତ୍ ପ୍ରଗତିବାଦୀ କବିତାର ଏକ ବିଶିଷ୍ଟ ସ୍ୱରରୂପେ ପରିଦୃଷ୍ଟ ହୁଏ । ସାମାଜିକ ମୂଲ୍ୟବୋଧର ଅଭାବ ଓ ଅବକ୍ଷୟ ହେତୁ ବୌଦ୍ଧିକମାନସମ୍ପନ୍ନ ଲୋକ ଉଚ୍ଚସ୍ତରରେ ବସି ବଙ୍କ ଓ ପ୍ରତିଭାଶାଳୀ ଲୋକଙ୍କୁ କପଟ ପଙ୍ଗୁ ଓ ଅଥର୍ବ କରିଦେଇଛନ୍ତି ତା'ର ସ୍ୱଚ୍ଛ ଆଲେଖ୍ୟ କବି ରାଉତରାୟଙ୍କ 'ବସନ୍ତ' କବିତା ସଂକଳନରେ ଅଙ୍କିତ—

"ଟାଉନରେ ସବୁ ତେଜିଗଲେ, ଭଲ ଲୋକେ ଲୁଚିଲେ .
ଗାଁ ଏ ଗାଁ ଏ କଳା-ବେପାରୀ ଶ୍ୱେତ ଛଳ ରଚିଲେ
ପଢ଼ୁଆ ଜାଣିବା ଲୋକେତ ବସି କାଟିଲେ ଘାସ
ଦରପଢ଼ା ଘରବୁଡ଼ାଏ ବନି ଗଲେ ଗଣେଶ ।
ମୂରୁଖେ ବନିଲେ କୋବିଦ ରାତା ରାତି ପଡ଼ିକେ,
ଦେଶ ପ୍ରେମେ ଠିକା ନେଲେଣି କାନତାରାଟି ଥୋକେ" (୧୭୯)

ତେଣୁ କବିଙ୍କର ଜିଜ୍ଞାସା—

"ରାମ ରାଇଜେ କିଆଁ/ଶୋକରେ ମରନ୍ତି ମଣିଷ/ଜଳେ ମଶାଣି ନିଆଁ" (୧୮୦) । କବି ଜାନକୀବଲ୍ଲଭ ଅଧିକ ହତୋତ୍ସାହ ହୋଇ ସ୍ୱାଧୀନ ଭାରତ ଭୂମିରେ ଗାନ୍ଧୀଜୀଙ୍କ ପରିକଳ୍ପିତ ରାମ ରାଜ୍ୟର ସଂସ୍ଥାପନା ପ୍ରତି ସନ୍ଦେହ ପ୍ରକାଶ କରିଛନ୍ତି—

"ଗାନ୍ଧୀ-ବାଦ ତୋ' ଆତୁର/ବହୁତ ଦୂରେ
ରାମ ରାଜ୍ୟ ତୋ' ଆସିନି ଏ ଯାଏଁ ଫେରି ।
ସତ୍ୟ କି କେବେ ଆସିବ ଏ ଧରଣୀରେ ?
ସେ ଏକ ପ୍ରଶ୍ନ ଏସାରା ଭାରତଭରି (୧୮୦ କ) ।"

ସ୍ୱାଧୀନତା ପରେ ମୁଣ୍ଡରେ ଗାନ୍ଧୀ ଟୋପି ଲଗେଇ, ଖଦଡ଼ ବସ୍ତ୍ର ପରିଧାନ କରି ନିଜକୁ ସ୍ୱଦେଶ ପୂଜାରୀ ରୂପେ ପ୍ରଖ୍ୟାପନ କରୁଥିବା କଳାବ୍ୟବସାୟୀ ଗୋଷ୍ଠୀ, ଜନସାଧାରଣଙ୍କ ଜୀବନକୁ କପଟ ଅତିଷ୍ଠ କରିଦେଇଛନ୍ତି ତାହା ଗୋଦାବରୀଶ ମହାପାତ୍ରଙ୍କ ଲେଖନୀରେ ଅଭିବ୍ୟଞ୍ଜିତ ହୋଇଅଛି (୧୮୧) । ଜନସାଧାରଣଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରୁ ବିଚ୍ଛିନ୍ନ ନେତୃବର୍ଗଙ୍କର ଉଡ଼ାଜାହାଜରେ ବସି ବନ୍ୟା ଓ ମରୁଡ଼ିର ପ୍ରତିକାର ବିଳାସକୁ ଉପହାସ କରି 'ପ୍ରାର୍ଥୀ ଅଭ୍ୟର୍ଥନା' କବିତାରେ ସେ ଉଲ୍ଲେଖ କରିଛନ୍ତି—

"ତୁମେ ତ ଉଡ଼ ହାଉଆ ଯାନେ/ମଳୟ ପରି ଗଗନେ ଉଡ଼ି
ତୁମେ କି କେବେ ପାରିବ ବୁଝି/ବନ୍ୟା ବେଗ ମରୁଡ଼ି ବଢ଼ି (୧୮୨) ।"

ସ୍ୱାଧୀନତା ପ୍ରାପ୍ତି ପରେ ବ୍ରିଟିଶ ଶାସକ, ରଜା ଓ ଜମିଦାରମାନଙ୍କ ସ୍ଥାନରେ ନୂତନ ପୁଞ୍ଜିପତି ଗୋଷ୍ଠୀଙ୍କ ଦ୍ୱାରା ଶୋଷଣ ଅନାକ୍ରାନ୍ତ ରହିଛି । ସୁତରାଂ ସ୍ୱାଧୀନତା ପରେ

ମଧ୍ଯ ଜାତୀୟ ପ୍ରଗତି ପାଇଁ ସଂଗ୍ରାମରତ ହେବାକୁ ଗୋଦାବରୀଶ ଆହ୍ୱାନ ଦେଇଛନ୍ତି (୧୮୩) । ଶାସନତନ୍ତ୍ରର ସ୍ୱାଧୀନତା, ଯଥାର୍ଥ ସ୍ୱାଧୀନତା ପଦବାଚ୍ୟ ନୁହେଁ । ଏଇ ପରିପ୍ରେକ୍ଷୀରେ କବି ଗୋପାଳଚନ୍ଦ୍ର ପାରସ୍ପରିକ ସହଯୋଗ, ଶାନ୍ତି ତଥା ମୈତ୍ରୀ ଭାବନା ପରିପ୍ଳୁତ ରାଷ୍ଟ୍ରକୁ, ସ୍ୱାଧୀନତାର ଶ୍ରେଷ୍ଠଭୂମି ରୂପେ ଅଭିହିତ କରିଛନ୍ତି । ଅନ୍ୟଥା ରାଷ୍ଟ୍ର, ଈର୍ଷାର ବହ୍ନିରେ ପ୍ରଜ୍ୱଳିତ ଏକ ଦୁର୍ଭେଦ୍ୟ ଅରଣ୍ୟରେ ପରିଣତ ହୋଇଯିବ ବୋଲି ସେ ଆଶଙ୍କା କରିଛନ୍ତି ।

"ବିମଳ ଉଦ୍ୟମ ଯହିଁ ସୁରକ୍ଷିତ ମୃଗ କସ୍ତୁରିକା
ପରସ୍ପର ସହଯୋଗେ ପ୍ରବାହିତ କର୍ମ ଆଲେଖିକା

× × ×

ସେହି ମୋର ସ୍ୱାଧୀନତା-ଶ୍ରେଷ୍ଠଭୂମି ଯୁଗେ ଯୁଗେ ଗଣ୍ୟ
ଅନ୍ୟଥା ଈର୍ଷାର ବହ୍ନି-ପ୍ରଜ୍ୱଳିତ-ଦୁର୍ଭେଦ୍ୟ ଅରଣ୍ୟ (୧୮୩ କ) ।"

କବି ଗଡ଼ନାୟକ ଆମ ଦେଶରେ ପ୍ରଚଳିତ ଗଣତନ୍ତ୍ରକୁ ଏକ ଚଞ୍ଚଳ ସୁନା ମିରିଗ ଭାବରେ ଚିତ୍ରଣ କରିଛନ୍ତି । ସୁନାର ମୃଗ ଏକ ଅବାସ୍ତବ, ଅଳୀକ କଳ୍ପନା । ତଥାକଥିତ ଶାସନ ମଧ୍ୟରେ ଜନସାଧାରଣ କିଭଳି କ୍ଷୁଧାତୁର, ବିବସ୍ତ୍ର ଓ ଯାତନାଗ୍ରସ୍ତ କବି ଗଡ଼ନାୟକ ତା'ର ଏକ ବିଷାଦଗ୍ରସ୍ତ ଚିତ୍ର ଆଙ୍କିଛନ୍ତି—

"ଚଞ୍ଚଳ ରୂପରେ ସୁନାର ମିରିଗ/ଆସିଅଛି ଉଭି ଆଜି
ଦେଖାଉଛି ଆମ ଭୋକିଲା ଆଖିରେ/ସ୍ୱପ୍ନର ଏ କି ବାଜି

× × ×

ଗଣ ଶାସନର ରାଜୁତି ଚାଲିଛି/ଗଣ ଶାସନର
କନ୍ଦରେ ବାନ୍ଧିବାକୁ/କାହିଁ ସେ ମୁକ୍ତି କାହିଁ ସେ ମୈତ୍ରୀ ?
କାହିଁ ସେ ଶାନ୍ତି କହ ?/ଆଜି ତ ଆମେ ବି ଉପାସେ ମରୁଚୁ/ଅନ୍ନ ମୁଠକ ପାଇଁ
ଦେହର ଲଜ୍ଜା ନିବାରଣ ଲାଗି/ବସ୍ତ୍ର ବି ମିଳୁ ନାହିଁ (୧୮୪) ।"

ରାଷ୍ଟ୍ରୀୟ ପ୍ରଗତିର ପଦଯାତ୍ରା ମଧ୍ୟରେ ସ୍ୱାଧୀନତା ପରବର୍ତ୍ତୀ କାଳର ସାମାଜିକ ବୈଷମ୍ୟର ସ୍ୱରୂପକୁ ଗଡ଼ନାୟକ 'ବନ୍ଦନା ଲାଗି ଜଳୁଛି ଦୀପାଳି ଜଳୁଚି କାହିଁରେ' ଆକ୍ଷେପ କରିଛନ୍ତି—

"ସ୍ୱାଧୀନ ଆମର ଦେଶର ଦଶା
କାହା ଆଳୟରେ ମଳୟ ଲୋଟୁଛି
କାହା କପାଳରେ ପ୍ରଳୟ ହସା ।

ବେପାରୀ ଦଲାଲ କଣ୍ଟ୍ରାକ୍ଟର
କଳ ମାଲିକର କମ୍ପୁରେ
ଭାଗ୍ୟ ଦାତ୍ରୀ ଲକ୍ଷ୍ମୀ ନାଚେ,
କଳାରେ କଳାରେ ଏ ଯୁଗେ ଷୋହଳ କଳାରେ ନାଚେ (୧୮୫) ।''

ମୁକ୍ତିର ପବନ ସ୍ପର୍ଶରେ ବେଣୁଧର ରାଉତଙ୍କ 'ସୁନାସିଂହ' ଏକଦା ଐଶ୍ୱର୍ଯ୍ୟର ସ୍ୱପ୍ନ ଦେଖିଥିଲା—

× × × ସୁନାସିଂହ ଅଶ୍ରୁପ୍ତିରେ ଆଉଁସି ତା ଗୁଡ
ଧୂଳିରେ ପଡ଼ିଛୁ ଶୋଇ, ଛୁଇଁ ଯାଏ ମୁକ୍ତିର ପବନ
ହୁଏତ ସପନ ଦେଖେ ସୁନା ମାଟି ସୁନାର ସଂସାର
ଡ଼ାଳେ ଡ଼ାଳେ ସୁନାଫଳ, ହୀରା, ନୀଳା ମାଣିକ୍ୟ
ଓ ପ୍ରବାଳ ବୋଝାଇ
ସାଗରେ ବୋଇତ ଫେରେ......, ସପନରେ ସୁନା କଳ୍ପ ଲୋକ (୧୮୬) ।'

'ସୁନାସିଂହ' ଭାରତର ଶାସନ ତାନ୍ତ୍ରିକ ସ୍ୱାଧୀନତାର ପ୍ରତୀକ ରୂପେ କଳ୍ପିତ । କିନ୍ତୁ ସ୍ୱାଧୀନତା ପ୍ରାପ୍ତିର ଦୀର୍ଘ ଦୁଇ ଦଶନ୍ଧି ଅତିକ୍ରାନ୍ତ ହୋଇଯାଇଥିଲେ ମଧ୍ୟ ସୁନାସିଂହର ସ୍ୱପ୍ନ ସାଧାରଣ ଗଣଜୀବନ ପରିପ୍ରେକ୍ଷୀରେ ସାକାର ହୋଇ ପାରିନାହିଁ । ପକ୍ଷାନ୍ତରେ ଆଚରଣହୀନ ଭୋଟସର୍ବସ୍ୱ ରାଜନୀତି ମଧ୍ୟରେ ଏହା ବିଡ଼ମ୍ବିତ ହୋଇଛି ।

ବୈକୁଣ୍ଠନାଥ ପଟ୍ଟନାୟକଙ୍କ 'ଜୟତୁ ଗଣତନ୍ତ୍ର' କବିତାରେ ଏହି କ୍ଷମତା ରାଜନୀତିକୁ ବ୍ୟଙ୍ଗ କରାଯାଇଛି—

"କ୍ଷମତାର ମୋହ ଆସନ ଲାଳସା
ଗୁଡ଼ିକ ପାରିଛି ଲଦେ
ନିଜକୁ ଯେ ବଡ଼ ଭାବୁଛି ଜୀବନେ
ଆନ ଦୁଃଖେ କି ଦ୍ରବେ ?
× × ×
ଆସନର ଛାତ ଅର୍ଥର ତାଡ
ବୃଦ୍ଧି କରଇ ଭୋଟ
ଅନ୍ତିମ କାଳେ ଦେବତା ବଦଳେ
ଜିହ୍ୱା ରଟଇ
କେବଳ ଭୋଟ ଭୋଟ (୧୮୭) ।"

ଏ ଦେଶର କଳାବଜାରୀର ଅର୍ଥରେ ଏକ ଶ୍ରେଷ୍ଠ ସର୍ବସ୍ୱ ରାଜନୀତି ପ୍ରଚଳିତ । ଏହି ଭଣ୍ଡ ଗଣତନ୍ତ୍ର ବିରୁଦ୍ଧରେ ପୁନର୍ବାର ଏକ ତେଲିଙ୍ଗାନା ବିପ୍ଳବ କରିବା ପାଇଁ କବି ଲକ୍ଷ୍ମୀଧର ନାୟକ ଆହ୍ୱାନ ଦେଇଛନ୍ତି—

"ବିପ୍ଳବ ସରିନାହିଁ, ବିପ୍ଳବ ମରିନାହିଁ,
ହୁଏତ ବିପ୍ଳବ-ରୁଗ୍ଣ
ତାକୁ ପୁଣି ସଜୀବିତ କରିବାକୁ ହେବ
ଏଥରକ ଲକ୍ଷ୍ୟନୁହେଁ, ନୁହେଁ ସେ ବ୍ରିଟିଶ
ଚାଆଡ଼ୁ ନକଲକରି ଭଣ୍ଡ ଡ଼ିମୋକ୍ରାସି
ଆଉ ଯିଏ ଆମ ଆଗେ ଆସିଛୁଡ଼ା ହେବ, ବାଧାଦେବ (୧୮୮) ।"

ପ୍ରଗତିବାଦୀ କବିତାରେ ଯେଉଁ ସବୁ ସାମାଜିକ, ରାଜନୈତିକ ତଥା ଅର୍ଥନୈତିକ ସମସ୍ୟା ସମୂହ ରୂପାୟିତ ହୋଇଛି, ତାର ସ୍ୱରୂପ ଦ୍ୱିବିଧ । ପ୍ରଥମତଃ— ଓଡ଼ିଶାର ଆଞ୍ଚଳିକ ସମସ୍ୟା, ଦ୍ୱିତୀୟତଃ ଜାତୀୟ ବା ସର୍ବଭାରତୀୟ ସମସ୍ୟା । ୧୯୩୮ ଠାରୁ ୧୯୭୦ ମଧ୍ୟରେ ଓଡ଼ିଶାର ଗଡ଼ଜାତ ଆନ୍ଦୋଳନ, ଗଡ଼ଜାତ ମିଶ୍ରଣ, ଭାଷାଭିତ୍ତିକ ପ୍ରଦେଶ ଗଠନର ବିଫଳତା ଉପରେ, ପ୍ରାଦେଶିକ ସମସ୍ୟା ମୁଖ୍ୟତଃ କେନ୍ଦ୍ରୀଭୂତ । ଏହା ବ୍ୟତୀତ ଯେଉଁ ସବୁ ଜାତୀୟ ସମସ୍ୟା ଓଡ଼ିଶାର କବିମାନଙ୍କୁ ପ୍ରଭାବିତ କରିଥିଲା ସେଗୁଡ଼ିକ ହେଉଛି ଭାରତର ଔପନିବେଶିକ ଶୋଷଣରୁ ମୁକ୍ତି ପ୍ରୟାସ, ସ୍ୱାଧୀନତା ପ୍ରାପ୍ତିର ପ୍ରତିଛବି ଓ ପ୍ରତିକ୍ରିୟା ତଥା ଉତ୍ତର ସ୍ୱାଧୀନତା ଯୁଗର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ପ୍ରଗତିର ବିଡ଼ମ୍ବନା । ପୁନଶ୍ଚ ଶ୍ରେଣୀହୀନ ସମାଜ ଗଠନ ପାଇଁ କାର୍ଲମାର୍କସଙ୍କ ଚିନ୍ତାଦର୍ଶ ୧୯୩୮ରୁ ୭୦ ପର୍ଯ୍ୟନ୍ତ ପ୍ରଗତିବାଦୀ କବିତାର ଏକ ମୁଖ୍ୟସ୍ୱର ରୂପେ ପ୍ରତିଭାତ ହୋଇଥିଲା । ଏହି କବିତାଗୁଡ଼ିକ ଗଣଜୀବନର ଉତ୍ଥାନ ଉପରେ କେନ୍ଦ୍ରୀଭୂତ ହୋଇଥିବାରୁ ଏହା ଥିଲା ମୁଖ୍ୟତଃ ଆହ୍ୱାନଧର୍ମୀ । ଏହାର ପ୍ରକାଶନ ଭଙ୍ଗୀ ସହଜ, ସରଳ ଏବଂ ସାବଲୀଳ । ପ୍ରଗତିବାଦୀ କବିତା ଗୁଡ଼ିକ ଉଦ୍ଦେଶ୍ୟଧର୍ମୀ ହୋଇଥିବାରୁ କାବ୍ୟ-କଳା ଦୃଷ୍ଟିରୁ କେତେକ ସ୍ଥଳରେ ହୁଏତ ଖର୍ବୀକୃତ ଓ ଅପରିପୁଷ୍ଟ । ମାତ୍ର ଗଣଜୀବନର ଦୁର୍ବାର ଶକ୍ତିକୁ ସଚେତନ କରିବା ପାଇଁ ତହିଁରେ ବିପୁଳ କାବ୍ୟୋତ୍ସାହ ଅନାୟାସଲଭ୍ୟ ।

## ପାଦଟୀକା

(୧)—"ପୁଷ୍ପ ପଲ୍ଲବ ସ୍ୱପ୍ନ ବିହୀନ
କେବେ ଥିଲ ରାଜ ଜେମା
ଏବେ ଗୋ ହୋଇଛ ମାଟିର ଅଶ୍ରୁ
ମାଟିର ମର୍ମ ବୀଣା
(ହେ ମୋର କବିତା-କୁଞ୍ଜବିହାରୀ ସଂଚୟନ, ୧ମ ଭାଗ—ପୃ ୬୮)
୨୧-୪-୧୯୫୦

(୨)—ରାଜ୍ୟପୁନର୍ଗଠନ କମିଶନ ରିପୋର୍ଟ—୧୯୫୫ ମସିହା ।

(୩)—"ହଜାର ମଣିଷ ବ୍ୟୟରେ ଜଣେ କରୁଥିବ ଉପଭୋଗ ?
କୋଟିଏ ମଡ଼ାର ପରେ
କେତେଦିନ ଆଉ ଗୋଟିଙ୍କର ରଥ ଚଳିବ ଦର୍ପ ଭରେ ?
(ଅଭିଯାନ-ବନ୍ଦୀର ବନ୍ଦନା—ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ ପୃ-୭୬୨-୧୯୩୮)

(୪)—ଛତରଖିଆର ହାତେ ତୋଳ ନିଶାଣ
କୋଟି କୋଟି ଭୋକିଲରେ କର ମିଶାଣ
ତୋ ଯୁଗ ଦୁଆରେ ଦେଖ ଗଲାଣି ଡାକ
ଡର ନାହିଁ ତୋର ଜନତା ସାକ୍ଷୀ ?
(ଆବାଜ—ଜନତାସାକ୍ଷୀ-ମନମୋହନ ମିଶ୍ର-୧୯୪୭)

(୫)—"ଖେଳାଉଛୁ କାଳୀୟ ନାଗ
ଝଙ୍କାର ଜଞ୍ଜିରାରେ
ଅନ୍ତରକେ ବାଜିବ ଭେଟ
ବିପ୍ଳବର ଗିତ ଗଳାରେ । (କାବ୍ୟ ସଂଚୟନ—୧୯୪୭ ପୃ-୧୯)

(୬)—"ଜାଣେ ଜାଣେ ତୋର ଏହି ବ୍ୟକ୍ତିକ ଜୀବନ
ସମଷ୍ଟିର ଚେତନାରେ ହଜିଇ ତା ସ୍ୱୟଂଭୂ ସପନ
ଲଭିବ ଅମୃତ,
ତୋ କଣ୍ଠରୁ ସଂଘମିତ୍ରା ହେବ, ହେବ ଶ୍ରୁତ
ଉତ୍କର୍ଷମି ମରଣ—
"ସଂଘ ! ତୋର ଚରଣେ ଶରଣ"
(ପାଣ୍ଡୁଲିପି—ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ—ପୃ-୧୨୧—୧୯୪୭)

(୭)—"ଭୂଗୋଳର ଭେଦ ଭୁଲି
ଦେଶେ ଦେଶେ ଆମ ଅଭିଯାନ
ରକ୍ତଷିଆ ରାକ୍ଷସ ବିରୁଦ୍ଧେ
କାହିଁ ଶୋଷଣଯାତ୍ରା, କାହିଁ ଧର୍ମଘଟ, କାହିଁ ଅବାଧ୍ୟ ଯୁଦ୍ଧ
ବିଶ୍ୱର ଜନତା ଆମେ ଆଜ ଏକ ପ୍ରାଣ
ଲକ୍ଷକୋଟି ଲୋକ ହାତେ ଏହା ହିଁ ନିଶାଣ
ରକ୍ତ ଭିଜା ନେତ
ଏକ ହିଁ ଆବାଜ ଉଠେ ସାରା ବିଶ୍ୱେ ଏକ ହିଁ ସଙ୍କେତ
ମାଟିର ସନ୍ତାନ ଆମେ ସର୍ବେଏକ ସର୍ବହରା ଭାଇ
ଆମକୁ ପ୍ରତୀକ୍ଷା ରଖେ ଅବମୁକ୍ତ ଅଙ୍କୁତ ସଂଘାଇ"
(ସଂଘାଇ—ସତ୍ପକାର—୧୯୪୮)

(୮)—"ଧରଣୀର କେଉଁ ଅଜ୍ଞାତ କୋଣେ ଜନମିଥିଲି ମୁଁ କବି
କୋଟି ମରମର କାହାଣୀ ଗାଇଛୁ ମରମରେ ଅନୁଭବି
ସବୁ ଅନ୍ତରର ଅନୁଭୂତି ଯେନ ଏହି ଅନ୍ତର ମମ
ଧରଣୀର ସେବା କରି ଆସିଅଛୁ କବିତାରେ ଅନୁପମ"
(ସମାଧି ମନ୍ଦିର—କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ—ପୃ-୫୯୭)

(୯)—"ଆମର ଜୀବନ ବହୁ ଲକ୍ଷ୍ୟର ପାଇଁ
ମିଲ୍, ବସ୍ତି ଗ୍ରାମ୍ୟ ଗୃହୀର କୂଳେ
କୋଟି ମଶାଲର ବିଦ୍ୟୁତ୍ ଜମେ ଯହିଁ
ଆମ ଶପଥର ସ୍ୱାକ୍ଷର ତାହା ମୂଳେ"
(ଅଗ୍ର ପଥିକ—ମନୋଜ ଦାସ—ଡଗର—ଅଗଷ୍ଟ ୧୯୫୩)

(୧୦)—"ଅହମିକା ଗୁଣେ ଗଣ ଦେବତାକୁ
ନିଜକୁ ମଣିଲେ ବଡ଼
ଜନ ସାଗରକୁ ଭାଳି ନିଷ୍କ୍ରିୟ ଜଡ଼
× × × × ×
ଚିର ଅମର ସେ ଜନତା ନ ମାନେ ହାର
ବିପୁଳ ମହାନ ପ୍ରାଣ ଶକ୍ତିରେ
କବି ଜଣାଏ ଜୁହାର"
(ଗଣବାଣୀ—ଗଣରଥ—ବୈକୁଣ୍ଠନାଥ ଗ୍ରନ୍ଥାବଳୀ—୨ୟ ଭାଗ—ପୃ-୧୮୪)

(୧୧)—"ସେମାନେ ଆସିବେ ହିମଗିରି ଦୁସ୍ତର ବାଧା ଲଂଘି, ଚିର ବିନ୍ଧ୍ୟାଚଳ ବକ୍ଷେ
ଅଗଣିତ ଜନତାର ଅଗ୍ରଗାମୀ ଆସିବେ ଅସଂଖ୍ୟ
ଆସିବେ ଆକାଶ ପଥେ, ଜଳସ୍ରୋତେ, ଗହନ ଜଙ୍ଗଲେ
ସମୁଦ୍ର ଲହଡ଼ି କାଟି, କାର୍ଣ୍ଣିକଣି ହଜାର ଜାହାଜେ
ଆସିବେ ନବୀନୋଚ୍ଛ୍ବାସେ ଯୁଗାନ୍ତର ବନ୍ଧନ ତୁଟାଇ
ଆସିବେ ମୁକ୍ତିର ଗାନ କଣ୍ଠେ କଣ୍ଠେ ଲହରୀ ଛୁଟାଇ
ବିଷର୍ଣ୍ଣ ବିଶ୍ୱକୁ ଧ୍ୱଇ ଉଦୟର ଅପୂର୍ବ ବିଭବେ
ସେମାନେ ଆସିବେ, (ପଦଧ୍ୱନି—ସହକାର—ଜୁନ ୧୯୫୦)

(୧୨)—ଏ ବିପ୍ଳବ ଯଦି କେହି ବ୍ୟର୍ଥ କରେ
ମତେ ହତ୍ୟା କରେ
ଆଜ୍ଞ ମାରି ପୋଡି ଦିଏ
ମୁଁ ପୁଣି ଉଠିବି ମାଟିର ସମାଧି ତଳୁ
ସଙ୍ଗେ ଧରି ଶତାବ୍ଦୀର ଲକ୍ଷ କୋଟି ଭୋକିଲା ମଣିଷ
(ଲକ୍ଷ୍ମୀଧର ନାୟକ—ଖୋଲା ଝରକା—୧୯୬୧)

(୧୩)—କୁଆଁ ତପ୍ସ—ସହକାର—୧୨ । ୮

(୧୪)—"ଜଙ୍ଗଲର ପଥରୋଧ କରେ କିଏ ?—ପ୍ରସ୍ତର
ଶସ୍ୟର ପ୍ରୀତି ରୋଧ କରେ କିଏ ?—ପଙ୍ଗପାଳ
ଆତ୍ମାର କଣ୍ଠରୋଧ କରେ କିଏ ?—ଆତତାୟୀ
(ଆସିଛି ମୁଁ ଆସିଛି—ଶାନ୍ତିଶିଖା-୧୯୫୨—ଅନନ୍ତ ପଟ୍ଟନାୟକ)

(୧୫)—"ତୁମ ଦେଶ କୋଳେ ମଣିଷ ମରେ ଅନ୍ନ ମୁଠାକ ପାଇଁ
ଲୁହ ଶୋଷିତାର ପୁଞ୍ଜିପତି ସେ ଅଳସେ ମାରଇ ହାଇ"
(ଆଗାମୀ କାଲି-ସୁନନ୍ଦ କର-୧୯୪୭)

(୧୬)—ଦୁଇ ଶିବିର-ଦୁର୍ଗା ଚରଣ ସାମନ୍ତ-୧୯୫୬

(୧୭)—ଜନ୍ମ ଆମର ମଣିଷ କୂଳରେ
ନାହିଁ ଇଜ୍ଜତ ମାନ
ଆମ ଝିଅ ବୋହୂ, ସବୁଣ ଶାଳୀ ହେ
ଆମେ ଶଳା ସଇତାନ !"
(କାଳନ୍ଦୀ ରଚନାବଳୀ-ପ୍ରଥମ ଭାଗ-ପୃ ୪୬୧-୧୯୩୯)

(୧୮)—ଗୋଟିଏ ଧୂଳିର କୀଟ ଅପରଟି ନନ୍ଦନ କୁସୁମ
ପେଟର ଜ୍ୱାଳାରେ ବିକେ ଜଣେ ନିଜ ଯଉବନ ପଣ
ହାଇରେ ଦୁନିଆ ମିଛ ଯାର କରେ ଗନ୍ତା କାଠିଥୁଆ
ଯୌବନ ବିକେ ତା କନ୍ୟା ଭୋକେ ଶୋଷେ ମରେ ତା'ର ବୁଆ"
(ଜାଗ ଜାଗ ମଣିଷ ଦେବତା–ଶଙ୍ଖ ୧ । ୧ ଜୁଲାଇ ୧୯୫୪)

(୧୯)—'ଘିଅ ଦୁଧ ମାଛ ଭାତ ଖାଇ ତୁ ରହିବୁ ଏଥି
ଅସଂଖ୍ୟ ଜନତା ମରୁଥିବେ ହାହାକାରେ
ରାକ୍ଷସ ତୁ ପିଶାଚ ତୁ ମଣିଷର ଖୋଳଧରି
କଳଙ୍କ ବୋଲୁଚୁ ଏହି ସୁନାର ସଂସାରେ,
(ଲୁହର ଦାବୀ-ମାଟିଦୀପ-କୃଷ୍ଣ ଚନ୍ଦ୍ର ଗ୍ରନ୍ଥାବଳୀ-ପୃ ୪୭୪)

(୨୦ )—ଶହୀଦ୍‌ର ଶେଷବାର୍ତ୍ତା–ଗୋପାଳ ଚନ୍ଦ୍ର ମିଶ୍ର–କପୋତକ୍ଷେଶାର ଗୁହା ୧୯୬୭
ପୃ–୩୬

(୨୧) – ନଣ୍ଡାର ଚଠି–କୁଞ୍ଜବିହାରୀ କବିତା ସଂଚୟନ–ପୃ ୧୩୬—୨୧–୨–୧୯୫୨)

(୨୨)—"ଗଜା ଭାଇ ସାଙ୍ଗେ ତ ଗଲି ଚୁଲି ଚୁଲି
ହଂସା ମୋ ଉଡ଼ିଲା ଯେବେ ବସାକୁ ଗୁହିଁଦେଲି ।
ତିନି ହାତ ଘରକୁ ତିରିଶ ଜଣ ଲୋକ
ଆହା କେଡ଼େ ସୁଖରେ ଅଛନ୍ତି ପୋକ ଯୋକ ।
+ + +
ଦେଖିତ ଛୁଞ୍ଚିଗଲା ପ୍ରାଣରୁ ସବୁରସ
ନରକେ ପଡ଼ିଲା କି ଜୀବନ ଥାଉଁ ଥାଉଁ"
(ନଣ୍ଡାର ଚଠି–କୁଞ୍ଜବିହାରୀ କବିତା ସଂଚୟନ—ପୃ ୧୩୩)

(୨୩)—ମାନବ ସଭ୍ୟତା ଯେବେ ଜମ୍ମ ଯାତ୍ରା କଲା ତାର ସୁରୁ
ମନେଅଛୁ ସେହି କଥା ସେ ଆଦିମ ସାମ୍ୟ ସମାଜରୁ
ନଥିଲା ସେତେବେଳେ ଶ୍ରେଣୀ, ନ ଥିଲେ କେହି ବଡ ଆଉ ସାନ
ରହୁଥିଲେ ଦଳ ବାନ୍ଧି କାଟୁଥିଲେ ଗୋଷ୍ଠୀର ଜୀବନ
ଧରଣୀର ସଂପଦରେ ସବୁରି ସମ ଅଧିକାର ଥିଲା ସେବେ "
(ସର୍ବହରା—ରବିସିଂ–ପୃ ୧)

(୨୪)—ସର୍ବହରା–ରବି ସିଂ ପୃ ୨)

(୨୫)— ଶାନ୍ତିଶିଖା – କାହା ଆଗେ ସାଥି ! ଅନନ୍ତ ପଟ୍ଟନାୟକ—ପୃ ୩୦

(୨୬)—"ଦୀନ ଦୁଃଖୀ ଜନେ
ସୁଖୀ ମୁଁ କରିଏ ତୃପ୍ତ
× × ×
ଜଗତରୁ ଦୁଃଖ ମୁହିଁ ପୋଛି ଦେବି କରେ
ଦେଖିବି ଆନନ୍ଦ ରେଖା ହସିଲ ମୁଖରେ"
ବିଶୃଙ୍ଖଳ ସୃଷ୍ଟି-ଜୀବନ ଚିତା-ମାନସିଂହ ଗ୍ରନ୍ଥାବଳୀ—୧ମ ଭାଗ-ପୃ ୩୯୩)

(୨୭)—ଜୀବନେ ଜୀବନେ ଜନ୍ମି ରକ୍ତ ମୋର ଦେଇ
ମେଣ୍ଟିବି ମାନବ ଦୁଃଖ କୃଶ ଅଙ୍ଗେ ବୋହି ।
(ମୁକ୍ତିନାହିଁ ମାଗେ-ମାନସିଂହ ଗ୍ରନ୍ଥାବଳୀ-୧ମ ଭାଗ-ପୃ ୧୯୯)

(୨୮)—(ଆଗାମୀ ୧୯୪୨ – କାଳନ୍ଦୀ ରଚନାଚୟ-ପୃ ୩୫୫)

(୨୯)—"ବେକାର ରହିବାକୁ ନାହିଁତ ଅଧିକାର/ସବୁର ପାଇଁ କାମ ଯୋଗାଏ ସରକାର
କହିବା ପାଇଁ କଥା ସବୁର ଦାବୀ ଅଛି/ମୁଁ ସେହି ସମାଜର କବିତା ରଚେ ବସି ।"
(ଆଗାମୀ-କାଳନ୍ଦୀ ରଚନାଚୟ ପ୍ରଥମ ଭାଗ—ପୃ ୩୫୫)

(୩୦)—(ବାଣ୍ଟି—ପାଣ୍ଡୁଲିପି ୧୯୪୭-ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ-ପୃ ୭୦)

(୩୧)—(ବାଣ୍ଟି—ପାଣ୍ଡୁଲିପି—ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ-ପୃ ୭୦)

(୩୨)—"ସେକାଳେ ଉଇଁବେ ରବି ପୂର୍ବ ଶୈଳପଟେ
ରକ୍ତସ୍ନାତ ରଣଜୟୀ, ଶାନ୍ତି ବୀର ରୂପେ
ଲିଗିଯିବ ଜୟୋତ୍ସବ, ସାମ୍ୟ, ମୈତ୍ରୀ, ଦୟା,
ନୃତ୍ୟରଙ୍ଗେ ମୋହି ନେବେ ଏ ସାରା ଅବନୀ"
(ଶମ୍ବାଦ୍-ସହକାର ୨୪/୨ୟ ସଂଖ୍ୟା ୧୯୪୪ )

(୩୩) – ଆଗାମୀ କାଲି ୧୯୪୭—ସୁନନ୍ଦକର—ପୃ ୪୩

(୩୪) "ସ୍ୱାଗତ ସ୍ୱାଗତ ହେ ଦେବ ତ୍ରିଂଶାଂପତ
ତୁମର ଖଡ୍‌ଗ ସମ ରଶ୍ମି, ହାଣୁ ଅନ୍ଧକାର
ଦୁନିଆରେ ଆଜ ଯା କିଛି ମଳିନ ଲୁଣ୍ଠିତ ସ୍ତୁରଖାର
ଆଶ୍ୱାସ ତହିଁ ସ୍ଥାପୁ ହେ ତୁମ ଜ୍ୟୋତ ଇସ୍ତାହାର"
(ସବନକା-ଆଗାମୀକାଲି ପୃ-୫୯)

(୩୫)—"ବିଦ୍ରୋହୀ ମୁହିଁ ବିପ୍ଳବୀ ମୁହିଁ ସାଜେ ଆଜି ଅଭିଯାନ
ସାମ୍ୟବାଦର ଆବାହନୀ ପାଇଁ ଏ ଯେ ମୋର ଅଭିଯାନ"
(ଅଭିଯାନ—ଜୀବନ ପଥେ—ପୃ ୩୩-୧୯୬୫)

(୩୬)—ଯେତେ ଯହିଁ ଭାରତର ନରନାରୀ ଏକ ପରିବାର ବ୍ୟକ୍ତି ପରି
ପ୍ରାଣର ସୌରଭେ ଦଅ ଏ ମାଟିର ଦାଗ ଦିଗନ୍ତର ପୂର୍ଣ୍ଣକରି
ସାମ୍ୟମୈତ୍ରୀ କଲ୍ୟାଣର ହେଉ ଏଇ ମାଟି ଏକ ମହାଗନ୍ତାଘର
ଏଥିକେ ସମ୍ରାଟ ନାହିଁ, ସଭିଏ ସେବକ ହୁଅ ପରସ୍ପର"
(ହେ ମୋର ଉନ୍ମୁକ୍ତ ଜାତି-ଦିଗ୍‌ବଳୟ-୧୯୫୧—କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ-ପୃ ୨୨୩)

(୩୭)—ଲାଲଫଲ୍‌ଗୁ-ସବହରା-ରବିସିଂ-ପୃ ୬୧

(୩୮)—"ମୁହିଁ ଏକ ନଦୀ ଧ୍ୱଂସ ସୃଷ୍ଟି
ଏଇ ମୋର ଦୁଇ କୂଳ
ଅନ୍ତଃ ସଲିଳା ଫଲ୍‌ଗୁର ମୁହିଁ
ଛଳ ଛଳ ଜଳଧାର (ସବହରା-ରବିସିଂହ,

(୩୯)—ବିପ୍ଳବିନୀ-କୁନ୍ତଳାକୁମାରୀ ସଂଚୟନ- ୨ୟ ଭାଗ ପୃ ୯୫-୧୯୪୮

(୪୦)—ରକ୍ତବୀଜର ଅଭିଯାନ—ଅଭିଜ୍ଞାନ—ପୃ-୫୩୪ ସଚ୍ଚିରାଉତରାୟ ଗ୍ରନ୍ଥାବଳୀ
୧୯୪୮

(୪୧)—ନୂଆ ଯୁଗ ଖସଡ଼ା
ରଚେ ଆମ ବଲ୍ଲମ
ନୂଆ ଯୁଗ ଚେହେରା
ରଚେ ଆମ ବଲ୍ଲମ
ଚାଲ ଦକ୍ଷିଣୁ ବାମେ, ବାମେ, ବାମେ"
(ରକ୍ତବୀଜର ଅଭିଯାନ—ଅଭିଜ୍ଞାନ-ପୃ ୫୩୩-ସଚ୍ଚିରାଉତରାୟ ଗ୍ରନ୍ଥାବଳୀ-୧୯୪୮)

(୪୨)—"ମାଧବୀ କଶାର ମୃଦୁ କମ୍ପନ, ଲେଡା ନାହିଁ ମୋର ପ୍ରିୟାରେ
ଶାଲ୍ମଳୀ ଫୁଲ ରକ୍ତର ରାଗ, ଚଞ୍ଚଳ କରେ ହିୟାରେ"
(ଅନନ୍ତ ପଟ୍ଟନାୟକ—ଅଲେଡ଼ାଲେଡ଼ା—ପୃ-୫୧)

(୪୩)—"ଝରରେ ରୁଧିର ଝର ରେ ଝର
ମଲ୍ଲୀ ମରୁଆ ଖୋପାରେ ସଜାଇ ଶିମୁଳି ପଲାଶଦଳ ।"

( ୪)—ଝରରେ ରୁଧିର-କଣ୍ଟିଗୁ—ଅନନ୍ତ ପଟ୍ଟନାୟକ-ପୃ-୮ ତତ୍ରୈବ

(୪୫)—ପୃ ୮—ତତ୍ରୈବ

(୪୬)—"ତୁମର ଲୁହରେ ମିଶାଇ ମୋ ଲୁହଟିକ
ଆସିବାର ବେଳେ କହିଥାନ୍ତି ମୁଁ ପଦେ
ବନ୍ଧୁର ଯେତେ ହେଉ ହେ ଆମର ପଥ
ମୃଲିବାକୁ ହେବ ଖାର ବିକମେ ।
ସଂଗ୍ରାମ ଖାଲି ସଂଗ୍ରାମ କରି କରି
କ୍ଷତ ବିକ୍ଷତ କରି ଏହି ଦେହମନ
ପ୍ରାଣର ବଂଶୀ ବଜାଇବା ପାଇଁ ହେବ
ଦେଖ ଏ ଦୁନିଆ କରି ଯେତେ ଖାନତମ"
(ଖୋଜୁଥିବ-କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ୧୯୬୯-ପୃ ୩୪୪)

(୪୭ —ମୁକ୍ତ ତରଙ୍ଗ – ମନମୋହନ ମିଶ୍ର (୧୯୪୫)

(୪୮)—''ବନ୍ଧୁକ ଦରକାର
ବେଣ୍ ଖସି, ଶକ୍ତ, କଳା ମଚ ମଚ ବନ୍ଧୁକ
ଖାଲିକାକରରେ ପୂରିବ ନାହିଁ ଘଡା
ଖାଲି ଚାକଘରେ ଘୂରିବ ନାହିଁ ଘୋଡା

× × ×

ପ୍ରତ୍ୟେକ ଗୃର୍ଷୀ ଯୁଆନର କୁଆଳି
ବନ୍ଧୁକ ହେଉ ..................ଲଗୁଡ଼ି
ଗଉଡ ପିଲର ବନ୍ଧୁକ ହେଉ ।"
(ବନ୍ଧୁକ ଦରକାର-ମନମୋହନ ମିଶ୍ର -ଝଙ୍କାର, ଡ଼ିସେମ୍ବର-୧୯୬୫)

(୪୯)—"ପଶୁବଳେ ଯିଏ ତୋଳି ନେଲି ତୋର ଦେହୁଁ ସର୍ବ୍ବଣର ଆଶାବାଡ଼ି
ହେଉ ବଳବାନ ଅଂଜର ତୋଫାନ ତା' ବୁକୁରେ ପଡୁ ମାଡ଼ି
ସରଣୀ ସନ୍ଧାନେ ହେ ନବ ପଥିକ
ହୁଅ ଅବନୀତ ହୃଅରେ ନର୍ଭୀକ ।"
(ହେ ନବପଥିକ-ଆବାଜ-ମେ ୧୯୫୪)

(୫୦)—"ଆଜି ଆସିଛୁ ଆହ୍ୱାନ ସମରେ
ଗ୍ରାମରେ ଶ୍ରମିକ ବିଜୟ ରଥେ
ତୋ ଯାତ୍ରା ପଥେ ପାତେ ଯେ ଘୃଣିତ ଜାଲି
ସଂଶସ୍ବୀ ପାଜି ଦଲାଲ

ତାର ଲାଗି ତୋଳ ଉଚ୍ଚ ଉଲଟାଣ ।"
(କୋଟି କଣ୍ଠେ—ମନମୋହନ ମିଶ୍ର-୧୯୫୧)

(୫୧)—"ମନେ ପଡେ ସବୁ ଆଜି ଆଉ ତୀବ୍ର ପ୍ରତିହିଂସା ଜାଗେ
ପ୍ରାଣ ମୋର ଦଗ୍‌ଧ ହୁଏ କ୍ଷୋଭଭରେ, ଉତ୍କଟତମ ରାଗେ
କରିବାକୁ ହେବ ମୋତେ ନିଜବଳେ ବଜ୍ରମୁଷ୍ଟି ଘାତେ
ଭୁଲିଥିଲି ସୂର୍ଯ୍ୟ ସେ ଯେ ଜନ୍ମ ଲଭେ ରକ୍ତାକ୍ତ ପ୍ରଭାତେ"
ଅଗଷ୍ଟ ୧୫, ୧୯୪୯—ରଘୁନାଥ ଦାସ, ଅଗଷ୍ଟପନ୍ଦର ଓ ଅନ୍ୟାନ୍ୟ କବିତା ।

(୫୨)—"ତୁମ ମଶାଣିର କଳାଧୂଆଁ ଯେଉଁ ବାଦଲ ଆଣିଛି ଡାକି
ତା କଳା ଗୁନ୍ଥରେ ମୂର୍ଚ୍ଛିତ ଆଜି ପ୍ରଳୟର ବୈଶାଖୀ ।
× ×ବିଜୟ ଶଙ୍ଖ ଗର୍ଜୁଛି ମୁଖେ ମୁଖେ
(ପଦଧ୍ୱନି-ମନୋଜ ଦାସ-୧୯୫୪)

(୫୩)—"ତୁମ ଜୀବନର/ପ୍ରାଣବନ୍ତ କୁଆରକୁ
ପଥର ମଡାଇ ବନ୍ଦ କରି ହୋଇଅଛି
ତୁମର ସ୍ୱପ୍ନକୁ
ଟିକି ଟିକି କରି କାଟିଦିଆ ହୋଇଅଛି ।"
(ଅଗ୍ନିଶଂଖ ୧୯୫୫—ପୃ ୬୪୩-କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ)

(୫୪)—ଅଗ୍ନିଶଙ୍ଖ—କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ—ପୃ ୬୪୬

(୫୫)—ତତ୍ରୈବ

(୫୬)—ପଥପ୍ରାନ୍ତର କବିତା—ନାଚ ମୁର୍ଦ୍ଦାର—ରବିସିଂ—୧୯୫୮

(୫୭)—ସର୍ବନାଶର ପଥେ—ଅଭିଯାନ (୧୯୩୮)—ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ ପୃ ୭୨୦

(୫୮)—"ତମର ଧରମ, ତମର ଅନ୍ନଲୋକୀ
ଯାଜକେ, ପାଳକେ ଆମେରେ କରିବୁ ଚୂନା
ତୁମରି ଅମାରେ ଆମର ଧନ
ଆମରିରକ୍ତେ ତିଆରି ତ ଯେତେ ସୁନା"—ତତ୍ରୈବ-୭୬୮

(୫୯)—"ଆମରି ଧନରୁ ଆମକୁ ଅଳପେ ଦେଇ
ଭେଳିକ ଲଗାଇ କାହିଁ ହୋଇ 'ଦାତାରାମ'
ଗେରୁଆ ଲୁଗା ଭିତରେ ଶୋଷଣ ଜାଲ
ରଚିଛ; ଅଥଚ ବାହାରେ ମାରୁଛ ନାମ" ତତ୍ରୈବ—ପୃ ୭୬୯

(୭୦)—"ତମ ଫରମାସେ ଲିଖିତ ଶାସ୍ତ୍ରମାନ
ତମ ପୁରୋହିତ ଧର୍ମ ଓ ଭଗବାନ
× × ×
ଆମେ ନିଷ୍ଠୁର ଧ୍ୱଂସର ସହଚର
ଆମେ ସମ୍ପ୍ରତାନ, ଆମେରେ ମୃତ୍ୟୁଦୂତ ।"
(ସର୍ବନାଶର ପଥେ—ସ: ସ. ଗ୍ରନ୍ଥାବଳୀ—ଅଭିଯାନ-୧୯୩୮)
(୭୧)—"ଜାଣିଥାଅ ଭାଇ ଧର୍ମଟା ହେଲା ସବୁ ଫିସାଦର ମୂଳ
ସେ ମୂଳ ରହିଛି ଧନିକ ହାତରେ ତମେ ମର ଏଣେ ଭୁଲ
ସବୁ ଶୋଷଣର ଧର୍ମଟା ହେଲା ଅଟଇ ଅସଲ ମନ୍ତ୍ରି
ଆମ୍ଭାକୁ ଆମ କରେ ସେ ପଙ୍ଗୁ ଗେରୁଆ ରଙ୍ଗେ ରଂଜି ।"
(ଜୁଆଗ୍ରେସ୍-ତଦ୍ବୈବ ।
(୭୨)—"ଗୀର୍ଜା ଦେଉଳ ମସଜିଦ୍ ଭାଇ ଧନିକ ହୁକୁମେ ଚଳେ
ଧନୀର ସ୍ୱାର୍ଥ ନିରାପଦ ରହେ ଧରମ ବିଧାନ ବଳେ"—ତଦ୍ବୈବ
(୭୩)—"ସକଳେ ଖଟାଇ ଆପଣାର କାମେ
ଲୋଭମାରେ ଜଣେ ଧର୍ମର ନାମେ
ଧର୍ମଟା ଏକା ଶସ୍ତା ବେଉସା
ଗଢା ତାହା କାହାପାଇଁ
ଭଗବାନ ଅଛି କାହିଁ ?"
(ଭଗବାନ ଅଛି କାହିଁ—ଅଭିଯାନ—ପୃ ୭୬୮—ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ—
(୧୯୩୧) ରେ ପ୍ରକାଶିତ 'ଅଭିଯାନ' (୧୯୩୮)ରେ ସଂକଳିତ)
(୭୪)—"ଧନିକ ହାତରେ ତମେ ଏକ କଳ
ମଣିଷର ଧନ ଶୋଷଣେ କେବଳ
× × ×
ତୃଣବାକୁ ହେଲେ ଧନୀର ବିଧାନ
(ଆଗେ) ରକ୍ତ ତମର ଲୋଡ଼ା ଭଗବାନ
ତମର କବର ଧନୀର କବର
ମରଣ ତମର ଭୁଇଁ
ଭଗବାନ ଅଛି କାହିଁ ?" ତଦ୍ବୈବ—ପୃ-୭୮୦
(୭୫)—"ଜଡ଼ ଅକ୍ଷର ଭିତରେ ରହିଛି ଆଗ୍ନେର ନିୟମ ଯୋଡ଼ା
ନ ପାଇଲି ଖୋଜ ଅଛି ଅବା ତହିଁ ଆଉ କେଉଁ ହାଣ ଘୋଡ଼ା"
(ଯାଦୁଘର—କାଳନ୍ଦୀ ରଚନାଚୟ—ପ୍ରଥମଭାଗ—ପୃ-୪୧୭-୧୯୩୮)

(୬୬)—"ସକଳ ଧରମ ଯୁକ୍ତ ତରକ ନିୟମ କାନୁନ କାଟି
ଆବର ଧରାକୁ—ଜବାବ ଦୋଉଛୁ କମାଣ ବାରୁଦ ଫାଟି
ଆବର ଧରଛୁ ରାଜ ସରକାର ଓକିଲ ବାବୁର ପଢ
ଆବର ଧନର ମାଲିକ ଏ ସବୁ ସତ୍ୟର କରାମତ ।" (ତତ୍ତ୍ୱୈବ)
(୬୭)—ଯାଦୁଘର—କାଳିନ୍ଦୀ ରଚନାଚୟ—ପ୍ରଥମଭାଗ ପୃ-୪୧୭-୧୯୩୮
(୬୮)—ଯାଦୁଘର—କାଳିନ୍ଦୀ ରଚନାଚୟ—ପ୍ରଥମଭାଗ ପୃ-୪୧୮-୧୯୩୮
(୬୯)—"ପାଷାଣ ଦେବତା କେବେକଥା କହେ ଶୁଣିଛ ବ୍ରାହ୍ମଣ ।
ବନ୍ଦ କର ଦେଉଳ କପାଟ
ଦେବଭୋଗ ଅନ୍ନଥାଳ ଭୋଗିବାକୁ ଦିଅ ଆଜି ତା'ରେ
ଦେବ ପୂଜାର ଫଳ ପୁରୋହିତ ପାଇବ ଏଠାରେ"
(ମନ୍ଦିର ଭଗ୍ନ—ବିନୋଦ ନାୟକ—ନବ ଭାରତ ୪/୪ ସେପ୍ଟେମ୍ବର-୧୯୩୮)
(୭୦)—"ଦେବ-ଭୋଗ ନିରନ୍ନରେ ଦିଅ,/ଦେବ ସେବା ହେଉ ମାନବରେ
ଦେବତାର ଦରଶନ ଲଭ,/ମାନବରଂ ପ୍ରତି ଘରେ ଘରେ"
(ଦେବପୂଜା—ଜୀବନ ଚିତା ୧୯୪୭—ମାନସିଂହ ଗ୍ରନ୍ଥାବଳୀ ପୃ-୩୯୫-୧୯୪୭)
(୭୧)—"ତବ ନାମେ ଅନୁଷ୍ଠାନ ଯାହା ଯେ ଗଢ଼ିଲେ/କାହିଁ ହେ ମଙ୍ଗଳ
ଦୀନ ଏକ କୃଷକର କୁଟୀରୁଁ ତ ତାହା/ନୁହେଁ ମହତ୍ତର
ଦୁନିଆରେ ବୈଷମ୍ୟର ସ୍ଥାନ ଯଦି ଥାଏ/ତାହାତ ମନ୍ଦିର
କାରାଗୃହ ମୋ ବିଚାରେ ଏହାଠାରୁ ଭଲ/ଏହାଠୁଁ ସୁନ୍ଦର"
(ମୂର୍ତ୍ତି ଓ ମନ୍ଦିର—ଜ୍ଞାନୀନ୍ଦ୍ର କବିତାବଳୀ ପୃ-୬୯)
(୭୨)—"ବନ୍ଦକର ଭକ୍ତ ଆଜି, ଶଙ୍ଖ ବଜାଅ ନାଇଁ
ଗୋଟିଏ ନୁହେଁ, କୋଟିଏ ଆଜି ଦେଉଳ ଅଛୁ ଦେଶେ,
ସେଇ ଦୁଆରେ ବନ୍ଧୁ ତୁମେ ଭକ୍ତ ହୁଅ ଯାଇ
ସେଇ ପୀଡ଼ିତ ଆତ୍ମାଦେବ ଦେଖା ଦେବତା ବେଶେ"
(ଦେବପୂଜା—ନଭେମ୍ବର ୧୯୫୮—ଗୋଦାବରୀଶ ଲେଖାବଳୀ ପୃ-୨୧୯)
(୭୨ କ)—" × × × ତମେ ଯେବେ ଶକ୍ତିହୀନ ଜଡ଼ପିଣ୍ଡ ଅଥବା ପାଷାଣ/ମାନବ କଳ୍ପନାପ୍ରସୂ୍ତ ଦିବାସ୍ୱପ୍ନ । ମୂଢ଼ ଭଗବାନ/ତେଣୁ ତୁମର ବନ୍ଦନା ଲାଗି/ ଢଳେ ଆଜି ନାହିଁ ମୋର ନାହିଁ ଅଭିପ୍ରାୟ/ଆତ୍ମ ସଚେତନ ନର ଯେଣୁ ମୁହିଁ ବିଂଶ ଶତାବ୍ଦୀର ।"
(ହେ ମୂକ ଦେବତା—୧୯୪୮, ଢଙ୍କିକ—ପୃ-୪୪)
(୭୩)—ସେ ଏକ ଭୈରବଶ ମାଳ ହାତ-କୃତ୍ତିବହାସ ସଞ୍ଚୟନ—ପୃ-୫୮ (୨୧-୪-୧୯୫୦)

(୭୪)—ସେ ଏକ ଲୋମଶ ନୀଳ ହାତ—କୃତ୍ତିବାସଙ୍କ ସଂଚୟନ, ପ୍ରଥମଭାଗ—ପୃ-୫୯

(୭୫)—"ତୁମ୍ଭଙ୍କୁ କରୁନ ନମସ୍କାର
ହେ ଈଶ୍ୱର
ଦେଉଳ ଗୀର୍ଜାର
ହେ ଈଶ୍ୱର ମୌଲବି ମୁଲ୍ଲାର
ତୁମ୍ଭଙ୍କୁ କରୁନ ନମସ୍କାର
ଗଢ଼ିଛ ତୁମକୁ ଧନିକ ଦେବତା
ନିଜର ସ୍ୱାର୍ଥ ପାଇଁ
ସଂରମାସେ ତା'ର ହୋଇଛ ତଆର
ତାହାର ବିଭଜ ପାଇଁ ।"

(ନମସ୍କାର ୧-ବନ୍ଦୁ ସିନ୍ଧୁ-୧୯୭୨ ମାନସିଂହ ଗ୍ରନ୍ଥାବଳୀ ୧ମ, ଭାଗ—ପୃ-୫୦୯)

(୭୬)—ବର୍ତ୍ତମାନ ସାହିତ୍ୟରେ ନୂତନ ଭାବଧାରାର ଆବାହନ—ରାମ ପ୍ରସାଦ ସିଂହ ।

(୭୭)—'ମଜଦୁର'—ଚଲିଆ ଜୀବର ବିଳାପ-ମାନସିଂହ ଗ୍ରନ୍ଥାବଳୀ ୧ମ ଭାଗ ପୃ-୫୭

(୭୮)—"ଧରିତଳେ ଝୁରୁ ପରିହାସ
କାଟିଶସ୍ୟ ରହେ ଉପବାସ ।
ସକଳେ ଯେ ଯୋଗାଏ ଭୋଜନ
ନିଜ ଧାନେ ନାହିଁ ତାର ଅନ୍ନ ।"

(କୃଷକ—ଚଲିଆ ଜୀବର ବିଳାପ ତତ୍ରୈବ—ପୃ-୫୯)

(୭୯)—(କୃଷକ-ଚଲିଆ ଜୀବର ବିଳାପ—ମାନସିଂହ ଗ୍ରନ୍ଥାବଳୀ, ୧ମଭାଗ—ପୃ-୫୮)

(୮୦) – "ଭଲ ମୁଁ ଜାଣେ ଠକେଇ କାମଇସ୍କୁଲରେ କରେ
ଅଚଳ ଯେଣୁ ଭାଇ ବିନା ଟ୍ୟୁସନରେ"

(ଚଲିଆ ଜୀବର ବିଳାପ—ସ୍କୁଲ ମାଷ୍ଟର—ମାନସିଂହ ଗ୍ରନ୍ଥାବଳୀ-ପୃ-୬୩

(୮୧)—"ବିବେକ ଯେବେ ଦେଖାଏ ଆଖି
ଦିଏ ମୁଁ ଉତ୍ତର
ଉପର ସ୍ତରେ ଯିହିଁ ତ ଭାଇ ଦେଖତ କେତେ କୁଟ
କେବଳ ଠକର ଦଳ"

(ଚଲିଆ ଜୀବର ବିଳାପ—ସ୍କୁଲ ମାଷ୍ଟର—ମାନସିଂହ ଗ୍ରନ୍ଥାବଳୀ—ପୃ-୬୩

(୮୨)—"ଠିକ୍ ସେତିକ ବେଳେ
ପାଟ ମନ୍ତ୍ରୀର ଷୋଡ଼ଶ ପୂଜା ପାଇଁ

ଅଚଥିଶାଳେ ସଜଡ଼ା ହୁଏ ଖାନା
ପୋଷାକ ପିନ୍ଧା ବେହେରା-ବବୁର୍ଚ୍ଚିର
ଗ୍ଭଲିଚ ଧାଆଁ ଧାଇଁ ।"

(ଯଦୁ ସ୍ୱାଇଁର ଗାଥା—ମାନସିଂହ ଗ୍ରନ୍ଥାବଳୀ ୧ମଭାଗ ପୃ-୬୧୭)

(୮୩)—ବାସ୍ତବରେ ଯିଏ ସେ ନିର୍ମାତା
ଜୀବନରେ ସେ ରହିଲା ଅନ୍ଧା
ଚିର ଅପାଂକ୍ତେୟ

× × ×

ଆକସ୍ମିକ ଅବଜ୍ଞାତ ମରଣେ ଆହ୍ୱାପୁଣି
ସାଙ୍ଗ ହେଲା କରୁଣ ତାର ଗାଥା

(ଯଦୁ ସ୍ୱାଇଁର ଗାଥା—ମାନସିଂହ ଗ୍ରନ୍ଥାବଳୀ, ୧ମଭାଗ – ପୃ-୬୧୭)

(୮୪, ୮୫)—ଶକ୍‌ସାବାଲ୍—କୁଞ୍ଜ ବିହାରୀ ଫଚଯ୍ନନ—୧ମଭାଗ – ପୃ-୭୭-୭୯

(୮୬)—ଶକ୍‌ସାବାଲ୍—କୁଞ୍ଜବିହାରୀ ଫଚଯ୍ନନ- ୧ମ ଭାଗ—ପୃ-୭୭-୭୯

(୮୭) – "ଗ୍ଭଲିଛୁ ଜଗୁ ଯେନା—କୋଇଲା ଖଣିର କୁଲି

× × ×

ଖଣିରେ ମିଞ୍ଜି ମିଞ୍ଜି ଆଲୋକ ଜଳୁଛି
ମୁମୂର୍ଷୁର ନିସ୍ତେଶ ଆଖିରେ
ଜୀବନର ଶେଷ ବିନ୍ଦୁପରି
ଫୁଟେ ରକ୍ତ/ଫାଟିଯାଏ ଅସ୍ଥି
ଧରଣିଝା ଦେହରୁ
ଛୁଟିଛି କଳା ଝାଳର ଯମୁନାର ଧାର ।"

(କୋଇଲାଖଣିର କୁଲି—କୁଞ୍ଜବିହାରୀ ଫଚଯ୍ନନ—ପୃ-୮୦-୮୨)

(୮୮)—ଶକ୍‌ସାବାଲ୍, କଲିକତା କୁଲି—ଲୋକାଯ୍ନନ-ସଞ୍ଚୟନ—ବିଦ୍ୟୁତ୍‌ପ୍ରଭା ଦେବୀ (୧୯୫୬)

(୮୯)—"ତରୁକାନେ କହୁଥିଲା
ଝଡ଼ ମେଘ କରି ହାହାକାର
ଦୁର୍ବଳର ଅସ୍ଥି ପରେ
ବଳିଷ୍ଠର ଏକ ଅତ୍ୟାଚାର

ସେଦିନର ଝଡ଼-କଣ୍ଠେ
 କୋଟି କୋଟି ଦଳିତର ବ୍ୟଥା
ଶ୍ରାବଣର ଇତିହାସେ
 ରଖିଗଲ ସେହି ଏକ କଥା"
 (ଶଙ୍ଖାବାଳି-ଲୋକାୟନ—ସଞ୍ଚୟନ—ବିଦ୍ୟୁତ୍‌ପ୍ରଭା ଦେବୀ—ପୃ-୫୭)

(୯୦)—ମୂଷା ହାଡ଼ ! ମୂଷା ହାଡ଼
 × ×
ମାସକୁ ପାଉଛ ଟଙ୍କା ଉଣେଇ ସବୁତକ ଯାଏ ଉଡ଼ି
 × × ×
ବଟିସ୍ତ୍‌ ଭିତରେ ଶ୍ରେଷ୍ଠ କୁଡ଼ିଆରେ,
ପିଲାଛୁଆଙ୍କୁ ଦେଖିଦେଲେ ବାରେ,
କିଏ ସେ ହସୁଛି କିଏ ସେ ଖେଳୁଛି
କିଏ ସେ କରୁଛି ଅଳି
ଅଳିରେ ତା'ର ଆନନ୍ଦ ଉଠେ ଭରି ।"
(ମୂଷା ହାଡ଼ ୧୯୫୨—ରୂପାୟନ-କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ—ପୃ-୩୨୦)

(୯୧)—ତଦୈବ—ପୃ ୩୨୫

(୯୨)—"ଦେହେ ଛିନ୍ନ ବାସ, ରୁକ୍ଷ କେଶରାଶି ଶିରେ,
ଦୈନ୍ୟର ଅଭାବ ଗ୍ଲାନି ସମସ୍ତ ଶରୀରେ
କେମନ୍ତେ ଉଠୁଛି କହି ବୁଭୁକ୍ଷା ବାଣୀ !
ମୋ ଦେଶର ଏଇମାନେ ହତଭାଗ୍ୟ ପ୍ରାଣୀ ।
ଚିର ଦିନ ଭୋଗି କଷ୍ଟ କ୍ଲେଶ ପରାଭବ
ଲଭେନି କାହାନ୍ତି ଜାଣି ଜୀବନ ସୌରଭ"
(କୁଲିବାହା ଯାତ୍ରୀଗାଡ଼ି—ଆତ୍ମଲିପି—କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ ୧୯୬୯—ପୃ ୨୫୭)

(୯୩)—"ମୁଣ୍ଡବାଳ ତା'ର ଉଡ଼ୁ ଯେ ଥାଏ ଫୁରୁ ଫୁରୁ
ଗୋଟିଏ ପ୍ରେତ-ପରି ଦିଶୁ ସେ ଥାଏ ଅବାଦୂରୁ ?
କେଉଁଠି ନଳାତଳେ ଅଇଁଠା ଭାତଥିଲେ ପଡ଼ି
ଗୋଟାଇ ଖାଉଥାଏ, ତା ବ୍ୟଥା କିଏ ପାରେ କଳି ?
(ଛତର ଖାଇ-ମାଟିଦୀପ ୧୯୫୭—କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ-ପୃ ୪୫୯)

(୯୪)—"ଯେତେନେହ ଉଷ୍ମ ଯେ ରୁଦ୍ଧ ତା' ମରମ ତଳେ
ବନ୍ଧ ସେ ଯିବାପାଇଁ ପାଉନ ପଥ ଅବିରଳେ ।

ଜନନୀ ହୋଇ କୋଳେ ଧରିବା ପାଇଁ ଏକ ପୁଅ
ଶୁଷ୍କ ନୟନେ ତା' ଜାଗୁନି କେତେବାର ଲୁହ ?
(ଛତରଖାଇ-ମାଟିଦୀପ ୧୯୫୭-କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ-ପୃ ୪୭୦)

(୯୫)—୫୪, ଖନୁବାଇଲେନ୍—କୃଷ୍ଣଚରଣ ବେହେରା—୧୯୫୪

(୯୬)—" × × ×

ଏ ସବୁ ମଠର ଗାଡ଼ି ବଗିଚର ଲଗି ପଛୁଆର
ବର ଯାଏ ଫୁଲମାଳା ସଜା ସାମ୍ନା ମଠରଗାଡ଼ିରେ
ତାର ବେକ ମନ୍ଦ ମନ୍ଦ ବାସୁଥିବ ଖସ୍କର ମାଳରେ
× × ×
ମୁଁ ଅବା କରନ୍ତି କଣ × ×
ମୋ ଦେହର ଶୁଖିଲା ନଈରେ
ହଠାତ୍ ଉଷ୍ଣ ବନ୍ୟା ଓ ସ୍ୱପ୍ନ
× × × ନିସଙ୍ଗ ଅନ୍ଧାର ଘୋର ନିଭୃତ ବିଲରେ
କ୍ରମେ କ୍ରମେ ସରଗଲା ।
(ଭିକାରୁଣୀର ବରାନୁଗମନ ଦର୍ଶନ—ସଂଦଗ୍ଧ ମୃଗୟା-ପୃ ୮୬)

(୯୭)—"ଚାଲ ଭୈରବ ଚାଲ ଚଞ୍ଚଳ ! ଚାଲ ଚାଲ
ମନେରଖ ମନେରଖ ଆମେ
ଶେଷ ଦେବକୀ ଗର୍ଭ ବିଦାରି
ଶେଷ କାରାଗାର ବକ୍ଷ ଉଦାରି
ହୋଇ ଅଛୁଁ ଜନମ ।"
(ରକ୍ତ ବୀଜର ଅଭିଯାନ-ଅଭିଜ୍ଞାନ-ସଚ୍ଚିଦାନନ୍ଦ ରାଉତରାୟ ଗ୍ରନ୍ଥାବଳୀ—ପୃ ୫୩୩)

(୯୮)—ତତ୍ରୈବ—ପୃ ୫୩୪

(୯୯)—"ଚାଲ ଚାଲ
ହଳଧର
କୃଷାଣର ନେତା ହେ !
ଦାଆ, ହଳ ମୁଗୁରରେ
ତ୍ରିଭୁବନ ଜେତା ହେ
ମଜଦୁର କୃଷି ନୁହେ

କ୍ରୀତ ଦାସ,
କେତେ ଯୁଗ'' (ରକ୍ତ ସାଗର ଅଭିଯାନ—ଅଭିଜ୍ଞାନ-ସଚ୍ଚିଦାନନ୍ଦ ସ୍ୱଗ୍ରନ୍ଥ ଗ୍ରନ୍ଥାବଳୀ-ପୃ ୫୩-୫)

(୧୦୦)—"ଯା କଣ୍ଠ କୁଣ୍ଠିତ ଏଥି, ମଣିଷରେ କରଇ ଝଙ୍କାର
ଜୀବନର ଛନ୍ଦ ଯାଥେ ନାହିଁ ଯାର ଏତେ ଟିକେ ମେଳ
× × ×
ଦୂରକର ତାର କଳା ଗୁଳ
କେଉଁଠୁ ସେ ଏ ଧରାରେ ଆଣିବାକୁ ଅଟକଚେ ବାହୁ
ସୃଜନର ନୂଆ ଭଗିରଥୀ
କ୍ରାନ୍ତିର ସାରଥି ।" (ବାଜିରାଉତ—ସଚ୍ଚିଦାନନ୍ଦ ସ୍ୱଗ୍ରନ୍ଥ ଗ୍ରନ୍ଥାବଳୀ—ପୃ ୫୮୦)

(୧୦୧)—ବାଜିରାଉତ—ସଚ୍ଚିଦାନନ୍ଦ ଗ୍ରନ୍ଥ ଗ୍ରନ୍ଥାବଳୀ—ପୃ ୫୮୨

(୧୦୨)—ପଦ୍ମଭୁକ୍—ପାଣ୍ଡୁଲିପି – ସଚ୍ଚିଦାନନ୍ଦ ଗ୍ରନ୍ଥ ଗ୍ରନ୍ଥାବଳୀ—ପୃ ୭୮

(୧୦୩)—ବୃହନ୍ନଳା—ପିଙ୍ଗଳାର ସୂର୍ଯ୍ୟ—ବେଣୁଧର ରାଉତ—ପୃ-୫୩ (୧୯୬୭)

(୧୦୪)—ହେ ମଣିଷ ଭାଇ, ଆଜର ବୃହନ୍ନଳା,
ମଣିଷ-ପଣ ତୁ ହୁଏ ତ ପାଇବୁ ଫେର,
ଅର୍ଜୁନପଣ ପାଇବୁ, ନାହିଁ ବା ଡେର
ବିରାଟ ଗୋଧନ ହେବ ଯବେ ହୁଏ କାଳେ ।
କ୍ଲୀବର ଉଆର ଗାନ ଓ ନୃତ୍ୟକଳା
ଶମୀତରୁ ବହୁ ସେ ହ'ହାତେ ଆଣି ତୋ ଗୋପିତ ଧନୁଶର
ପୁଣି ହବୁ ତୁଇ ଅର୍ଜୁନ ଅବା ନିଜରୂପ ମଣିଷର,
(ବୃହନ୍ନଳା—ପିଙ୍ଗଳାର ସୂର୍ଯ୍ୟ—ବେଣୁଧର ରାଉତ—ପୃ-୫୩)

(୧୦୫)—"ମୁଁ ଇତ କହୁଚି ଈଶ୍ୱର କଥା ମନେ ଆଉ ରଖନାହିଁ
ଈଶ୍ୱର ଥାଇ ନ ଥାଇ କି ଯାଏ ଆସେ ।
× × × ×
ମୁଁ ଆଜ ଗାଉଛି ମଣିଷର ଜୟଗୀତ
ମଣିଷ ଜାତିର ଉଗ୍ର ଜୀବନ ଓ ସରଳ ଚଣ୍ଡୀଗାନ''
(ବୃହନ୍ନଳା—ପିଙ୍ଗଳାର ସୂର୍ଯ୍ୟ—ବେଣୁଧର ରାଉତ-ପୃ-୫୨)

(୧୦୬)—"ବହୁଇ ଯେ ଦେଶେ ଶୋଣିତ-ଯଶତ-ଧାରା,
ଶର୍ଙ୍କିତ ଧରାବନ୍ଧ କରି ମାପ ଉଭା
ସାମ୍ୟ ମୈତ୍ରୀ ଯହିଁ ପରାହତ,

ବିଜୟ ବାହିନୀ ତବ ଅବନତ
ସେ ଦେଶେ ଦେବତା ଗାଇବାକୁ ତବବାଣୀ
ମୃତ୍ୟୁର ପଥେ ନେଇଛନ୍ତ ତାଙ୍କୁ ଟାଣି ।''
(ରୁଦ୍ର ଦେବତା—ବୈକୁଣ୍ଠନାଥ ଗ୍ରନ୍ଥାବଳୀ—ପୃ-୪୪-୧୯୩୯)

(୧୦୭)—''ବିପ୍ଳବୀ ମୁଁ, ମୁଁ ଦୁର୍ମଦ, ମୁଁ ଚିର ଅଜେୟ
ମୋର ତାଜାଲହୁ
ଜାଣେ ହେବ ନାହିଁ ବ୍ୟର୍ଥ
ସହସ୍ର ସହସ୍ର ବାର ସପ୍ତରଥୀ କଲେ ବି ଘେରାଉ
ମୋତେ ।''
(ଅଭିମନ୍ୟୁ—ସର୍ବହରା—ରବିସିଂ ପୃ-୧୦୧)

(୧୦୮)—ତତ୍ରୈବ
(୧୦୯)—''ଦୌର୍ଯ୍ୟୋଧନୀ ଏ ସମାଜ ବ୍ୟବସ୍ଥାର ରାୟ
ମାନି ନେବ ନାହିଁ ଏହି ଅଭିମନ୍ୟୁ
ହେବ ସୂର୍ଯ୍ୟୋଦୟ
ବିପ୍ଳବର ନିଶ୍ଚିତ ବିଜୟ''
(ତତ୍ରୈବ ପୃ-୧୦୨)

(୧୧୦)—କବିତାର ଏକ ସଂଜ୍ଞା-ସ୍ୱର୍ଗତ ୧୯୫୮—ସଚି ରାଉତରାୟ ଗ୍ରନ୍ଥାବଳୀ—ପୃ-୫୧୨
(୧୧୧)—ଲାବଣ୍ୟବତୀଙ୍କୁ ଚନ୍ଦ୍ରଭାନୁର ଚିଠାଉ—ପାଣ୍ଡୁଲିପି—ସଚି ରାଉତରାୟ ଗ୍ରନ୍ଥାବଳୀ ପୃ-୧୩୩-୧୩୪
(୧୧୨)—କୋଣାର୍କ—ପାଣ୍ଡୁଲିପି—ସଚି ରାଉତରାୟ ଗ୍ରନ୍ଥାବଳୀ-ପୃ-୨୯
(୧୧୩)—ହେ ବନ୍ଧୁ ମିଳାଅ ହାତ (୧୮୫୩-ସ୍ୱର୍ଗତ—ସଚି ରାଉତରାୟ ଗ୍ରନ୍ଥାବଳୀ ପୃ-୪୯୭)

(୧୧୪)—''ଘାସର ନିବିଡ଼ ହ୍ରଦେ ଆକାଶେ ଜଳଦେ
ପ୍ରାଣର ବିସ୍ମୟେ ଅବା ସଂଭ୍ରମ ବିଷାଦେ
ଅଙ୍କୁରିତ ହେଉ
ଆମର ମିଳିତ ଐକ୍ୟ ଆୟୁଷ୍ମାନ ଗାନ
ପାହାଡ଼ ସାଗର ଟପି, ବା ବିସ୍ତୃତ ବୃତ୍ତ
ପ୍ରାନ୍ତର ପର୍ବତ
ଖାଲବିଲ ପଡ଼ିଆ ବନ ପୁଣି ଗ୍ରାମ୍ୟପଥ

ଚନ୍ଦ୍ରକଳା
ଅନ୍ଧତ୍ୱକାର
ମେଘବଳ୍ଲି ପ୍ରବାଳ ସୈକତ

—ତନ୍ତ୍ରୈବ—ପୃ-୪୯୮

(୧୧୫)—ହେ ବନ୍ଧୁ ମିଳାଅ ହାତ (୧୯୫୭) ସ୍ୱର୍ଗତ-ସଚ୍ଚିଦାନନ୍ଦଗ୍ରନ୍ଥାବଳୀ ପୃ—୪୯୮-୪୯୯

(୧୧୬)—କଳ ବନ୍ଦନା ପଢେ – ଅନନ୍ତ ପଟ୍ଟନାୟକ

(୧୧୭) – ଝଡ—ପାଣ୍ଡୁଲିପି – ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ—ପୃ-୧

(୧୧୮)—(୧୧୯)—କଳବନ୍ଦନା ପଢେ—ଅନନ୍ତ ପଟ୍ଟନାୟକ

(୧୨୦)—କାଠଘୋଡା ପାଣି ପି, (୧୯୫୫)—ପିଙ୍ଗଳାର ସୂର୍ଯ୍ୟ-ବେଣୁଧର ରାଉତ - ପୃ୩୭-୩୮

(୧୨୧)—ମଲଯ୍ୟର ଆତ୍ମହତ୍ୟା-ପିଙ୍ଗଳାର ସୂର୍ଯ୍ୟ ୧୯୬୭—ବେଣୁଧର ରାଉତ-ପୃ ୧୩୦

(୧୨୨)—"ସହରର ଶେଷଭାଗେ ଦୂରେ ସେହି ନିର୍ମୀୟମାଣ ବସ୍ତିର ପ୍ରାନ୍ତରେ
ଜୀବନର ରଣ କ୍ଷେତ୍ରେ ଦାରିଦ୍ର୍ୟର ଉଗ୍ରବାସ୍ତବତା

× × × × ×

ଅଛୁ ନୂଆ କାରଖାନା ଚିମିନିର ଧୂଆଁ
ଅନାଗତ ମୁହୂର୍ତ୍ତର ପୁରୋଗାମୀ ସନ୍ଦିଗ୍ଧ ଯୋଜନା
ବଞ୍ଚିବାର ବାସ୍ତବ ଓ ବିପୁଳ ସମସ୍ୟା;
କାରଖାନା କାହାଳର ମର୍ମଭେଦୀ ଉତ୍କଟ ଆବାଜ········ ।
(ତତ୍ରୈବ- ପୃ ୧୩୦-୧୩୧)

(୧୨୩)—ମାର ରୁ ଯେତେ ଗୁଳି-୧୯୩୮-ଅଭିଯାନ-ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ-
ପୃ ୭୮୧

(୧୨୪)—ମାର୍ ରୁ ଯେତେ ଗୁଳି-୧୯୩୮-ଅଭିଯାନ-ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ
ପୃ ୭୮୧

(୧୨୫)—"ଆମରି ଧନରେ ପୋଷିତ ସିପାହୀ
ପୁଞ୍ଜାଏ ବନ୍ଧୁକ କି କରିବ ଭାଇ ?
ଲକ୍ଷ ମଣିଷ ଲୁହରେ ବତୁର
ଭସିଯିବ ତାର ଲୁହା କବାଟ

ଚରାଟି ଥରେ ଭୁ ଗୃହିଁଲେ କଡେଇ
ନଭୁଯିବ ତାର ସବୁଟି ବଡେଇ
ଲହୁ ହେବ ପାଣି, ବୋହିବ ଉଜାଣି
ରଖିଥାଉ ଯେତେ ପୁରୁଖା ଥାଟ"
(ଦେଖିନେବୁ ତାକୁ ଅଭିଯାନ-ସଚ୍ଚିରାଉତରାୟ ଗ୍ରନ୍ଥାବଳୀ—ପୃ-୭୮୪, ୭୮୫)
(୧୨୬)—"ଆଖିରେ ଆମର ଜଳେ ଦାଉ ଦାଉ
ବାଡବା ଅନଳ, ନାଲ୍ ଯଥା ଲହୁ ।
ସେ ନିଆଁକୁ ତୁମେ ଫଉଜ ଲଗାଇ
ଲିଭାଇ କି ସତେ ପାରିବ ?
ଜଳ୍ ଜଳ୍ ଜଳ୍ ଭଲ କରି ଜଳ୍
ସ୍ୱରଗେ ଜଳ ଆଜି ଦାବାନଳ
ଝିରପୋକ ପରି ତମେ ଦଳ ଦଳ
ସେଥିରେ ଯେ ପୋଡ଼ି ମରିବ"
(ତୁମେ ମାର ଯେତେ ଆଜି ମାରିବ-(୧୯୩୮-୩୯) ଅଭିଯାନ-ସ: ରା: ଗ୍ର: ପୃ ୭୮୬)
(୧୨୭)—ଚନ୍ଦ୍ରିଥାରେ ଭାଇ ଠକ ରାଜାକୁ—ଅଭିଯାନ (୧୯୩୮-୩୯)-ସ:ରା:ଗ୍ର: ପୃ ୭୮୮
(୧୨୮)—"କଣାଏ ତାର ଆଖିର ନିଆଁ
କରିବ ଭସ୍ମ, ତୋର
ବାରୁଦ ଘରେ ଜଳିବ ନିଆଁ
ଜଳିବ ଚିତାନଳ"
ବାରୁଦ ଘରେ—ଅଭିଯାନ—ସ: ରା: ଗ୍ର: ପୃ-୭୮୯
(୧୨୯)—"ସନ ୧୯୩୮……ଓଡ଼ିଶା ଗଡଜାତର ପ୍ରଜା ଆନ୍ଦୋଳନ । ଅନ୍ଧାର ମୂଳକର ଭିତରେ ସତେ ଯିମିତି ଲକ୍ଷ ଲକ୍ଷ ଦୀପାଳୀର ଉତ୍ସବ । ଜନତାର ଆଖିରେ ନୂତନ ଆଶାର ନାଲ ମଶାଲ । × × × ଦୁର୍ଦ୍ଦାନ୍ତ ଶାସନ ଧ୍ୱଂସ ହେବ । ଅନ୍ଧାର ରାଜତ୍ୱ ଲୋପ ପାଇବ । ଜନତା ଶପଥ ନେଉଛନ୍ତି । ଢେଙ୍କାନାଳର ବୀର ପ୍ରଜା ସବୁରି ଆଗରେ । × × × ଗଛ କାଟିଲା ପରି ଗୋଟିକି ଗୋଟି ବୀର ଶହୀଦ ଭୂଇଁରେ ଲୋଟି ପଡ଼ିଲେ । ବାଜିରାଉତ, ହୁରୁସି ପ୍ରଧାନ, ରଘୁ ନାୟକ, ଗୁରି ନାୟକ, ଲକ୍ଷ୍ମଣ ମଲିକ, ନଟ ମଲିକ ଏବଂ ଜଗୁ ସାହୁ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । × × ସେ ଦିନ ସେ ଭୟାବହ ଚିତାର ନାଲି ଜିଭତଳେ ବସି ମୋ ମନରେ ଯେଉଁ ଅଗ୍ନିଲଗ୍ନ

ଭାବନାର ଉଦ୍ରେକ ହୋଇଥିଲା ତାର ସ୍ମରଣରେ ପରେ ଏ କବିତାଟି ରଚିତ ହୋଇଥିଲା ଏବଂ ୯-୩-୪୧ ତାରିଖରେ କଟକରୁ ଏହାର ପ୍ରଥମ ସଂସ୍କରଣ ପ୍ରକାଶ ପାଇଥିଲା'' ।

(ବାଜିରାଉତ-ପରିଚୟ-ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ-ପୃ ୫୭୩-୫୭୫)

(୧୩୦)—ତତ୍ରୈବ—ପୃ ୫୭୯

(୧୩୧)—ବାଜି ରାଉତ—ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ ପୃ ୫୭୯

(୧୩୧) କ)—ସବୁଜରୁ ସାମ୍ପ୍ରତିକ—ଡଃ ନିତ୍ୟାନନ୍ଦ ଶତପଥୀ—ପୃ ୪୯)

(୧୩୨)—ପତନନଗର—ସଂସାର ଓ ସଂସିଦ୍—କୃଷ୍ଣଚନ୍ଦ୍ର କବିତା ସଂଚୟନ ୩ ଭାଗ ୫.୧୨୫୧

(୧୩୩)—ଗଡଜାତ ହେବ ମୋଗଲବନ୍ଦୀ—କଣ୍ଟା ଓ ଫୁଲ—ଗୋଦାବରୀଶ ଲେଖାବଳୀ ପୃଷ୍ଠା-୧୯୫

(୧୩୪)—ମୁକ୍ତିର ପରାଜୟ, ୧୯୪୯—ହେମୋର କଲମ—ଗୋଦାବରୀଶ ଲେଟାବଳୀ-ପୃ ୪୫

(୧୩୫)—ସାଇରନ ବାଜେ—ଶାନ୍ତିଶିଖା ୧୯୫୨-ଅନନ୍ତ ପଟ୍ଟନାୟକ

(୧୩୬)—ତତ୍ରୈବ

(୧୩୭)—ହଟାଅ ହଟାଅ—ତତ୍ରୈବ

(୧୩୮)—''ଗୋଟିଏ ବୋମାକୁ ତୋ କୋଟି ଜୀବନ ନାହିଁ
ପରମାଣୁକୁ ଗୁହିଁ ଥରନ୍ତି ଭାବଗ୍ରାହୀ''
'ଶାନ୍ତି ଅଭିଯାନ' ୧୯୪୯ – ବୈକୁଣ୍ଠନାଥ ଗ୍ରନ୍ଥାବଳୀ ୨ୟ ଭାଗ—ପୃ ୧୯୩ ।

(୧୩୯)—''ଗରଜୁ ବଜ୍ର ବିଦାରି ଗଗନ
ହୁଙ୍କାରି ଉଠୁ ସିନ୍ଧୁ
ଘୋଟୁପଡ଼ୁଛେ ଘୋର ଅନାହାର, ଦୁଃଖ
ତୋ କର ଚରଣ ଛନ୍ଦୁ,
ମଣିନା ତୁ ଆଜ ତର ଦୁର୍ବଳ.
ଆସିବରେ ଦିନ ଉଜ୍ଜ୍ୱଳତର
ଭବ ଭସ୍ମହାରୀ ଖର କରବାଳ
ଶୋଭିବ ତୋ କରେ ବନ୍ଧ
ସେ ପାରେ ଅନାଏ ଦାନବ ସେ କିଏ

ବର୍ମାରେ ପିଏ ରକ୍ତ ।

× × ×

ପୂଜା (୧୯୪୦)-ବନ୍ଧ୍ୟା ଓ ଯିଧା-ଗୋଦାବରୀଶ ଲେଖାବଳୀ-ପୃ ୩୧୩

(୧୪୦)—ବୋମାରୁ (୧୯୪୩)—ପାଣ୍ଡୁଲିପି—ସର୍ଜି ରାଉତରାୟ ଗ୍ରନ୍ଥାବଳୀ ପୃ ୧୪୦

(୧୪୧)—ହିଟ୍‌ଲର୍‌ର ଶେଷୋକ୍ତି (ମେ ୧୯୪୫)-ପାଣ୍ଡୁଲିପି-ସ: ରା: ଗ୍ର: ପୃ ୯୦-୯୧

(୧୪୨)—କଣ୍ଟ୍ରୋଲ ୧୯୪୧—ଗୋଦାବରୀଶ ଲେଖାବଳୀ—ପୃ ୪୩

(୧୪୩)—ଗୋଦାବରୀଶ ଲେଖାବଳୀ—ପୃ ୧୩୭

(୧୪୪)—"ଲକ୍ଷ ଯୋଜନରୁ ଡ଼ାକ ଦେଇଥିଲି ଗଜ
ତୁମେ ଏବେ ମୋର ପ୍ରଭୁଡାକେ ହେ କାଗଜ
ବସି ଏ କୁଟୀର ପ୍ରାନ୍ତେ ଲେଖନୀ ବଳାଏ
ଆସ ତୁମେ ସଖା ରୂପେ ଅବା ନୋଟ ବେଶେ
ପ୍ରସାଦ୍ର ଏ 'କଆଁ ଖୁଣ୍ଟା' ରୂପେ ଝେଲ ଝେଲ
ନୀରସ ଜୀବନେ ଦିଅ ସରସତା ଢାଳି"

ହେ କାଗଜ ୫-୧୨-୧୯୪୨-କଣ୍ଟା ଓ ଫୁଲ-ଗୋଦାବରୀଶ ଲେଖାବଳୀ-ପୃ ୧୩୭

(୧୪୫)— × × ×

କେଉଁ ଦେଶ ଦେଲା ଉଡ଼ା ବୁଡ଼ା ତରୀ
ଋଣ ଅବା କିଏ ଦିଏ
କିଏ ବା ପଠାଏ ଦେହର ରକତ
କମାଣ ବାରୁଦ ଗୁଳି
ଝାଡ଼ଖଣ୍ଡ କିଏ ସାଗର ସେତୁରେ
ଏତେ ଟିକେ ଦେହ ଧୂଳି
ରାଜାର ଝପଟେ ଭାବ ଭାବ କେଉଁ
ପାଲଟି ଗଲାଣି ଶିଳା
ଗରବ ଓଡ଼ିଶା ଶଗଡ଼ ଶଗଡ଼
ପଠାଏ ବାଉଁଶ କିଲା

ବାଉଁଶ କିଲା ୧୩-୧୨-୪୨ କଣ୍ଟା ଓ ଫୁଲ—ତନ୍ନୈବ-ପୃ ୧୩୭

(୧୪୬)—ସାଇକେଲ—ଗୋଦାବରୀଶ ଲେଖାବଳୀ- ପୃ୧୩୯

(୧୪୭)—ସାଇକେଲ—୧୯୪୨ ସେପ୍‌ଟେମ୍ବର—କଣ୍ଟା ଓ ଫୁଲ—ଗୋଦାବରୀଶ ଲେଖାବଳୀ—ପୃ ୧୪୦

(୧୪୮)—"ଲକ୍ଷ୍ମଣ ଆଜ ନେଲା ଏଠି ଯେଉଁ ମାଟି
ନେବେ ତାକୁ ତା'ର କୃଷୀ ମୂଲ ଆଉ କାଟି
ସେଦିନ ଆସୁଛି ଠିଆ ହୁଅ ଠିଆ ହୁଅ
ପୋଛି ଦିଅ ତୁମ କପୋଳରୁ କାଳି ଲୁହ"
ଲକ୍ଷ୍ମଣ ନାୟକ-ପାଞ୍ଚଜନ୍ୟ ୧୯୪୭-ନିତ୍ୟାନନ୍ଦ ମହାପାତ୍ର-ପୃ ୩୮

(୧୪୯)—ଏଇ ଶୁଣ ଶୁଭେ ମନ୍ଦ୍ର ଗମ୍ଭୀର   ମୁକତି ପାଞ୍ଚଜନ୍ୟ !
ମୁକ୍ତ ଭାରତ ଆକାଶର ତଳେ   ଲୋକେ ଆଜ ଲୋକାରଣ୍ୟ ।
ଆଶାର ଆଲୋକ ଉଠେ ଆଜ ଜାଗି   ମନ୍ଦ୍ରିତ ତାର ସ୍ପନ୍ଦନ ଲାଗି

× × ×

ଏହି ଶୁଣ ଶୁଭେ ଗରଜି ଉଠଇ   ମୁକତି ପାଞ୍ଚଜନ୍ୟ
ପାଞ୍ଚଜନ୍ୟ-ନିତ୍ୟାନନ୍ଦ ମହାପାତ୍ର-ପୃ ୮୫

(୧୫୦)— ମାତଙ୍ଗୀନୀ ଦେବୀ-ଗଡ଼ନାୟକ ଗ୍ରନ୍ଥାବଳୀ-ପୃ ୮୯୭-୯୮

(୧୫୧)—ଅଗଷ୍ଟ ବିପ୍ଳବ-ବୈକୁଣ୍ଠନାଥ ଗ୍ରନ୍ଥାବଳୀ-୨ୟ ଭାଗ—ପୃଷ୍ଠା ୨୧

(୧୫୨)—"ସବୁଦିନ ଯାଏ କରେ ସମାନ ?
କେତେ ଆଉ ତ୍ରାଇବ ଜମାଣ ?
ଲୌହ କପାଟ ଆପେ ଫିଟିବ,
ସେ ଉଷା ଆଲୋକେ ପ୍ରାଣ ରସାଣ"
ଅଗଷ୍ଟ ବିପ୍ଳବ-ବୈକୁଣ୍ଠନାଥ ଗ୍ରନ୍ଥାବଳୀ-୨ୟ ଭାଗ-ପୃ-୨୧

(୧୫୩)—ସେନାନୀ ସୁଭାଷ-ମୌସୁମୀ ୧୯୫° -ଗଡ଼ନାୟକ ଗ୍ରନ୍ଥାବଳୀ-ପୃ-୪୧୨ ।

(୧୫୪)— ସେନାନୀ ସୁଭାଷ-ମୌସୁମୀ-ଗଡ଼ନାୟକ ଗ୍ରନ୍ଥାବଳୀ -୪୧୩

(୧୫୫)—ଲାଲ୍‌କାଲ୍-ପାହାଚ ତଳର ଘାସ-୧୯୫୮-ଗୋଦାବରୀଶ ଲେଖାବଳୀ-ପୃ ୧୧

(୧୫୬)—ଜୟହିନ୍ଦ୍ ୧୯୪୭-ପାଣ୍ଡୁଲିପି-ସଂ ଗ୍ର.ଗ୍ର: ପୃ ୧୦୮

(୧୫୭)—ହରଜନ-୪-୧୧-୧୯୩୯

(୧୫୮)—"ଦୁର୍ବଳ ଏକା ଲୋଡ଼ଇ କେବଳ ଶାସନର ବାହୁବଳ
ପର ନିର୍ଭରଶୀଳ କି ପାଏ ରେ ସ୍ୱରାଜ୍ୟର କଉଶଳ ?
ସ୍ୱାଧୀନତା ନାହିଁ ଦୂରେ
ଆତ୍ମବଳର ମୂଳେ ସ୍ୱାଧୀନତା, ନ ଥାଏ ଅନ୍ୟ ପୁରେ ।"
କାଳରାତ୍ରି ୧୯୫୪-ନିତ୍ୟାନନ୍ଦ ମହାପାତ୍ର-ପୃ ୪୮

(୧୫୯) – କମଲାୟନ ୧୯୪୭-ମାନସିଂହ ଗ୍ରନ୍ଥାବଳୀ ୨ୟ ଖଣ୍ଡ-ପୃ ୨୪୮-୨୪୯

(୧୬୦)—ହରିଜନ- ୨୩-୨-୧୯୩୭
(୧୬୧)—କମଳାୟନ ୧୯୪୭- ମାନସିଂହ ଗ୍ରନ୍ଥାବଳୀ-୨ୟ ଭାଗ ପୃ-୨୮୩
(୧୬୨)—ତତ୍ରୈବ ।
(୧୬୩)—ସ୍ୱର୍ଗକ୍ୟାମ୍ପ-ମାନସିଂହ ଗ୍ରନ୍ଥାବଳୀ-ପ୍ରଥମ ଭାଗ, ପୃ ୬୧୭
(୧୬୪) – ମାଟିଆ ବୁରୁଜରେ ଓଡ଼ିଆ ମାନଙ୍କ ଐତିହାସିକ କୀର୍ତ୍ତି-ମାନସିଂହ ଗ୍ରନ୍ଥାବଳୀ ପ୍ରଥମ ଭାଗ ୧୯୪୭-ପୃ ୭୦୫
(୧୬୫)—"ମାଟିଆ ବୁରୁଜର ମଇଳା ଆକାଶରେ

କହ୍ନ ଉଠିଚ
ଗ୍ଲେଟ ଗ୍ଲେଟ ଆଲୁଅର ବାଟ
ଗୃହଆଡ଼େ ଖେଳେ
କହ୍ନ ଉଠିଛୁ, ଆହା ଉଠୁ ଉଠୁ
ପଦ୍ମ ଫୁଟୁ
ଏଇ ଅନ୍ଧାରରେ

× × ×

ଜାଣେ ଜାଣେ ଉଦୟର ଏହାହିଁ ଲକ୍ଷଣ ।"
ମାଟିଆ ବୁରୁଜର କହ୍ନ—ପାଣ୍ଡୁଲିପି-ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ-ପୃ ୧୨୭/ ୧୩୧

(୧୬୬)—କେତେ ଦିନ ହେଲା ଏ କୁଆଁଲପୁରେ
ଆଶ୍ରା ନେଇଚୁ ବାବୁ
ପ୍ରାଣ ଦେନ ପଳାଇ ଆସିଚୁ
ପଶ୍ଚିମ ପଞ୍ଜାବୁ
ସାହାରାନ ପୁରେ ଏ ଗାଡ଼ ନେଉଚ
ବନ୍ଧୁତ ମୁସଲମାନ

× × ×

ରମ ଭିତରୁ ଡ଼ାକ ଉଠୁଅଛି
ତଶୋଧ, ପ୍ରତିଶୋଧ
ଆଉ ଟିକଏ ଖୋଲି ଦିଅ ବାବୁ
ନ କର ନେଇ ବୋଧ
ଗୁଣ୍ଡିଚ ... ଜଡ଼ନାୟକ ଗ୍ରନ୍ଥାବଳୀ-ସ୍ମରଣୀକା—୧୫-୭-୧୯୫୦- ...—୩୬୩ /

(୧୬୭)—ସଂହିତା-ସ୍ୱଗତ-ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ-ପୃ ୫୦୨ ।
(୧୬୮)—ଜଳରେ ଅନଳ, ନଭେମ୍ବର ୧୯୫୫-ଉଠକଙ୍କାଳ-ଗୋ:ଲେଖାବଳୀ-
ପୃ ୨୧୭-୨୧୯
(୧୬୯)—ରୁଦ୍ରା-କଣ୍ଟା ଓ ଫୁଲ-ଗୋଦାବରୀଶ ଲେଖାବଳୀ-ପୃ ୧୮୪
(୧୭୦)—"ଓଡ଼ିଶାର ଆମ ମୌଳିକ ଦାବି ଗଲା ସତେ ଅବା ଗଲା
ଚୁଲିଗଲା ଜାଣି ଆମ ଝରସୁଆଁ ଆମ ଏ ଖଟେଇକଲା ।"
ହେ ମୋର କାଶ୍ମୀରବାର-ଧୂସର ଭୂମିକା-ଗଡ଼ନାୟକ ଗ୍ରନ୍ଥାବଳୀ-ପୃ ୬୬୪
(୧୭୧)—ଝଙ୍କାର ୧୫-୯-୧୯୬୨
(୧୭୨)—"ଆମେ ଶତ୍ରୁ ରକତେ ବୁହାଇବୁ ନୂଆ ଗଙ୍ଗା
କଳୁଷିତ ପାଦ ପଡ଼ିଛି ଚୀନାର ଯେଉଁଥାନେ
ଖାଉ ଅଭିଯାନେ
ଆମେ ମାନ-ସରୋବର ଜଳେ ଧୋଇଦେବୁ
ଜୀବନ ଆମର ହୋଇଅଛି ରଣରଙ୍ଗା"
(ଆମେ ଶୀତଳ କରିବୁ ଉଷ୍ଣତା ଚୀନ ରକ୍ତର-ଝଙ୍କାର ୧୫-୯-୧୯୬୨)
(୧୭୩)—"ସ୍ୱାଗତଇ ଏଣୁ ଆଜି ହେ
ଚୈନିକ ରାଷ୍ଟ୍ରର ଚାଳକ
ତୁମର ସେବକଗଣ ସମୁଚିତ ପ୍ରୀତି ଉପହାରେ
ରଣାଙ୍ଗନେ ଅଗଣିତ ସମୁଦ୍ୟତ ଆଗ୍ନେୟାସ୍ତ୍ର ବାହୁରେ
ଦୁର୍ବିସହ ତୁମ ପକ୍ଷେ ଏଣୁ ବେଗେ ବାହୁଡ଼ ସ୍ୱପୁରେ ।"
(ଆଗ୍ନେୟସ୍ୱାଗତ-ଶ୍ରୀ ରାମଚନ୍ଦ୍ର ଭବନରେ ୨୩-୧୧-୬୨ରେ ଅନୁଷ୍ଠିତ କବିତା
ପାଠୋତ୍ସବରେ ପଠିତ)
(୧୭୪)—(୧୭୫)—ଝଙ୍କାର-୧୫-୯-୧୯୬୨
(୧୭୬)—" × × ×
ମରଣକୁ ଦଳି ଚରଣ ତଳେ
ହଟାଇ ଦିଅ ତୁ ଦସ୍ୟୁ ଦଳେ
ଆଗରେ ଜଓ୍ୱାନ ଧୂର୍ଜ୍ଜଟୀ-ରଣ
ସଙ୍ଗୀତ ଶୁଣ ଉଠଇ ବାଜି"
(ଜାଗରେ ଯଓ୍ୱାନ-ନଭେମ୍ବର ୧୯୬୨-ବନ୍ଧ୍ୟା ଓ ଦ୍ୱିଧା-ଗୋଦାବରୀଶ ଲେଖାବଳୀ-
ପୃ-୩୪୧)

(୧୭୭)—ଛନକଣ ଯୁଦ୍ଧ ଅପରାଧୀ-କାହ୍ନୁଚରଣ ସାହୁ-ଝଙ୍କାର ୧୯-୯-୧୯୬୬
(୧୭୮)—ଏ ପୃଥିବୀ ପରିବାର-ଝଙ୍କାର ୧୫-୯-୬୬
(୧୭୯)—ଶୁଆସାରୀ ସମ୍ବାଦ-ବସନ୍ତ ୧୯୪୮-ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ-ପୃ ୮୧୯
(୧୮୦)—ତଦୈବ
(୧୮୦ କ)—ପ୍ରତ୍ୟୁତ୍ତର-୧୯୫୦-ଝର୍ଫିକ୍-ଜାନକୀ ବଲ୍ଲଭ ମହାନ୍ତି-ପୃ ୨୭
(୧୮୧)—" × × × ' ×

କଳା ବଜାରର ମୁଣ୍ଡେ ଏବେ ଧଳା ଟୋପି ।
ଶିରେ ଦେଖ ତୁମକୁ ହେ କଳା-କାରବାରି
ଏ ଦେଶରେ ବୋଲାଉଛ ସ୍ୱଦେଶ ପୂଜାରି"

(ଟୋପୀ-କଣ୍ଟା ଓ ଫୁଲ-ଗୋଦାବରୀଶ ଲେଖାବଳୀ-ପୃ ୧୩୫)

(୧୮୨)—ପ୍ରାର୍ଥୀ ଅଭ୍ୟର୍ଥନା-କଣ୍ଟା ଓ ଫୁଲ-ତଦୈବ ୨୦୧
(୧୮୩)—"ରଜାଗଲେ, ଏବେ ପୁଞ୍ଜିପତିର /କୁଞ୍ଜେ ବାଜଇ ବୀଣା
ରାଜମାଠ ହାଟ ବଜାର ଗୁଳବ/ରାଜମାଠ ବକା କିଣା"
ମୁକୁଟର ପରାଜୟ-ହେ ମୋର କଲମ ୧୯୫୧—ପୃ ୪୭
(୧୮୩-କ)—ସ୍ୱାଧୀନତାର ଶ୍ରେଷ୍ଠଭୂମି-ଗୋପାଳ ଚନ୍ଦ୍ର ମିଶ୍ର ୧୯୫୬-ସମାବେଶ ୨/୧
କପୋତ ଡେଣାର ଗୁଇ-ପୃ ୪୯
(୧୮୪)—ଜାନୁଆରୀ, '୬-ଧୂସର ଭୂମିକା- ଗଡ଼ନାୟକ ଗ୍ରନ୍ଥାବଳୀ-ପୃ ୬୪୩-୬୪୫
(୧୮୫)—ବନ୍ଦନାଲାଗି ଜଳୁଚ ଦୀପାଳି ଜଳୁଚ କାହିଁ-ଝଙ୍କାର-ମାର୍ଚ୍ଚ-୧୯୫୮-ଧୂସର ଭୂମିକା ପୃ ଗ:ଗ୍ର: ୬୭୬-୬୭୭
(୧୮୬)—ସୁନାସିଂହର ସ୍ୱପ୍ନ-ପିଙ୍ଗଳାର ସୂର୍ଯ୍ୟ-ପୃ ୧୭
(୧୮୭)—ଜୟତୁ ଗଣତନ୍ତ୍ର-୧୯-୮-୧୯୬୮ ବୈକୁଣ୍ଠନାଥ ଗ୍ରନ୍ଥାବଳୀ ୨ୟ ଭାଗ-ପୃ ୪୭୯
(୧୮୮)—ବିପ୍ଳବ ମରନାହିଁ-ଖୋଲାଝର୍କା ୧୯୬୯-ଲକ୍ଷ୍ମୀଧର ନାୟକ, ପୃ ୩୭

## ଷଷ୍ଠ ପରିଚ୍ଛେଦ

# ପ୍ରୟୋଗବାଦୀ କବିତାରେ ବାସ୍ତବବାଦୀ ଚେତନା

ପ୍ରୟୋଗବାଦୀ କବିତାର ବାସ୍ତବବାଦୀ ଚେତନା, ପ୍ରଗତିବାଦୀ କବିତାର ବାସ୍ତବଧର୍ମୀ ଦୃଷ୍ଟିଭଙ୍ଗୀଠାରୁ ସ୍ୱତନ୍ତ୍ର । ଉଭୟ ଶୈଳୀ ଓ ବକ୍ତବ୍ୟ ଦୃଷ୍ଟିରୁ ପ୍ରୟୋଗବାଦୀ କବିତାର ବାସ୍ତବ ମୁଖୀ ଆବେଦନ ପ୍ରଗତିବାଦୀ କବିତାଠାରୁ ଭିନ୍ନ ଧର୍ମୀ । ଶୋଷକ-ଶୋଷିତର ଶ୍ରେଣୀ-ସଂଗ୍ରାମ, ଜାତୀୟ ସ୍ୱାଧୀନତା ପାଇଁ ଆହ୍ୱାନ ତଥା ରାଷ୍ଟ୍ରୀୟ ଉନ୍ନତି ପାଇଁ ପ୍ରେରଣାକୁ ଉପଜୀବ୍ୟ କରି ପ୍ରଗତିବାଦୀ କାବ୍ୟଚେତନା ସମୃଦ୍ଧ । କିନ୍ତୁ ନଗର ସଭ୍ୟତାର ଶିକ୍ଷିତ ମଧ୍ୟବିତ୍ତ ଗୋଷ୍ଠୀର ଆଶା-ନୈରାଶ୍ୟ ତଥା ଜୀବନ-ସଂଗ୍ରାମର ସ୍ୱର ହିଁ ପ୍ରୟୋଗବାଦୀ କବିତାର କାବ୍ୟିକ ସମ୍ଭାର । ନଗର ସଭ୍ୟତାର ପରିସରରୁ ଏହାର ପ୍ରତୀକ ଓ ଚିତ୍ରକଳ୍ପଗୁଡ଼ିକ ଆହୃତ ହେବା ସଙ୍ଗେ ସଙ୍ଗେ ବହୁ ନୂତନ ଅପାରମ୍ପରିକ ଚରିତ୍ର ମଧ୍ୟ ତହିଁରେ ସନ୍ନିବିଷ୍ଟ । ନଗର ସଭ୍ୟତାର ଏହି ଚରିତ୍ରଗୁଡ଼ିକ ଆର୍ଥିକ ଅନଟନରେ ପିଷ୍ଟ ହେବା ଅପେକ୍ଷା ମାନସିକ ନିଃସଙ୍ଗତା ତଥା ବିଚ୍ଛିନ୍ନତା-ବୋଧର ବ୍ୟାଧିରେ ଅଧିକ ପୀଡ଼ିତ ।

ପ୍ରୟୋଗବାଦୀ କବିତାରେ ଉଭୟ ପୁରୁଷ ଓ ନାରୀ ନୂତନ ଭୂମିକାରେ ଅବତୀର୍ଣ୍ଣ । ଶାଶ୍ୱତ ପ୍ରଣୟ ପ୍ରତି ସେମାନଙ୍କର ବିଶ୍ୱାସବୋଧ କ୍ଷୀଣ । ଜୀବନର ପାରମ୍ପରିକ, ଶାସ୍ତ୍ରୀୟ ମୂଲ୍ୟବୋଧ ସମୂହ ସେମାନଙ୍କ ପାଇଁ ଅବିଶ୍ୱାସ୍ୟ ଓ ଅବାଞ୍ଛିତ । ସେମାନେ ମୁଖ୍ୟତଃ ହେତୁବାଦୀ ଦୃଷ୍ଟିଭଙ୍ଗୀର ପରିପୋଷକ ।

ପ୍ରଗତିବାଦୀ କବିତାର ମିଥିକ ଚରିତ୍ରଗୁଡ଼ିକ ଯୁଗ ବିପ୍ଳବୀ ଭୂମିକାରେ ଅବତୀର୍ଣ୍ଣ ହୋଇଥିବାବେଳେ ପ୍ରୟୋଗବାଦୀ କବିତାର ସମାନ୍ତରାଳ ଚରିତ୍ରଗୁଡ଼ିକ ତୀବ୍ର ଯୁଗ-ଯନ୍ତ୍ରଣାର ସମ୍ମୁଖୀନ । ସେମାନଙ୍କର ଯୋଦ୍ଧୃ ଶକ୍ତି ଦମ୍ଭମୀୟ ଭାବେ ଅପହୃତ । ସେମାନେ ମୃତ୍ୟୁ ଭୟରେ ଅହରହ ମ୍ରିୟମାଣ ।

ଏହି ପରିପ୍ରେକ୍ଷୀରେ ପ୍ରୟୋଗବାଦୀ କବିତାର ବାସ୍ତବ ସଚେତନତାକୁ ନିମ୍ନଲିଖିତ ପର୍ଯ୍ୟାୟରେ ସମୀକ୍ଷା କରାଯାଇଛି—

(କ)—ଅପାରମ୍ପରିକ ଚରିତ୍ର ସୃଷ୍ଟି

(ଖ)—ନଗର ସଭ୍ୟତାର ପ୍ରଭାବ

(ଗ)—ମିଥିକ ଚରିତ୍ର ଓ ପରିବେଶର ସ୍ୱରୂପ
(ଘ)—ଶାସ୍ତ୍ରୀୟ ମୂଲ୍ୟବୋଧ ପ୍ରତି ଶ୍ଳେଷାତ୍ମକ କଟାକ୍ଷ

**(କ)—ଅପାରମ୍ପରିକ ଚରିତ୍ର ସୃଷ୍ଟି**

ଅପାରମ୍ପରିକ ଚେତନାକୁ ଅବଲମ୍ବନ କରି ଚରିତ୍ର ସୃଷ୍ଟି କରିବା ପ୍ରୟୋଗ-ବାଦୀ କବିତାର ଏକ ଅଭିନବ ଅବଦାନ । ଉଭୟ ପୁରୁଷ ଓ ନାରୀ ଚରିତ୍ର ଚିତ୍ରଣ କ୍ଷେତ୍ରରେ ଏହା ନୂତନ ଦୃଷ୍ଟିଭଙ୍ଗୀର ବାହକ । ନାରୀ ଏଠାରେ ଜୀବନ-ସଂଗ୍ରାମର ଭୂମିରେ ଅବତୀର୍ଣ୍ଣ । ପୁରୁଷ ତୀବ୍ର ଅଭାବ, ପାପବୋଧ ତଥା ନିଃସଙ୍ଗତାବୋଧ ମଧ୍ୟରେ ନିପୀଡ଼ିତ । ଏହି ପରିପ୍ରେକ୍ଷୀରେ ପ୍ରୟୋଗବାଦୀ କବିତାରେ ସନ୍ନିବିଷ୍ଟ ଚରିତ୍ର-ଗୁଡ଼ିକୁ ଦୁଇଟି ପର୍ଯ୍ୟାୟରେ ଆଲୋଚନା କରାଯାଉଛି—

(୧)—ପୁରୁଷ ଚରିତ୍ର ଚିତ୍ରଣରେ ନିଃସଙ୍ଗତା, ଅଭାବ ଓ ପାପବୋଧ ।
(୨)—ନାରୀ ଚରିତ୍ରର ନୂତନ ଅସ୍ତିତ୍ୱ

**(୧)—ପୁରୁଷ ଚରିତ୍ର ଚିତ୍ରଣରେ ନିଃସଙ୍ଗତା, ଅଭାବ ଓ ପାପବୋଧ**

ପ୍ରୟୋଗବାଦୀ କବିତାର ପୁରୁଷ ଚରିତ୍ର ସମୂହ ଶାସ୍ତ୍ରୀୟ ପରମ୍ପରାର 'ନାୟକ' ପର୍ଯ୍ୟାୟଭୁକ୍ତ ନୁହନ୍ତି (୧) । ବୀରତ୍ୱ ବୋଧ, ଉଦାରତା, ଗାମ୍ଭୀର୍ଯ୍ୟ ଅଥବା ଲଳିତ କଳାବିଳାସର ପରିସର ମଧ୍ୟରେ ସେମାନଙ୍କର ଚେତନା ବିବର୍ତ୍ତିତ ନୁହେଁ । ଏଇ ପରିପ୍ରେକ୍ଷୀରେ ଗୁରୁପ୍ରସାଦ ମହାନ୍ତିଙ୍କ 'ଗୋବର ଗଣେଶ' 'ହରେକୃଷ୍ଣ ଦାସ' ଓ ସୌଭାଗ୍ୟ ମିଶ୍ରଙ୍କ 'ଶୁକ ଦେବ ଜେନା' ତୀବ୍ର ଅଭାବବୋଧ, ନିଃସଙ୍ଗତା ତଥା ଆତ୍ମକୃତ ପାପବୋଧରେ ଆଚ୍ଛନ୍ନ । ସାଂପ୍ରତିକ ଯୁଗ ଚେତନାର ସ୍ୱରୂପ ଏଇ ଚରିତ୍ରଗୁଡ଼ିକ ମାଧ୍ୟମରେ ଉଦ୍‌ଘାଟିତ ।

**ଗୋବର ଗଣେଶର ଅଭାବବୋଧ**

ଗୁରୁପ୍ରସାଦଙ୍କ ଗୋବର ଗଣେଶ ଏକ ତୀବ୍ର ଅଭାବବୋଧର ସମ୍ମୁଖୀନ । ଜୀବନ-ସମୁଦ୍ରର ବେଳାଭୂମି ତା ପାଇଁ ବିବର୍ଣ୍ଣ । ଓଠର ଗୋଲାପି ରଙ୍ଗ ଜୀବନର ପରିବ୍ୟାପ୍ତ ତୃଷାର ଆକାଶ ଦ୍ୱାରା ନିଃଶେଷିତ । ଯୋତାର ଗୋଲାପି ଦୃଶ୍ୟ ଢେଉର ଆଘାତରେ ଅନ୍ତର୍ହିତ । ଜୀବନଯାତ୍ରା ନିସ୍ତରଙ୍ଗ । ତା'ର କାୟାର ଛାୟାହିଁ ଏହି ନିସ୍ତରଙ୍ଗ ଯାତ୍ରାପଥର ଏକ ମାତ୍ର ସାଥୀ । ଏହି ନିଃସଙ୍ଗ ଜୀବନ ଯାତ୍ରା ମଧ୍ୟରେ ଏକ ଶେଷହୀନ ଅଭାବବୋଧରେ ସେ ଆଚ୍ଛନ୍ନ ।

"ରହିଯାଏ ଅଶ୍ୱବ ତଥାପି
ବିବର୍ଣ୍ଣ ବେଳାର ପରେ ଢେଉପରେ ଭାଙ୍ଗେ ଯେତେ ଢେଉ
ବାଲିର ପାଚଶ୍ୱ ଯାଏ ଛିନ୍ନ ଭିନ୍ନ ସମତୁଲ ହୋଇ ।
ଓଠର ଗୋଲପି ରଙ୍ଗ ଏ ଆକାଶ ଶୋଷିଦେଲା ପରେ
ଯୋଡାର ଗୋଲପି ଦୃଶ୍ୟ ଓ ଢେଉରେ ଖସିଗଲା ପରେ
ନଗୁଣିଆ ଗଳମୋଡ଼ ଗୁଇ ତାର ଗିଳି ଦେଲା ପରେ
ରହିଯାଏ ଅଶ୍ୱବ ତଥାପି (୨) ।"

ଯୋଡାର ଗୋଲପି ଦୃଶ୍ୟ ଏଠାରେ ନାୟକର ଜୀବନଯାତ୍ରା ସମ୍ପର୍କିତ ରଙ୍ଗୀନ ପରି-କଳ୍ପନାର ପ୍ରତୀକ । କିନ୍ତୁ ଶେଷସ୍ଥାନ ନିଃସଙ୍ଗତା ମଧ୍ୟରେ ଏହି ରଙ୍ଗୀନ ପରିକଳ୍ପନା ବିବର୍ଣ୍ଣ । ଚରମ ଶୂନ୍ୟତାବୋଧ ମଧ୍ୟରେ ନାୟକର ଚେତନା ଅବସନ୍ନ । ଏହି ନିଃସଙ୍ଗତା ଓ ଶୂନ୍ୟତା କେବଳ ଜୀବନର ବହିର୍ମୁଖୀ ଯାତ୍ରା ପଥରେ ସମାପ୍ତ ନୁହେଁ, ତା'ର ଶ୍ୱାସ-ପ୍ରଶ୍ୱାସ, ମସ୍ତିଷ୍କର ସ୍ନାୟୁକେନ୍ଦ୍ର ସମେତ ସମସ୍ତ ଅନ୍ତଃସତ୍ତ୍ୱା ସଂକ୍ରମିତ । କେବଳ ପ୍ରବଳ ଝଡ ଓ ତୋଫାନଗ୍ରସ୍ତ ସମସ୍ତ ଚେତନା ନୁହେଁ, ବସନ୍ତ ଋତୁରେ କୋଇଲିର କୁହୁତାନ ଭିତରେ ମଧ୍ୟ ତା'ମନରେ ସେହି ବିବର୍ଣ୍ଣତାର ସଂକ୍ରମଣ । ଏଣୁ ପ୍ରାଚୀନ ତଥା ମଧ୍ୟ-ଯୁଗର ପ୍ରାକୃତିକ ଉଦ୍ଦୀପକ ବିଭାବଗୁଡ଼ିକ ତା'ପାଇଁ ନିରର୍ଥକ । ସଂଧ୍ୟାର ନିରମ ଅନ୍ଧାର ତା'ପାଇଁ ରୋମାଞ୍ଚକର ନୁହେଁ । ତାହା ଝଞ୍ଜାପନ୍ତର ବେଦନାରେ ବଧିର । ସନ୍ଧ୍ୟାର ବିଦାୟ ସ୍ପନ୍ଦିତ ଅଥବା ସୌକୁମାର୍ଯ୍ୟମଣ୍ଡିତ ନୁହେଁ । ସତର୍କ ପଦପାତରେ ଅତି ସନ୍ତର୍ପଣରେ ତା'ର ବିଦାୟ ଏକ ଗୋପନ ପ୍ରେମିକର ଅବବୋଧ ସୃଷ୍ଟି କରେ । କିନ୍ତୁ ନାୟକ ଏକ ଗୋବର ଗଣେଶ । ଏଲିୟଟଙ୍କ ପ୍ରୁଫ୍ରକର ଏକ ପ୍ରତିରୂପ । ତାର ପ୍ରଣୟୀ-ସତ୍ତ୍ୱା ପୌରୁଷ-ବିହୀନ । ସନ୍ଧ୍ୟାର ଧୂପଛାୟା ଭିତରେ ତାର ସ୍ମୃତିର ଝରକାରେ ନାୟିକା ଗଭୀର ମଲ୍ଲୀହାର ଓ ଚମ୍ପାକଳି ତଥା ଶାଢୀ ଓ ବ୍ଲାଉଜ ସମେତ କଳା ଆଖି ଭାସମାନ, ଅଥଚ ତା'ର ଦେହ, ମନ, ଆତ୍ମା ସର୍ବୋପରି ତାର ପୁରୁଷକାର, ତା'ର ରୁମାଲର ସଂକ୍ଷିପ୍ତ ପରିସର ଭିତ୍ତି ସୀମାବଦ୍ଧ—

"ରୁମାଲରେ ବାନ୍ଧି ଜୁଳ ମନମୋର, ଆତ୍ମାମୋର
ମୋ ପୁରୁଷକାର
ପଥ ସବୁ ଝଡ଼ି ଯାଏ
ନଗୁଣିଆ ଏ ଗଳିରେ ସାଉଁଟି ସାଉଁଟି ଦିନ ଦିନମୋର
ଦେହ ଖୋଜିଯାଏ
ଦେହ ମୋର ପ୍ରାଣ ଖୋଜିଯାଏ (୩) "

ନାୟକର ମନ କଳୁଷିତ । ତାହା ଦେହକୈନ୍ଦ୍ରିକ, ଜୈବିକ । ପୁଣି ଦେହ ପ୍ରାଣ-ସ୍ପର୍ଶକ୍ଷ ବିହୀନ । ଏଲିୟଟଙ୍କ ପ୍ରୁଫ୍ରକ ଭଳି ସେ ମଧ୍ୟ ନାୟକ ନୁହେଁ,ପ୍ରତି ନାୟକ-ଆଣ୍ଟି-ହିରୋ । ସୁତରାଂ ଉଦ୍‌ଭିନ୍ନ ଯୌବନା ବାସନ୍ତୀ ନାୟିକା ସହ ତାର ମିଳନ ଏକ ଦୂରନ୍ତ ଅଭିଳାଷ । ଏଠାରେ ନାୟକଟି ସବୁଠାରୁ ଅଧିକ ଦୟନୀୟ ଅବସ୍ଥା ସମ୍ପନ୍ନ । କାରଣ ତା'ର ଅସମର୍ଥ ପୌରୁଷ ସମ୍ପର୍କରେ ସେ ଅବହିତ ଏବଂ ତୀବ୍ର ଭାବରେ ସଚେତନ । ଏଣୁ କବିଙ୍କ ଭାଷାରେ 'ଗୋବର ଗଣେଷ'ର ସ୍ୱୀକୃତି ହେଉଛି—

"ଆଜି ପୁଣି ଲାଜ ମାଡ଼େ
ଆଜି ପୁଣି ଚମକି ମୁଁ ଥକା ହୋଇ ରହେଁ ଝରକାରେ
ମୁଠାରେ ଦେବାକୁ ଚାପି ଏହି ଗଳି ଏହି ଛକ ଏହି ଶାଢ଼ୀ ଦାମୀ ଗହଣାରେ
ଥିଏଟର ସିନେମାର ସବୁ ସିଟ୍ ସବୁ ଟେବୁଲ ସବୁ ହୋଟେଲର,
ଆଜି ପୁଣି ମତେ ଲାଜ ମାଡେ (୪) ।"

ନାୟକର ଏହି ଦୟନୀୟ ଅବସ୍ଥା କ୍ରମଶଃ ଅଧିକରୁ ଅଧିକତର ବିଢ଼ମ୍ବିତ ହୁଏ । କାରଣ ପୁରୁଷକାର ପ୍ରାପ୍ତି ପାଇଁ ସେ ବିଫଳ ପ୍ରୟାସ କରେ । ସେ ଅକ୍ଲାନ୍ତ ଚେଷ୍ଟାକରେ—'ହେବାକୁ ଚିକ୍‌କଣ/ରୁମାଲରେ ମୁହଁ ପୋଛେ/ପଞ୍ଜାବୀରେ ଲଗାଏ ଅତର, ଆଗରେ ଆରଶି ରଖି/ମୁଲଏମ ହସିବାକୁ ଶିଖେ' (୫) । ରୁମାଲରେ ମୁହଁ ପୋଛିବା, ପଞ୍ଜାବୀରେ ଅତର ଲଗାଇବା ଓ ଆରଶି ସାମ୍ନାରେ ରଖି ମୁଲଏମ୍ ହସ ହସିବାକୁ ଚେଷ୍ଟାକରିବା ଗୌଣ ମନୋବୃତ୍ତିର ପରିଚାୟକ । କାରଣ ଏ ସବୁ ପ୍ରଚେଷ୍ଟା ସତ୍ତ୍ୱେ ନାୟିକାକୁ ସମ୍ମୁଖୀନ ହେବାପାଇଁ ସେ ଶକ୍ତିହୀନ । ପ୍ରାପ୍ତିର ପ୍ରତ୍ୟାଶା ଓ ଅପ୍ରାପ୍ତିର ଯନ୍ତ୍ରଣା ମଧ୍ୟରେ ତା'ର ଦେହ ଓ ମନ କ୍ରମଶଃ ବିକୃତ । ଏଲିୟଟଙ୍କ ପ୍ରୁଫ୍ରକ ଭଳି ତାକୁ ଜୀବନର ନାଟକରେ ନାୟକ ଭୂମିକା ମିଳେ ନାହିଁ । ସେ ହୁଏ ନାଟର ଦୂତ (୬) । ପ୍ରଣୟର ଫୁଲଧନୁରେ ସାୟକର ସଯୋଗ ତା ପାଇଁ ଏକ ବିଫଳ ସ୍ୱପ୍ନ—

"ଧନୁରେ ମୁଁ ଯୋଖିନାହିଁ କାଗଜ ବା କୋଟନ ସାୟକ
ମୁଁ ଜାଣେନା ବିକାହୁଏ କଟକର କେଉଁ ଦୋକାନରେ
ପ୍ରେମର ପ୍ରଥମ ଫୁଲ ନୀଳୋତ୍ପଳ ବକୁଳ ଅଶୋକ (୭)।"

ପ୍ରଣୟର ଫୁଲଧନୁରେ ବକୁଳ, ନୀଳୋତ୍ପଳ ଅଥବା ଅଶୋକ ତ ଦୂରର କଥା କାଗଜ ବା କୋଟନ ଡ଼ାଲର ତୀର (ସାୟକ) ସଯୋଗ ମଧ୍ୟ ତା ପାଇଁ ଅସମ୍ଭବ । କାଗଜ ଫୁଲ ଓ କୋଟନ ଡ଼ାଲର ତୀର ଏଠାରେ ପ୍ରେମାନୁଭବହୀନ ବ୍ୟର୍ଥ ପ୍ରଣୟାଭିଳାଷର ଏକ ଏକ ପ୍ରତୀକ ।

ନାୟିକା ଉଦ୍ଦେଶ୍ୟରେ ଶେଷ ପର୍ଯ୍ୟନ୍ତ ସେ ତାର ମନର ଅଭିଳାଷ ବ୍ୟକ୍ତ କରିପାରେ ନାହିଁ । କେଉଁଠାରୁ ବା ସେ ବକ୍ତବ୍ୟ ଆରମ୍ଭ କରିବ—ଏହି ଭଳି ଏକ ପ୍ରଶ୍ନ ପ୍ରୁଫ୍ରକ ମନରେ ଉଠିଥିଲା– 'And how should I begin' (୮) । ଗୁରୁପ୍ରସାଦଙ୍କ 'ଗୋବରଗଣେଶ'ର କାବ୍ୟନାୟକ ସମାନୁପାତିକ ଭାବେ ସ୍ୱଗତୋକ୍ତି କରେ—

"ମୁଁ ତାକୁ ପଗ୍ଭରି ନାହିଁ କରି ନାହିଁ କେବେ ମୁଁ ସାହସ
ମୁଁ ଗଣିଛି ଗୋଟି ଗୋଟି ପଇଁଝଡ଼ା ମିନିଟ୍ ହାତରେ
× × × × ×
ବୁଝିଛି ମୁଁ ଭ୍ରମରର ଲୋଭ
ତଥାପି ତଥାପି କିଛି ଆଜିଯାଏ ହୋଇନି ସମ୍ଭବ (୯) ।"

ପ୍ରୁଫ୍ରକ ଭଳି 'ଗୋବର ଗଣେଶ'ର ଦେହ ଓ ମନ ବିକାରଗ୍ରସ୍ତ । ତା'ର ଚେତନା ଅନ୍ତଃସାରଶୂନ୍ୟ/ଶରୀର—ପୌରୁଷ ବର୍ଜିତ । ଏଲିୟଟଙ୍କ ପ୍ରୁଫ୍ରକ ଜାଣିଥିଲା ତାର ଶରୀର ଜରାଜୀର୍ଣ୍ଣ—

"And I have known the arms already, known them all
And arms that are braceleted and white and bare
But in the lamplight, downed with light brown bair (୧୦) ।

ଜୀବନ ପ୍ରତି ତାର ଭୟବୋଧ ଗଭୀର । ଏଣୁ ତାର ସ୍ୱଗତୋକ୍ତି—
'And in short I was afraid' (୧୧)

ଗୋବର ଗଣେଶ ଅନୁରୂପ ଭାବେ ଆରଶିରେ ତା'ର କୋଟରଗତ ଚକ୍ଷୁର ସ୍ଥିତି ପ୍ରତି ସଚେତନ ହୋଇଛି—

"ଆରଶିରେ ମୁହଁ ଦେଖି
ମୁଁ ମାପିଛି
କେତେ ଗାଡ଼ ହୋଇ
ଆଖି ମୋର ଛୁଇଁଛି କୋରଡ" (୧୨) ।

ତଥାପି ନାୟିକା ପ୍ରତି ସେ ନିରନ୍ତର ପ୍ରତୀକ୍ଷମାଣ । ଜୀବନର ସଂକ୍ଷିପ୍ତ ଗଳି ରାସ୍ତାରେ ହୁଏତ ଚେଁନିର ନୂପୁରନାଦ ଶୁଭେ । ଧୂଳିର ଭଉଁରି ଭିତରେ ଫୁଲର ମହକ

ଲେଖିଯାଏ । କିନ୍ତୁ ଗୁରୁପ୍ରସାଦଙ୍କ କାବ୍ୟ-ନାୟକର ଜୀବନରେ ଚୈତ୍ରର ବାସନ୍ତୀ ମହୋତ୍ସବ ବାସ୍ତବସତ୍ତ୍ୱବର୍ଜିତ । ନାୟକର ଏହି ସଂପର୍କିତ ସ୍ୱୀକୃତ ମଧ୍ୟ ଏକାନ୍ତ ଦୟନୀୟ । ଗୋଟିଏ କଥାରେ କହିଲେ 'ଗୋବର ଗଣେଶ' ବ୍ୟକ୍ତି ସତ୍ତ୍ୱର ଅସାମର୍ଥ୍ୟ-ବୋଧର ଏକ ବ୍ୟଙ୍ଗ ରୂପ । ତଥା-କଥିତ ପ୍ରଜ୍ଞାଶାଣିତ ବୌଦ୍ଧିକ ବ୍ୟକ୍ତିତ୍ୱର ଅନ୍ତରାଳରେ ତାର ଚେତନାଲୋକ ଅନ୍ଧକାରଶୂନ୍ୟ ।

**କଷସଙ୍ଗତାବୋଧ ଓ ହରେକୃଷ୍ଣ ଦାସ**

ଆଧୁନିକ ବାସ୍ତବବାଦୀ କାବ୍ୟଚେତନାକୁ ଗୁରୁପ୍ରସାଦଙ୍କର ଅନ୍ୟତମ ଅବଦାନ ହେଉଛି 'ହରେକୃଷ୍ଣ ଦାସ' (୧/୨) । କବିତା ଦୁଇଟିର ନାୟକ ହରେକୃଷ୍ଣ ଦାସ ଏଲିୟଟଙ୍କ ସୁଇନି (Sweeny Erect) ଭଳି ଜୈବିକ କାମନାର ଏକ ମୂର୍ତ୍ତିମନ୍ତ ବିଗ୍ରହ । ତୀବ୍ର ଯୌନ ବୁଭୁକ୍ଷାର ପ୍ରଶମନ ପାଇଁ ଉଦ୍ଦିଷ୍ଟ ଜୈବିକ କାମନା ମଧ୍ୟରେ ହରେକୃଷ୍ଣ ଦାସ ପରୋକ୍ଷରେ ଆଧୁନିକ ମଣିଷ ଜୀବନର ଭାରସାମ୍ୟ ନିୟନ୍ତ୍ରିତ । ତାହାହିଁ ତା ଜୀବନର ଶେଷ ଅଭୀପ୍‌ସିତ ସତ୍ୟ (୧୩) ।

'ହରେକୃଷ୍ଣ ଦାସ' କବିତା ଉପରେ ଏଲିୟଟଙ୍କ 'ସୁଇନି' ବ୍ୟତୀତ ଅଡେନଙ୍କ 'ଅନ୍‌ନୋନ୍ ସିଟିଜନ' (Unknown Citizen)ର ପ୍ରଭାବ ଲକ୍ଷ୍ୟଣୀୟ । ହରେକୃଷ୍ଣ ଦାସ ଆପାତତଃ ଏ ଦେଶର ଏକ ଦାୟିତ୍ୱ ସଂପନ୍ନ ନାଗରିକ । ରାଜନୀତି, କଳା, ସାହିତ୍ୟ, ସମ୍ବାଦପତ୍ର ଚର୍ଚ୍ଚା ତା'ର ଉନ୍ନତ ରୁଚିବୋଧର ପରିଚାୟକ । ନିୟମ, ଶୃଙ୍ଖଳା ସବୁଠି ସୁରକ୍ଷିତ । ତା ବିରୋଧରେ କୌଣସି ରାଷ୍ଟ୍ରୀୟ ବା ସାମାଜିକ ଅଭିଯୋଗ ଅନୁପଲଭ୍ୟ—'ଭାରସାମ୍ୟ ଠିକ ରଖେ କଷ୍ଟକରି ହରେକୃଷ୍ଣ ଦାସ' । ଅଡେନଙ୍କ ଅଜ୍ଞାତ ନାଗରିକଟିର ସ୍ଥିତି ଓ ଅସ୍ତିତ୍ୱ ମଧ୍ୟ ଅନୁରୂପ ଭାବେ ଅପରାଧଶୂନ୍ୟ । ତାର ଚରିତ୍ର ସମ୍ବନ୍ଧୀୟ ପ୍ରମାଣପତ୍ର ଉତ୍ତମ—

> "He was found by the Bureau of Statistics to be
> One against whom there was no official complaint
> And all the reports on his conduct agree (୧୪) ।"

କିନ୍ତୁ ଏହି ଆପାତତଃ ଚରିତ୍ରବତ୍ତା ଓ ନାଗରିକ ଜୀବନର ତଥାକଥିତ ସଭ୍ୟ ଗତାନୁଗତିକ ଧାରା ମଧ୍ୟରେ ସୁସ୍ଥ ଜୀବନବୋଧର ସମ୍ଭାବନା ବିଡ଼ମ୍ବିତ । ସମସ୍ତ ଭାରସାମ୍ୟ ସତ୍ତ୍ୱେ ନଗରର ବ୍ୟକ୍ତିସତ୍ତ୍ୱର ସମୃଦ୍ଧ ସାଂସ୍କୃତିକ ମହତ୍ତ୍ୱ ସମ୍ପର୍କରେ କବି ଚେତନା ସଂଦିଗ୍ଧ । ଅଡେନଙ୍କ ଭଳି ସନ୍ଧାନୀ ହୋଇଛନ୍ତି ଗୁରୁପ୍ରସାଦ । ସେହି ଚେତନାର ଅଭିବ୍ୟକ୍ତି

ଘଟିଛି ହରେକୃଷ୍ଣ ଦାସର ଅନୁଭବ ମଧ୍ୟରେ । ପୃଥିବୀ ପରିପୂର୍ଣ୍ଣ । ଦେଶ ପ୍ରାଚୁର୍ଯ୍ୟର ଗନ୍ତାଘର । କିନ୍ତୁ ଏହି ପରିପୂର୍ଣ୍ଣତା ଓ ପ୍ରାଚୁର୍ଯ୍ୟର ସ୍ୱରୂପ ଏକାନ୍ତ ଉପହାସ୍ୟ । ଗୁରୁପ୍ରସାଦଙ୍କ ଭାଷାରେ—

ଆମରି ଏ ପୃଥିବୀରେ କେବେ କିଛି ଲୋପ ହୁଏ ନାହିଁ
ମଶା, ମାଛି, ପୋକ ଯୋକ ଲୋକବାକ କାଉ ଓ ବାଦୁଡ଼ି
ଘରର ଅନିଦ୍ରା ଆଉ ଦିପହରର ଝାଳ ଆଉ ତାତି
କେବେ କିଛି ଯାଏ ନାହିଁ ପୁରିପୂରି ଦେଶରୁ ଉଜୁଡ଼ି (୧୫)"

ମଶା, ମାଛି, ପୋକ, ଯୋକ, କାଉ ଓ ବାଦୁଡ଼ିଙ୍କ ସହ ସମାନ୍ତରାଳ ଭାବେ 'ଲୋକବାକ' ଶବ୍ଦର ପ୍ରୟୋଗ ମଧ୍ୟରେ ମାନବିକ ସତ୍ତା ଏଠାରେ ଖଣ୍ଡିତ । ବ୍ୟକ୍ତିର ଜୀବନ ଏକାନ୍ତ କ୍ଲାନ୍ତିକର । 'ଘରର ଅନିଦ୍ରା' ଶବ୍ଦ ଦୁଇଟି ମାଧ୍ୟମରେ ଏହି କ୍ଲାନ୍ତି ତଥା ଅସ୍ୱସ୍ତିକର ଜୀବନ ପରିଧି ସାକାର । ଦିନର ଅନୁଭୂତି ଜୈବିକ କାମନା ଭିତରେ ସୀମାବଦ୍ଧ । ମଧ୍ୟାହ୍ନର 'ଝାଳ-ତାତି' ଉଦଗ୍ର ଯୌନ କାମନାର ପ୍ରତୀକ । ପୁଣି ସନ୍ଧ୍ୟା ଏକ ବୌଦ୍ଧିକ ବିକାର—

"ସୂର୍ଯ୍ୟାସ୍ତର ଆକାଶରେ ନଗ୍ନକ ଓ କାଠଯୋଡ଼ି ଭଳି
ଗୋଟି ଗୋଟି ଜଳି ଉଠେ ଡାକ୍ତରୀ ଆଉ ଦୋକାନ ଆଲୁଅ
ମାର୍କସବାଦ, ଗାନ୍ଧୀବାଦ ପାମ୍ଫଲେଟ ଟିକେଟ ବିକାରେ
ଉତ୍ତେଜନା ବେଶ ଜମେ ନାରୀ ଆଉ ଶ୍ରମିକ ବିଦ୍ରୋହ (୧୬) ।"

ମାର୍କସବାଦ ତଥା ଗାନ୍ଧୀବାଦର ତର୍କ ବିତର୍କ ଏକ ନିରର୍ଥକ ବୌଦ୍ଧିକତା । ଶ୍ରମିକ ବିଦ୍ରୋହ, କେବଳ ସାଂଧ୍ୟ ଆଲୋଚନାର ଏକ ବିଳାସ । ନାରୀ ସମ୍ପର୍କିତ ଉତ୍ତେଜନା ଜୀବନର ସାର ସତ୍ୟ । ହରେକୃଷ୍ଣ ଦାସର ସ୍ୱପ୍ନ ଓ ବାସ୍ତବ ସ୍ଥିତି ନାରୀକୈନ୍ଦ୍ରିକ । ସୁତରାଂ ଝରକା ପାଖରେ ବସି ସେ ସ୍ୱପ୍ନ ଦେଖେ—"ସେ ପାଖ କୋଠାର ଝିଅ ପ୍ରତିଦିନ ବୁଲିବାକୁ ଯାଏ (୧୭) ।"

'ହରେକୃଷ୍ଣ ଦାସ (୧)' ରେ କିନ୍ତୁ ଏହି ସ୍ୱପ୍ନର ବିକାଶ ଅଥବା ଉତ୍ତରଣ ଲକ୍ଷ୍ୟ କରାଯାଏ ନାହିଁ, ପକ୍ଷାନ୍ତରେ ହରେକୃଷ୍ଣ ଦାସର ଜୀବନାନୁଭବ ମଧ୍ୟରେ ତାର ଶକ୍ତିର ସସୀମତା ସୂଚିତ –

"ସନ୍ଧ୍ୟା ପୁଣି କେବେ ଭଳି କୁଢ଼ କୁଢ଼ କଳା କଳା ବଉଦ ଭିତରେ
କୋଇଲା ଚୁଲିର ଶେଷ ଝିକ ମିକ ରଙ୍ଗ ଧୂଆଁ ପରି (୧୮) ।".

ସନ୍ଧ୍ୟାର ଶେଷସର୍ଗ କାଳିନ୍ଦୀଚରଣଙ୍କ 'ନୈବେଦ୍ୟ'ର ସଂଧ୍ୟା ସୁନ୍ଦରୀର ସ୍ୱର୍ଣ୍ଣାଭ ସ୍ମିତ ଅଥବା ସଚ୍ଚି ରାଉତରାୟଙ୍କ 'ଏକ ସନ୍ଧ୍ୟାଶେଷେ'ର 'ଚମ୍ପକ ଜ୍ୟୋତ୍ସ୍ନା ସ୍ନାତ ସଂଧ୍ୟା' ନୁହେଁ । କୁତ କୁତ କଳା ବଉଦ ଭିତରେ କୋଇଲି ଚୂଲିର ଝିକ ଝିକ ଶେଷ ରଙ୍ଗ ନିଆଁ ପରି ତା'ର ଅସ୍ତିତ୍ୱ ଦଗ୍‌ଧୀଭୂତ । ଏହି ଅନ୍ତଃକ୍ଷୟିତ ଦୃଶ୍ୟ ମଧ୍ୟରେ ହରେକୃଷ୍ଣ ଦାସ ଏକାନ୍ତ ନିଃସଙ୍ଗ । ଏ ନିଃସଙ୍ଗତା ଅରଣ୍ୟ ଅଥବା ମରୁଭୂମି ପ୍ରସୂତ ନିର୍ଜନତା ନୁହେଁ । କୋଳାହଳ ପୂର୍ଣ୍ଣ କଟକ ନଗର ଭିତରେ ହିଁ ଆଧୁନିକ ମଣିଷର ଏହି ସୂତୀବ୍ର ନିଃସଙ୍ଗତାବୋଧର ଉପଲବ୍‌ଧି । ଚଉଧୁରୀ ବଜାରର ଲୋକାରଣ୍ୟ ଭିତରେ ଏହି ପରିଚିତ ପୃଥିବୀ ତାଙ୍କୁ ଜଣାଯାଏ ବନ୍ଧୁହୀନ, ଜ୍ଞାତିହୀନ କେଉଁ ଏକ ଅଚିହ୍ନା, ଅଜଣା ଅନ୍ୟ ଦେଶପରି—

"ହରେକୃଷ୍ଣ ଦାସ ଭାବନ୍ତି ଅବାକ୍ ଆଶ୍ଚର୍ଯ୍ୟ ଆଜି
ଏତେ ଭିଡ଼ ଏତେ ଲୋକ ଏତେ ଚେଜ ଦୋକାନ ଆଲୁଅ
ପେଟ୍ରୋଲ ବାସ୍ନାରେ ସରକାରୀ ଜିପ୍ ଗାଡ଼ି 'ଷ୍ଟିଅରିଂ ହୁଇଲ'ରେ
ଏହି କୁଆଁ ପ୍ରଥମ ଶୀତର
ହରେକୃଷ୍ଣ ଦାସ ଭାବିଲେ ସହରର ବନ୍ଧୁହୀନ ଜ୍ଞାତିହୀନ
'ନମସ୍କାର' 'ଜୟହିନ୍ଦ୍' 'ସାଲାମ' ଭିତରେ (୯)"

ସହରରେ ବନ୍ଧୁହୀନ, ଜ୍ଞାତିହୀନ ଜୀବନରେ ପାରସ୍ପରିକ ସମ୍ବନ୍ଧ—'ନମସ୍କାର' 'ଜୟହିନ୍ଦ୍' ଓ 'ସାଲାମ' ଭଳି ଗତାନୁଗତିକ ଆଦାନ ପ୍ରଦାନ ଭିତରେ ସୀମାବଦ୍ଧ । ଜୀବନର ସୁରଭି ପେଟ୍ରୋଲ ବାସ୍ନାରେ ପର୍ଯ୍ୟବସିତ ।

'ହରେକୃଷ୍ଣ ଦାସ (୨)' କବିତାରେ ଆଧୁନିକ ମଣିଷର କୃତ୍ରିମ ଜୀବନଯାପନ ପ୍ରତି ଗୁରୁପ୍ରସାଦଙ୍କର ସ୍ୱର ଶ୍ଳେଷ-ଶାଣିତ । ଆଶା-ନିରାଶାର ଧୂପ-ଗୁଗ୍ଗୁଳ, ବିଜ୍ଞାପନ, ଯୋଜନା, ସଭାସମିତି ଇତ୍ୟାଦିକୁ ନେଇ ତାର ଜୀବନ ଧରାବନ୍ଧା ଗତିରେ ଗଡ଼ିଚାଲେ । ପ୍ରଣୟ-ଚିଠାଉ ପ୍ରେରଣ, ବିବାହ-ବନ୍ଧନ ତଥା କ୍ଲବ୍‌ରେ ନିଦ୍ଦିଷ୍ଟ ସେଇ ରୁଟିନବନ୍ଧା ଜୀବନର ଏକ ଏକ ଅଂଶ । ତାର ଶେଷ ବାସ୍ତବ ପରିଚୟ ଗୁରୁପ୍ରସାଦଙ୍କ ଭାଷାରେ—

"ଚଉଧୁରୀ ବଜାରର ଆସ୍ଥା ଦେଇ ଏତେ ଦେହ ନିରାଶା ଓ ଆଶାର ମଣିଷ
ମିଶିଯାଏ ଢେଉ ହୋଇ ଦୋକାନରୁ ଦୋକାନକୁ
ନାଲି ନେଳି ଆଲମାରି କାଚ ଆଉ ଆଲୁଅ ଭିତରେ (୨୦)"

ଆଧୁନିକ ମଣିଷ ପଲ୍ଲୀ ପ୍ରକୃତିର ମୁକ୍ତ ମଣିଷ ନୁହେଁ ସେ ସୋ' କେଶର ଏକ ମଡେଲ । ଆଲୋକର ମହୋତ୍ସବ ଭିତରେ ତାର ଜୀବନ ଆପାତତଃ ରଙ୍ଗୀନ ଭଳି ପ୍ରତୀତ ହେଉଥିଲେ ମଧ୍ୟ ତାହା ଏକ କାଚ ପ୍ରାଚୀରରେ ବନ୍ଦୀ । ଉଂକ୍ତ କବିତାରେ ଚଉଧୁରୀ ବଜାର ସାମ୍ପ୍ରତିକ ନଗରକୈନ୍ଦ୍ରିକ ଆଧୁନିକ ବିଶ୍ୱର ଏକ ପ୍ରତୀକ ।

## ପାପବୋଧର ପରିଧିରେ 'ଶୁକଦେବ ଜେନା'

ସୌଭାଗ୍ୟ ମିଶ୍ରଙ୍କ 'ଶୁକଦେବ ଜେନା' 'ହରେକୃଷ୍ଣ ଦାସ' ର ଉତ୍ତର ପୁରୀ ସାମନ୍ତିକ ବଣିକଧର୍ମୀ ସଭ୍ୟତା ଓ ସଂସ୍କୃତିର ଏକ ପ୍ରତିଭୂ । ମଧ୍ୟଯୁଗୀୟ ପ୍ରଣୟ ଓ ପ୍ରେମାଶ୍ରୟ ତା ପାଇଁ ଅନାକାଂକ୍ଷିତ । ସେ ବିବାହିତ ଅଥଚ ପତ୍ନୀ ପ୍ରତିଅନାସକ୍ତ । ପତ୍ନୀସହ ସମୁଦ୍ର କୂଳରେ ବିହାର ଶୁକଦେବ ଜେନାର ଏକ ଅନିଚ୍ଛାକୃତ ବାହ୍ୟାଚାର (୨୧) । ପିତୃତ୍ୱ ତା ପାଇଁ ଏକ ଜୈବିକ କାମନାର ଆକସ୍ମିକ ପରିଣତି । ସୁତରାଂ ପତ୍ନୀଙ୍କର ଅସୁସ୍ଥତା ସତ୍ତ୍ୱେ ସିଲ୍କ ଜାମାରେ ବୋତାମ ଲଗେଇ ଶୁକଦେବ ଜେନା ବ୍ୟବସାୟ କେନ୍ଦ୍ରକୁ ଯିବା ପାଇଁ ବ୍ୟସ୍ତ ହୁଏ । ଶୁକଦେବ ଜେନାର ପତ୍ନୀ ମଧ୍ୟ, ପତିଙ୍କର ଏହି ଅନାସକ୍ତ ସମ୍ପର୍କରେ ସଚେତନ । ସେ ଜାଣନ୍ତି ଯେ ଶୁକଦେବ ଜେନା 'ତାଙ୍କର ଶୋଇବା ଘରର/ଘଣ୍ଟାକୁ ଖାତିର କରେ ନାହିଁ (୨୨) ।" 'ଶୋଇବା ଘର' ଏଠାରେ ପାରିବାରିକ ଜୀବନର ସୁରକ୍ଷିତ ତଥା ସଂହତ ସ୍ଥିତିର ପ୍ରତୀକ । 'ଶୋଇବା ଘରର ଘଣ୍ଟା'—ପତି-ପତ୍ନୀଙ୍କର ପାରିବାରିକ ଶୃଙ୍ଖଳାର ଦ୍ୟୋତକ । ଶୁକଦେବ ଜେନା ଏଠାରେ ପାରିବାରିକ ସମ୍ବନ୍ଧସୂତ୍ର ପ୍ରତି ଉଦାସୀନ । ସାମାଜିକ ଜୀବନର ଆକାଂକ୍ଷିତ ପବିତ୍ରତା ତା ପାଇଁ ଉପେକ୍ଷିତ । ତା'ର କାରଣ ସୁସ୍ପଷ୍ଟ । ଶୁକଦେବ ଜେନାର ଆତ୍ମକଥନ ମଧ୍ୟ ଏଠାରେ ଅଭିବ୍ୟକ୍ତ—

ଯେଣୁ ମୋର ସନ୍ଧ୍ୟାବେଳ
ଅନ୍ୟ ଏକ ବିଧବାର କୋଳର ବହ୍ନିରେ ବାରମ୍ବାର
ସୁବର୍ଣ୍ଣ ସମାନ ଶୁଦ୍ଧ ହୁଏ ପୁରୀରେ, ବା ସାକ୍ଷୀଗୋପାଳରେ (୨୩)"

ଶୁକଦେବ ଜେନାର ପରଦାରଗମନକୁ କବି ଏଠାରେ ଶାଣିତ କଟାକ୍ଷପାତ କରିଛନ୍ତି । ପୁରୀ ଓ ସାକ୍ଷୀଗୋପାଳର ପବିତ୍ରତା ଏହି ପରକୀୟା ପ୍ରୀତି ମଧ୍ୟରେ ବିନଷ୍ଟ ହୋଇଛି । ସନ୍ଧ୍ୟାବେଳ 'ସୁବର୍ଣ୍ଣ ସମାନ ପରିଶୁଦ୍ଧ' ହେବା ମଧ୍ୟ ଏକ ଶ୍ଳେଷାତ୍ମକ ପ୍ରୟୋଗ । ଏହି ସୁବର୍ଣ୍ଣ ସମାନ ଦ୍ୟୁତିମନ୍ତ ଜୀବନଧାରା ଶୁକଦେବ ଜେନାର ଜୀବନ ପରିଧିରେ ସୁଦୂର ପରାହତ ।

ଏଠାରେ ଉଲ୍ଲେଖନୀୟ ଯେ ଶୁକଦେବ ଜେନା, ତାର ପାପକର୍ମ ସମ୍ପର୍କରେ ଅବହିତ । ଏଥିପାଇଁ ଅନୁତାପର ଅନଳରେ ସେ ଦଗ୍‌ଧୀଭୂତ ନୁହେଁ, କିନ୍ତୁ ପାପ-ବୋଧର ଭସ୍ମରେ ଆଚ୍ଛନ୍ନ । ଏହି ପରିପ୍ରେକ୍ଷୀରେ ଶୁକଦେବ ଜେନାର ସ୍ୱଗତୋକ୍ତି—

"ଯେଣୁ ମୁଁ ସମୁଦ୍ର ଦେଖି ଭୟଭୀତ ହୁଏ ଓ ସମସ୍ତ
ତଟ୍ଟା ମୋତେ ଦେଖାଯାନ୍ତି ଶିପ ଓ ଶାମୁକାପରି, ଶିପ ଓ ଶାମୁକା

ଡ଼ଙ୍ଗା ଦେଖାଯାନ୍ତି । ସେମାନଙ୍କ ବାଲି ଓ ବିଳାସ
ଏକା ଜଥା, × × × × (୨୪)"

'ଶୁକଦେବ ଜେନା' କବିତାର ଏହି ସମୁଦ୍ର ସ୍ୱୟଂ ସଂସାରରୂପୀ ସମୁଦ୍ର । 'ଡ଼ଙ୍ଗା' ଶୁକଦେବ ଜେନାର ଜୀବନଧାରାର ପ୍ରତୀକ । ଶିପ ଓ ଶାମୁକାର ସ୍ଥିତି ମୃତ୍ୟୁ ଚେତନାର ବାହକ । ଶୁକଦେବ ଜେନାର ଅନ୍ତର୍ଲୋକରେ ଜୀବନ ଓ ମୃତ୍ୟୁର ଦ୍ୱନ୍ଦ୍ୱ । ଏହି ଦ୍ୱନ୍ଦ୍ୱ ଆଧୁନିକ ମଣିଷର ସନ୍ଦେହ ଚେତନାର ଦ୍ୟୋତକ । ଶୁଷ୍କ-ପୂତ ଜୀବନାଗ୍ନିର ତା ପାଇଁ ଅନାକାଙ୍କ୍ଷିତ । ଜୀବନ ଭୋଗ-ବିଳାସର ନାମାନ୍ତର । ଉପର ଉଦ୍ଧୃତ ପଂକ୍ତିର 'ବାଲି' ମୃତ୍ୟୁ ଜନିତ ସ୍ଥବିରତାର ସ୍ୱରୂପ । ସୁତରାଂ ଜୀବନ-ସମୁଦ୍ରରେ ଭୋଗ-ବିଳାସର ନୌକା ଅଗ୍ରଗାମୀ ହେଉଥିବା ବେଳେ ଶୁକଦେବ ଜେନା ଅଗ୍ନିକ ମୃତ୍ୟୁ ଚେତନାରେ ମ୍ରିୟମାଣ । ଜୀବନ-ସମୁଦ୍ରରେ ଉଠୁଥିବା ଏ ପାପର ଅନ୍ତଃସ୍ରୋତକୁ ରୁନ୍ଧ କରିବା ତା ପକ୍ଷରେ ସମ୍ଭବ ନୁହେଁ ସେଥିପାଇଁ ତା ନିକଟରେ ଅଛି ମାତ୍ର 'ଗୋଟେ ଅଧେ/କାଠ ବା ଦଉଡ଼ି'—ଯାହା ତା'ର ସୁରକ୍ଷା ପାଇଁ ଏକାନ୍ତ ଅସମର୍ଥ । ଶୁକଦେବ ଜେନା ସହ ଅଛନ୍ତି କେତେଗୋଟି ଶୀର୍ଣ୍ଣ ନୋଳିଆ ପିଲା । କିନ୍ତୁ ସେମାନଙ୍କ ଭିତରେ ସେହି ମୃତ୍ୟୁ ଚେତନା ପରିପୂର୍ଣ୍ଣ । ଜୀବନର ଯେଉଁ ସତ୍ତା ସେଠାରେ ବିଦ୍ୟମାନ ତାହା ମଧ୍ୟ ଅନନ୍ତ ଲୋଭ ଓ ମୋହରେ ପରିପୂର୍ଣ୍ଣ । ଏଣୁ 'ସେମାନେ ସୂର୍ଯ୍ୟକୁ ଠେଲି ଦିଅନ୍ତି ପଶ୍ଚିମକୁ' । ସୂର୍ଯ୍ୟ ଏଠାରେ ଜୀବନୀ-ଶକ୍ତିର ଉତ୍ସ । ତାଙ୍କର ପଶ୍ଚିମାକାଶକୁ ଯାତ୍ରା, ମୃତ୍ୟୁ ବୋଧକୁ ଘନୀଭୂତ କରୁଛି । ଏ ମୃତ୍ୟୁ ପାଇଁ ମଧ୍ୟ ଶୁକଦେବ ଜେନା ଭୟଭୀତ । ସେ ଜାଣେ ଯେ 'ସୂର୍ଯ୍ୟ ଅସ୍ତ ହେଲେ/ସମୁଦ୍ର ବି ଅସ୍ତ ହୁଏ' । ପାର୍ଥିବ ଚେତନା ଦୃଷ୍ଟିରୁ ଭୌଗୋଳିକ ସମୁଦ୍ର ଅସ୍ତ ହୁଏ ନାହିଁ । ସୁତରାଂ ସମୁଦ୍ରର ଅସ୍ତାୟମାନ ଦୃଶ୍ୟ ହିଁ ଶୁକଦେବ ଜେନାର ଜୀବନ-ସମୁଦ୍ରର ଅନ୍ତର୍ହିତ ରୂପ । କିନ୍ତୁ ଶୁକଦେବ ଜେନାର ଜୀବନ କାହିଁ ? ତାର ଜୀବନ ହେଉଛି ଜୀବନ୍ମୃତ୍ୟୁ । ତହିଁରେ ଉଗ୍ର ଯୌନ କାମନାର ସଂସ୍ରବ ବାଧକ । ମୃତ୍ୟୁ ଓ ମୈଥୁନ ସେଠାରେ ହାତ ଧରାଧରି ହୋଇ ବିଦ୍ୟମାନ । ଶୁକଦେବ ଜେନାର ଭୟବୋଧର ଅନୁଭୂତି ମଧ୍ୟରେ ଏହି ଚେତନା ପ୍ରତିଫଳିତ—

"× ମୁଁ ଜାଣେ ଯେ ସୂର୍ଯ୍ୟ ଅସ୍ତହେଲେ
ସମୁଦ୍ର ବି ଅସ୍ତ ହୁଏ କେବଳ ଜାଣେ ନା ଅସ୍ତ ହେବା ପରେ
ଏତେ ଭୟ କେଉଁଠାରୁ ଆସେ କେଉଁ ଲବଙ୍ଗ ଦ୍ୱୀପରୁ
କେଉଁ ବିଧବାର ଉଷ୍ଣ ଝାଳରୁ × × × (୨୫) ।

ବିଧବାର ଉଷ୍ଣଝାଳ' ଏଠାରେ ଶୁକଦେବ ଜେନାର ଅବୈଧ ଯୌନାଚାରର ସ୍ମୃତି ବହନକାରୀ । ତହିଁରୁ ଶୁକଦେବ ଜେନାର ପରିତ୍ରାଣ ନାହିଁ । ଜୀବନ ମନ୍ଦିର ତା ପାଇଁ ଜରାଜୀର୍ଣ୍ଣ, ଭଗ୍ନ । କିନ୍ତୁ ସେ ଜୀବନକୁ ପୁନର୍ଗଠନ କରିବାର ବାସନା ତାକୁ ଆକୁଳ-ଉଦ୍‌ବିଗ୍ନ କରେ । ସୁତରାଂ ପତ୍ନୀଙ୍କ ଆଗରେ ସେ ତାର ଗୋପନ ପାପର ଅବଗୁଣ୍ଠନ ଉନ୍ମୋଚନ କରିବାପାଇଁ ଉନ୍ମୁଖ ହୁଏ—

"ମୁଁ ଭାବିନେଲି
ପତ୍ନୀଙ୍କ ଆଗରେ ପ୍ରିୟତମ ପାପ ଭାଙ୍ଗିଦେବା ଭଲ
ହୋମର ସଙ୍ଗରେ ନଡ଼ିଆ ଭାଙ୍ଗିବା ପରି
ସେ ହୁଏତ ଗୁଣିଆ ଡକାଇ
ମୋ ବାହୁରେ ବାନ୍ଧିଦେବେ ତେଉଁଶିଆ (୨୬) ।"

ଶୁକଦେବ ଜେନା ଯେଉଁ ପାପଟି ସ୍ୱୀକାର କରିବା ପାଇଁ ଉଦ୍ୟତ, ସେ ପାପଟି ତାର ପ୍ରିୟତମ । ଏଣୁ ତାହା ପରିତ୍ୟାଗ କରିବା ସମ୍ଭବ ନୁହେଁ । ସୁତରାଂ ସିଲ୍‌କ ଜାମାରେ ପତ୍ନୀଙ୍କ ପ୍ରଦତ୍ତ ତେଉଁଶିଆଟିର ଅସ୍ତିତ୍ୱ ଅବଲୁପ୍ତ ହୋଇଯିବ । 'ତେଉଁଶିଆ' ଏଠାରେ ସାମାଜିକ ବନ୍ଧନର ପ୍ରତୀକ । ସାମାଜିକ ବନ୍ଧନର ଅନ୍ତରାଳରେ ଯେଉଁ ପାପ କର୍ମରେ ସେ ଲିପ୍ତ ତେଉଁଶିଆଟି ସେଥିରୁ ତାକୁ ମୁକ୍ତି ଦେବ ବୋଲି ତା'ର ବିଶ୍ୱାସ । ଜୀବନର ଅବଶିଷ୍ଟ ସମସ୍ତ ମାଧରେ ବିକୃତ ମସ୍ତିଷ୍କ ଓ ଅସୁନ୍ଦର ସନ୍ତାନମାନଙ୍କର ଯନ୍ତ୍ରଣାର ଗନ୍ତାଘରରୁ ମୁକ୍ତି ପାଇବା ପାଇଁ ତେଉଁଶିଆ ସିନ୍ଧୁକାଠିର କାମଦେବ । ସାମାଜିକ ଐଶ୍ୱର୍ଯ୍ୟ, ସମ୍ପଦ, ଅଳଙ୍କାର ଦୋକାନର ବ୍ୟାବସାୟିକ ସଫଳତାରେ ସେ ବଳୀୟାନ । କିନ୍ତୁ ବାସ୍ତବତଃ ପାପବୋଧ ପ୍ରସୂତ ଜୀବନରୁ ନିଷ୍କୃତିର ସମ୍ଭାବନା ଏକ ଅଳୀକ କଳ୍ପନା । ସୁତରାଂ ନବୋଦିତ ସୂର୍ଯ୍ୟ କିରଣରେ ସ୍ନାତ ପ୍ରାତଃକାଳରେ ସେ ଏକ କୁତ୍ସିତ ଦୃଶ୍ୟ ଦେଖିଛି । ଦୃଶ୍ୟଟି ସଂଘଟିତ ହୋଇଛି ତାର ନିଜସ୍ୱ ଗୃହର ପରିସର ଭିତରେ । ଶୁକଦେବ ଜେନାର ଶୋଇବା ଘରର ଶେଯ ଉପରେ—

"× × ଆଜି ପ୍ରାତଃ କାଳରେ ଦେଖିଲି
ଘର ସାକ ମୋର ଶୁଭ୍ର ଶେଯସାକ ପଡ଼ିଅଛି ମଲ୍ଲୀର ପାଖୁଡ଼ା
ଓ ମଧ୍ୟ ସ୍ଥଳରେ ବସି ରହିଅଛି ଅନ୍ଧ, ମୂକ କୁତ୍ସିତ ଶକୁନ
ମୋ ସଦ୍ୟ ଜନ୍ମିତ କନ୍ୟା ଖେଳୁଅଛି ତାହାର ସାଙ୍ଗରେ" (୨୭)

ସଦ୍ୟ-ଜନ୍ମିତ କନ୍ୟା ନିଷ୍ପାପ ଜୀବନବୋଧର ଦ୍ୟୋତକ । କିନ୍ତୁ ଶୁକଦେବ ଜେନାର ଉତ୍ତର ଦାୟାଦ ମୃତ୍ୟୁ କବଳରୁ କିପରି ମୁକ୍ତ ହେବ ? ଏଣୁ ଶୁଭ୍ର ଶଯ୍ୟା ତଥା

କୋମଳ ମଞ୍ଜୀର ପାଖୁଡ଼ା ଉପରେ ଶାୟିତା ଶିଶୁ କନ୍ୟାର ସାଥି ହୋଇଛି ଏକ ଅନ୍ଧ, ମୂକ, କୁତ୍ସିତ ଶକୁନ—ଶୁକଦେବ ଜେନାର ପାପବୋଧର ସାକାର ରୂପ । ତାର ଜୀବନ, ଅନ୍ତର୍ଦୃଷ୍ଟି ବିବର୍ଜିତ । ଶକୁନର ଅନ୍ଧତ୍ୱ ମଧ୍ୟରେ ଏହା ପ୍ରତିପାଦିତ । ସେ ପୁଣି ମୂକ—ବାକ୍ ଶକ୍ତି ରହିତ । ଜୀବନର ପ୍ରାଣ-କଲ୍ଲୋଳ ତାହିଁରୁ ନିର୍ଗମିତ । ତା'ର କୁତ୍ସିତ ସ୍ୱରୂପ ମଧ୍ୟରେ ଶୁକଦେବ ଜେନାର ବୀଭତ୍ସ ମନୋବୃତ୍ତି ପ୍ରତିଫଳିତ ।

ଶୁକଦେବ ଜେନା ପକ୍ଷରେ ଶେଷ ପର୍ଯ୍ୟନ୍ତ ପାପ-କର୍ମରୁ ମୁକ୍ତ ହେବା ସମ୍ଭବ ହୁଏ ନାହିଁ । ସେ ତା'ର ପରକୀୟା ନାୟିକାର ସାନ୍ନିଧ୍ୟରେ ମଗ୍ନ ରୁହେ । ପରକୀୟା ହୁଏ ସ୍ୱକୀୟା ଅପେକ୍ଷା ଅଧିକ ସୁନ୍ଦର । ଶୁକଦେବ ଜେନା ନିଜର ପାପକର୍ମର ଶେଷ ପରିଣତି ବିଷୟରେ ସଚେତନ—

"ଆଉ ମୋର ଭୟ କିଣ ? ମୁଁ ସତର୍କ ହେଲିଣି କେବେଠୁଁ
କେବେ ସେ ଆସିବେ ବୃଦ୍ଧ ସନ୍ୟାସୀ × × (୨୮)"

ବୃଦ୍ଧ ସନ୍ୟାସୀ ଏଠାରେ ସ୍ୱୟଂ ମହାକାଳ । କିନ୍ତୁ ଶୁକଦେବ ଜେନା ମୋକ୍ଷକାମୀ ନୁହେଁ । ଆତ୍ମାର ନୂତନ ଘଟଧାରଣ ପ୍ରକ୍ରିୟା ପ୍ରତି ଆସ୍ଥାବାନ ମଧ୍ୟ ନୁହେଁ । ତାର ଶେଷ ସ୍ୱୀକାରୋକ୍ତି

"× × × ଆଉ ପୁଣି କେଉଁ ସ୍ୱୀକୃତିରେ
ପୁଣିଥରେ ବିସର୍ଜନ ? × × ×
ଆଉ କେଉଁ ଶୁକଦେବ ଜେନା" (୨୯) ।

ମୃତ୍ୟୁପରେ ଶୁକଦେବ ଜେନାର ବିଲୟ ଘଟିବ । ଡାକ୍ତରଖାନାର ରୋଗ, ଶୋକ, ଜନ୍ମ ଓ ମୃତ୍ୟୁର ଯନ୍ତ୍ରଣା ଚିରଦିନ ପାଇଁ ଲୋପପାଇବ । ତା ପାଇଁ "ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଃ କୁତଃ (୩୦) ?"

## ୨—ନାରୀ ଚରିତ୍ରର ନୂତନ ଅସ୍ତିତ୍ୱ

ପ୍ରଗତିବାଦୀ କବିତାରେ ଛତରଖାଈ, ଭିକାରୁଣୀ, ଖାନୁବାଈ ପ୍ରଭୃତିଙ୍କ ପରି ପ୍ରୟୋଗବାଦୀ କବିତାରେ ପ୍ରତିମା, ବିନତା, ଅଳକା, ପ୍ରଜ୍ଞା (୩୧) ଆଦି ଚରିତ୍ରର ସମାବେଶ ନୂତନ ଆସ୍ୱାଦନ ସୃଷ୍ଟି କରିଛି ।

### ଜୀବନ ସଂଗ୍ରାମ ନିପୀଡ଼ିତା ପ୍ରତିମା ନାୟକ

ସଚ୍ଚି ରାଉତରାୟଙ୍କ ପ୍ରତିମା (ପ୍ରତିମା ନାୟକ) ଚରିତ୍ର ମଧ୍ୟରେ ଆଧୁନିକ ଯୁଗ ଚେତନାର ଏହି ନୂତନ ଅସ୍ତିତ୍ୱ କାବ୍ୟାୟିତ । ରୋମାଣ୍ଟିକ ଭାବପ୍ରବଣତା ପରିବର୍ତ୍ତେ ଆଧୁନିକ ନାରୀର ବ୍ୟକ୍ତିସ୍ୱାତନ୍ତ୍ର୍ୟ ତଥା ଜୀବନ ସଂଗ୍ରାମ ନିପୀଡ଼ିତ ଚେତନାର ହତାଶା ଓ ନୈରାଶ୍ୟ ଏଠାରେ ଲିପିବଦ୍ଧ । 'ପ୍ରତିମା ନାୟକ' ସହ କାବ୍ୟ-ନାୟକର ସାକ୍ଷାତ ଏକ ବାସ୍ତବଧର୍ମୀ ପରିବେଶ ମଧ୍ୟରେ ସଙ୍ଘଟିତ—

"ବହୁଦୂରେ ଯନ୍ତ୍ରଶାଳେ ଚିମ୍‌ନିଟା କାଶେ ନିଜ ଗୁଏଁ
ଧାନସିଡ଼ି ନଦୀ ଟପି ଆଠଟାର ଡ଼ାକଗାଡ଼ି ଧାଏଁ ।
ପଢ଼ିଅଛୁ କବିତାରେ ଏତେବେଳେ କାନ୍ଦେ ଚକ୍ରବାକ
ହଠାତ୍ ଯେ ଦେଖାହେଲା ବହୁଦିନେ ପ୍ରଥମା ନାୟକ (୩୨) ।"

ଯନ୍ତ୍ରଶାଳାରେ ଚିମ୍ନିର କାଶ, ଏକ ରୁଗ୍‌ଣ ପରିବେଶର ପ୍ରତୀକ । ପୁଣି ଚକ୍ରବାକର କ୍ରନ୍ଦନ ସମ୍ପର୍କିତ ବିରହବୋଧ ସାମ୍ପ୍ରତିକ ଜୀବନର ଏକ ଉପଲବ୍‌ଧ ବାସ୍ତବସତ୍ୟ ନୁହେଁ । ଏହା କବିତାର ଏକ ଉପଜୀବ୍ୟ ମାତ୍ର । ଏହିଭଳି ଏକ ପରିବେଶ ମଧ୍ୟରେ ନାୟିକା ସହ ନାୟକର ସାକ୍ଷାତ ପ୍ରଣୟ-ପ୍ରତିଶ୍ରୁତି ଆବଦ୍ଧ ଅଥବା ପୂର୍ବ ନିର୍ଦ୍ଦିଷ୍ଟ ନୁହେଁ, ପକ୍ଷାନ୍ତରେ ଆକସ୍ମିକ । ନାୟକ ସାକ୍ଷାତ କରୁଥିବା ନାୟିକାର ପ୍ରଥମାର ସ୍ୱରୂପ ମଧ୍ୟ ଏକାନ୍ତ ମ୍ଳାନ, ବିମର୍ଷ :—

"ମୁଖ ତାର ବ୍ରଣଦୁଷ୍ଟ ହାତରେ ତା ଚମଡ଼ାର ବ୍ୟାଗ୍
ଶୀର୍ଣ୍ଣ ସାଧା ଗାଲେ ଫୁଟେ ବ୍ୟର୍ଥତାର ଅକପଟ ଦାଗ ।
ତନୁ ତାର ରୋଗ କ୍ଷୀର୍ଣ୍ଣ, କ୍ଷଣେ ତାର ମ୍ଳାନ ମୁହଁ ଯାକ,
ଶ୍ଳଥ, ରୁକ୍ଷ ଦେହ-ଶିଖା ତାଙ୍କି ଅଛୁ ଖାକୀର ପୋଷାକ". (୩୩)

ପ୍ରଥମା ନାୟକର ବ୍ୟର୍ଥ ଜୀବନ ଚିତ୍ର କେତୋଟି ଚିତ୍ରଧର୍ମୀ ବିନ୍ୟାସ ମାଧ୍ୟମରେ ପ୍ରମୂର୍ତ୍ତି । ତା'ର ତନୁ ରୋଗକ୍ଷୀର୍ଣ୍ଣ, ବ୍ରଣଦୁଷ୍ଟ ମୁଖଶ୍ରୀ ମ୍ଳାନ, ଗାଲ ଶୀର୍ଣ୍ଣ। ତହିଁରେ ଜୀବନର ବ୍ୟର୍ଥ ସ୍ମୃତି-ସୂଚକ ରେଖା ସୁସ୍ପଷ୍ଟ । ତେବେ ଉପରି ତାର ଦେହରେ ଆବୃତ୍ତ ହୋଇଛି 'ଖାକୀର ପୋଷାକ' ଯେଉଁଥିରୁ ନାରୀତ୍ୱର ରଙ୍ଗୀନ ସ୍ୱପ୍ନ ଅପହୃତ । ପ୍ରଥମା ନାୟକର ଧୂସର ରୂପଶ୍ରୀ ମଧ୍ୟରେ ତା'ର ଚେତନାର ବିପନ୍ନତା ପରିସ୍ଫୁଟ ।

'ପ୍ରଥମାନାୟକ'ର ଜୀବନ ସଂଗ୍ରାମର ପରିସର 'ଧୂସରଧୂମଳ, ଧ୍ୱାଂତ ଯୁଦ୍ଧରତ ବିଶ୍ୱ (୩୪) । 'ପ୍ରଥମା ନାୟକ'ର ରଚନାକାଳ ୧୯୪୫ ସାଲ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସପ୍ଲାଇ ବିଭାଗରେ ପ୍ରଥମାର ନିଯୁକ୍ତି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୀଡ଼ିତ ବିଶ୍ୱପଟ୍ଟ ପ୍ରଥମାର ଜୀବନ-ବିଧି ଏକାନ୍ତ ବିପନ୍ନ ଓ ମ୍ଳାନ । ଏକ ବାସ୍ତବଧର୍ମୀ ପରିବେଶ ମଧ୍ୟରେ ପ୍ରଥମାର ଏହି ଦୁଃଖଦ ଜୀବନ ପ୍ରମୂର୍ତ୍ତି—

"ବହୁ ଦୂରେ ଲାସ୍‌କଟା ଘରେ ଏକ ହାରିକେନ ବତି
ଜଳୁଥିଲା ଦୁକୁ ଦୁକୁ, ଭୟାନକ, ଭୟାନକ ଅତି (୩୫)"

ଜାପାନ ମୋଳାୟମ ରେପିଣୀ ପରିବର୍ତ୍ତେ ଲାସ୍‌କଟା ଘରେ ଦୁକୁ ଦୁକୁ ଜଳୁଥିବା ହାରିକେନ ବତି ପରିବେଶକୁ ଅଧିକ ଭୟାର୍ତ୍ତ ଓ ବ୍ୟଥାତୁର କରୁଛି । ଏହି ବ୍ୟଥାହତ

ପରିବେଶ ମଧ୍ୟରେ ପ୍ରତିମା ରୋମାଣ୍ଟିକ ବିଷାଦରେ ବିଧୂରା ନୁହେଁ, ପକ୍ଷାନ୍ତରରେ ସେ ପରିବାରର ଭରଣ ପୋଷଣ ଦାୟିତ୍ୱ ବହନ କରିଥିବା ଏକ ସଂଗ୍ରାମରତା ନାରୀ । ଆର୍ଥନୀତିକ ନିରାପତ୍ତା ସକାଶେ ସେ ସ୍ୱାବଲମ୍ବନଶୀଳା ହେବାକୁ ଉଦ୍ୟମୀ କରିଛି । ନାରୀର ଶିକ୍ଷା-ଦୀକ୍ଷା କେବଳ ପ୍ରେୟସୀକୁ ବିଟାଉ ଲେଖିବା ପାଇଁ ଉତ୍ସର୍ଗୀକୃତ ହୋଇନାହିଁ, ପରନ୍ତୁ ଜୀବିକା ଅର୍ଜନ ପାଇଁ ଉଦ୍ଦିଷ୍ଟ ହୋଇଛି । ପିତାଙ୍କର ବିୟୋଗ ପରେ ପ୍ରତିମାର ଏକାନ୍ନବର୍ତ୍ତୀ ପରିବାରର ସୁଦୃଢ଼ ଭିତ୍ତି ଦୋହଲି ଯାଇଛି । ଦର୍ଶନ ଶାସ୍ତ୍ରରେ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କରୁଥିବା ପ୍ରତିମା ପୋଥିରେ ଡୋରି ବାନ୍ଧିଛି । ଋଣଭାରଗ୍ରସ୍ତ ପରିବାରର ଆର୍ଥିକ ସ୍ଥିତିକୁ ସମ୍ଭାଳିବା ପାଇଁ ସେ ସପ୍ଲାଇ ବା ଯୋଗାଣ ବିଭାଗରେ ନିଯୁକ୍ତି ଗ୍ରହଣ କରିଛି—

"ସପ୍ଲାଇରେ ନେଇଛି ଆଶ୍ରୟ
ଦରମାଟା ମନ୍ଦନୁହେଁ ଏହି ତା'ର ଦୀର୍ଘ ପରିଚୟ (୩୬)"

## ବାସ୍ତବବାଦୀ ଜୀବନ-ଦୃଷ୍ଟି ଓ ବିନତା

୧୯୪୯ ମସିହାରେ କବି ରାଧାମୋହନ ଗଡ଼ନାୟକଙ୍କ 'ଋଷିକୁଲ୍ୟା ଦେଶ'ର କାବ୍ୟନାୟିକା ବିନତାର ଜନ୍ମ । "ଅଳକା ସନ୍ୟାଲ" ଓ " ପ୍ରତିମା ନାୟକ"ଙ୍କ ନାରୀ ସତ୍ତାର ଏକ ଉଲ୍ଲେଖନୀୟ ବିବର୍ତ୍ତନ ଏହି ଚରିତ୍ରରେ ସୁସ୍ପଷ୍ଟ । ପରିସ୍ଥିତିର ତାଡ଼ନାରେ ପ୍ରତିମା ସ୍ୱାବଲମ୍ବନଶୀଳା । ଏଣୁ ବିଷାଦ ଓ ବେଦନାର ବଳୟରେ ଅନେକତ୍ର ସେ ଆଚ୍ଛନ୍ନ । ତା'ର 'ଶୀର୍ଣ୍ଣ ସାଧାରଣ'ରେ ବ୍ୟର୍ଥତାର ଦାଗ ଅଙ୍କିତ । ଆଖିରେ ନିରନ୍ଧ୍ର ଅନ୍ଧକାର ସଂକ୍ରମିତ । ତନୁ ରୋଗଜୀର୍ଣ୍ଣ । ବ୍ୟକ୍ତିତ୍ୱ ବ୍ୟଥାତୁର ।

ବିନତା କିନ୍ତୁ ଶାରୀରିକ ତଥା ମାନସିକ ଉଭୟ ଦୃଷ୍ଟିରୁ ସୁସ୍ଥ, ଆମୂଳାନ୍ତ ସକ୍ରିୟ ଓ ଚଳମାନ । ପ୍ରତିମା ପରି ତାର ଜୀବନ ସଂଗ୍ରାମ ଘଟଣୋଦ୍ଭୂତ ପରିସ୍ଥିତି ଅଥବା ବହିର୍ମୁଖୀ ନୁହେଁ, ଅନ୍ତର୍ମୁଖୀ । ସ୍ୱକୀୟ ଜୀବନ-ଦର୍ଶନ ପ୍ରତି ତା'ର ସ୍ୱାଭିମାନବୋଧ ପ୍ରଖର । ଏହି ଜୀବନ-ଦର୍ଶନଗତ ପାର୍ଥକ୍ୟ ହେତୁ ନାୟକ ନାୟିକା ପରସ୍ପର ଠାରୁ ବିଚ୍ଛିନ୍ନ ।

'ଋଷିକୁଲ୍ୟା ଦେଶ'ର ନାୟକ ତରଙ୍ଗ । ସୁନ୍ଦରଗଡ଼ର ଏକ ଅଜ୍ଞାତ ପଲ୍ଲୀ ତା'ର ଜନ୍ମସ୍ଥଳୀ । ଋଷିକୁଲ୍ୟା ନଦୀ ତୀରରେ ତା'ର ଶୈଶବ ଓ କୈଶୋର ଅତିବାହିତ । ସଂପର୍କ ତା' ସହ ଅସ୍ମିତାଗତ । ଅଧ୍ୟୟନ-କାଳରେ ବିନତା ସହିତ ତା'ର ବନ୍ଧୁତ୍ୱ । କ୍ରମଶଃ ଏହି ବନ୍ଧୁତ୍ୱ ପ୍ରଣୟରେ ପରିଣତ । ତରଙ୍ଗ ବିନତାକୁ ସାରା ଜୀବନର ସାଥୀରୂପେ ବରଣ କରିନେବା ପାଇଁ ଉନ୍ମୁଖ । ତା'ର କଳ୍ପନାରେ, ବିନତା

ଖାନୁମଣ୍ଡର ଉନ୍ନ୍ତାବହୁଳ, ବର୍ଷା-ବହୁଳ ପରିବେଶରେ ମୁକ୍ତ ବିହଙ୍ଗୀ ପରି ବିହରଣଶୀଳ । ତା'ର ଦୃଷ୍ଟିରେ ପଲ୍ଲୀର ସୁଖ-ଦୁଃଖ, ଚିନ୍ତା-କଳ୍ପନା ତଥା ଧ୍ୟାନ-ଧାରଣାର ଏକ ପରିପୂରକ ହେଉଛି ବନିତା । ପକ୍ଷାନ୍ତରେ ପଲ୍ଲୀର ଜୀବନ ବନିତା ପାଇଁ କ୍ଲାନ୍ତିକର । କେବଳ ଅବସର ବିନୋଦ ପାଇଁ ଏହା ଉଦ୍ଦିଷ୍ଟ, ଏକ ଛୁଟିର ବିଳାସ ମାତ୍ର । ନାୟକ ନାୟିକାଙ୍କ ବିଚ୍ଛିନ୍ନ ସ୍ଥିତିର ଏହା ହିଁ ଅସ୍ୱୀମାରମ୍ଭ—

" × × × ତା'ର ମନେ ହେଲା ସେ ଯେମିତି
ଅନେକ ଦୂର ଆଗେଇ ଯାଉଛି
ନିଜ ଅଜାଣତରେ" (୩୭) ।

ନଗର ସଭ୍ୟତାର ସ୍ପର୍ଶ ବିନା ବନିତା ପକ୍ଷରେ ଜୀବନ ଧାରଣ ଅସମ୍ଭବ । ଗାଁକୁ ସେ ଭଲ ପାଏ । କିନ୍ତୁ ସେଠାରେ ସ୍ଥାୟୀ ବାସିନ୍ଦାର ଆତ୍ମୀୟତା ପରିବର୍ତ୍ତେ ଭ୍ରାମ୍ୟମାଣ ପଥଗ୍ରସ୍ତର ସ୍ୱଳ୍ପ ସମୟର ମୋହମୁଗ୍ଧ ଆବେଗ ଅଧିକ । ଏହି ଆବେଗ ବନ୍ଧନରେ ପରିଣତ ହେବା ପୂର୍ବରୁ ସ୍ଥାନତ୍ୟାଗ ତା ପକ୍ଷରେ ଶ୍ରେୟସ୍କର । ତରଙ୍ଗର 'ଗାଁକୁ କ'ଣ ଭଲ ପାଅନା ବନିତା ?' ପ୍ରଶ୍ନର ଉତ୍ତରରେ ସେ ଇଙ୍ଗିତ ଦିଏ—

" × × ଭଲ ପାଏ ।
ଖୁବ୍ ଭଲ ପାଏ ।
ଭ୍ରମ୍ୟମାଣ ମୁସାଫିର ଯେମିତି
ଭଲ ପାଏ/ତା ତମ୍ବୁର ଚତୁର୍ଦ୍ଦିଗ/ପରି ମଣ୍ଡଳକୁ ।
କିନ୍ତୁ ସେ କ'ଣ ବନ୍ଦୀ ହେବାକୁ ଚାହେଁ/ସେଇଠି ? (୩୮)

କର୍ମମୁଖର ନଗର ବନିତାର ଚିର ବରଣୀୟ । ଟେଲିଫୋନ, ଟେଲିଗ୍ରାଫ, ଟ୍ରେନ, ଜାହାଜ ଓ ସମ୍ବାଦପତ୍ର ବିନା ବ୍ୟକ୍ତି-ବ୍ୟକ୍ତି ମଧ୍ୟରେ ଯୋଗାଯୋଗ ସେଠାରେ ଦୁଃସାଧ୍ୟ । ମନର ସଂଯୋଗ ଗୌଣ । ଏଣୁ ଖାନୁମଣ୍ଡର ବନଫୁଲ, ପୂର୍ଣ୍ଣିମାର ଚନ୍ଦ୍ରବିମ୍ବ, ଗୁଲ୍ଲ-ଆଲୁଅରେ ଦୃଶ୍ୟା ମୁରୁଜ ଓ ଇନ୍ଦ୍ରଧନୁର ବର୍ଣ୍ଣଛଟା ବନିତା ପାଇଁ ଆକର୍ଷଣୀୟ ହେଲେ ମଧ୍ୟ ତ୍ୟାଜ୍ୟ । ଇଟା-ସିମେଣ୍ଟ ତଥା ଇସ୍ପାତ ନଗରୀର ଅନ୍ତଃସତ୍ତ୍ୱା ସହ ସଂପୃକ୍ତ ବନିତା ପାଇଁ ପଲ୍ଲୀର ଜୀବନ ବିଚ୍ଛିନ୍ନତାର ନାମାନ୍ତର ।

ବନିତା ବ୍ୟକ୍ତି-ସ୍ୱାତନ୍ତ୍ର୍ୟ ସଚେତନ । ସ୍ୱାତନ୍ତ୍ର୍ୟଯୁଗର ଶିକ୍ଷାପ୍ରାପ୍ତାଙ୍କୀ ଖୁବୁ ନାୟିକା ପରି ପୁରୁଷର ସହଗମନ ତା'ର ଭବିତବ୍ୟ ନୁହେଁ । ପୁରୁଷ ପାଇଁ ନାରୀର ପ୍ରଣୟ କିଭଳି ଉତ୍ସର୍ଗୀକୃତ ତା'ର ଦୃଷ୍ଟାନ୍ତ ମିଳେ ମାନସିଂହଙ୍କ କାବ୍ୟଚେତନାରେ । ପ୍ରଣୟ ତା'ର ସାଧନା ଓ ସିଦ୍ଧି । ଆତ୍ମଦହନ ମାଧ୍ୟମରେ ପ୍ରେମର ପରାକାଷ୍ଠା ପ୍ରମାଣିତ । ଏ ସଂପର୍କରେ ତା'ର ସ୍ୱୀକାରୋକ୍ତି ବଡ଼ ନିଷ୍କପଟ—

"ସ୍ୱପ୍ନେ ଜାଗରଣେ ତୁମର ସ୍ମରଣେ
ଭରିବି ସକଳ କରମ,
ଆନ ଜଏ ଯଦି ଜିଣେ ତବ ମନ
ପାଦ ଧରି ତା'ଠୁ ଶିଖିବି ସାଧନ
ଜାଣ ଚନ୍ଦ୍ରଶେଖର ତୁମ୍ଭ ଲାଜ ମୋର
ପୋଡ଼ି ହେବା ନାରୀ ଧରମ (୩୯) ।"

ପୁରୁଷର ସାନ୍ନିଧ୍ୟ ବିନା ନାରୀର ଜୀବନ ଏକ ଶେଷହୀନ ଅସମାପିକା ପ୍ରଶ୍ନ-ବାଚୀରେ କେବଳ ଆବଦ୍ଧ, ତାହା 'ଅସମାପିକା' (ଗ୍ରନ୍ଥିତ ଗ୍ରନ୍ଥ) କବିତାରେ ପ୍ରତିପାଦିତ । କବିତାର ନାୟିକା, କେଶରୀ ରାଜକନ୍ୟା ନନ୍ଦିକା । ପ୍ରଣୟୀ ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ସେ ପ୍ରତ୍ୟାଖ୍ୟାତା । ରାଜଦ୍ରୋହ, ଦେଶଦ୍ରୋହ ତଥା ପିତୃଦ୍ରୋହ ଅପରାଧରେ ସେ ଅଭିଯୁକ୍ତା । ପୁରୁଷ-ପ୍ରଧାନ ସମାଜ ବିରୋଧରେ କୌଣସି ମୌଳିକ ମାନସିକ ବିପ୍ଳବ ତାଙ୍କଠାରେ ଲକ୍ଷ୍ୟ କରାଯାଏ ନାହିଁ । ବରଂ ଆତ୍ମହତ୍ୟା କରିଥିବା ନାୟିକାର ଦୃଷ୍ଟିକୋଣ ଜୀବନପ୍ରତି ଅନେକାଂଶ ପଳାୟନପନ୍ଥୀ ।

ବିନତାର ଜୀବନ-ପରିସର କିନ୍ତୁ ବିପୁଳ, ଦୃଷ୍ଟିକୋଣ ବିସ୍ତୃତ । ବ୍ୟକ୍ତିବାଦୀ ସଭ୍ୟତାର ପରିସରରେ ବିନତା ଅପେକ୍ଷାକୃତ ସ୍ୱାଧୀନ । ଏଣୁ ତା' ଜୀବନରେ ନନ୍ଦିକାର ଶୋକଗୀତି ଅନାବଶ୍ୟକ । 'ନନ୍ଦିକା ଅତୀତ', ବିନତା ବର୍ତ୍ତମାନ । ଅତୀତରେ ଅହେତୁକ ଆତ୍ମତ୍ୟାଗ ପ୍ରତି, ହେତୁବାଦୀ ବର୍ତ୍ତମାନର ସଂଶୟ ସୁବିପୁଳ—

"ଏକଦା ଯା ଥିଲା ସତ୍ୟ, ଆଜି ମନେ ଆଣଇ ସଂଶୟ
ଶତ ପ୍ରଶ୍ନ ତୋଳେ ମଥା, ମନେ ହୁଏ ଅସ୍ତ ନା ଉଦୟ
କେଉଁଟା ପରମ ସତ୍ୟ ? ଆଗନ୍ତୁକ ନବାଗତ ଜନ
ଅତୀତେ ପାରେ ନା ବୁଝି, ବିଦ୍ରୋହର ଧ୍ୱଜା ତୋଳେ ମନ" (୪୦)

ନନ୍ଦିକା ପାଇଁ ଜୀବନ ଅପେକ୍ଷା ପ୍ରେମ ବୃହତ୍ତର । କିନ୍ତୁ ବିନତା ପାଇଁ ପ୍ରେମ ଅପେକ୍ଷା ଜୀବନବୋଧ ବୃହତ୍ତର । 'ଅସମାପିକା'ର କାବ୍ୟ ବକ୍ତବ୍ୟରେ ବିନତାର ଚିନ୍ତାଦର୍ଶ ସତେ ଅବା ପ୍ରକଟିତ । —

" ମନେ ହୁଏ ପ୍ରେମ ବଡ଼, ପୁଣି ଭାବେ ପ୍ରେମ ଠାରୁ ବଡ଼
ଜୀବନର ଏହି ଗତି, ଧାବମାନ ଅବିଶ୍ରାନ୍ତ ଝଡ଼
ବିରାମ ବିହୀନ, ଅନ୍ତର୍ଯାମୀ ଅତନ୍ଦ୍ର ଅଶ୍ରାନ୍ତ (୪୧) ।"

ବନଲତାର ଜୀବନ ଦର୍ଶନରେ ଏହି ଚଳନ୍ତାଦର୍ଶ ପ୍ରତିଫଳିତ । ପଲ୍ଲୀ ପ୍ରକୃତିରେ ଆବଦ୍ଧ ହେବା ପରିବର୍ତ୍ତେ ସେ ଅଗ୍ରମାର୍ଗୀ, ଚଳ ଚଞ୍ଚଳ । ଅତୀତ ତା ପାଇଁ ମୂଲ୍ୟହୀନ ନୁହେଁ, କିନ୍ତୁ ବର୍ତ୍ତମାନ ଓ ଭବିଷ୍ୟତ ତତୋଽଧିକ ଗୁରୁତ୍ୱପୂର୍ଣ୍ଣ । ଅତୀତର ସ୍ମୃତି-ଉତ୍ସ ବର୍ତ୍ତମାନର ଅଗଣାରେ ଫୁଲ ହୋଇ ଫୁଟିଥାଇପାରେ । ସେହି ଫୁଲର ସ୍ମୃତିରେ ବିଧୁର ହୋଇ ବର୍ତ୍ତମାନ ଓ ଭବିଷ୍ୟତର ସମୃଦ୍ଧିକୁ ନଷ୍ଟ ନ କରିବା ବୁଦ୍ଧିମତ୍ତାର ପରିଚାୟକ । ଏଣୁ ତରଙ୍ଗଙ୍କୁ ସେ ଆହ୍ୱାନ ଦିଏ—"ଝରି ଫୁଲର ସବରେ/କାହିଁକି ତମେ କାନ୍ଦିବ ନାଇଁ/ତମ ପଥ ପାର୍ଶ୍ୱରେ ଦିନେ/ଫୁଲ ଫୁଟିଥିଲା ? × × /ଏହାହିଁ ତ ଜୀବନକୁ ଜୟ କରିବାର କୌଶଳ (୪୨) ।"

ପରାଜୟ ବ୍ୟକ୍ତିତ୍ୱର ଲଲାଟ ଲିଖନ ନୁହେଁ । ପରାଜୟର ସକଳ ସମ୍ଭାବନା ସତ୍ତ୍ୱେ ଜୀବନ ସହିତ ସାଲିସ ନୁହେଁ, ମୁକାବିଲା ହିଁ ବନଲତାର ଲକ୍ଷ୍ୟ । ଆତ୍ମପ୍ରତ୍ୟୟ ସୁଗଭୀର । ଅତୀତର ନାରୀ ସମ୍ପର୍କିତ ସୁକୁମାର ମୂଲ୍ୟବୋଧ ବିରୋଧରେ ବନଲତା ଏକ ଆହ୍ୱାନ । ପାରମ୍ପରିକ ମୂଲ୍ୟବୋଧ ଅନୁଯାୟୀ କବିତା, ବନିତା, ଲତା ଆଶ୍ରୟ ବିନା ଜୀବନଧାରଣ କରିବା ସମ୍ଭବ ନୁହେଁ । ଲତା ବୃକ୍ଷକୁ, କବିତା କବିକୁ ଆଶ୍ରୟ କରିବା ପରି ନାରୀ ଜୀବନଧାରଣ ପାଇଁ ପୁରୁଷର ସାହଚର୍ଯ୍ୟ କାମନା କରେ । ବନଲତା ଏହି ମୂଲ୍ୟବୋଧର ଏକ ସ୍ପଷ୍ଟ ବ୍ୟତିକ୍ରମ । ଏକାକିନୀ ଜୀବନର ସମ୍ମୁଖୀନ ହେବା ପାଇଁ ସେ ବଦ୍ଧପରିକର । ତରଙ୍ଗ ସହ ପଲ୍ଲୀର ଅଜ୍ଞାତ କୋଣରେ କାଳଯାପନ ତା ପକ୍ଷରେ ଅସହ୍ୟ । ଏଣୁ ବିଶ୍ୱର ବିଭିନ୍ନ ସ୍ଥାନକୁ ଯାତ୍ରା କରି ସେ ଜୀବନର ମୂଲ୍ୟାନୁସନ୍ଧାନ କରେ । ଭାରତରୁ ମିଶର, ପୁଣି ସେଠାରୁ ମହାନଗରୀ ଲଣ୍ଡନ, ଏହିଭଳି ପୃଥିବୀର ଦୂର-ଦୂରାନ୍ତକୁ ଯାତ୍ରା ତାହାର ଲକ୍ଷ୍ୟ । ଦୂରାନ୍ତର ଯାତ୍ରା ରୋମାଣ୍ଟିକ ଚେତନାର ଏକ ଅଙ୍ଗ । କିନ୍ତୁ ବନଲତାର ଯାତ୍ରା ଏଠାରେ ବାସ୍ତବଧର୍ମୀ । ଶିଳ୍ପ ସଭ୍ୟତାର କୋଳାହଳ ମୁଖରିତ ନଗର ଜୀବନର ଉପଲବ୍ଧି ତା'ର ଧ୍ୟେୟ ।

ଜୀବନ-ବନ୍ଦରର ଉପକୂଳରୁ ତା'ର ଦୃଷ୍ଟିର ପରିଧିରେ ଉଦ୍ଭାସିତ ହୁଏ, 'ଟ୍ରାମର ଯାତ୍ରୀ', କ୍ଲାନ୍ତ ରିକ୍‌ସାବାଲା, ଫୁଟପାଥରେ ଆଶ୍ରୟପ୍ରାର୍ଥୀ ନୂଆଖାଲିର ଦୁଇ ହିନ୍ଦୁ ଭିକ୍ଷୁକ, ମଳିନ ବାସ [illegible]ରେ ସେମାନଙ୍କ ଶୀର୍ଣ୍ଣ ଦେହର [illegible] କ୍ଷୁଧା ଓ [illegible] ବସ୍ତ୍ରଖଣ୍ଡ ଉପରେ ବିଶ୍ରାମରତ ଏକ କ୍ଲାନ୍ତ କୁକୁର—

'ସେଇ ଟ୍ରାମ୍ ଚାଲିଗଲା
ରାସ୍ତାରେ ଏକ କ୍ଲାନ୍ତ ରିକ୍‌ସାବାଲା
ଆରୋହୀ ଅପେକ୍ଷାରେ ଧ୍ୟାନରତ
ଫୁଟପାଥରେ ନୂଆଖାଲିର

ଆଶ୍ରୟପ୍ରାର୍ଥୀ ଦୁଇଜଣ
ବୃଦ୍ଧ, ଭିକ୍ଷୁକ
ସେହି ମଳିନ ଗ୍ୟାସ ଆଲୁଅରେ
ସେମାନଙ୍କର ଶୀର୍ଣ୍ଣ ଦେହର ଛାଇ
ଦୀର୍ଘରୁ ଦୀର୍ଘତର ହୋଇ ଉଠୁଛି
ରାସ୍ତାର ବତୀ ଖମ୍ବ ତଳେ
ଏକ କ୍ଳାନ୍ତ କୁକୁର " (୪୩)

ତରଙ୍ଗ ହୃଦୟରେ ଅନୁମତୀର ସ୍ୱପ୍ନମେଦୁର ସୌନ୍ଦର୍ଯ୍ୟ ପ୍ରକଟିତ ହେଉଥିବା ବେଳେ ବନତା ଚକ୍ଷୁରେ ନଗର ସଭ୍ୟତାର ବାସ୍ତବ ଚିତ୍ର ପ୍ରତିଫଳିତ । ତରଙ୍ଗ ପରି ବନତାର ଦୃଷ୍ଟିଭଙ୍ଗୀ ଭାବବାଦର ନୁହେଁ । ବାସ୍ତବଚେତନାପ୍ରଣୋଦିତ । ତାର ଜୀବନର ମାନଚିତ୍ର ଧୂସର । ଅଗ୍ରଗାମୀ ଚଳମାନ ଧାରା ହିଁ ବନତାର ପ୍ରାଣଶକ୍ତି । ପଲ୍ଲୀର ଜୀବନ ଏକ ବିଚ୍ଛିନ୍ନ ବାନପ୍ରସ୍ଥ । ଅପରିଚିତ ଶିଳ୍ପ-ନଗରୀରେ ବ୍ୟକ୍ତିସତ୍ତାର ଅସ୍ତିତ୍ୱ ସ୍ଥାପନ ତା'ର ଆଭିମୁଖ୍ୟ । ବେଦନାର ନିର୍ଜୀବ ସ୍ଥବିରତା ବନତା ମନର ତୀବ୍ର ଘୂର୍ଣ୍ଣାଗ୍ନିରେ ଭସ୍ମୀଭୂତ :—

" ମୋ ଜଗତର ଧୂସର ମାନଚିତ୍ର
ତମେ ବୋଧହୁଏ ଦେଖିନ ।
କର୍ମ-ତତ୍ପର ସ୍ରୋତ ଚଞ୍ଚଳ, ଅଗ୍ରଗାମୀ
ଜୀବନର ଉଚ୍ଛ୍ୱାସର/ମୋ ଜଗତର ପ୍ରାଣଶକ୍ତି ।
× × ପ୍ରତିଜ୍ଞିୟାର ନିର୍ଜୀବ ଜ୍ୟାମିତିର ଛକ
ମୋ ମନର ତୀବ୍ର ଘୂର୍ଣ୍ଣାଗ୍ନିରେ/ଦଗ୍‌ଧ ଭସ୍ମୀଭୂତ (୪୪) ।

ତରଙ୍ଗ ଅସ୍ତ ହୃଦର ମାଝି । ବିଷାଦ ଓ ବେଦନାରେ ସେ ବିଧୁର । ବନତା ହୃଦୟ ସୂର୍ଯ୍ୟର ଆଭା । ଜୀବନ ସ୍ରୋତର ଉଚ୍ଛ୍ୱାସରେ ସେ ଚିର ଚଳମାନ । କର୍ମ-ମୁଖର ନଗର-ସଭ୍ୟତା ତା'ର ଦୃଷ୍ଟିର ବିଗ୍‌ବଳୟ । ପୃଥିବୀର ଅପରିଚିତ ଶିଳ୍ପ ନଗରୀ ସମୂହରେ ଏହି ଜୀବନଯାପନର ସାର୍ଥକତା ପାଇଁ ତାର ଆଶା ଓ ବିଶ୍ୱାସର ସ୍ୱରୂପ ଗଭୀର (୪୫) ।

## ବିଜ୍ଞାପନଧର୍ମୀ ନାରୀତ୍ୱ ଓ ଅଳକା ସାନ୍ୟାଲ

ସଚ୍ଚି ରାଉତରାୟଙ୍କ 'ପ୍ରଥମା ନାୟିକା' ପରି ଗୁରୁପ୍ରସାଦଙ୍କ 'ଅଳକା ସାନ୍ୟାଲ ଏକ ବାସ୍ତବଧର୍ମୀ ଚରିତ୍ର । ସାଂପ୍ରତିକ କାଳ ସୁଲଭ ବାସ୍ତବଧର୍ମୀ ପରିବେଶ ମଧ୍ୟରେ ତାର ଆବିର୍ଭାବ—

"ମୁଁ ତୁମକୁ ଦେଖେ ଆଜି ତୁମେ ଦିଅ ବ୍ଲାଉଜର ବୋତାମ
ଚ୍ ଦାଗ ତୁମେ ଧୂଅ ସେମିଜରୁ ଗରମ ପାଣିରେ
ତୁମେ ପୁଣି କଥା କୁହ ମୁହଁପୋଡ଼ ଟେବୁଲ ସେପାଖେ
ତୁମେ ପୁଣି ଉଠି ଆସି ଆସ୍ତେ ବସ ପାଖ ଚଉକିରେ (୪୬)"

ରାଉତରାୟଙ୍କ 'ଅଲକା'ର ଆତ୍ମପ୍ରକାଶର ରୋମାଣ୍ଟିକ ଆଡ଼ମ୍ବର ଗୁରୁପ୍ରସାଦଙ୍କ ଅଲକା ଜୀବନରେ ଅନୁପସ୍ଥିତ । ବଙ୍ଗୀୟ କବି ଜୀବନାନନ୍ଦ ଦାସଙ୍କ ବନଲତା ସେନ'ର ରୋମାଣ୍ଟିକ କାବ୍ୟସ୍ୱର ବିରୋଧରେ 'ଅଲକା ସାନ୍ୟାଲ'କୁ କବି ରାଉତରାୟ ଏକ ବାସ୍ତବଧର୍ମୀ ଆହ୍ୱାନ ରୂପେ ଅଭିହିତ କରିଥିଲେ ମଧ୍ୟ, କବିତାର ଶେଷ ଦୁଇ ପାଦ (୪୭) ବ୍ୟତୀତ ସର୍ବତ୍ର ରୋମାଣ୍ଟିକ ଚେତନାର ପ୍ରତିଫଳନ ଅନାୟାସଲକ୍ଷ୍ୟ । ନାରୀର ଭୂମିକା ବିବର୍ତ୍ତିତ ଧାରାରେ ପ୍ରାଚୀନ ତଥା ମଧ୍ୟ ଯୁଗରୁ ଆରମ୍ଭ କରି ଯୁଦ୍ଧୋତ୍ତର କାଳ ପର୍ଯ୍ୟନ୍ତ ପ୍ରଲମ୍ବିତ । ବିଦେହ ଓ ବାରୁଣୀବନ୍ଦରର ରାଜପ୍ରାସାଦରେ ଅଲକାର ନାରୀସତ୍ତାର ଅନ୍ୱେଷଣ, ନାଳନ୍ଦାର ନିର୍ଜନ ବିହାରରେ ସହପାଠିନୀ ଅଲକାର କୃଷ୍ଣକବରୀର କାରୁକାର୍ଯ୍ୟ ପ୍ରତି ମୋହମୁଗ୍ଧ ଦୃଷ୍ଟି ରୋମାଣ୍ଟିକ ଚେତନାର ପରିଚାୟକ କିନ୍ତୁ ଶେଷ ପର୍ଯ୍ୟନ୍ତ ଅଲକା ସହ କାବ୍ୟ-ନାୟକର ସାକ୍ଷାତ ଛାୟାଚ୍ଛନ୍ନ—'ଦେଖିବି ଦେଖିନାହିଁର ଦ୍ୱନ୍ଦ୍ୱ (୪୮) ।' ସମଗ୍ର କବିତାରେ ଅଲକାର ନାରୀସତ୍ତା ପ୍ରତି ଏକ ରୋମାଣ୍ଟିକ ଭାବାବେଗ ସୁସ୍ପଷ୍ଟ ।

ଗୁରୁ ପ୍ରସାଦଙ୍କ 'ଅଲକା ସାନ୍ୟାଲ' କବିତାରେ ରୋମାଣ୍ଟିକ ଭାବାବେଗ ପରିବର୍ତ୍ତେ ବାସ୍ତବଧର୍ମୀ ଅନୁଧ୍ୟାନ ପରିଚ୍ଛନ୍ନ ଭାବେ ପ୍ରକଟିତ । ଗୁରୁପ୍ରସାଦଙ୍କ ଅଲକା, ଆଧୁନିକ ନଗର ସଭ୍ୟତା ସହ ସଂଶ୍ଳିଷ୍ଟ । ବିଦେହର ସ୍ୱର୍ଣ୍ଣାଭ ଗୋଧୂଳି ଅଥବା ବାରୁଣୀବନ୍ଦରର ରତ୍ନଖଚିତ ଦ୍ରୁମମାଳା ପରିବର୍ତ୍ତେ 'ଚଉକି' 'ଟେବୁଲ' ପରିଶୋଭିତ ବିଶ୍ରାମକକ୍ଷ ସହ ତା'ର ସମ୍ବନ୍ଧ ଗଭୀର । କବିତାର ପ୍ରଥମ ପର୍ଯ୍ୟାୟରୁ 'ବ୍ଲାଉଜ', 'ସେମିଜ' 'ଗରମପାଣି' ଓ 'ଚ୍'ଦାଗ' ଆଦି ଶବ୍ଦ ଗୁଡ଼ିକ ମଧ୍ୟରେ ଅଲକାର ଦେହଧର୍ମୀ କାମନା, ସମ୍ଭୋଗାତ୍ମକ ସ୍ପୃହାରେ ପ୍ରତିଭାତ ।

ଅଲକାର ନାରୀସତ୍ତା ଚମ୍ପା, ବକୁଳ, ଅଥବା ଜୁଇଅନା ଭଳି ମଧ୍ୟଯୁଗୀୟ ପୁଷ୍ପସହ ସଂପୃକ୍ତ ନୁହେଁ । ମଧ୍ୟଯୁଗୀୟ କାବ୍ୟନାୟିକା 'ଲାବଣ୍ୟବତୀ ଭଳି ତା' ପାଇଁ 'ମଳୟ ଶୀକର ଶୀତ ବିରହ କରେ' ମନ୍ଦ ସମୀର ପ୍ରବାହିତ ହୁଏ ନାହିଁ । ମଧ୍ୟାହ୍ନର 'ଖାକି ଓ ଡିଲ୍‌ଟ୍ରେ-ଗ୍ରେ ଧୂଳି' ତା ଜୀବନର ଏକ ଅନିବାର୍ଯ୍ୟ ସତ୍ୟ—

"ଉପହାର ଧୂଳି ଉଡ଼େ 'ଖାକି ଆଉ ଫେଲଡ଼-ଗ୍ରେ ଧୂଳି'
ସିଗାରେଟ ଧୂଆଁ ପୁଣି ସ୍ଥିରହୋଇ ବସିଯାଏ ଜରଫୁଲ କାଗଜ ଫୁଲରେ (୪୯) ।"

ଜୀବନର କୃତ୍ରିମ ଆଡ଼ମ୍ବର ଉପରେ ସମୟର ଧୂସର ରେଖାପାତ ଏଠାରେ ସୁସ୍ପଷ୍ଟ । ଅଲକାର ନାରୀତ୍ୱ ଏକମୁଖୀ ନୁହେଁ, ପକ୍ଷାନ୍ତରେ ବହୁମୁଖୀ । ଜୈବିକ କାମନାର ପରିପୂର୍ତ୍ତି ଜନିତ କ୍ଳାନ୍ତିରେ, ଅସଂଯତ ବେଣୀ ଆଉ ଶାଢୀର ବେହରଣରେ ଅଲକା ସ୍ୱପ୍ନଗ୍ରସ୍ତ ନୁହେଁ, ସେ ବାସ୍ତବତା ସଚେତନ । ତେଣୁ ସେ ଆସ୍ତେ ଉଠେ ଲୁଗା-ପଟା ଠିକ୍ ଠାକ୍ କରି । ଟାଉନ ହଲ ସଭାକୁ ଯାଏ, ଯେଉଁଠାରେ 'ଝିଅ ପରି ତାଙ୍କୁ ଭାଷଣ ବକ୍ତୃତା' ଦେବାର ଶୁଣାଯାଏ—

'ମୁଁ ତୁମର ଶୁଣେ ଆଜ
ଝିଅ ପରି ଭାଷଣ ବକ୍ତୃତା (୫୦) ।'

ସମାଜସେବା ଓ ନେତୃତ୍ୱର ଅନ୍ତରାଳରେ ଅଲକା ଜୀବନର ଜୈବ ଧର୍ମରୁ ମୁକ୍ତ ନୁହେଁ । ଏଣୁ କବିତାର ପ୍ରାରମ୍ଭରୁ ଯେଉଁ ଜୈବିକ କାମନାର ସୂଚନା ମିଳିଥିଲା କବିତାର ଶେଷ ପର୍ଯ୍ୟାୟରେ ତାହା ଅଧିକ ଶାଣିତ—

"ତା ଭିତରେ ତୁମେ ପୁଣି ପ୍ରେମ କର ଗର୍ଭବତୀ ହୁଅ
ସିନେମାର ହାଣ୍ଡବିଲ ମୁଁ ଦେଖିଛି ତୁମର ଦେହରେ (୫୧)

ପ୍ରେମ ଓ ଗର୍ଭଧାରଣ ସତ୍ତ୍ୱେ ବିବାହର କୌଣସି ସୂଚନା ଏଠାରେ ମିଳୁନାହିଁ । କାରଣ ଅଲକାର ନାରୀତ୍ୱ ପଣ୍ୟଧର୍ମୀ । 'ସିନେମାର ହ୍ୟାଣ୍ଡବିଲ' ପଂକ୍ତିରେ ଏହା ପ୍ରମୂର୍ତ୍ତ । ସୁତରାଂ ଅଲକାର ନାରୀସତ୍ତାର ଅବଶେଷ ରହେ ଛିଣ୍ଡା ଚିଠିର କାଗଜରେ' । ପ୍ରଣୟୀ ପାଇଁ ହୃଦୟର ସଞ୍ଚିତ ଐଶ୍ୱର୍ଯ୍ୟ ପରିବର୍ତ୍ତେ ସେ ପତ୍ର (ଚିଠି) ଅଲକାର ବିଜ୍ଞାପ୍ତିଧର୍ମୀ ନାରୀତ୍ୱର ପରିଚୟ ଦିଏ—

"ଛିଣ୍ଡା ଚିଠି କାଗଜରେ ତୁମର ଯା ଅବଶିଷ୍ଟ ରହେ
ପବନ ସେତକ ନିଏ ସଡ଼କରୁ ସାଉଁଟି ସାଉଁଟି (୫୨)"

ଆଧୁନିକ ନାରୀ ଗୃହାଙ୍ଗନରେ ସୀମାବଦ୍ଧ ନୁହେଁ । ସେ ସ୍ୱାଧୀନା, ବ୍ୟକ୍ତିସ୍ୱାତନ୍ତ୍ର୍ୟ ସମ୍ପନ୍ନା । ଏହା ସତ୍ତ୍ୱେ ସେ ଅସହାୟତାରୁ ମୁକ୍ତ ନୁହେଁ । ଅଲକାର ଭୂଲୁଣ୍ଠିତ ନାରୀତ୍ୱ ମଧ୍ୟରେ ଏହା ସାକାର । ତା'ର ଚଳଚଞ୍ଚଳ ନାରୀତ୍ୱ କ୍ଷଣମାଣ । ଏହି କ୍ଷଣିଷ୍ଣୁ ନାରୀତ୍ୱ ଅସହାୟ ଭାବେ ସାମାଜିକ ପରିବେଶର ବାତ୍ୟାତରଙ୍ଗରେ ଭାସମାନ । ପାରଂପରିକ ସାମାଜିକ ତଥା ସାଂସ୍କୃତିକ ମୂଲ୍ୟବୋଧର ବିଚ୍ୟୁତି ହିଁ ଏହି ଅସହାୟତ୍ୱର ପୃଷ୍ଠପଟ ।

## ମୂଲ୍ୟବୋଧର ଅବକ୍ଷୟ ଓ ପ୍ରତୀକୀ

ଆଧୁନିକ କବିତାର ପ୍ରତ୍ୟେକ ନାରୀ ଚରିତ୍ର ପରସ୍ପରଠାରୁ ସ୍ୱତନ୍ତ୍ର । ପ୍ରତିମା, ବନିତା, ଅଲକା—ପ୍ରତ୍ୟେକଙ୍କର ଜୀବନପ୍ରତି ଦୃଷ୍ଟିଭଙ୍ଗୀ ପରସ୍ପର ଠାରୁ ଭିନ୍ନ । ଏଇ ପରିପ୍ରେକ୍ଷୀରେ ବେଣୁଧର ରାଉତଙ୍କ 'ପ୍ରଭାତୀ' ଆଧୁନିକ ନାରୀ ସମାଜର ଅନ୍ୟ ଏକ ବିଶିଷ୍ଟ ଆଲେଖ୍ୟ । ପ୍ରାଚୀନ ଶାଶ୍ୱତ ପ୍ରଣୟବୋଧ ପରିବର୍ତ୍ତେ ବଣିକଧର୍ମୀ ଦୃଷ୍ଟିଭଙ୍ଗୀ ମଧ୍ୟରେ ସାମ୍ପ୍ରତିକ ନାରୀର ପ୍ରେମବୋଧ ବିଡମ୍ବିତ । ଏଇ ପରିପ୍ରେକ୍ଷୀରେ ଆଧୁନିକ ନାରୀ ସମାଜ ପ୍ରତି ବେଣୁଧର ରାଉତଙ୍କ 'ପ୍ରଭାତୀ ପ୍ରଣୟ ପରିଣୟ' କବିତା ଏକ ଶାଣିତ ବିଦ୍ରୂପ । ଗୋପୀନାଥ ମହାନ୍ତିଙ୍କ ମାନମୟୀର ବହୁ ପୁରୁଷ ସମ୍ଭୋଗ ଲାଳସା ସଙ୍ଗେ କବି ରାଉତ ପ୍ରଭାତୀର ସମ୍ଭୋଗ ଲିପ୍ସାର ସାବର୍ଣ୍ଣିକତା ସ୍ଥାପନ କରିଛନ୍ତି—

"ଆପଣ ତ ପଢ଼ିଥିବେ ଗୋପୀନାଥ, 'ହରିଜନ' ପୃଷ୍ଠା ଗହଳରେ
ଦେଖିଥିବେ ମାନମୟୀ ଖେଳିବାର ଆଲମାରୀ ଟେଖାଲି
ଅନେକ ଖେଳନା ନେଇ ଯୁଗପତ୍ × × × (୫୩)"

'ଅନେକ ଖେଳନା' ଏଠାରେ ବହୁ ପ୍ରଣୟୀଙ୍କର ଏକତ୍ର ସମାବେଶର ସ୍ମାରକ । ମାନମୟୀ ଭଳି ପ୍ରଭାତୀର ଜୀବନ-ଆଲମୀରାରେ ବହୁ ପୁରୁଷଙ୍କ ସମାବେଶ । ପ୍ରଭାତୀର ପ୍ରଣୟ ଲୀଳା ମଧ୍ୟରେ ବହୁ ପ୍ରଣୟୀ ଆହତ ତଥା କ୍ଷତ ବିକ୍ଷତ । କିନ୍ତୁ ସେମାନଙ୍କର ସେହି ବେଦନାବିକ୍ଷୁବ୍ଧ ଚିତ୍ତ ପ୍ରତି ପ୍ରଭାତୀ ନିର୍ବିକାର । ଏଣୁ 'ସୁର' ଅବା 'ଇନ୍ଦ୍ରଜିତ' ଆହୂତ ହେଲେ ମଧ୍ୟ ସେ ବିନା ଦ୍ୱିଧାରେ ଅଜସ୍ର ସହ ପ୍ରଣୟଲୀଳାମଗ୍ନ—

" × × × କାହାକୁ ଗୁଡରେ
ନିବିଡ଼େ ଆଶ୍ଳେଷି, ତାରେ ଫିଙ୍ଗିଦେଇ, ପୁଣି କାରେ ତୋଳି
ଓଠ ପାଖେ ଟାଣିନେଇ ରଖି ଦିଏ ଥାକ କୋଣେ ମହକ୍ଷୁଦ କରି
ରଖି ରଖି ତଳେ ପଡ଼ି ଖେଳନାରୁ ଅକସ୍ମାତ୍ ଭାଙ୍ଗିଗଲେ କେହି
—ସୁର ଅବା ଇନ୍ଦ୍ରଜିତ, ବିନାକ୍ଷୋଭେ ଅଜସ୍ରକୁ ଧରି
ସହଜେ କପରି ଖେଳେ(୫୪) ;"

ପ୍ରଭାତୀର ଏହି ପ୍ରଣୟ ଆକାଙ୍କ୍ଷା ସଂପୂର୍ଣ୍ଣ ଦେହଧର୍ମୀ । ମାନସିକ ଚେତନା ସହିତ ଏହାର ସମ୍ବନ୍ଧ କ୍ଷୀଣ । କୌଣସି ସୁନିର୍ଦ୍ଦିଷ୍ଟ ପ୍ରଣୟୀ ପ୍ରତି ତାର ମହତ୍ତ୍ୱବୋଧ ଆଦୌ ନାହିଁ । ଏହିଭଳି ଏକ ନୈତିକ ପ୍ରଣୟାଭିଳାଷିଣୀ ନାୟିକାକୁ କବି ରାଉତ 'ନୂତନ ବୈଦେହୀ' ରୂପେ ଅଭିହିତ କରିଛନ୍ତି । ପ୍ରଭାତୀକୁ ଆଧୁନିକ ଯୁଗର ବୈଦେହୀ ରୂପେ

ଅଭିହିତ କରିବା ମଧ୍ୟରେ କବିଙ୍କର କଟାକ୍ଷପାତ ସୁସ୍ପଷ୍ଟ । କାରଣ 'ରମାୟଣ'ର ବୈଦେହୀ ଶାଶ୍ୱତ ପ୍ରଣୟ ଚେତନାର ଏକ ମୂର୍ତ୍ତିମନ୍ତ ପ୍ରତିମା । କିନ୍ତୁ ସାମ୍ପ୍ରତିକ ବୈଦେହୀ ପାଇଁ ଏହି ଏକନିଷ୍ଠ ପାତିବ୍ରତ୍ୟ ଭାବନା ଅନାକାଙ୍କ୍ଷିତ । ସେଥିପାଇଁ ଏକନିଷ୍ଠ ଚିରନ୍ତନ ଦାମ୍ପତ୍ୟ ପରିବର୍ତ୍ତେ ରାଣୀ ମହୁମାଛି ଭଳି ସେ ବହୁ-ବିଳାସ କାମନା କରେ । ପୁରୁଷ ତା ପାଇଁ ଏକ ପ୍ରଣୟ ପୁତ୍ତଳିକା ମାତ୍ର । ଏହି ପୁତ୍ତଳିକା ସମୂହଙ୍କର ସେ ସୂତ୍ରଧାରିଣୀ ।—

"ଏହି ଭଳି ଦେହ ଆଉ ମନ ସୁଖେ ପ୍ରଭାତୀର ନଚାଇ ଖେଳାଇ
ହସାଇ କନ୍ଦାଇ କେତେ ପୁତ୍ତଳିକା ପ୍ରେମ ସୂତ୍ରେ ସୂତ୍ରଧର ପରି,
କାହାରେ ନ ଦେଇ ଧରା ଧରୁ ଆନପାଶେ ଯାଇଚି ପଳାଇ (୫୫)"

ପ୍ରଭାତୀ ପାଇଁ ତାର ନାରୀତ୍ୱର ସାରସତ୍ତା (essence) ସତୀତ୍ୱ ଅପେକ୍ଷା, ନାରୀତ୍ୱର ସ୍ଥିତି (existence) ଶ୍ରେୟସ୍କର । କିନ୍ତୁ ପ୍ରଣୟ ମଧ୍ୟରେ ତାର 'ମତେ ଛୁଁ ଖେଳ' ପ୍ରାଚୀନ ଶାଶ୍ୱତ ପ୍ରଣୟ ଭାବନାର ପରିପନ୍ଥୀ । ପ୍ରଭାତୀ ଜୀବନରେ ପ୍ରଣୟ ପାଇଁ ଅଙ୍ଗୀକାର ଏକ ମିଥ୍ୟା ପ୍ରତାରଣା । ପ୍ରଣୟ ପରିବେଶରେ ପ୍ରଭାତୀର ଦୃଷ୍ଟିଭଙ୍ଗୀ ବହୁମୁଖୀ । ଏଣୁ ବେଣୁଧର ରାଉତ ପ୍ରଭାତୀକୁ 'ମଧ୍ୟସ୍ତ୍ରଲୋଚନା' କହି ଆକ୍ଷେପ କରିଛନ୍ତି । ପ୍ରଣୟ ଓ ପରିଣୟ ତା' ପାଇଁ ଏକ ଯୋଗସୂତ୍ରରେ ଗ୍ରଥିତ ନୁହେଁ । ଏଣୁ ତାର ବ୍ୟକ୍ତିସତ୍ତା ଦ୍ୱିଧା ବିଭକ୍ତ । ସାମାଜିକ ନିରାପତ୍ତା ପାଇଁ ସେ ସତୀତ୍ୱର ଅଭିନୟ କରେ, ଅଥଚ ବିବାହ ବନ୍ଧନ ସତ୍ତ୍ୱେ ପର ପୁରୁଷର ସାନ୍ନିଧ୍ୟ ପାଇଁ ଆକୁଳ ହୁଏ—

"ହୃଦୟେ ଗୋପନେ ସହି ଆଜି ତୁମେ ହୁଏ ତ ଗୃହିଣୀ
ପ୍ରକାଶ୍ୟର ବହିରଙ୍ଗ ଆବରଣେ ଲୁଗୁଉଚି ତୁମର 'ସ୍ୱଗତ'
ସ୍ୱାମୀର ବାସକସଜ୍ଜା, ଶୁଣୁଥିବ ମନେ ମନେ ଇତର କଙ୍କଣୀ!
ଅସୂର୍ଯ୍ୟାରୀ ଅଭିସାରେ × × × (୫୬) ।

ପ୍ରଭାତୀ ଆଧୁନିକ ଯୁଗର ବାସ୍ତବବାଦୀ ନାରୀ । ତା'ର କୃତକର୍ମ ପାଇଁ ସେ ଅନୁତପ୍ତ ନୁହେଁ । ସାମାଜିକ ଜୀବନର ପରିସର ମଧ୍ୟରେ ସେ ନୀଳ ଆକାଶର ସତୀ ଅରୁନ୍ଧତୀ ରୂପେ ଅଭିହିତ ହୋଇପାରେ, କିନ୍ତୁ ଆକାଶର ସେହି ନୀଳାଭ ରହସ୍ୟ ଭିତରେ ତା'ର ବାସ୍ତବ ସତୀତ୍ୱ ଅନ୍ଧକାରଗ୍ରସ୍ତ । ତା'ର ସମଗ୍ର ଜୀବନ ଆତ୍ମ ପ୍ରତାରଣା ମଧ୍ୟରେ ସୀମାବଦ୍ଧ :—

"................ଅନ୍ତରଙ୍ଗ ଏ ରାତିରେ ଯେଣୁ ତୁମେ ଲେଢ଼ିନାହିଁ ସୂର୍ଯ୍ୟ ପିଙ୍ଗଳାର ଅନୁତାପେ ଭୁଲିନାହିଁ ଜୀବୀ-ଧର୍ମ ଅକପଟ ପ୍ରାଣର ବନ୍ଦନା—

ଆକାଶର ନେଳି ନେଳି ରହସ୍ୟରେ ତୁମେ ହୁଅ ସପ୍ତ ଅରୁନ୍ଧତୀ
କିନ୍ତୁ ମାଟିରେ ଭୁଲିଗଲି ପ୍ରତିଶ୍ରୁତି, ସେଇ ତୁମ ସମସ୍ତ ବିରତି (୫୭)''

ବସ୍ତୁତଃ ଆଧୁନିକ ନାରୀର ମୂଲ୍ୟବୋଧ ଜନିତ ଅବକ୍ଷୟ ବିରୋଧରେ 'ପ୍ରତିଶ୍ରୁତି' ଏକ ଶାଣିତ ଆହ୍ୱାନ ।

## (ଖ)—ନଗର ସଭ୍ୟତାର ପ୍ରଭାବ

ପଲ୍ଲୀସଭ୍ୟତାର ଗୋଷ୍ଠୀଗତ ସରଳ ଜୀବନଯାପନ, ଆନନ୍ଦ-ଉଚ୍ଛ୍ୱାସର ସମ୍ଭାର ଶିଳ୍ପ ସଭ୍ୟତାର କ୍ରୂର ରଥ-ଚକ୍ର ତଳେ ନିଷ୍ପେଷିତ, ଆତ୍ମକେନ୍ଦ୍ରିକ ତଥା ବ୍ୟଷ୍ଟିସର୍ବସ୍ୱ ଚିନ୍ତାଧାରାରେ ରୂପାନ୍ତରିତ । ବସ୍ତୁତଃ ଇଂରାଜୀ କାବ୍ୟର ପରମ୍ପରାରେ ଟି. ଏସ୍. ଏଲିୟଟ, 'ଦି ଓ୍ୱେଷ୍ଟଲାଣ୍ଡ' (The Wasteland) 'ସୁଇନି ଇରେକ୍ଟ' (Sweeny Erect)ଓ 'ପ୍ରୁଫ୍ରକ' (Love song of J. Alfred Prufrock ଆଦି କବିତାରେ ନଗର-ସଭ୍ୟତାର ଆତ୍ମକେନ୍ଦ୍ରିକ ପ୍ରବୃତ୍ତି ପ୍ରତି ଯେଉଁ ଶ୍ଲେଷ-ଶାଣିତ କଟାକ୍ଷ ପ୍ରକାଶ କରିଥିଲେ ବଙ୍ଗଳା କବିତା ପରମ୍ପରାରେ ବିଷ୍ଣୁ ଦେ, ଜୀବନାନନ୍ଦ ଦାସ ଓ ହିନ୍ଦୀ କବିତା ପରମ୍ପରାରେ ସୁଦାମା ପାଣ୍ଡେୟ ତଥା ଭବାନୀ ପ୍ରସାଦ ମିଶ୍ର ପ୍ରମୁଖଙ୍କ କୃତିରେ ତାର ପ୍ରତିଫଳନ ଲକ୍ଷ୍ୟ କରାଯାଇଥାଏ । ପ୍ରୟୋଗବାଦୀ ଓଡ଼ିଆ କାବ୍ୟ-ଧାରାରେ ସଚ୍ଚିଦାନନ୍ଦ ରାଉତରାୟ, ଗୁରୁପ୍ରସାଦ ମହାନ୍ତି, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ସୌଭାଗ୍ୟ ମିଶ୍ର ପ୍ରମୁଖଙ୍କ ସୃଷ୍ଟିରେ ନଗର ସଭ୍ୟତାର କୃତ୍ରିମ ଜୀବନଚର୍ଯ୍ୟା, ରୁଗ୍‌ଣ ମୂଲ୍ୟବୋଧ ତଥା ଆତ୍ମକେନ୍ଦ୍ରିକ ସ୍ଥିତି ଆଦିର ଅନୁରୂପ ପ୍ରତିବିମ୍ବନ ଉଲ୍ଲେଖ-ନୀୟ । ନଗର ସଭ୍ୟତାର ପ୍ରଭାବ କ୍ଷେତ୍ରରେ ନିମ୍ନଲିଖିତ ପର୍ଯ୍ୟାୟରେ ଏହା ଆଲୋଚନା କରାଯାଉଛି ।

## ୧--ନଗର ସଭ୍ୟତାର କୃତ୍ରିମ ଜୀବନଚର୍ଯ୍ୟା

ନଗର ସଭ୍ୟତାରେ ଜୀବନଚର୍ଯ୍ୟା ସରଳ ତଥା ନିରାଡ଼ମ୍ବର ହେବା ପରିବର୍ତ୍ତେ କୃତ୍ରିମ, ଜଟିଳ ତଥା ଆଡ଼ମ୍ବରସର୍ବସ୍ୱ । ପ୍ରକୃତିର ଶାନ୍ତ ମଧୁର ପରିବେଶ ଭିତରେ ମଧ୍ୟ ଏହି କୃତ୍ରିମ ଜୀବନଧାରା ଆରୋପିତ । ରମାକାନ୍ତ ରଥଙ୍କ 'ବୋଇତ ବନ୍ଦାଣ' କବିତାରେ ନଗର ସଭ୍ୟତାର ଆଚାର ତଥା ଜୀବନବୋଧର କୃତ୍ରିମ ସ୍ୱରୂପ ପ୍ରକଟିତ ।

ଶୁଣି ଶୁଣି ରେସ୍ତୋରାଁର ଗୀତ-ବାକ୍‌ସ ଗୀତ
ତମେ ଯେବେ କ୍ଳାନ୍ତ ହୋଇଯିବ

ପିଛା ପିଛା ଜଙ୍ଘ ଆଉ କୃତ୍ରିମ ରେଶମ
× × ×
ତମେ ଆସ ସମୁଦ୍ର କୂଳକୁ (୬୮)

ରେସ୍ତୋରାଁର 'ଗୀତ-ବାକ୍ସ', 'ଜଙ୍ଘ' ଓ 'କୃତ୍ରିମ ରେଶମ' ନଗର ସଭ୍ୟତାର କୃତ୍ରିମ ଜୀବନଚର୍ଯ୍ୟାର ଏକ ଏକ ବାହକ । ନଗର ସଭ୍ୟତାର କୃତ୍ରିମ ପରିଚର୍ଯ୍ୟାରୁ ପରିତ୍ରାଣ ପାଇବାର ଏହା ଏକ ଉପାୟ । କିନ୍ତୁ ଶେଷ ପର୍ଯ୍ୟନ୍ତ ସାମ୍ପ୍ରତିକ ବ୍ୟକ୍ତି-ସତ୍ତାର ପରିତ୍ରାଣ ଅସମ୍ଭବ । ଏଣୁ ଗୁରୁପ୍ରସାଦ ମହାନ୍ତିଙ୍କ 'ପିକ୍‌ନିକ' କବିତାରେ ଆଧୁନିକ ମଣିଷ ପ୍ରକୃତି କୋଳରେ କୃତ୍ରିମ ରୂପ ବିନ୍ୟାସ ଆରୋପ କରିଛି । ପ୍ରକୃତି କୋଳରେ ଆନନ୍ଦ ଉପଭୋଗ କରିବାକୁ ଯାଉଥିବା ମଣିଷ ପ୍ରାକୃତିକ ସୁଷମାରେ ବିଭୋର ନ ହୋଇ ନଗର ସଭ୍ୟତାର ଏକାନ୍ତ ଅପରିହାର୍ଯ୍ୟ 'ଟିଣ ଦୁଧ', 'ଘ୍ଟ', 'ଷ୍ଟୋଭ', ସିଗାରେଟ ଆଦି ବସ୍ତୁ ପାଇଁ କିଭଳି ବ୍ୟାକୁଳତା ପ୍ରକାଶ କରିଛି ଗୁରୁପ୍ରସାଦଙ୍କ 'ପିକ୍‌ନିକ୍' କବିତାରେ ତା'ର ଶ୍ଳେଷଣାଣିତ ରୂପ ପ୍ରମୂର୍ତ୍ତି —

"ଆମେ ସବୁ ବେଳେ ବେଳେ ରୋମାଣ୍ଟିକ ମନ ନେଇ ଗପ ସପ କରି
ସାହିତ୍ୟ ଓ ରାଜନୀତି ଗୁଡ଼ାଉଦେଇ ଚଟାଣକୁ ଯିବାକୁ ସେଠିକି
ଟିଣ ଦୁଧ, ଘ୍ଟ, ଷ୍ଟୋଭ
ସିଗାରେଟ୍ ଦିଆସିଲି ଯଥେଷ୍ଟ ଯଥେଷ୍ଟ
କ୍ୟାମେରା ଓ ଗ୍ରାମଫୋନ୍ × × (୬୯)

ଟିଣଦୁଧ, ଘ୍ଟ, ସିଗାରେଟ, ଦିଆସିଲି, କ୍ୟାମେରା, ଗ୍ରାମ୍‌ଫୋନ ଆଦି ନଗର ସଭ୍ୟତାର ଏକ ଏକ ଅପରିହାର୍ଯ୍ୟ ସମ୍ଭାର । ପ୍ରାକୃତିକ ପରିବେଶର ସୌନ୍ଦର୍ଯ୍ୟ ଉପଲବ୍ଧି ପରିବର୍ତ୍ତେ ଗ୍ରାମ୍‌ଫୋନ୍‌ର ସଙ୍ଗୀତ, ଟିଣଦୁଧ, ଘ୍ଟ, ଷ୍ଟୋଭ ନଗରସଭ୍ୟତାର ଜୀବନ ଧାରାରୁ ସାମ୍ପ୍ରତିକ ବ୍ୟକ୍ତିଚେତନାର ବ୍ୟାମୋହର ସୂଚନା ଦିଏ । ପିକ୍‌ନିକ୍‌ର ଶାନ୍ତ ସ୍ନିଗ୍ଧ ପରିସର ମଧ୍ୟରେ ସ୍ନେହ, ଶ୍ରଦ୍ଧା, ପ୍ରୀତି ତଥା ଆନନ୍ଦ-ଉତ୍ସାହର ଆଦାନ-ପ୍ରଦାନ ପରିବର୍ତ୍ତେ ବୌଦ୍ଧିକ ତର୍କ-ଜର୍କରୀରୁ ସେ ମୁକ୍ତ ରହିପାରେ ନାହିଁ । ମାର୍କସ୍‌ବାଦ, ଗାନ୍ଧିବାଦ, ପୁଞ୍ଜିବାଦ, ସାମ୍ୟବାଦ, ବିଜ୍ଞାନ ଓ ଯାନ୍ତ୍ରିକ ଅନୁଭୂତିର ଏଷଣାହିଁ ପିକ୍‌ନିକ୍‌ର ପରିସରକୁ ଯନ୍ତ୍ରଣାମୟ କରିଦିଏ ।

ସୀତାକାନ୍ତ ମହାପାତ୍ରଙ୍କ 'ଅଷ୍ଟପଦୀ'ର 'ଗୋଲ୍ଡେନ' କବିତାରେ ମଧ୍ୟ ଗୁରୁ-ପ୍ରସାଦଙ୍କ 'ପିକ୍‌ନିକ୍' କବିତା ଭଳି ପ୍ରକୃତିର ମୁକ୍ତ ପରିବେଶ ମଧ୍ୟରେ ନଗରସଭ୍ୟତାର କୃତ୍ରିମ ସ୍ୱରୂପ ଚିତ୍ରିତ । ସମୁଦ୍ରର ବିଶାଳତା, ଗଭୀରତା, ନୀଳିମାର ପର୍ଯ୍ୟାପ୍ତ ବିସ୍ତୃତି

ନଗରସଭ୍ୟତାଜନିତ ବ୍ୟକ୍ତିସତ୍ତାର ବନ୍ଧମୁକ୍ତିକୁ ସ୍ପର୍ଶ କରିପାରେ ନାହିଁ । ସଂବାଳୁଆ ପରି ଆପଣା ଖୋଷା ଭିତରେ ସୀମାବଦ୍ଧ ରହିବା ତା' ଜୀବନର ଅବଶ୍ୟମ୍ଭାବୀ ପରିଣତି ହୁଏ (୭୦) ।

## ୨—ରୁଗ୍ଣ ଜୀବନଧାରା

ନଗର-ଜୀବନର ଚିତ୍ର ପ୍ରୟୋଗବାଦୀ କାବ୍ୟଧାରାରେ ସୁସ୍ଥ ମାନସିକ ଚେତନା ଉପରେ ଆଧାରିତ ନୁହେଁ, ପକ୍ଷାନ୍ତରେ ତାହା ରୁଗ୍ଣ ଓ କଦାକାର । କବି ରାଉତରାୟଙ୍କର 'ସହରତଳିର ଉଷା', ସୀତାକାନ୍ତ ମହାପାତ୍ରଙ୍କ 'ହସପିଟାଲ' ଓ 'ସହରର ଇତିକଥା' ଆଦି କବିତାରେ ନଗରଜୀବନର ରୁଗ୍ଣତା ପ୍ରକଟିତ ।

ସଚି ରାଉତରାୟଙ୍କ 'ସହର ତଳିର ଉଷା' ଗଙ୍ଗାଧରଙ୍କ 'ବିକଚ ରାଜୀବ ଦୃଶା' ଉଷା ନୁହେଁ (୭୧) । କବି ରାଉତରାୟଙ୍କ ଦୃଷ୍ଟିରେ ଉଷା ବ୍ୟାଧିଗ୍ରସ୍ତ । ତମସାଚ୍ଛନ୍ନ ରାତ୍ରିର ଅବସାନ ପରେ ତା'ର ଆବିର୍ଭାବ ଘଟିଥିଲେ ମଧ୍ୟ ରାତି ପରି ପ୍ରଭାତ ଅନ୍ଧକାରାଚ୍ଛନ୍ନ । ଏହି ଅନ୍ଧାର ଭୌଗୋଳିକ ପରିବେଶପ୍ରସୂତ ନୁହେଁ । ନଗର ଜୀବନର ଅନ୍ଧକାରାଚ୍ଛନ୍ନ ଜୀବନବୋଧର ଏହା ଦ୍ୟୋତକ । ରାଉତରାୟଙ୍କ ଭାଷାରେ ଏହା ଏକ 'କ୍ଷତପୂର୍ଣ୍ଣତମିର ବିକାର' (୭୨) ତା'ର ସର୍ବାଙ୍ଗରେ ଘା । ତହିଁରୁ 'ଛେଳି ଛେଳି ଝରିପଡ଼େ ରକ୍ତ/ହିଙ୍ଗ୍ ଆଉ ଶୋଣିତ ମିଶ୍ରିତ' । ଏଣୁ ସୂର୍ଯ୍ୟୋଦ୍ଭାତ ପ୍ରଭାତରେ ମଧ୍ୟ ବ୍ୟକ୍ତିର ଆଶା ଅପୂର୍ଣ୍ଣିତ । ମାନସିକ ସ୍ୱାସ୍ଥ୍ୟ ଅବିକଶିତ । ଯନ୍ତ୍ରଶାଳାର ଆହ୍ୱାନ ତଥା ଇଂଜିନର କ୍ରୂର ଆମନ୍ତ୍ରଣ ମଧ୍ୟରେ ବ୍ୟକ୍ତିର ଶ୍ରମ ପଣ୍ୟ ପରି ବିକ୍ରିତ । ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଯନ୍ତ୍ର ଦ୍ୱାରା ଅପହୃତ (୭୩) । ଏହି ଯାନ୍ତ୍ରିକ ସଭ୍ୟତା ପରିଚାଳିତ ବ୍ୟକ୍ତି-ମାନସ ଏକାନ୍ତ ଅବସନ୍ନ ତଥା ରୁଗ୍ଣ ।

ଇଂରାଜୀ କବି ହେନେଲିଙ୍କ 'ହସପିଟାଲ କବିତା ସମୂହ' (Hospital poems)ର 'ହସପିଟାଲ୍' ଭଳି ସୀତାକାନ୍ତ ମହାପାତ୍ରଙ୍କ 'ଦୀପ୍ତି ଓ ଦ୍ୟୁତି'ର 'ହସପିଟାଲ' ସଂପ୍ରତିକ ରୁଗ୍ଣ ନଗରସଭ୍ୟତାର ପ୍ରତୀକ । ନଗରର ସଂଗ୍ରାମ-ସଂଘାତପୂର୍ଣ୍ଣ ଜୀବନଯାତ୍ରା ମଧ୍ୟରେ ବ୍ୟକ୍ତି ଏଠାରେ ଯୁଦ୍ଧକ୍ଲାନ୍ତ ସୈନିକ—

"ସେମାନେ ଶୋଇ ଅଛନ୍ତି
ପାଖ ପାଖ ବିଛଣାରେ
ଓ୍ୱାର୍ଡର ଏ ମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ
ରଣ ବିରତିର ପରେ ଯୁଦ୍ଧକ୍ଷେତ୍ରେ ସୈନିକର ସମ (୭୪) ।"

ଏକ ପକ୍ଷରେ ବଞ୍ଚିବାର ଆଶା ଓ ଅନ୍ୟ ପକ୍ଷରେ ମୃତ୍ୟୁର ଆଶଙ୍କା ମଧ୍ୟରେ ଜୀବନଧାରା ଅସ୍ଥିର, ଅଚଞ୍ଚଳ, ସଂଘାତ୍ମକ ଓ ସଂଶୟଗ୍ରସ୍ତ । ପଲ୍ଲୀସଭ୍ୟତା ପରି ସେମାନଙ୍କର ସ୍ୱତନ୍ତ୍ର ବୈକ୍ତିକ ପରିଚୟ ଅଥବା ଗୋଷ୍ଠୀ ସଂପର୍କ ସୁଦୂରପରାହତ । ସେମାନଙ୍କର ପରିଚୟ 'ଓ୍ୱାର୍ଡର ନମ୍ବର'/ଆଉ କାନ୍ଥରେ ଝୁଲୁଥିବା ବେଡ୍‌ର ନମ୍ବର । ଡ୍ଲ୍ୟୁ. ଏଚ୍. ଅଡେନଙ୍କ 'ଅନ୍‌ନୋନ୍ ସିଟିଜନ୍' (Unknown Citizen)ର ନାଗରିକମାନଙ୍କ ଭଳି ତା'ର ପରିଚୟ ଏକ ନମ୍ବର ଭିତରେ ସୀମାବଦ୍ଧ । ବ୍ୟକ୍ତିସତ୍ତ୍ୱବିହୀନ ବ୍ୟକ୍ତିତ୍ୱ ପାଇଁ, ଏହି ନାଗରିକ ସଂଖ୍ୟାଟି ହିଁ ଶେଷସତ୍ୟ । ସେଥିପାଇଁ ଅଡେନ୍ ଏହି ନଗର-ମଣିଷର ସୁଖ ଓ ଶାନ୍ତି ବିଷୟରେ ପ୍ରଶ୍ନ କରିଥିଲେ—'ସେ କ'ଣ ମୁକ୍ତ ? ସେ କ'ଣ ସୁଖୀ (୬୫) ? କାରଣ ଆଧୁନିକ ନଗରସଭ୍ୟତାର ତଥାକଥିତ ସୁଖ ଓ ଶାନ୍ତି ଏକ ଆତ୍ମପ୍ରତାରଣା । ତା'ର ଆପାତଃ ସୁଖ ଓ ଶାନ୍ତି ଅନ୍ତରାଳରେ ରୁଟିନବନ୍ଧା ଜୀବନର କ୍ଳାନ୍ତି, ବିତୃଷ୍ଣା ଓ ନୈରାଶ୍ୟବୋଧ ହିଁ ଶେଷ ବାସ୍ତବ ସତ୍ୟ । ବ୍ୟକ୍ତିର ସୂକ୍ଷ୍ମ ଜୀବନାନୁଭୂତି ଶେଷ ପର୍ଯ୍ୟନ୍ତ ଏକ ଅପହଞ୍ଚ ସ୍ୱପ୍ନରେ ସୀମାବଦ୍ଧ (୬୬) । ସ୍ୱପ୍ନର ସ୍ୱସ୍ତି ଓ ବାସ୍ତବ ଜୀବନର ବେଦନାସିକ୍ତ ଅସ୍ୱସ୍ତିବୋଧ ଭିତରେ ଜୀବନ ଏକ ସ୍ଥାଣୁତ୍ୱ ମଧ୍ୟରେ ଆଚ୍ଛନ୍ନ । ନିଃସଙ୍ଗ ସହର ସ୍ଥିତି ମଧ୍ୟରେ ନଗର ଜୀବନର ରୁଗ୍‌ଣ ଚେତନା ଅଧିକରୁ ଅଧିକତର କ୍ଷତାକ୍ତ ଓ ନିପୀଡ଼ିତ ।

'ସାସ୍ତି ଓ ଦ୍ୟୁତି'ର 'ସହରରେ ଗ୍ରୀଷ୍ମ'ରେ ସହର ଏକ କୁଷ୍ଠ ରୋଗୀ । ସେ ବିକୃତ, ଖଞ୍ଜ । ତା'ର ପୋଡ଼ା ଚମ ଓ ବଙ୍କା ହାତ ସାଂପ୍ରତିକ ଜୀବନର ଶକ୍ତିହୀନ ବୀଭତ୍ସ ସ୍ୱରୂପର ବହିଃପ୍ରକାଶ । ଜୀବନଧାରଣ ପାଇଁ ମୋହ ସେଠାରେ ବିପୁଳ (୬୭) । କିନ୍ତୁ ଜୀବନଧର୍ମୀ ପ୍ରାଣପୋଚ୍ଛ୍ୱାସ ତଥା କୋଲାହଳମୁଖରତା ପରିବର୍ତ୍ତେ ସେଠାରେ ଶ୍ମଶାନାୟିତ ନୀରବତାର ଅଖଣ୍ଡ ରାଜତ୍ୱ । ଜୀବନ ସେଠାରେ ଦୁର୍ବାର ନୁହେଁ, ଶ୍ରାନ୍ତକ୍ଳାନ୍ତ । ନଗର-ଆକାଶର ସୂର୍ଯ୍ୟ, କରୁଣାର ସଂଜୀବନୀ ନୁହେଁ, ପକ୍ଷାନ୍ତରେ ତାହା ରୁଗ୍‌ଣ ଓ କ୍ଷୟମାଣ । ଏଣୁ ସେହି ନବୋଦିତ ସୂର୍ଯ୍ୟର ଅସ୍ତିତ୍ୱ ଥିଲେ ମଧ୍ୟ, ତାହା ଅର୍ଥହୀନ । ସକାଳର ପାଣ୍ଡୁର ଆକାଶ ତାରୁଣ୍ୟଦ୍ୟୋତକ ନୁହେଁ, ଏହା ଏକ ରୁକ୍ଷ, ଶୁଷ୍କ ମରୁଭୂମି:—

''ଅକରୁଣ ଅର୍ଥହୀନ, ସୂର୍ଯ୍ୟ ଜଳେ
ଆକାଶର ତାମ୍ର ବର୍ଣ୍ଣ ପିଙ୍ଗଳ ମରୁରେ (୬୮) ।''

ସୀତାକାନ୍ତଙ୍କ ସହର ପୁଣି ଅଫିମ ନିଶାଗ୍ରସ୍ତ—'ରିକ୍‌ସାବାଲା ଖୋଦାବକ୍‌ସ ପରି' । ସିକତାମୟ ତା'ର ମନର ଶଯ୍ୟା, ଏହି ଅଫିମନିଶାରେ ସ୍ୱପ୍ନାତୁର । ସେ ସ୍ୱପ୍ନର ଝରଣାର କଳ କଳ ଧ୍ୱନି ଉଦ୍‌ବେଳିତ । ନଗର ସଭ୍ୟତାର ସ୍ୱପ୍ନ-ଚେତନା,

ରୋମାଣ୍ଟିକ ମନର ଏକ ବିଳାସ ନୁହେଁ । ଅଧିକନ୍ତୁ ନଗର ସଭ୍ୟତାର କ୍ଳାନ୍ତି ଓ ଅତୃପ୍ତିକୁ ବିସ୍ମୃତ ହେବାର ଏହା ଏକ ମାଧ୍ୟମ । କାରଣ ତା'ର ମନର ସିକତିଳ ଭୂମିରେ ପୁଷ୍ଟ ଜୀବନବୋଧର ବୀଜବପନ ଅସମ୍ଭବ । ତା'ର ଜୀବନ ଆକାଶରେ ସୂର୍ଯ୍ୟର ସ୍ଥିତି ଉଦ୍ଦାମ ନୁହେଁ । 'ଖୋଦାବକ୍ସ' ଗୁଳିଆର ଲଣ୍ଠନଟି ପରି ସୂର୍ଯ୍ୟର ସ୍ଥିତିରୁ ସହରର ଅବକ୍ଷୟମାଣ ଜୀବନୀଶକ୍ତିର ସଂକେତ ସୁସ୍ପଷ୍ଟ । ସେହି ରୁଗ୍‌ଣତା ମଧ୍ୟରେ ଏକ ପୈଶାଚିକ ପ୍ରବୃତ୍ତି ଅନ୍ତର୍ନିହିତ । ତହିଁରୁ ସମୃଦ୍ଧ ଜୀବନ ପାଇଁ ଆଶା ଓ ଆଶ୍ୱାସନା ଅବଲୁପ୍ତ—

"ଏ ସହର ଘୁମାଉଛି ଆମ ସାହି ଶକ୍‌ସାବାଲ
ଅଫିମିଆ ଖୋଦାବକ୍‌ସ ପରି
ହୁଏତ ଦେଖୁଛି ସ୍ୱପ୍ନ ତା ମନର ସିକତାରେ
ଝରଣାର ଶୀର୍ଣ୍ଣ କଳ କଳ
ହୁଏତ ସହର ବୁହେଁ ଖୋଦାବକ୍‌ସ
ଧୁମପରି ଅଥବା ମୋ ପରି
ଭୁଲିବାକୁ ନିଜସ୍ଥିତି, ଜୀବନର
ଅତୃପ୍ତି ଓ ତୃଷା

× × ×

ଆକାଶେ ଜଳୁଛି ସୂର୍ଯ୍ୟ ଖୋଦାବକ୍‌ସ
ଗୁଳିଆରେ ଲଂଠନଟି ପରି
ଖୋଦାବକ୍‌ସ ମରିଗଲା,
ସୂର୍ଯ୍ୟର ମୁନିଆ ଦାନ୍ତ ରେଙ୍ଗୁଛି ସହରର ହାଡ,
× × ×
ଶବ୍ଦହୀନ, ଅର୍ଥହୀନ ନିସ୍ତବ୍ଧ ଏ ଜ୍ୱଳନ୍ତ ମଧ୍ୟାହ୍ନେ,
× × × ×
ସ୍ମୃତି ନାହିଁ, ସ୍ଥିତି ନାହିଁ, ଆଶା ନାହିଁ, ନାହିଁ ସଂଜୀବନୀ (୭୯)",

### ୩—ନଗର ସଭ୍ୟତାରୁ ମୁକ୍ତି ପ୍ରତ୍ୟାଶା

ନଗରର ରୁଗ୍‌ଣ ତଥା କୃତ୍ରିମ ଜୀବନଧାରାରୁ ମୁକ୍ତି ପାଇଁ ସାଂପ୍ରତିକ ବ୍ୟକ୍ତିସତ୍ତା ଅହରହ ସଂଗ୍ରାମରତ । ରମାକାନ୍ତ ରଥଙ୍କ 'ଦିଲ୍ଲୀ (ସ୍ୱତ)'ରେ ନଗର-ଜୀବନ ଏକାନ୍ତ କ୍ଳାନ୍ତିକର । ବ୍ୟକ୍ତିର ନିଦ୍ରିତ ଚେତନା ଏହି କ୍ଳାନ୍ତିପ୍ରଦ ରୁଗ୍‌ଣ ସ୍ଥିତିରୁ

ମୁକ୍ତ ହେବାର ଏକ ଉପାୟ । ଏ ନିଦ୍ରା ବ୍ୟକ୍ତିଚେତନାକୁ ବିଚ୍ଛିନ୍ନ କରେ—ଗଦା ଗଦା ଫାଇଲ ତଥା ସ୍ତ୍ରୀର କୋଳାହଳପୂର୍ଣ୍ଣ ବ୍ୟସ୍ତତାରୁ, ସମସ୍ୟାରୁ ଉଦ୍‌ବେଗରୁ, ଆଖିରୁ ନଗରଜୀବନର କୃତ୍ରିମ ଆଡମ୍ବରରୁ—

"ଏ ନିଦ ବିଚ୍ଛିନ୍ନ କରେ ସକଳ ସମ୍ବନ୍ଧ
ଫାଇଲ ଓ ସ୍ତ୍ରୀର ବ୍ୟସ୍ତତା
ଉଦ୍‌ବେଗରୁ ସମସ୍ୟାରୁ, ରେଶମ ଓ ଜର୍ଜେଟ୍ଟ ନୟନ (୭୦)"

ସୀତାକାନ୍ତ ମହାପାତ୍ରଙ୍କ 'ଦୁଇଟି ସ୍ୱେଚ' କବିତାର କାବ୍ୟ ନାୟକ, ନଗର ଜୀବନର ଆତ୍ମକୈନ୍ଦ୍ରିକ ଭୂଗୋଳ ପରିସରରୁ ପରିତ୍ରାଣ ପାଇବା ପାଇଁ ଉନ୍ମୁଖ । ଏହି ପରିପ୍ରେକ୍ଷୀରେ କବିତାଟିରେ ସହର ଓ ପଲ୍ଲୀ ଜୀବନର ଦୁଇଟି ନକ୍ସା ଅଙ୍କିତ । ଜୀବନସ୍ରୋତ ଏକ ଦ୍ରୁତଗାମୀ ରେଳଗାଡ଼ି ରୂପେ ଉପସ୍ଥାପିତ । ସେହି ରେଳଗାଡ଼ି ଷ୍ଟେସନ ପରେ ଷ୍ଟେସନ ପାଖରେ ଥିବା ଧାଡ଼ି ଧାଡ଼ି ବିଦ୍ୟୁତ୍ ଆଲୋକ ତଥା କଂକ୍ରିଟ୍‌ଚୂଡ଼ାର ଜ୍ୟାମିତିକ ପ୍ରତିକୃତି ଅତିକ୍ରମ କରି ଚାଲିଛି । ସହରୀ ମଣିଷର ମନ ସେହି ଚଳନ୍ତା ଗାଡ଼ିରେ ବସି ବଣ, ବିଲ, ପାହାଡ଼ ଓ ସବୁଜ ଶସ୍ୟ କେଦାରରେ ହାଲୁକା କଇଁପରି ଉଡ଼ି ବୁଲିବାକୁ ଚାହେଁ—

"ଏତେ ଲମ୍ବା ଗାଡ଼ିଟିର ଯେ କୌଣସି କୋଠରୀରେ ପଶିଯିବି
ଓ କହିବି ଆରେ ବାବୁ ମତେ ଏଠୁ ନେଇ ଚାଲ
ଯୁଆଡ଼େ ତୋହରି ଇଚ୍ଛା, ମୁଁ ଘୂରି ବୁଲିବି
ବିଲ, ବଣ, ପାହାଡ଼ ଓ ବଣ ମୃଗ, ସୋରିଷ କିଆରୀ
ବଉଦ ବା କଇଁ ପରି ହାଲୁକା ହୋଇ,
ଘର ହୋଇ ଲୁହା ଓ ଇସ୍ପାତ ପରି
କଳଙ୍କି ଧରିବା ଆଗ (୭୧)"

କିନ୍ତୁ ଚପଳତାର ଲଘୁ ପକ୍ଷରେ, ପଲ୍ଲୀ ପ୍ରକୃତିର ଚେତନାର ଉପଭୋକ୍ତା ହେବା ତା' ପକ୍ଷରେ ସମ୍ଭବ ନୁହେଁ । ତା' ପକ୍ଷରେ ଜୀବନର ଭାର ବଡ଼ ଦୁର୍ବହ । ସେ ଜାଣେ ଯେ ସଂଜର ଅନ୍ଧାର ତାକୁ ପ୍ଲାଟଫର୍ମର ସିମେଣ୍ଟ ବେଞ୍ଚରେ ଏକାକୀ ସମୟ ଅତିବାହିତ କରିବାକୁ ପଡ଼ିବ । ଜୀବନର ଚଳଚଞ୍ଚଳ ଚେତନାକୁ ନେଇ ଟ୍ରେନଟି ପ୍ଲାଟଫର୍ମ ଛାଡ଼ିଲା ବେଳେ ସେ ଠିଆ ହେବ । ଶକ୍ତ ଦେହ ଅଥବା ସୁସ୍ଥମନ ପରିବର୍ତ୍ତେ ଏକ ଚରମ ଅସହାୟତ୍ୱବୋଧ ତାକୁ ଆଚ୍ଛନ୍ନ କରିଥିବ । ଭଙ୍ଗାଅଣ୍ଟା ସଲଖେଇ ଓ ହବିଯାଉଥିବା ଗୋଡ଼ ଦୁଇଟିକୁ ସିମେଣ୍ଟରେ ଭରା ଦେଇ ଚଳନ୍ତା ଗାଡ଼ିରେ ଥିବା

ଯାତ୍ରୀମାନଙ୍କୁ ନୋଗ୍ସ କୋଗ୍ସ ଘୁମାଲ ହଲାଇ ତାକୁ ବିଦାୟ ଦେବାକୁ ପଡ଼ିବ । ସାମ୍ନାରେ ବିଦ୍ୟୁତ୍ ଆଲୋକ ଓ କୃଷ୍ଣଚୂଡ଼ାର ଜ୍ୟାମିତିକ ପ୍ରତିଛବି (କ୍ୟୁବ୍) ଗୁଡ଼ିକ ସମାନ୍ତର ଉଚ୍ଚତାରେ ଦୂର ଦୂର ବହୁଦୂରକୁ ଲମ୍ବି ଯାଇଥିବ—

''ମେଡିକାଲ କମ୍ପାଉଣ୍ଡ ଯେବେ ଆଲୁଅର କ୍ୟୁବ୍‌ମାନ
ପୁଣି ଆସି ଛିଡ଼ା ହେବେ, ମୁଁ ପୁଣି ଆସି ଛିଡ଼ା ହେବି
ମ୍ୟାଗାଜିନ୍ ଗୁଡ଼ା କପ୍ ଗୁଡ଼ ଦେଇ ଭଙ୍ଗା ଅଣ୍ଟା ସଳଖାଇ
ଦବିଯିବା ଗୋଡ଼ ଦୋଟି ଦମ୍ଭକରି ସିମେଣ୍ଟରେ ଯୋଡ଼ି
ଏ ଭିତରୁ ହୁ ହୁ ମାଡ଼ି ଆସୁଥିବା ଗୋଟେ ପିଣ୍ଡୁଳାକୁ
ତଣ୍ଟିରେ ଯାକି ପକାଇ
ହଲେଇବି ନୋଗ୍ସ କୋଗ୍ସ ଘୁମାଲକୁ ମୋର

× × ×

ଓ ତା' ପରେ ଖାଲି ରାତି, ଶୂନ୍ ଶାନ୍ ପ୍ଲାଟଫର୍ମ ବେଞ୍ଚ
କୃଷ୍ଣଚୂଡ଼ା କ୍ୟୁବ୍ ସବୁ ଗୀତ ଗାଇ ଗଡ଼ିଯିବେ ସମାନ୍ତର
ରେଖା ମାନ ଦୂର ବହୁ ଦୂର (୭୨)''

'ଭଙ୍ଗା ଅଣ୍ଟା' ଓ ନୋଗ୍ସ କୋଗ୍ସ ଘୁମାଲ ନଗର ସଭ୍ୟତାର କ୍ଳାନ୍ତ ଓ ବିରକ୍ତିକର ପ୍ରତୀକ । ବ୍ୟକ୍ତିଚେତନା ଏଠାରେ ମୁକ୍ତ ବା ସରଳ ନୁହେଁ, ପକ୍ଷାନ୍ତରେ ରୁଦ୍ଧ, ଅବଦମିତ ଓ ଜଟିଳ—'ଭିତରୁ ହୁ ହୁ ହୋଇ ମାଡ଼ି ଆସୁଥିବା/ଗୋଟେ ପିଣ୍ଡୁଳାକୁ/ ତଣ୍ଟିରେ ଯାକି ପକେଇବା ମଧ୍ୟରେ ଏହା ପ୍ରମୂର୍ତ୍ତି । ପୁନଶ୍ଚ ନଗର ସଭ୍ୟତା ଲାଳିତ ବ୍ୟକ୍ତିଟିର ପରିପାର୍ଶ୍ୱ କୋଳାହଳ ନିଃସଙ୍ଗ—ନିର୍ଜନ ରାତି, ନିଶୂନ ପ୍ଲାଟଫର୍ମ୍ ଏହି ନିଃସଙ୍ଗତାବୋଧର ଏକ ଏକ ମୂର୍ତ୍ତି ରୂପ । ନିଃସଙ୍ଗତାର ଏହି ଏକ-ଛତ୍ର ସାମ୍ରାଜ୍ୟ ମଧ୍ୟରେ ଜୀବନର ପ୍ରାଣପ୍ରାଚୁର୍ଯ୍ୟପୂର୍ଣ୍ଣ କୃଷ୍ଣଚୂଡ଼ାର ସଂଗୀତ କମ୍ପାର୍ଟମେଣ୍ଟ ଟ୍ରେନ୍‌ର ଗତି ସହ ବିଲୀନ ହୋଇଯାଏ । ପଲ୍ଲୀର ଗୋଷ୍ଠୀକୈନ୍ଦ୍ରିକ ଜୀବନରେ ସଂପର୍କବଦ୍ଧ ସୌହାର୍ଦ୍ଦ୍ୟ ସ୍ୱପ୍ନରେ ପର୍ଯ୍ୟବସିତ ହୁଏ । ନଗର ସଭ୍ୟତାର ସଂଗ୍ରାମ-ପୀଡ଼ିତ ଜୀବନରୁ ମୁକ୍ତି ପ୍ରତ୍ୟାଶା ସମ୍ଭବ ହୁଏ ନାହିଁ ।

## ୪—ଆତ୍ମକୈନ୍ଦ୍ରିକ ଚେତନା ଓ ଅସହାୟତ୍ୱବୋଧ

ଜୀବନ ସଂଗ୍ରାମ ମଧ୍ୟରେ ନଗରସଭ୍ୟତାର ବ୍ୟକ୍ତିମାନସ, ଏକ କଚ୍ଛପୀୟ ମନୋବୃତ୍ତିର ଶିକାର ହୋଇଛି । ସୀତାକାନ୍ତ ମହାପାତ୍ରଙ୍କ 'କୌଣସି ଏକ ସହରର ବିଷୟରେ' କବିତାର ସହର, ଏହି ଆତ୍ମକୈନ୍ଦ୍ରିକ ନାଗରସଭ୍ୟତାର ପ୍ରତୀକ । କୌଣସି ନାମବାଚକ ବିଶେଷ୍ୟରେ ତାହା ବିଶେଷିତ ହୋଇନପାରେ, ପକ୍ଷାନ୍ତରେ ତାହା ନଗରବୃତ୍ତିକ ସାଂପ୍ରତିକ ବିଶ୍ୱର ପ୍ରତିଭୂ—

"ମୁଁ ଯେଉଁ ସହର କଥା କହିବାକୁ ଯାଉଛି ଏଇନେ
ତା'ର ଏକ ବ୍ୟକ୍ତିଗତ ନାମ ବୋଧେ ନାହିଁ
କିନ୍ତୁ ଏ ସହର ଜାଣ, ତମ ଆମ ସଭିଙ୍କ ସହର
ଆମସ୍ଥିତି ଘରପଟେ ଏ ବୁଣିଛି ସୂକ୍ଷ୍ମ ତା'ର ଊର୍ଣ୍ଣନାଭ ଜାଲ (୭୩)"

ପଲ୍ଲୀ ପରି ସହର ବ୍ୟକ୍ତିକୁ ପ୍ରକୃତିର ଶାନ୍ତ ଶୀତଳତା ·ତଥା ପାରସ୍ପରିକ ସମ୍ପର୍କମଧୁର ସ୍ଥିତିରେ ବଞ୍ଚେଇ ରଖିପାରେ ନାହିଁ । ଅଧିକନ୍ତୁ ଘୂର୍ଣ୍ଣିଆଣୀ ଜାଲ ଭଳି ଜଟିଳ ସମସ୍ୟାର ବନ୍ଧନରେ ବ୍ୟକ୍ତିକୁ ସେ ଆବଦ୍ଧ କରେ । ଏହି ଘୂର୍ଣ୍ଣିଆଣୀ ଜାଲ ଭିତରେ ସେ ଏକ ଆତ୍ମକୈନ୍ଦ୍ରିକ ନିଃସଙ୍ଗ ଜୀବନ ଯାପନ କରେ । ପାରସ୍ପରିକ ଅସତ୍ୟ ଓ ଅସଦାଚରଣ ଭିତରେ ନଗର ଜୀବନ କଳୁଷିତ ହୋଇଯାଏ । ଜେରୁଜେଲମ, ଏଥେନ୍ସ, ଆଲେକ୍‌ଜାଣ୍ଡ୍ରିଆ, ଭିଏନା ଓ ଲଣ୍ଡନ ନିର୍ବିଶେଷରେ ସମଗ୍ର ବିଶ୍ୱର ନଗରସଭ୍ୟତା କିପରି ଅସତ୍ୟ, ଅସଦାଚରଣ ଓ ଅବିଶ୍ୱାସବୋଧରେ ଗ୍ରସ୍ତ 'ଓ୍ୱେଷ୍ଟଲାଣ୍ଡ' କାବ୍ୟରେ ଟି. ଏସ୍. ଏଲିୟଟ୍ ତାହା ପ୍ରକାଶ କରିଥିଲେ (୭୪) । ପ୍ରାଚୀନ ଆଧ୍ୟାତ୍ମିକ ତଥା ସାଂସ୍କୃତିକ ଉତ୍ସଠାରୁ ସମ୍ପର୍କଶୂନ୍ୟ ହୋଇଥିବା ଏହି ସହର ହିଁ ଅବାସ୍ତବ ସହର—

"Unreal city
Under the brown fog of a winter dawn
A crowd flowed over London Bridge
I had not thought, death had undone so many
Sighs, short and infrequent were exhaled
And each man fixed his eyes before his feet(୭୫)"

ଶୀତଋତୁର କୁହୁଡ଼ି ଭିତରେ ନଗର ପରିବେଶର ବିପର୍ଯ୍ୟସ୍ତତା ଏଠାରେ ସୂଚିତ । ଏ ନଗରୀ ପୁଣି ମହାନଗରୀ ଲଣ୍ଡନ । କୋଳାହଳ ମୁଖରତା ଭିତରେ ଏ ବିଷଣ୍ଣ ନୀରବତା ଆପାତତଃ ଏକ ବିରୋଧାଭାସ ଭଳି ମନେ ହୁଏ । କିନ୍ତୁ ଏ ନୀରବତା ଏକ ଆତ୍ମକୈନ୍ଦ୍ରିକ ମନୋଭାବଦ୍ୱାରା ସୃଷ୍ଟ । କାରଣ ପ୍ରତ୍ୟେକ ବ୍ୟକ୍ତିର ଦୃଷ୍ଟି ଏଠାରେ ନିଜର ପାଦ ଉପରେ କେନ୍ଦ୍ରୀଭୂତ । ଏଣୁ ନୀରବ-ନିସ୍ତବ୍ଧତା ହିଁ ମହାନଗରୀର ଅବଶ୍ୟ ଭବିତବ୍ୟ ।

ଏଲିୟଟଙ୍କ ଅନୁକ୍ରମରେ ସୀତାକାନ୍ତ ଏଇ ନଗରସଭ୍ୟତାରେ ଲକ୍ଷ୍ୟ କରିଛନ୍ତି—'ହାଡ଼ମାଳ, ଭଙ୍ଗାସ୍ୱପ୍ନ ଓ କ୍ଷୟିଷ୍ଣୁ ଆବେଗ' ଏହି ସହରର ଛିନ୍ନ ସ୍ନାୟୁ ନିର୍ଜୀବ ଧୂଳି ଓ ଶୁଷ୍କ ମେଘ, ଜୀବନୀଶକ୍ତିବିହୀନ, ମୁମୂର୍ଷୁ ସତ୍ତାର ସ୍ମାରକ—

"ଏ ସହର ହୋଇପାରେ ଚେଲ୍‌ଟାଲୋ, ତାମ୍ରଲିପ୍ତ ବା କଟକକର୍ଦ୍ଦମ
ଦନ୍ତପୁରି, ଏଥେନ୍‌ସ, କଣ୍ଟକ ବା ରୋମ
ପାଣ୍ଡୋରା ବାକ୍‌ସରେ ତାର ଅଛୁ ଖାଲି
ମୃତ ଧୂଳି, ଛିନ୍ନ ସ୍ନାୟୁ ଆଉ ଶୁଷ୍କ ମେଘ (୭୭) ।"

ସୀତାକାନ୍ତଙ୍କ ଏ ବର୍ଣ୍ଣନାରେ ସହର ଅତୀତ ଯୁଗର ବିଭବଶାଳୀ ଚେଲ୍‌ଟାଲୋ ଅବା ତାମ୍ରଲିପ୍ତ, କଟକକର୍ଦ୍ଦମ ବା ଦନ୍ତପୁରି ହୋଇପାରେ ବା ବାରବାଟୀ କଣ୍ଟକ ବା ଗୌରବୋଜ୍ଜ୍ୱଳ ରୋମନଗରୀ ହୋଇପାରେ, ମାତ୍ର ସେହି ସଭ୍ୟତା ଭିତରେ ପାଣ୍ଡୋରା ବାକ୍‌ସର ରୋଗ, ବ୍ୟାଧି ଓ ଯନ୍ତ୍ରଣା ପରି ଥାଏ କେବଳ ନିର୍ଜୀବ ଧୂଳି । ସମ୍ବେଦନହୀନ ସ୍ନାୟୁଜାଲ ଓ ବର୍ଷଣହୀନ ମେଘମାଳା । ସମଗ୍ର ନଗର ଜୀବନ କ୍ଳାନ୍ତ, ନୈରାଶ୍ୟ ତଥା ଅସହାୟତ୍ୱବୋଧରେ ଆଚ୍ଛନ୍ନ ।

ପ୍ରଗତିବାଦୀ କାବ୍ୟଚେତନାରେ ଶୋଷିତ ସର୍ବହରାର ଅସହାୟତ୍ୱ ଓ ଶୋଷକ ପୁଞ୍ଜିପତିର ହିଂସ୍ର ଅତ୍ୟାଚାର, ଶୋଷିତ ଶ୍ରେଣୀ ପ୍ରତି ଶ୍ରଦ୍ଧା ଓ ସମ୍ବେଦନା ଉଦ୍ରେକ କରିଥିଲା । ଶୋଷକ ସମ୍ପ୍ରଦାୟ ବିରୋଧରେ ବିଦ୍ରୋହ ଓ ପ୍ରତିଶୋଧ ପରାୟଣତା ଜନ୍ମିଥିଲା । କିନ୍ତୁ ପ୍ରୟୋଗବାଦୀ କବିତାରେ ଶୋଷକ-ଶୋଷିତ ଶ୍ରେଣୀ ସଂଗ୍ରାମ ପରିବର୍ତ୍ତେ ପ୍ରତ୍ୟେକ ବ୍ୟକ୍ତିବିଶେଷର ଜୀବନ ସଂଗ୍ରାମ ବୃହତ୍ତର । ପ୍ରୟୋଗବାଦୀ କବିତାର ବ୍ୟୁରୋକ୍ରାଟ୍‌ସ (bureaucrats) ପ୍ରଗତିବାଦୀ କବିତାର ହିଂସ୍ରଶୋଷକ ନୁହନ୍ତି, କିନ୍ତୁ ନଗର ଜୀବନର ବ୍ୟସ୍ତ-ବିବ୍ରତ ଜୀବନଧାରାର ସେମାନେ ଏକ ଏକ ଅଂଶ । କଭିଷ୍ଟୁମ୍ବୀ ଅଟ୍ଟାଳିକା, ହର୍ମ୍ୟ ଓ ପ୍ରାସାଦ ଭିତରେ ସେମାନଙ୍କର ସ୍ଥିତି ଏକାନ୍ତ ଅସହାୟ ତଥା ନଗଣ୍ୟ । ସେମାନେ ସତେ ଅବା ମଣିଷ ନୁହନ୍ତି—

'ପେଣ୍ଟକୋଟ ପରିହିତ ଧଳା ମୂଷା
ଏଣେ ତେଣେ ଧାଇଁ ଖାଲି
ହୁଅନ୍ତି ହୀନସ୍ତା (୭୭)'

ଜାତୀୟ ଐତିହ୍ୟ, ଗୌରବଦୀପ୍ତ, ସାଂସ୍କୃତିକ ପରମ୍ପରା ସେମାନଙ୍କ ପାଇଁ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି କରି ପାରେ ନାହିଁ । ପ୍ରାଚୀନ ଭଗ୍ନସ୍ତୂପ, ବିଦୀର୍ଣ୍ଣ ପ୍ରାସାଦ, ପୁରାତନ ଗଡ଼ଖାଇ ସାମ୍ପ୍ରତିକ ତଥା ସମ୍ଭାବ୍ୟ, ଭବିଷ୍ୟତ ପାଇଁ ଦୀପ୍ତ ଓ ଦୃପ୍ତ ପ୍ରେରଣା ଜାଗ୍ରତ କରିବା ପରିବର୍ତ୍ତେ ଏକ ଶୋଚହୀନ ଅସହାୟତ୍ୱ ତଥା ଅବସାଦବୋଧରେ ମଗ୍ନ ରୁହନ୍ତି (୭୮) ।

ବ୍ରଜନାଥ ରଥଙ୍କପାଇଁ ନଗରସଭ୍ୟତା ଏକ କାଚ ଘର, ତା'ର ସ୍ଥିତି ଭଙ୍ଗୁର ଦର୍ପଣରେ ପ୍ରତିଫଳିତ ଏକ ବିକୃତ ପ୍ରତିଛବି । ଏଠି କଳକବୁଲ୍ଭ କୋଠରୀ

(water tight compartment) ଭଳି ଏହା ମୁକ୍ତ ଜୀବନର ପରିପନ୍ଥୀ । ଏହି କାଚଘର ଭିତରେ ଜୀବନର ସ୍ଥିତି ଏକାନ୍ତ ଆତ୍ମକୈନ୍ଦ୍ରିକ । ଆତ୍ମଦ୍ୱନ୍ଦ୍ୱ ଭିତରେ ସେ ନିକ୍ଷେପିତ । ତା'ର ଦ୍ୱିଧାବିଭକ୍ତ ମାନସ ସହ ତା'ନିଜର ପରିଚିତି ମଧ୍ୟ ସୁଦୂର ପରାହତ—

> "କାଚଘର ଭଙ୍ଗୁର ଦର୍ପଣେ
> ଚିହ୍ନିଚ କି ଆପଣାକୁ ଆପେ
> କାଚଘରେ ବନ୍ଦୀ ମୁହିଁ
> ଆଜି ବନ୍ଧୁ କା'ର ଅଭିଶାପେ" (୭୯)

ଅବରୁଦ୍ଧ ଜୀବନର ସ୍ଥିତି ହିଁ ଏଠାରେ ଅଭିଶାପର ନାମାନ୍ତର । କାରଣ ବିଶ୍ୱର ଅନନ୍ତ ବିପୁଳ ପ୍ରାଣଶକ୍ତିରୁ ସେ ବଞ୍ଚିତ । ନାର୍ସିସସ ପରି ଆପଣା ମାୟାରେ ସେ ବିଭୋର । ନିଜର ସ୍ତୁତିଗାନରେ ସେ ଅସ୍ତିତ୍ୱସର୍ବସ୍ୱ । ବ୍ରଜନାଥ ରଥଙ୍କ 'କାଚଘର' କବିତାର ବ୍ୟକ୍ତିମଣିଷ (Individual being) ଅହଂ ଭୂୟିଷ୍ଠ ନଗରସଭ୍ୟତାର ଜୀବନ୍ତ ପ୍ରତୀକ ।

**୫—ପ୍ରତିଯୋଗିତାପୂର୍ଣ୍ଣ ଜୀବନ-ସଂଗ୍ରାମପୀଡ଼ିତ ନଗରସଭ୍ୟତା**

ଭୌତିକ ପ୍ରାଚୁର୍ଯ୍ୟ ପାଇଁ ନଗରସଭ୍ୟତାରେ ବ୍ୟକ୍ତି-ବ୍ୟକ୍ତି, ଜାତି-ଜାତି ତଥା ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ତୀବ୍ର ପ୍ରତିଯୋଗିତାପୂର୍ଣ୍ଣ ମନୋଭାବ ପ୍ରତିଫଳିତ । ଜୀବନର ଅନିବାର୍ଯ୍ୟ ଆବଶ୍ୟକତା ପାଇଁ ପ୍ରାଗୈତିହାସିକ ମାନବ ଅଗ୍ନିର ଆବିଷ୍କାର କରିଥିଲା । ବିଜ୍ଞାନର ବିକାଶ ସହ ବିଦ୍ୟୁତ୍‌ଶକ୍ତିକୁ ସଞ୍ଚିତ କରି ନଗର ସଭ୍ୟତାକୁ ସେ ଆଲୋକ-ମାଳାରେ କାଳକ୍ରମେ ସଜ୍ଜିତ କଲା । ଅନ୍ଧାର ହେଲା ମାନବର ବୈରୀ । କିନ୍ତୁ ଏହି ଜ୍ୟୋତିର୍ମୟ ଆଲୋକ ଉତ୍ସ ମଧ୍ୟ ସଭ୍ୟତାର କ୍ରମବିକାଶ ପଥରେ ଅବଲୀଳାକ୍ରମେ ମାନବ-ସଭ୍ୟତାର ଶତ୍ରୁରେ ପରିଣତ ହେଲା । ସୀତାକାନ୍ତ ମହାପାତ୍ରଙ୍କ 'ଇତିହାସ' କବିତାରେ ଏହି ଭାବନା ପ୍ରତିଫଳିତ—

> "ଈଗଲର ଆଖିନେଇ ଖୋଜିବୁଲେ ଲକ୍ଷ୍ୟସ୍ଥଳ ଶତ୍ରୁର ବିମାନ
> ଆଲୋକ ମଣିଷ ଶତ୍ରୁ, ସ୍ପଷ୍ଟ କରେ;
> ହାତ ଠାରି ସେ ଦେଖାଏ ଲକ୍ଷ୍ୟସ୍ଥଳ
> ଚଢ଼େଇର ବସା ସଙ୍ଗେ କୁହୁ ଓ କାକଳି ସରେ
> ହସ କଳରୋଳ ହୁଏ
> ନମିଷକେ ନୀରବିତ ଧୂମ ଶମଶାନ (୮୦)"

'ଚଢ଼େଇ ବସା', 'କୁହୁ' ଓ 'କାକଳି' ସଭ୍ୟତାର ଜୀବନ୍ତ ସ୍ଥିତିର ସୂଚକ, ଯାହାକୁ ଯୁଦ୍ଧଖୋର ଆଧୁନିକ ମଣିଷ ନୀରବ, ନିଷ୍ପ୍ରାଣ, ଶ୍ମଶାନରେ ରୂପାନ୍ତରିତ କରିଦିଏ । ଏଣୁ

ଯୁଗ ଯୁଗ ଧରି 'ତମସୋ ମାଂ ଜ୍ୟୋତିର୍ଗମୟ' ଚିନ୍ତାଦର୍ଶକୁ ପରିତ୍ୟାଗ କରି, କବି ଜ୍ୟୋତିକୁ ତମସାରେ ରୂପାନ୍ତରିତ କରିଦେବାପାଇଁ କାମନା କରନ୍ତି । ଫଳରେ ମାରଣାସ୍ତ୍ର ପ୍ରୟୋଗର ତୀବ୍ର ଧ୍ୱଂସଲୀଳା ଅପେକ୍ଷାକୃତ ସଂକୁଚିତ ହେବ ଓ ମାନବିକ ମୈତ୍ରୀବୋଧ ତ୍ୱରାନ୍ୱିତ ହେବ ।

କିନ୍ତୁ ନଗରସଭ୍ୟତାର ପ୍ରତିଯୋଗିତାପୂର୍ଣ୍ଣ ଜୀବନ ସଂଗ୍ରାମର ବ୍ୟସ୍ତତା ମଧ୍ୟରେ ବିଶ୍ୱର ପରିତ୍ରାଣ ତ ଦୂରର କଥା, ବ୍ୟକ୍ତିର ଅସ୍ତିତ୍ୱ ଧାରଣ ମଧ୍ୟ ଏକ ବ୍ୟର୍ଥ ପ୍ରୟାସ । ଫୁଟ୍‌ପାଥର ଜନଗହଳି, ଲ୍ୟାମ୍ପପୋଷ୍ଟ ଓ ନିଅନ ଆଲୁଅର ବର୍ଣ୍ଣୋତ୍ସବ ଭିତରେ ଶାନ୍ତି ଓ ସ୍ୱସ୍ତି ପାଇଁ ଊର୍ଦ୍ଧ୍ୱଶ୍ୱାସରେ ସେ ଆଗୁସାର ହୁଏ—

"× × ମୁଁ ଖାଲି ବିନା ଆୟାସେ ଧରି ସବୁ
ଅତ୍ୟନ୍ତ ପ୍ରତିକ୍ରିୟାରୁ ହୁଏ ଯାହା ଆଗୁସାର
ଫୁଟପାଥ୍, ଲ୍ୟାମ୍ପପୋଷ୍ଟ, ନିଅନ ଆଲୁଅ
ଏ ସବୁଠୁଁ ନିଜକୁ ବଞ୍ଚାଇ (୮୧) ।"

ଜୀବନର ପ୍ରତିଯୋଗିତାପୂର୍ଣ୍ଣ ମୂଷା ଦୌଡ଼ରେ ବ୍ୟକ୍ତିସତ୍ତା କ୍ଳାନ୍ତ, ଶ୍ୱାସରୁଦ୍ଧ । ଏହି ସଂଘର୍ଷ-ସଙ୍ଘାତ-ପୂର୍ଣ୍ଣ ପରିସରରୁ ମୁକ୍ତି କାମନା, ଫୁଟପାଥ୍, ଲ୍ୟାମ୍ପପୋଷ୍ଟରୁ ନିଜକୁ ବଞ୍ଚାଇ ଦୌଡ଼ିବା ମଧ୍ୟରେ ପ୍ରତିଫଳିତ । ଏ ଦୌଡ଼ିବା ମଧ୍ୟ ଅତ୍ୟନ୍ତ ପ୍ରତିକ୍ରିୟାରୁ ଉଦ୍‌ଭୂତ । ଆତ୍ମିକ ଉଚ୍ଛ୍ୱାସ ତହିଁରେ ଅବର୍ତ୍ତମାନ ।

## ୭—ବିଷଣ୍ଣ ଜୀବନ ପରିଧିର ମ୍ରିୟମାଣ ସ୍ୱରୂପ

ବସ୍ତୁତଃ ତୀବ୍ର ଜୀବନ-ସଂଗ୍ରାମ ପ୍ରସୂତ କ୍ଳାନ୍ତିର ପ୍ରତିକ୍ରିୟା ସ୍ୱରୂପ ନଗର ଜୀବନର ପରିଧି ମ୍ଳାନ ଓ ବିମର୍ଷ । ଏଲିୟଟଙ୍କ 'ହଲୋମେନ' (Hollow Men) କବିତାର ଶେଷସ୍ଥାନ ଶୂନ୍ୟତାବୋଧ ପରି ଜୀବନ ଚରମ ବ୍ୟର୍ଥତା ଓ ବିଡମ୍ବନାରେ ପର୍ଯ୍ୟବସିତ । ଗୁରୁ ପ୍ରସାଦ ମହାନ୍ତିଙ୍କ 'ପିକ୍‌ନିକ୍' କବିତାରେ ଏହି ଶୂନ୍ୟତାବୋଧର ସ୍ୱର ଅନୁରଣିତ (୮୨) ।

ସୀତାକାନ୍ତ ମହାପାତ୍ରଙ୍କ 'ସହରର ଇତିକଥା'ରେ ନଗର ଜୀବନର ପରିଧି ଶୀର୍ଣ୍ଣ, ବିମର୍ଷ ଓ ମ୍ଳାନ । ତା'ର ରଙ୍ଗ ତାରୁଣ୍ୟର ଉଚ୍ଛ୍ୱାସରେ ସବୁଜ ଶ୍ୟାମଳ ଅଥବା ଇନ୍ଦ୍ରଧନୁ-ରାଗରେ ରଙ୍ଗୀନ ନୁହେଁ । ଜୀବନର ରଙ୍ଗ ସେଠାରେ ଧୂସର । ଦିନ କୁତ୍ସିତ ଓ ଭୟଙ୍କର । 'କୋଳାହଳ', 'ଘୋ ଘୋ', 'ପେଲାପେଲି' ଭିତରେ ମୂଲ୍ୟବୋଧହୀନ ସମାଜ ଜୀବନ କେବଳ ଅଶ୍ଳୀଳ ସଙ୍ଗୀତ ଓ କାଠ କ୍ୟାବିନ ସମ୍ମୁଖସ୍ଥ ହୁଇସିଲ୍ ଶବ୍ଦରେ ମୁଖରିତ—

"ଘୋ ଘୋ ପେଲ୍‌ପେଲ୍ କୋଳାହଳ
କୁତ୍ସିତ ଓ ଭୟଙ୍କର ଘନ
କାହା ମୁହଁ ହାଏଦର ବାଡ଼ପର
ଏ କାହାର ଧୂସର ଜୀବନ
ଅଶ୍ଲୀଳ ଗୀତରୁ ପଦେ ଝୁଲଉଥିଲଟାଏ
କାଠଖଣ୍ଡ ଦୋକାନ ଆଗରେ
ଦୁନିଆର ଯେତେ ଯାହା ନଗ୍ନ ଛବି
କ୍ୟାଲେଣ୍ଡର ଜମା ସେଇ ଶୀର୍ଣ୍ଣ ପରଧିରେ (୮୩) ।"

ନଗରର କୋଳାହଳ ମୁଖରତା ଅନ୍ତରାଳରେ ଜୀବନର ଶୀର୍ଣ୍ଣଶ୍ରୀ ଏଠାରେ ପ୍ରତିପାଦିତ । ହାଏଦର ବାଡ଼ ସହ ମୁହଁର ତୁଳନା ଆପାତତଃ ଅପ୍ରାସଙ୍ଗିକ । କିନ୍ତୁ ଏହା ମଧ୍ୟରେ ନଗର ଜୀବନର ରୁକ୍ଷ, ଧୂସର ଧୂମିଳ ସ୍ଥିତିର ଧ୍ୱନ୍ୟାତ୍ମକ ସୂଚନା ପ୍ରଦତ୍ତ ।

ନିତ୍ୟନୈମିତ୍ତିକ ଜୀବନର ଧରାବନ୍ଧାଗତିରେ ନଗରର ଆତ୍ମା କ୍ଷତାକ୍ତ । 'ସଂଶୟାତ୍ମା ବିନଶ୍ୟତି' ଭଳି ତାର ଜୀବନୀଶକ୍ତି ଦ୍ୱନ୍ଦ୍ୱ ଓ ଛଳନାର ସ୍ତୂପ ମଧ୍ୟରେ ମ୍ରିୟମାଣ । ପ୍ରୀତି ଓ ପ୍ରତ୍ୟୟର ଶେଷହୀନ ସଂଧାନ ମଧ୍ୟରେ ସେ ବିମର୍ଷ । ତା'ର ଜୀବନ ଓ ଯୌବନ ପରିତ୍ୟକ୍ତ ଆକାଙ୍‌କ୍ଷାର ପ୍ରାଚୀର ନିକଟରେ ନିକ୍ଷିପ୍ତ ।

ନଗର ଜୀବନର ଏହି ଦ୍ୱନ୍ଦ୍ୱ ତଥା ଛଳନାସଂଶ୍ଳିଷ୍ଟ ବିବର୍ଣ୍ଣ ରୂପଶ୍ରୀ ମଧ୍ୟରେ କବିମାନସ କ୍ଲାନ୍ତ । ଏଇ ପରିପ୍ରେକ୍ଷୀରେ ବିନୋଦ ନାୟକଙ୍କ 'ତିଲୋତ୍ତମା ସହର' ଆପାତତଃ ଏକ ରୋମାଣ୍ଟିକ ଆବେଦନ ସୃଷ୍ଟି କରେ । କିନ୍ତୁ ସାମ୍ପ୍ରତିକ ବାସ୍ତବ ଜୀବନ-ସଂଘର୍ଷ ମଧ୍ୟରେ ସ୍ୱପ୍ନମେଦୁର ରୋମାଞ୍ଚ ନିରର୍ଥକ । ଏଣୁ ଆଧୁନିକ ନଗର-ସଭ୍ୟତାରେ ଲୋକ-କଳ୍ପନା ତଥା ପୌରାଣିକ ଆଖ୍ୟାୟିକାର ତିଲୋତ୍ତମା ସୁଲଭ ସୌନ୍ଦର୍ଯ୍ୟ ସୁଦୂର ପରାହତ । ମକ୍ଷିକା ଓ ମୂଷିକର ବ୍ୟୂହରେ ନଗର ଜୀବନ ବିପନ୍ନ—

"× × ଏ ସହର ସେ ସହର ନୁହେଁ
ମକ୍ଷିକା ଓ ମୂଷିକର ବ୍ୟୂହେ
ବିପନ୍ନ ଜୀବନ ତହିଁ ଛୁଏଁ ନାହିଁ ତୃଷାର ପିଆଲା (୮୪) ।"

ମକ୍ଷିକା ଓ ମୂଷିକ—ଜୀବନର ପ୍ରତିକୂଳ ଶକ୍ତି । ସିଂହ ବା ବ୍ୟାଘ୍ର ଭଳି ସେମାନେ ଶାଣିତ ବା ଗର୍ଜିତ ନୁହନ୍ତି । ସେମାନେ ଭୀରୁ, ଅଥଚ ମାରାତ୍ମକ ଭାବେ କ୍ଷୟକାରୀ । ଆତ୍ମଗୋପନକାରୀ ଏହି କ୍ଷୟିଷ୍ଣୁ ଶକ୍ତିର ସଂକ୍ରମଣ ଫଳରେ ଜୀବନ-ମଦିରା ଆହରଣର

ସ୍ୱପ୍ନ ଚୂର୍ଣ୍ଣ ବିଚୂର୍ଣ୍ଣ । ଏଇ ପରିପ୍ରେକ୍ଷୀରେ ବାସ୍ତବ ଜୀବନର ବିମର୍ଷ ପରିଧିରେ ତା'ର ସ୍ଥିତି ମଳିନ । ଭାନୁଜୀ ରାଓଙ୍କ 'ହେ ସହର ହେ ମୋର ସହର'ରେ ନଗର-ସଭ୍ୟତା ଚଳଚଞ୍ଚଳ ନୁହେଁ, ସ୍ଥାଣୁ ଓ ମୃତ୍ୟୁମାନ । ପଲ୍ଲୀର ଚିରନ୍ତନ ନିଷ୍ପାପ ଜୀବନଧାରା ସେଠାରେ ବିପର୍ଯ୍ୟସ୍ତ । ଜହ୍ନର ଆଲୁଅ ଏ ସହରର ରାତିରେ ବିବର୍ଣ୍ଣ । ଏଣୁ ସହର ନିରନ୍ଧ୍ର ଅନ୍ଧକାରଗ୍ରସ୍ତ । ରାତି ସତେ ଅବା ଏକ ପିଚୁ ବୋଳା ଗଣ୍ଡ—ଯାହାର ମୁହଁ ନାହିଁ/ଆଖି ନାହିଁ/ନାହିଁ ନାକ କାନ । କବିତାର ଶୀର୍ଷକ 'ହେ ସହର ହେ ମୋର ସହର' ହୋଇଥିଲେ ମଧ୍ୟ କବି-ଆତ୍ମା ଏ ସହର ସହ ଅସମ୍ପୃକ୍ତ । ଏହି ଅନାତ୍ମୀୟତାର ବିକାସ୍ତରେ ଯେଉଁ କ୍ଷୀଣ ପରିଚୟର ସଂଧାନ ମିଳେ, ତାର ସ୍ୱରୂପ ଏକାନ୍ତ ବିଭତ୍ସ—

"× × ମେଞ୍ଚି ମେଞ୍ଚି ତାରକାର କ୍ଷତ
ଆକାଶରେ ନେସି ହୋଇଯାଏ
ହେ ସହର, ମାଦଳ ସହର (୮୫)।"

ଶିଳ୍ପବିପ୍ଲବ ଓ ଶିକ୍ଷାବିସ୍ତାର ସହିତ ନଗର ସଭ୍ୟତାର କ୍ରମବିକାଶ ସଂଘଟିତ ହେବା ବେଳେ ସ୍ୱଚ୍ଛଳ ତଥା ସମୃଦ୍ଧ ଜୀବନ ଯାପନ ଥିଲା ମାନବର ଲକ୍ଷ୍ୟ । କ୍ରମଶଃ ଗୋଷ୍ଠୀକୈନ୍ଦ୍ରିକ ଜୀବନର ବିଲୋପ ଘଟିବା ସଙ୍ଗେ ନଗର ସଭ୍ୟତାରେ ପାରସ୍ପରିକ ଅସହିଷ୍ଣୁ ମନୋଭାବ ଉଦ୍ରିକ୍ତ ହେଲା । ବ୍ୟକ୍ତି-ସ୍ୱାତନ୍ତ୍ର୍ୟ ତଥା ସ୍ୱାଚ୍ଛନ୍ଦ୍ୟ ପାଇଁ ତୀବ୍ର ପ୍ରତିଯୋଗିତା, ନଗର ପରିବେଶକୁ କଳୁଷିତ କରିଦେଲା । ବ୍ୟକ୍ତି ଜୀବନରୁ ଶାନ୍ତି ଓ ମମତା ଅପସୃତ ହୋଇଯିବା ସଙ୍ଗେ ସଙ୍ଗେ ଭୌତିକ ପ୍ରାଚୁର୍ଯ୍ୟ ମଧ୍ୟରେ ଏକ ଚରମ ନିଃସଙ୍ଗତାବୋଧ ଉଦ୍‌ଭୂତ ହେଲା । ଏହି ନିଃସଙ୍ଗତାବୋଧରୁ ଜୀବନର ପରିଧି ବିଷଣ୍ଣ ଓ ମ୍ଳାନ ହୋଇଗଲା । ଅନ୍ୟ ପକ୍ଷରେ ମାନସିକ ନିଃସଙ୍ଗତାବୋଧର ପ୍ରତିକ୍ରିୟା ସ୍ୱରୂପ ହିଂସ୍ର ପାଶବିକ କ୍ରିୟା, ମହାନଗରୀର ପରିବେଶକୁ ବିଷାକ୍ତ କରିଦେଲା ।

## ୭—ମହାନଗରୀର କଦାକାର ରୂପ

ବାସ୍ତବବାଦୀ କବିଗଣ ନଗରର ବକ୍ଷିଳ ବହିର୍ବିନ୍ୟାସ ଅନ୍ତରାଳରେ ଯେଉଁ କୁତ୍ସିତ, କଦାକାର ରୂପ ସଂଦର୍ଶନ କରିଛନ୍ତି ତାହା କାବ୍ୟ ଚେତନାରେ ନିରାଭରଣ ଭାବେ ପ୍ରକଟିତ ହୋଇଛି । ବ୍ରହ୍ମୋତ୍ରୀ ମହାନ୍ତିଙ୍କ 'ମହାନଗରୀର ରାତି' ରେ ବିବର୍ଣ୍ଣ ସଂଧ୍ୟା ପରେ ସତର୍କ ପଦପାତରେ ରାତିର ଅବତରଣ ଆନନ୍ଦର ଶିହରଣ ସୃଷ୍ଟି କରି-ପାରେ ନାହିଁ । ମହାନଗରୀର ରାତି, ବ୍ରହ୍ମୋତ୍ରୀଙ୍କ ଦୃଷ୍ଟିରେ ଏକ ଆଛତାୟୀ । କକ୍ଷ ତଳେ ତା'ର ତୀକ୍ଷ୍ଣ ଗୁପ୍ତି । କୁତ୍ସିତ ମାନସିକତାର ଅନ୍ଧକାରକୁ ଅଜସ୍ର ଆଲୋକର ବର୍ଣ୍ଣୋତ୍ସବ ମଧ୍ୟରେ ଅବଦମିତ କରି ଏ ସଭ୍ୟ, ଭବ୍ୟ ରୂପର ପ୍ରତାରଣା କରେ (୮୬)। ରେସ୍ତୋରାଁ, ପ୍ରେକ୍ଷାଳୟ ଅଥବା ରୂପଜୀବାର ରଙ୍ଗଶାଳାରେ ମହାନଗରୀର ରାତିର

ଆସର ଜମେ । ନଗରୀର ଶିରା ପ୍ରଶିରାରେ ନିଶାର ପ୍ରଭାବ ଉଦ୍‌ବେଳିତ ହୁଏ । ଆଭିଜାତ୍ୟର ପ୍ରତୀକ ଭୃଙ୍ଗ ହର୍ମ୍ୟମାଳା ମଧ୍ୟରେ ସଭ୍ୟତାର ସରୀସୃପ ମୃତ୍ୟୁ ଗରଳର ଫୁତ୍କାର ତୋଳେ ।

ସୌଭାଗ୍ୟ ମିଶ୍ରଙ୍କ ସହର କୁଟଜୀ ଓ କୁତ୍ସିତ । ଶୃଙ୍ଖଳିତ, ସୁସ୍ଥ ଜୀବନ ବିନ୍ୟାସ ସେଠାରେ ବିପର୍ଯ୍ୟସ୍ତ । ନଗର ଜୀବନ ସତେ ଅବା ମାନସିକ ବିକାରଗ୍ରସ୍ତ, ବିବ୍ରତ ତଥା ଅବଂମନସ୍କ (୮୭) । ଏହି ଅବଂମନସ୍କତାରୁ ଉଦ୍‌ଭୂତ ହୋଇଛି ଦୁଃଖ ଓ ଶୋକ । ନଗରର ବ୍ୟକ୍ତିମାନସ ମାନସିକ ବେଦନାରେ ବିଧୂର, ପୁଣି ଶାରୀରିକ ପୀଡ଼ାରେ ଯନ୍ତ୍ରଣାଗ୍ରସ୍ତ । କିନ୍ତୁ ସ୍ୱପ୍ନ ଅପ୍ରମିତ । ସମୟର ପ୍ରବାହମାନ ଧାରାରେ ଦୁଃଖ ଓ ଶୋକକୁ ନିଶ୍ଚିହ୍ନ କରି ନଗରରେ ବସବାସ କରୁଥିବା ଆଧୁନିକ ମଣିଷ ଅନ୍ଧାରର ସ୍ୱପ୍ନବିଳାସରେ ଆତ୍ମବିଭୋର ହୁଏ (୮୮) । କିନ୍ତୁ ସେ ସ୍ୱପ୍ନରେ ସୁସ୍ଥ ଜୀବନବୋଧର ସତ୍ତା ନ ଥାଏ । କାରଣ ପତଙ୍ଗ ଅଗ୍ନି ପ୍ରତି ଆକର୍ଷିତ ହେବା ଭଳି, ତାକୁ ଆକୃଷ୍ଟ କରେ 'ଜଗଦମ୍ବା ହୋଟେଲ' (୮୯) । ବୈକୁଣ୍ଠ ସମାନ ଘର ତାର ଅଭୀପ୍ସିତ ନୁହେଁ । ହୋଟେଲ ହିଁ ତା'ର ସଭ୍ୟତାର ସ୍ୱର୍ଗ ।

ବସ୍ତୁତଃ ପ୍ରୟୋଗବାଦୀ କବିତାରେ ନଗର ସଭ୍ୟତାର ସ୍ୱରୂପ ଏକାନ୍ତ ବିକଳାଙ୍ଗ, କୁତ୍ସିତ ତଥା ଭୟଙ୍କର । ବୌଦ୍ଧିକ ମନ ଓ ମନରେ ବିକାଶ ତଥା ଆର୍ଥିକ ସ୍ଥିତିର ଅଗ୍ରଗତି ସତ୍ତ୍ୱେ ଏକ ଶେଷହୀନ ନିଃସଙ୍ଗତାବୋଧରେ ନଗର ସଭ୍ୟତା ପୀଡ଼ିତ । ଏହି ପୀଡ଼ା ନଗର-ଜୀବନର ଆତ୍ମକୈନ୍ଦ୍ରିକ ଧାରାରୁ ଉଦ୍‌ଭୂତ । ପ୍ରୟୋଗବାଦୀ କାବ୍ୟ ପରମ୍ପରାରେ ଏହି ନିଃସଙ୍ଗତାବୋଧ ପ୍ରସୂତ ବିଷାଦବୋଧ, ରୋମାଣ୍ଟିକ ଭାବଚେତନାର ଉଦ୍‌ବୋଧକ ନୁହେଁ, ପକ୍ଷାନ୍ତରେ ନଗର-ସଭ୍ୟତାର ଅନୁରୂପ ପ୍ରଦର୍ଶନ ଏଠାରେ ବାସ୍ତବଧର୍ମୀ । ପ୍ରୟୋଗବାଦୀ କବିମାନସ ସବୁଜ କାବ୍ୟଚ୍ଛାଞ୍ଚାରେ କଳ୍ପଲୋକର ସ୍ୱପ୍ନରେ ଆକୁଳ ଅଧୀର ହେବା ପରିବର୍ତ୍ତେ ବାସ୍ତବ ଜୀବନ ଭୂମିର ଯଥା-ଯଥ ରୂପ ପ୍ରକଟନ କ୍ଷେତ୍ରରେ ସକ୍ରିୟ ତଥା ବେଗବାନ ।

## (ଗ)—ମିଥିକ୍ ଚରିତ୍ର ଓ ପରିବେଶର ସ୍ୱରୂପ

ପ୍ରୟୋଗବାଦୀ କବିତାରେ ମିଥିକ୍ ଚରିତ୍ର ଓ ପରିବେଶ ସାମ୍ପ୍ରତିକ ଯୁଗର ସମସ୍ୟା ସମୂହର ବାହକ । ଏହା ମାଧ୍ୟମରେ ପ୍ରୟୋଗବାଦୀ କାବ୍ୟ-ଚେତନାରେ ବର୍ତ୍ତମାନ କାଳରେ ପରିଦୃଷ୍ଟ ଓ ଜୀବନସଂଗ୍ରାମ ଅସାମର୍ଥ୍ୟ ତଥା ଯୁଦ୍ଧ ବିଭୀଷିକାଗ୍ରସ୍ତ ବିଶ୍ୱର ବେଦନାଦାୟକ ଚିତ୍ର ଉପସ୍ଥାପିତ କରାଯାଇଛି । ମିଥିକ୍ ଚରିତ୍ର ଗୁଡ଼ିକର ଜ୍ୱାଳା

ଓ ଯନ୍ତ୍ରଣା ମଧ୍ୟରେ ଆଧୁନିକ ମଣିଷର ଜ୍ୱାଳା ଓ ଯନ୍ତ୍ରଣା ପ୍ରକଟିତ ହୋଇଛି । ଏହି ପରିପ୍ରେକ୍ଷୀରେ ଓଡ଼ିଆ କବିତାରେ ମିଥିକ୍ ଚରିତ୍ର ଓ ପରିବେଶ ସମୂହର ବାସ୍ତବଧର୍ମୀ ଆଭିମୁଖ୍ୟ ସମ୍ବନ୍ଧରେ ନିମ୍ନଲିଖିତ ପର୍ଯ୍ୟାୟରେ ସୂଚନା ଦିଆଯାଉଛି ।

## ୧—ଆତ୍ମ-ଦ୍ୱନ୍ଦ୍ୱରୁ ଅନ୍ୱେଷାର ସ୍ୱରଲିପି

ଆଧୁନିକ ବ୍ୟକ୍ତିସତ୍ତାର ଅନ୍ତର୍ଲୋକ ଆତ୍ମ-ଦ୍ୱନ୍ଦ୍ୱରେ ପୀଡ଼ିତ । ତା'ର ଚେତନା ଦ୍ୱିଧାବିଭକ୍ତ । ଏହି ଦ୍ୱନ୍ଦ୍ୱ ଓ ଦ୍ୱିରୁକ୍ତି ମଧ୍ୟରୁ ଜୀବନ-ଯନ୍ତ୍ରଣାର ଅଗ୍ନିମାରମ୍ଭ । ଏଇ ପରିପ୍ରେକ୍ଷୀରେ ଗୁରୁ ପ୍ରସାଦଙ୍କ 'ଅଙ୍କୁର' (୯୦) ଜୀବନର ଜ୍ୱାଳା-ଯନ୍ତ୍ରଣା ତଥା କ୍ଳାନ୍ତିର ବଳୟରୁ ଏକଦା ମୁକ୍ତି କାମନା କରିଥିଲି । କବି ରାଉତରାୟଙ୍କ 'ସ୍ୱଗତ' (୯୧) କବିତାର ମିଥ୍ ପ୍ରୟୋଗ 'ଅଙ୍କୁର ଉବାଚ' ଅପେକ୍ଷା ଜଟିଳ । ଆଲୋଚ୍ୟ କବିତାଟିରେ ଦୁଇଟି ମିଥ୍-ପ୍ରତୀକ ପ୍ରଯୁକ୍ତ । ଜଣେ ଅର୍ଜୁନ-ମହାଭାରତର ମଧ୍ୟମ ପାଣ୍ଡବ । ଅନ୍ୟଜଣେ ଶକୁନି—କୁରୁକ୍ଷେତ୍ର ସଂଗ୍ରାମର ଖଳ ନାୟକ । ଆଧୁନିକ ଅର୍ଜୁନ ଆପାତତଃ ଜୀବନ-ସଂଗ୍ରାମରେ ପରାସ୍ତ । ଶକୁନି ତୀବ୍ର ଅନ୍ତର୍ଦ୍ୱନ୍ଦ୍ୱର ସମ୍ମୁଖୀନ । ଆଧ୍ୟାତ୍ମିକ ସତ୍ତା ପ୍ରତି ବିଶ୍ୱାସବୋଧ ଅଗଭୀର । ଆତ୍ମସତ୍ତା ପ୍ରତି ଭୟବୋଧ ବ୍ୟାପକ । ଜୀବନର ହାସ୍ୟ-ଉଜ୍ଜ୍ୱଳ ମୁହୂର୍ତ୍ତି ମଧ୍ୟ ତୀକ୍ଷ୍ଣ ଶର ଭଳି ତା ଛାତିକୁ ବିଦ୍ଧ କରେ । ଏଇ ପରିପ୍ରେକ୍ଷୀରେ ଆଶା-ନୈରାଶ୍ୟର ଧୂପ-ଛାୟା ମଧ୍ୟରେ ମିଥ୍ ପ୍ରତୀକଗୁଡ଼ିକ ସଞ୍ଚରିତ । ପ୍ରାଚୀନତା ଓ ଆଧୁନିକତା ଏକ ଯୋଗସୂତ୍ରରେ ଗ୍ରଥିତ । ସମନ୍ୱୟ ସୃଷ୍ଟି ମଧ୍ୟରେ କବିଙ୍କର ମୌଳିକତା ଉଲ୍ଲେଖଯୋଗ୍ୟ । ଦୁଃଖ ଓ ବେଦନା—ବ୍ୟକ୍ତି ଜୀବନର ଏକ ଅନିବାର୍ଯ୍ୟ ସତ୍ୟ । ସଂସାର ପାରିବାର ମଧ୍ୟରେ ସ୍ୱକୀୟ ଚେତନା ସହ ତା'ର ସଂଘାତ-ସଂଘର୍ଷ ବଡ଼ ଯନ୍ତ୍ରଣା ଦାୟକ । କିନ୍ତୁ ନବ-ଅନ୍ୱେଷାର ସ୍ୱରଲିପି ଅନାହତ । ଏଣୁ ଜୀବନର ଦଗ୍ଧୀଭୂତ ପ୍ରାନ୍ତରରେ ସବୁଜିମାର ଅଙ୍କୁରୋଦ୍‌ଗମ ପାଇଁ ସେ ପ୍ରତୀକ୍ଷମାଣ । ନୂତନ ଜୀବନର ଶୁଭ ବିନ୍ୟାସ ପାଇଁ ଆଶା ଓ ବିଶ୍ୱାସ ତନ୍ତ୍ରୀରେ ବିପୁଳ—

"ବିଦଗ୍ଧ ପ୍ରାନ୍ତରେ ବସି ପୋଡ଼ା ମାଟି, ସିଝା ବଲେ,
ଜଳା ଘାସେ କିଆଁ—
ବୁଣିବାର ସ୍ୱପ୍ନ ଦେଖେ ନୂଆ ବିହନର
କେବେ ପୁଣି ସେ ଅଭିଜ୍ଞତାସ୍ତା (୯୨) ?

ନୂତନ ମୂଲ୍ୟବୋଧରେ ଦୀପ୍ତିମନ୍ତ ହେବାର ଏହି ବିଶ୍ୱାସବୋଧ ବିଷାଦବାଦୀ କାବ୍ୟ-ନାୟକଙ୍କୁ ବାସ୍ତବ ଜୀବନବୋଧରେ ଅଭିଷିକ୍ତ କରିଛି ।

## ୨—କାଳପୁରୁଷର ଅଶୁଭ ସଂକ୍ରମଣ

'କାଳପୁରୁଷ' ଲୋକ-ମିଥ୍ ଉପରେ ଆଧାରିତ । ଲୋକ ପରମ୍ପରାରେ ସେ ଅଶୁଭ ତଥା ଅକଲ୍ୟାଣର ପ୍ରତୀକ । ଆଲୋଚ୍ୟ କବିତାରେ ନାୟକର ଚେତନାରେ କାଳପୁରୁଷର ଅଶୁଭ ସତ୍ତାର ସଂକ୍ରମଣ ଘଟିଛି । ତାର ସୂଚନା ପୂର୍ବଲବ୍ଧ । ନାୟକର କୋଷ୍ଠୀରେ ଅଶୁଭ ଗ୍ରହସମୂହର ଚଳନ ସମୟରେ ଏକ ଲଞ୍ଛାଚାରୀ ଆବିର୍ଭୂତ । ଏଣୁ ଜ୍ୟୋତିଷୀଙ୍କର ସତର୍କବାଣୀ—ଉପରୋକ୍ତ ଗ୍ରହ ଚଳନ ସମୟରେ ପଶ୍ଚିମ ଦିଗରୁ ଯେଉଁ ନାରୀ, ଅର୍ଦ୍ଧନାରୀ କିମ୍ବା ଖଞ୍ଜ, ବିକୃତ ପୁରୁଷ ଆଗତ ହେବ. ଯାହାର ବାମ ଅଙ୍ଗ ପଙ୍ଗୁ ଏବଂ ବର୍ଣ୍ଣ ଈଷତ୍ ପିଙ୍ଗଳ ହୋଇଥିବ ତାର ସାନ୍ନିଧ୍ୟ ଅବଶ୍ୟ ପରିତ୍ୟାଜ୍ୟ, ନଚେତ୍ ଚକ୍ଷୁହାନି, ଅଙ୍ଗହାନି ଏବଂ ଆୟୁହାନି ଘଟିବ (୯୩) ।

ସାମ୍ପ୍ରତିକ କାଳରେ, ମୂଲ୍ୟବୋଧବିହୀନ ମଣିଷର ଚେତନାରେ ସଂକ୍ରମିତ ହୋଇଛି ଏହି କାଳପୁରୁଷ ଭଳି ଅଶୁଭଚିନ୍ତା । ନାରୀ-ପୁରୁଷର ପାରସ୍ପରିକ ସଂସର୍ଗ ଏଠାରେ ପାଶବିକ କାମନାସିକ୍ତ । ଏହି ହେତୁ ନାୟକର ଚେତନା ପକ୍ଷାଘାତଗ୍ରସ୍ତ । ସୁତରାଂ ନାୟିକାକୁ ସେ 'ଭଲ ପାଏ, ଭଲ ପାଏ, ସତେ ଭଲ ପାଏ' କହିବାବେଳେ ତା'ର କାନରେ ହାଡ଼ର, ମାଂସର ଅହେତୁକ ସ୍ପନ୍ଦନ ସୃଷ୍ଟି ହୋଇଛି । ହାଡ଼ ଓ ମାଂସର ସ୍ପନ୍ଦନ ଜୈବିକ କାମନାର ପ୍ରତୀକ । ଏହାର ପ୍ରତିକ୍ରିୟା ସ୍ୱରୂପ ସେ ଦେଖିଛି—ତାର ବାମ ଅଙ୍ଗ ପଙ୍ଗୁ ଓ ରଙ୍ଗ ସେଇ କାଳ ପୁରୁଷ ପରି ଈଷତ୍ ପିଙ୍ଗଳ ବର୍ଣ୍ଣରେ ପରିଣତ ହୋଇଛି—

"ମୁଁ ଶୁଣିଲି କାନରେ ମୋ ହାଡ଼ ଆଉ ମାଂସର ସ୍ପନ୍ଦନ
ମୁଁ ଦେଖିଲି ବାମ ଅଙ୍ଗ ପଙ୍ଗୁ ମୋର ବର୍ଣ୍ଣ ମୋର ଈଷତ୍ ପିଙ୍ଗଳ (୯୪)

ହାଡ଼ ଆଉ ମାଂସର ସ୍ପନ୍ଦନ ଏଠାରେ ଏକ ଦେହଧର୍ମୀ ଚେତନାର ଦ୍ୟୋତକ ବୋଲି ପୂର୍ବରୁ ଉଲ୍ଲେଖ କରାଯାଇଛି ।

ସାଂପ୍ରତିକ ବ୍ୟକ୍ତିସତ୍ତାର ପ୍ରତିଭୂ ଏଇ ଆଧୁନିକ ମଣିଷ ତୀବ୍ର ଆଧ୍ୟାତ୍ମିକସଙ୍କଟର ସମ୍ମୁଖୀନ । ପୁରାଣ ପରମ୍ପରାରେ ପରୀକ୍ଷିତଙ୍କର ଜୀବନ, ଗୋଟିଏ ପାପରେ ଦୋଷଯୁକ୍ତ—ଧ୍ୟାନରତ ମୌନ ଋଷିଙ୍କ ଗଳାରେ ସେ ଲମ୍ବାଇ ଦେଇଥିଲେ ଏକ ମୃତସର୍ପ । କିନ୍ତୁ ଆଧୁନିକ ପରୀକ୍ଷିତର ପାପ ବହୁଧା ବିସ୍ତୃତ । ତକ୍ଷକର ଦଂଶନରେ ପୁରାଣବର୍ଣ୍ଣିତ ପରୀକ୍ଷିତଙ୍କ ପାପର ପ୍ରାୟଶ୍ଚିତ ସଂଘଟିତ । ଆଧୁନିକ ପରୀକ୍ଷିତର ପାପ ଅକ୍ଷମଣୀୟ । ସେ ତା'ର ପିତୃ ପରମ୍ପରାର ଘାତକ । ତାର ସ୍ଥିତି କଟକ ବା ଓଡ଼ିଶାରେ ସୀମାବଦ୍ଧ ନୁହେଁ, ରୋମ, ବେବିଲୋନ ତଥା ମିଶରୀୟ ପ୍ରେତାତ୍ମାର ସ୍ଥିତି ସହ ସେ ସମନ୍ୱିତ—

"ମୁଁ ଆଜ ତଥାପି ଗୃହେ ପିତୃହନ୍ତା ଆତ୍ମାମୋର
ପ୍ରେମ ଆଉ ବେବିଲୋନ ମିଶରର ପ୍ରେତାତ୍ମା ସହିତ......
ଅନ୍ଧାର ଯଦି ବା ଆସେ ଘେରି ରେଖା ଆକାର ପ୍ରକାର
ମାଂସଲୋଭୀ ଭଦ୍ରଲୋକ ଧଳା ଧୋତି ପଞ୍ଜାବୀ ଓ ଧଳାଟୋପି ଧଳାକାର ।
ମୋ ଦେହରେ ଦାନ୍ତ, ନଖ ଶତ ଶତ ଚଞ୍ଚୁର ଆଘାତ (୧୫) ।"

ଜୀବନ୍ତ ମଣିଷ ସହି ପ୍ରେତାତ୍ମାର ତୁଳନା ମଧ୍ୟରେ ଆତ୍ମିକ ଚେତନାର ଅପମୃତ୍ୟୁ ଧ୍ୱନ୍ୟାତ୍ମକ ଭାବରେ ସୂଚିତ । ସେ ଧଳା ଧୋତି, ଧଳା ପଞ୍ଜାବୀ ତଥା ଧଳା ଟୋପି ପରିହିତ କଳିଯୁଗର ମୂର୍ତ୍ତିମାନ ପ୍ରତୀକ । ଶୁଭ୍ର ଆଚ୍ଛାଦନର ଅନ୍ତରାଳରେ ମଣିଷର ଅନ୍ଧକାରମୟ ପ୍ରବୃତ୍ତି-ସକଳର ସେ ମୂର୍ତ୍ତିମାନ ବିଗ୍ରହ । ତା' ଦେହରେ ପାପର ପରିଣାମ ସ୍ୱରୂପ ଅଙ୍କିତ ହୋଇଛି ଦାନ୍ତ; ନଖ ଓ ଶତ ଶତ ଚଞ୍ଚୁର ଆଘାତ । ତା'ର ଦୃଷ୍ଟିଭଙ୍ଗୀ ସୀମିତ ଓ ବିବର୍ଣ୍ଣ ।

'ଶ୍ରୀମଦ୍ ଭାଗବତ'ର ଅକ୍ରୂର ଓ ଉଦ୍ଧବଙ୍କ ଭଳି ଏହି ଆଧୁନିକ ନାୟକର ପିଠିରେ ରହିଛି ଏକ ଭାର । କଂସ ନଗର ଅକ୍ରୂର ପିଠିରେ ଥିଲା କୃଷ୍ଣ-ଦର୍ଶନ ଆକାଙ୍କ୍ଷାଜନିତ ଆଶା-ଆଶଙ୍କାର ଭାର । କୃଷ୍ଣ ନଗର ଉଦ୍ଧବ ବୋହିଥିଲେ ଜ୍ଞାନର ଭାର । ଆଧୁନିକ ବ୍ୟକ୍ତିସତ୍ତା ବହନ କରିଛି ରୋଗ, ଶୋକ ଓ ଯନ୍ତ୍ରଣାର ଭାର । ସେଥିପାଇଁ ସେ ନିର୍ମୂଳ ନଷ୍ଟାଭଳି ତା'ର ଉଦ୍‌ବାସ୍ତୁ ଜୀବନରେ ଅରୁନ୍ଧତୀ ତାରାର ଅନ୍ୱେଷଣ ରତ—

"ହେ ଅକ୍ରୂର ହେ ଉଦ୍ଧବ ସଖାମୋର ପ୍ରାଣର ଦୋସର
ରୁହ ରୁହ ଛାଡ଼ ରୁହ ପିଠିରେ ମୋ ଭୂମି ପରି ବୋଝ
ମୁଁ ଯିବି ଭ୍ରମର ପରି ତାରା ଖୋଜି ଜହ୍ନ ଖୋଜି ଖୋଜି ଖୋଜି ଝରଣାର ସୁଅ
ମୁଁ ଯିବି ଭ୍ରମର ପରି ଖୋଜି ମୋର ପିତା ମାତା ନିର୍ମୂଳ ନଷ୍ଟାରେ ଖୋଜି
ଅରୁନ୍ଧତୀ ତାରାର ଆଲୁଅ (୧୬) ।"

କାଳପୁରୁଷ ସାଂପ୍ରତିକ ଯୁଗଚେତନାର ଏକ ବିଶ୍ୱସ୍ତ ସାକ୍ଷ୍ୟ । ଓଡ଼ିଶାର ଲୋକମିଥ୍ ସହି ଶ୍ରୀମଦ୍-ଭାଗବତର ମିଥ୍ ସମ୍ପୃକ୍ତିକୁ କବି ଯୁଗ ଓ ଜୀବନର ଅବକ୍ଷୟ, ଯନ୍ତ୍ରଣା ତଥା ତହିଁରୁ ଉତ୍ତରଣ ପ୍ରୟାସର ଅଭିବ୍ୟକ୍ତି ପାଇଁ କାବ୍ୟିକ ଭାବରେ ପ୍ରୟୋଗ କରିଛନ୍ତି ।

### ଗ—ସାଧନା ଓ ସିଦ୍ଧି

ବାସ୍ତବ ଜୀବନ ଓ ବିଶ୍ୱ ସଂଗ୍ରାମ-ସଂଘର୍ଷର ଏକ କ୍ୟାନ୍‌ଭାସ୍ । ସଂଗ୍ରାମ ଜୀବନର ଏକ ଅନିବାର୍ଯ୍ୟ ସତ୍ୟ । ଏହା ସର୍ବଥା ଓ ସର୍ବଦା ଆତ୍ମକୈନ୍ଦ୍ରିକ ନୁହେଁ,

ପକ୍ଷାନ୍ତରେ ସମଗ୍ର ମାନବ-ସଭ୍ୟତାର ସ୍ଥିତି ଓ ସଂହତି ଲକ୍ଷ୍ୟରେ ମଧ୍ୟ ଏହା ଅଭିପ୍ରେତ । ରମାକାନ୍ତ ରଥଙ୍କ 'ଗରୁଡ଼' କବିତାରେ ଏହି ଚେତନା ଉଦ୍‌ଘାଟିତ —

"ଏକା ହୋଇ ସେ ହାଣୁଚି ଦଳ ଦଳ ବିଶ୍ୱାସ-ଘାତକ
ଆମପରି କେତେ ଯାରୁ ନିରାପଦେ ହେବାକୁ ଜୀବିତ,
ସଂଗ୍ରାମ ଯେ ତାହାଲାଗି ବିଜୟର ଚରମ ମୁକୁଟ (୯୭)। "

ଛଳନା ଓ ପ୍ରତାରଣାପୁଷ୍ଟ ସାଂପ୍ରତିକ ସମାଜ ବିରୋଧରେ ଏହି ଦିକ୍‌ଭ୍ରଷ୍ଟ ବିହଙ୍ଗ ସଂଗ୍ରାମରତ । ତା'ର ଅରାତି ଅଗଣିତ । ସଂଖ୍ୟାହୀନ ଗରଳ ପିଆଲା ଅଧର ସ୍ପର୍ଶ କରିବା ପାଇଁ ଉନ୍ମୁଖ । ପରିପାର୍ଶ୍ୱରେ ନାଗକନ୍ୟାର ଆମନ୍ତ୍ରଣ । ଏହି ଆମନ୍ତ୍ରଣ ମଧ୍ୟରେ ସଂଗ୍ରାମୀ ନାୟକଙ୍କୁ ଲକ୍ଷ୍ୟଚ୍ୟୁତ କରିବାର ହୀନ ଚକ୍ରାନ୍ତ ଅନ୍ତର୍ନିହିତ । ଜୀବନର ଏହି ପ୍ରତିକୂଳ ପରିବେଶ ମଧ୍ୟରେ ରମାକାନ୍ତଙ୍କ କାବ୍ୟ-ନାୟକର ଜୀବନ-ସ୍ରୋତ ପ୍ରବାହିତ । ସିଦ୍ଧି ପୂର୍ବରୁ ମୃତ୍ୟୁର କ୍ରୂର ଦେହଳୀ ମଧ୍ୟରେ ସେ ସ୍ରୋତ ଅବରୁଦ୍ଧ । ପରାଜୟ ସୁନିଶ୍ଚିତ ହେଲେ ମଧ୍ୟ ସମାଜରେ ସଂଗ୍ରାମନିଷ୍ଠା ସଂପର୍କିତ ସତ୍ୟର ସ୍ଥାପନା ତା'ର ଧ୍ୟେୟ—

"ନିଜର ଜୀବନ ଦେଇ କିଣିବ ସେ କିଛି ହେଲେ ସତ,
ସେତିକି, ସେତିକି ମାତ୍ର, ତାହା ଛଡ଼ା କିଛି ସେ ମାଗେନି (୯୮) ।"

ଏହି ସତ୍ୟର ପ୍ରତିଷ୍ଠା ପାଇଁ ତା'ର ସଂଗ୍ରାମ ଅଭିପ୍ରେତ । ଏହାହିଁ ତା'ର ସାଧନାର ସିଦ୍ଧି ।

## ୪—ସ୍ୱାଭିମାନୀ ବ୍ୟକ୍ତିସତ୍ତାର ଅନ୍ତଃରୂପ

ସ୍ୱାଭିମାନବୋଧ ବ୍ୟକ୍ତିଚେତନାର ଏକ ସ୍ୱୀକୃତ ସତ୍ୟ । ନୀତି, ଅନୀତି ନିର୍ବିଶେଷରେ ସ୍ୱକୀୟ ଅହଂବୋଧକୁ ସାବ୍ୟସ୍ତ କରିବା ପାଇଁ ସେ ବ୍ୟଗ୍ର । ଧର୍ମାଧର୍ମ ବିବେଚନାର ଊର୍ଦ୍ଧ୍ୱରେ ତା'ର ସ୍ୱାଭିମାନବୋଧ ସତତ କ୍ରିୟାଶୀଳ । ବ୍ୟକ୍ତିସତ୍ତାର ଏହି ଅନ୍ତଃରୂପ ପ୍ରକଟନ ପାଇଁ ସୀତାକାନ୍ତ ମହାପାତ୍ର ପୁରାଣ ପରମ୍ପରାରୁ ଚରିତ୍ରଟିଏ ଅନୁସନ୍ଧାନ କରିଛନ୍ତି । ଭାରତୀୟ ପୁରାଣର ବିଶାଳ ଗନ୍ଥାଗାର ଭିତରୁ ଉପାଦାନ ଆହରଣ କରିବା ଦୁଷ୍କର ହୋଇନାହିଁ । 'ମହାଭାରତ'ର ଦୁର୍ଯ୍ୟୋଧନ ଚରିତ୍ର ମଧ୍ୟରେ ଏହି ସ୍ୱାଭିମାନୀ ବ୍ୟକ୍ତିସତ୍ତାର ଅନ୍ତଃରୂପ ଅଭିବ୍ୟକ୍ତ ହୋଇଛି (୯୯) ।

ମହାଭାରତର ଦୁର୍ଯ୍ୟୋଧନ ବହୁ ଦୁଷ୍କର୍ମର ସୂତ୍ରଧର । କପଟପାଶା ରଚନା, ଜତୁଗୃହ ନିର୍ମାଣ, ପାଣ୍ଡବ-ବଧୂ ଦ୍ରୌପଦୀଙ୍କୁ ରାଜସଭାରେ ଅପଦସ୍ଥ କରିବାର ପ୍ରବଣତା—ଏ ସମସ୍ତ ତାଙ୍କ ଅପକର୍ମର ଜ୍ୱଳନ୍ତ ନିଦର୍ଶନ । ଏଭଳିକି ହସ୍ତିନାନଗରପତି

ଦୁର୍ଯ୍ୟୋଧନ, ପାଣ୍ଡବ ପଞ୍ଚଭ୍ରାତାଙ୍କୁ ପାଞ୍ଚଖଣ୍ଡ ଗ୍ରାମ ଦେବାପାଇଁ ବିମୁଖ । ପୁରାଣ ପରମ୍ପରାରେ ଗର୍ବୋଦ୍ଧତ ମାନବ ପ୍ରାଣର ପ୍ରତୀକ ଭାବରେ ଏହି ଚରିତ୍ରଟିର ବିକଳ୍ପ ନାହିଁ ।

କିନ୍ତୁ ଦୁର୍ଯ୍ୟୋଧନ ମଣିଷ-ରକ୍ତମାଂସର ମଣିଷ, ସେ କୌଣସି ଦେବତା ଅଥବା ଉପଦେବତା ନୁହନ୍ତି । ତାଙ୍କର ପ୍ରୀତି-କାଙ୍ଗାଳ ମନ, ମାତାର ସ୍ନେହ ସଜଳ ହୃଦୟସ୍ପନ୍ଦନର ଉପଲବ୍ଧି ପାଇଁ ଆକୁଳ, ଅନ୍ୟ ପକ୍ଷରେ ଗାନ୍ଧାରୀ, ଦୁର୍ଯ୍ୟୋଧନଙ୍କ ଭଳି ବାସ୍ତବଧର୍ମୀ ନୁହନ୍ତି, ସେ ଆଦର୍ଶବାଦୀନୀ । ଏଣୁ 'ଯାଅ ପୁତ୍ରୀ ସମର ପ୍ରାଙ୍ଗଣେ ଜୟୀ ହୁଅ ବୋଲି ଉଚ୍ଚାରଣ କରିପାରି ନାହାନ୍ତି । ସତ୍ୟ,ଧର୍ମ ଭଳି ଶାଶ୍ଵତ ମୂଲ୍ୟବୋଧ, ପୁତ୍ରସ୍ନେହ ଅପେକ୍ଷା ଶ୍ରେୟସ୍କର ହୋଇଛି ।

ସୀତାକାନ୍ତଙ୍କ ଦୁର୍ଯ୍ୟୋଧନ ପୌରାଣିକ ପରମ୍ପରାର ପ୍ରଲମ୍ବନ ନୁହନ୍ତି । ଏହି ପୌରାଣିକ ଚରିତ୍ରଟି, ସାଂପ୍ରତିକ ତଥା ସର୍ବକାଳୀନ ସମସ୍ୟାଚେତନା ସହ ସଂଯୁକ୍ତ । ଏହି କାଳର ଏକ ଅବୁଝା ଶିଶୁ ରୂପରେ କବି ତାଙ୍କୁ ଉପସ୍ଥିତ କରିଛନ୍ତି, ଖେଳଣାଟିଏ ନ ପାଇବାର ଯନ୍ତ୍ରଣା ଯାହାମଧ୍ୟରେ ପ୍ରବଳ, ଅଥଚ ବାସ୍ତବତଃ ଦୁର୍ଯ୍ୟୋଧନ ଶ୍ରେଷ୍ଠ ଶିଶୁ ନୁହନ୍ତି ଶ୍ରେଷ୍ଠ । ଶିଶୁଟିଏ ହୋଇଥିଲେ ଅବା ଉଚ୍ଚ କଣ୍ଠରେ ସେ ରୋଦନ କରିପାରି-ଥାନ୍ତେ । ଅନ୍ତର୍ନିହିତ ଦୁଃଖ ଅବାରିତ ଭାବରେ ପ୍ରକାଶିତ ହୋଇଥାନ୍ତା । କିନ୍ତୁ ଉଦ୍‌ଗତ କୋହର ଅବଦମନରେ ଯେଉଁ ମର୍ମଦାହୀ ଯନ୍ତ୍ରଣା, ତାହା ଅନୁଭବୀ ମାନେହିଁ ହୃଦୟଙ୍ଗମ କରିବେ । ଆମ ସମାଜର ଦୁର୍ଯ୍ୟୋଧନ ଏହି ଭଳି ଅସହାୟ ବେଦନାବିଦଗ୍ଧ । ଅନ୍ତରରେ ତାଙ୍କର ଅହଂବୋଧ ଓ ପ୍ରୀତି ପ୍ରବଣତାର କୋଳାକୋଳି ଭାବ । ଶେଷ ପର୍ଯ୍ୟନ୍ତ ସ୍ୱାଭିମାନ ଅବିସର୍ଜିତ । ହୁକ୍ଷାୟ ସ୍ୱାଭିମାନ ଦୃପ୍ତ ଚେତନା ଭିତରେ ଜୀବନର ଶେଷ ଶିଖା ନିର୍ବାପିତ ।

## ୫—ଯୁଦ୍ଧ ବିଭୀଷିକାଗ୍ରସ୍ତ ବିଶ୍ୱରେ ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା

ସୀତାକାନ୍ତ ମହାପାତ୍ରଙ୍କ 'ଅଷ୍ଟପଦୀ ଓ ଦୃଶ୍ୟ'ର 'ଯୁଧିଷ୍ଠିର' କବିତାରେ ଯୁଦ୍ଧ ବିଭୀଷିକାଗ୍ରସ୍ତ ବିଶ୍ୱର ପ୍ରତିକୂଳ ସ୍ଥିତି କେତେକ ମିଥ୍‌ଧର୍ମୀ ପରିବେଶ ମାଧ୍ୟମରେ ସୂଚିତ ।

କବିତାଟିର ମୂଳ ଉତ୍ସ ପାଶ୍ଚାତ୍ୟ ପରମ୍ପରାରୁ ଆହୃତ । ପୋଲାଣ୍ଡ ଭାଷାର ଚଳଚ୍ଚିତ୍ର 'କାନାଲ' (ଯୁଦ୍ଧ)ର ଏହା ଏକ ପ୍ରତିଚ୍ଛବି । ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ପୋଲାଣ୍ଡର ରାଜଧାନୀ ଓ୍ୱାର୍ସ ଉପରେ ଜର୍ମାନ ଆକ୍ରମଣ ବିରୁଦ୍ଧରେ ଏହା ଏକ କାବ୍ୟିକ ପ୍ରତିବାଦ ।

କବିତାର ପୃଷ୍ଠପଟ୍ଟ ଏହିଭଳି—ଏକ ସିଉରେଜ ନଳୀ ଭିତରେ ଓ୍ୱାର୍ସର ପାଞ୍ଚଜଣ ପଳାତକ ଆଶ୍ରିତ । ଜୀବନ-ଧାରଣ ପାଇଁ ପିପାସା ଦୁର୍ନିବାର, ଅଥଚ ସିଢ଼ିରେଜରୁ ବାହାରିବା ମାତ୍ରେ ଦୁଇଜଣ ପଳାତକ ହୋଇଛନ୍ତି ଗୁଳିର ଶିକାର । ପଞ୍ଚମ ପଳାତକ ହେଉଛନ୍ତି ଜଣେ ସଙ୍ଗୀତ ଶିଳ୍ପୀ । ତାଙ୍କର ପିଆନୋ ଯୁଦ୍ଧବିକ୍ଷତ ଓ୍ୱାର୍ସ ସହରର ଭଗ୍ନାବଶେଷ ତଳେ ଧ୍ୱସ୍ତ ବିଧ୍ୱସ୍ତ—

"ତମ ପିଆନୋ ତ ଭଙ୍ଗାହୋଇ ପଡ଼ିଛି
ବିଧ୍ୱସ୍ତ ସହରର ସେଇ କୋଠାର
ଧ୍ୱଂସ ସ୍ତୂପ ତଳେ।
ପ୍ରାଣ ବିକଳରେ ଯାହାକୁ ଆମେ ଗୁଡ଼ି ଆସିଲେ
ଯନ୍ତ୍ରାକ୍ରାନ୍ତ ଫୁସ୍ ଫୁସ୍ ପରି ଯିଏ ଭାଙ୍ଗିଗଲା
ଚୂନା ହେଲା ଧୂଆଁ ଓ ଧୂଳିରେ (୧୦୧)"

ଜୀବନ ମୈତ୍ରୀହୀନ । ସୁକୁମାର ମୂଲ୍ୟବୋଧ ସମୂହ ବିନଷ୍ଟ । କ୍ଷୟରୋଗ ଆଚ୍ଛନ୍ନ କରିଛି ସମାଜ, ସଂସ୍କୃତି ଓ ରାଜନୀତିର ଅନ୍ତରାତ୍ମାକୁ । ତଥାକଥିତ ପ୍ରଗତି ଏଠାରେ ପଶ୍ଚାଦ୍‌ଗତିର ନାମାନ୍ତର । ବିକାଶ ନାମରେ ବିନାଶ ଏହି ସଭ୍ୟତାର ଭବିତବ୍ୟ । ଆଲୋକ ସୃତଃ ଅବରୁଦ୍ଧ । ସୂଚିଭେଦ୍ୟ ଅନ୍ଧକାର ସ୍ୱୟଂ ଆମନ୍ତ୍ରିତ—

"ଏ ସିଉରେଜ ନଳୀ ଭିତରେ/ଆମେ ଯାଉଛୁ ଆଗକୁ
(ଆଗକୁ ନହେଲେ ତ ନିଶ୍ଚୟ ପଛକୁ)

× × ×

ଆଲୁଅକୁ ନିର୍ବୁଜ କରି/ବନ୍ଦ କରିଚୁ ଆମେ/ଆମ ଜୀବନରୁ (୧୦୨)"

ସିଉରେଜ ଏଠାରେ ସାଂପ୍ରତିକ ଜୀବନବୋଧର ପ୍ରତିଭୂ । ତାହା ଏକ ପୂତିଗନ୍ଧମୟ ନର୍କ । ଭାରସାମ୍ୟ ମିଥ ମାଧ୍ୟମରେ ତହିଁରୁ ପରିତ୍ରାଣର ଉପାୟ ଏଠାରେ ସୂଚିତ ।

ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ ଶେଷ ହୋଇଛି । ମହାଭାରତର ଉଦ୍‌ଯାପନ ପର୍ବ । ଶ୍ରୀକୃଷ୍ଣଙ୍କ ବଂଶୀସ୍ୱନ ନୀରବ । ଜାଗର ନାଗର ମୂଳରେ ତାଙ୍କର ଜୀବନ ଦୀପ ନିର୍ବାପିତ । ଏଣୁ ଯୁଧିଷ୍ଠିର ହିଁ ଜୀବନର ନରକାଭିସାରରୁ ମାନବଙ୍କୁ ମୁକ୍ତି ଦାନ କରିପାରିବେ, ଅଭିପ୍ସିତ ସ୍ୱର୍ଗର ସନ୍ଧାନ ଦେବେ ।

ଓ୍ୱାର୍ସର ପାଞ୍ଚଜଣ ପଳାତକ ଏଠାରେ ପଞ୍ଚପାଣ୍ଡବ ରୂପରେ ପରିକଳ୍ପିତ । ଜୀବନ-ଯାତ୍ରାରେ ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ ପରାସ୍ତ । ସ୍ୱଶରୀରେ ସ୍ୱର୍ଗ ଦର୍ଶନ

ସେମାନଙ୍କ ପକ୍ଷେ ଅସମ୍ଭବ । ଏକ ମାତ୍ର ଯୁଧିଷ୍ଠିର ହିଁ ସବଦ୍ରଷ୍ଟା । ସ୍ୱର୍ଗ ଏଠାରେ ପୁରାଣ କଳ୍ପିତ ଅଲୌକିକ ସ୍ଥାନ ବିଶେଷ ନୁହେଁ । ଏହା ଯୁଦ୍ଧ ସଂଘାତ ମୁକ୍ତ ବାସ୍ତବ ବିଶ୍ୱର ପ୍ରତିରୂପ । ବିଚ୍ଛିନ୍ନତାବୋଧ ଊର୍ଦ୍ଧ୍ୱରେ ଶାନ୍ତି ଓ ସଂହତିର ପ୍ରଖ୍ୟାପକ—

"ତା ହେଲେ ତୁମେ ଯୁଧିଷ୍ଠିର/ (ଆମ ଏ ଯୁଗର) / ପହଞ୍ଚିବ ସଶରୀରେ/ ନୂତନ ଏ ସରଗ ଦୁଆରେ/ ବିଖଣ୍ଡିତ ଚେତନା ଓ/ ଛିନ୍ନ ଭିନ୍ନ ସମସ୍ତ ସେ ପାରେ (୧୦୩) ।

ରାଜନୈତିକ ଅଧୋଗତି, ସାଂସ୍କୃତିକ ବିପର୍ଯ୍ୟୟ ତଥା ଯୁଦ୍ଧ ବିଦ୍ୱେଷର କୁତ୍ସିତ ବିଭୀଷିକା ବିରୋଧରେ ସଂଗ୍ରାମ ପାଇଁ ବାର୍ତ୍ତା ଏଠାରେ ସଂପ୍ରେରିତ । ଯୁଦ୍ଧବିକ୍ଷତ ପୋଡ଼ା ଭୂଇଁରେ ଶାନ୍ତିର ବାର୍ତ୍ତା ଆନୟନ କରିବାର ସ୍ପର୍ଦ୍ଧା ଓ ସ୍ୱାଭିମାନ ଯିଏ ପ୍ରକାଶ କରିପାରେ ସେ ହିଁ କବିଙ୍କ ଭାଷାରେ ମାନବିକତାବୋଧର ସ୍ଥିତପ୍ରଜ୍ଞ ଯୁଧିଷ୍ଠିର ।

## ୭—କଂସଙ୍ଗତାର ଆବର୍ତ୍ତରେ ଆତ୍ମଘାତୀ ଯଦୁବଂଶ

ସାମ୍ପ୍ରତିକ ଯୁଗର ଆତ୍ମଘାତୀ ସ୍ୱରୂପର ପ୍ରଦର୍ଶନ ପାଇଁ 'ମୃତ୍ୟୁ ନାଚ' (୧୦୪) ଓ 'ପ୍ରଜନନ୍ଦଦ୍ୱିର ଉପକଥା' (୧୦୫) କବିତା ଦୁଇଟିରେ ଯଦୁବଂଶ ଧ୍ୱଂସ ମିଥ୍‌କୁ ପ୍ରୟୋଗ କରାଯାଇଛି । ମିଥ୍‌ର ମୂଳ କଥାଟି ଏହି ପରି—ଯାଦବ ଯୁବକଗଣ ଶ୍ରୀକୃଷ୍ଣଙ୍କ ପୁଅ ଶାମ୍ବଙ୍କୁ ଅନ୍ତଃସତ୍ତ୍ୱା ନାରୀ ବେଶରେ ସଜାଇଦେଲେ । ବସ୍ତ୍ର ଅନ୍ତରାଳରେ ଲୁଚାଇଦେଲେ ଏକ ଲୌହ ମୂଷଳ । ନାରୀବେଶୀ ଶାମ୍ବଙ୍କ ଗର୍ଭରୁ ପୁତ୍ର ବା କନ୍ୟା ଜାତ ହେବ ବୋଲି ଋଷିଙ୍କୁ ଛଳରେ ପ୍ରଶ୍ନକଲେ । ଋଷି ଥିଲେ ତ୍ରିକାଳଜ୍ଞ । ଯଦୁବଂଶୀ ଯୁବକ-ମାନଙ୍କର ଏ ପରିହାସ ତାଙ୍କର ଅସହ୍ୟ ହେଲା । ଏଣୁ ସେ ଅଭିଶାପ ଦେଲେ ଶାମ୍ବ ଗର୍ଭଜାତ ଲୌହ ମୂଷଳ ଯଦୁବଂଶ ନାଶର କାରଣ ହେବ । 'ଶ୍ରୀମଦ୍ ଭାଗବତ'ର 'ଏରକାର ବନ', ସେହି ଲୌହ ମୂଷଳର ଘର୍ଷଣ ବିକୀର୍ଣ୍ଣ କଣିକା ସମୂହରୁ ଉଦ୍ଭୂତ ବନ-ବୀଥିକା । ମଦିରାପ୍ରମତ୍ତ ଯାଦବଗଣ ଏହି 'ଏରକାର ବନ'ରେ ପରସ୍ପର ମଧ୍ୟରେ ଯୁଦ୍ଧବ୍ୟାପୃତ ହୋଇ ମୃତ୍ୟୁବରଣ କରିଥିଲେ । ପରିହାସ ହୋଇଥିଲା ବିନାଶର ପୃଷ୍ଠପଟ୍ଟ ।

ସାମ୍ପ୍ରତିକ ମାନବ-ଜାତି ତୀବ୍ର ମାରଣାସ୍ତ୍ର ପ୍ରତିଯୋଗିତା ମଧ୍ୟରେ ସ୍ୱୟଂ ସୃଷ୍ଟ ସଭ୍ୟତାର ସଂହାର ପାଇଁ ସମୁପସ୍ଥିତ । କାଳର ଏହି ଭସ୍ମାସୁର ବୃତ୍ତି ଏକ ଆତ୍ମଘାତୀ ମନୋଭାବ । ତା'ର ଜୀବନ ପରିଧି ରୁକ୍ଷ ଓ କର୍କଶ । ମନର ଆକାଶ ମେଘ ହୀନ । ଚିତ୍ତ ଓ ମାନସ-ସର ଜଳଶୂନ୍ୟ । ଜୀବନ-ରଙ୍ଗଶାଳାରେ ସେ ଏକ ଆହତ କଳାକାର । କିନ୍ତୁ କି ବର୍ଣ୍ଣିଳ ଥିଲା ଶୈଶବ ! ଗୋବରଲିପା କାନ୍ଥରେ ସୂର୍ଯ୍ୟର ଶେଷସ୍ୱାକ ଦ୍ୟୁତିର

ପ୍ରତିଫଳନ କେଡ଼େ ମନୋହର ଥିଲା ! ଆଜି ଆଖିରେ ସେଇ ସୂର୍ଯ୍ୟର ପ୍ରତିଫଳନ ଏକାନ୍ତ ବିକୃତ । ଆଧୁନିକ ମାନବ ଆଜି ଅଭିଶପ୍ତ ଯଦୁବଂଶୀ । ବିନାଶ ତା'ର ଆତ୍ମକୃତ ପାପର ପରିଣତି । ଏଇ ପୃଥିବୀ ହିଁ ତା'ର 'ଏରକାର ବନ' ।

'ସ୍ତନନ୍ଧୟର ରୂପକଥା'ରେ 'ମୃତ୍ୟୁନାଚ'ର ସମାନ୍ତରାଳ ମିଥ୍‌ର ପ୍ରଲମ୍ବନ ଉଲ୍ଲେଖନୀୟ । ମିଥିକ ସ୍ଥାନ ପ୍ରଭାସତୀର୍ଥରେ ସୀମାବଦ୍ଧ ନୁହେଁ—ନୂଆଖାଲି, ହିରୋସୀମା, ମସ୍କୋ, ରୋମ ଅଥବା ସାମ୍ପ୍ରତିକ କାଳର ଯେକୌଣସି ପରିସର ମଧ୍ୟରେ ଏହି ସତ୍ୟ ଉପଲବ୍ଧ । ଆତ୍ମଘାତୀ ମଣିଷଟିର ଯାତ୍ରା ବିତ ବ୍ୟାହତ । କାଳସ୍ରୋତରେ ଭାସମାନ ପିପିଲିକା ପରି ଅସହାୟ ତା'ର ସ୍ଥିତି (୧୦୬) । ବହୁ ଶତାବ୍ଦୀ ଧରି ସମୟର ସ୍ରୋତରେ ସେ ଭାସମାନ । ବହୁ ଧର୍ମଯୁଦ୍ଧ, ସାମ୍ପ୍ରଦାୟିକ ସମର ଓ ଜେହାଦ୍‌ର ସେ ସମ୍ମୁଖୀନ । ଏକ ଶେଷହୀନ ଶୂନ୍ୟତାବୋଧର ସାଂପ୍ରତିକ ଆଧୁନିକ ଯାଦବର ପ୍ରାଣ ବିଦୀର୍ଣ୍ଣ । ମୃତ୍ୟୁ ଥିଲା ଯଦୁବଂଶର ଆତ୍ମକୃତ ପାପର ଚରମ ଶାସ୍ତି । କିନ୍ତୁ ସାମ୍ପ୍ରତିକ ମାନବର ମୃତ୍ୟୁ ଭୌତିକ ନୁହେଁ, ଆତ୍ମିକ । ଜୀବନର ନିସ୍ତରଙ୍ଗ ଶୂନ୍ୟତାବୋଧହିଁ ଏଠାରେ ମୃତ୍ୟୁର ନାମାନ୍ତର । ଭଗ୍ନ ମନୋରଥ ଯାଦବ, ନିଃସଙ୍ଗତାର ଆବର୍ତ୍ତରେ ଜୀବନ୍ମୃତ (୧୦୭) ।

**୬—ଦୋଦୁଲ୍ୟମାନ ସ୍ଥିତି ଓ ଅସ୍ତମିତ ସ୍ୱପ୍ନ**

ସାମ୍ପ୍ରତିକ ସମାଜରେ ବ୍ୟକ୍ତିବିଶେଷର ସ୍ଥିତି କିଭଳି ବେଦନାଦାୟକ ତାହା ସୀତାକାନ୍ତ ମହାପାତ୍ରଙ୍କ 'ତ୍ରିଶଙ୍କୁର ମଧ୍ୟ ସ୍ୱର୍ଗ' ଓ 'ରକ୍ତନଦୀ ସନ୍ତରଣ ପରେ'—କବିତା ଦୁଇଟିରେ ସୂଚିତ ।

ପୁରାଣ ପରିକଳ୍ପିତ ସ୍ୱର୍ଗୀୟ ଶାନ୍ତି ଓ ଆନନ୍ଦ ଆଜି ସୁଦୁର୍ଲଭ । ମର୍ତ୍ତ୍ୟର ବାସ୍ତବସ୍ଥିତି ସଙ୍କଟପୂର୍ଣ୍ଣ । ପ୍ରାଚୀନ ମୂଲ୍ୟବୋଧ ସମୂହ ପ୍ରତି ବିଶ୍ୱାସବୋଧ କ୍ଷୀଣ । ଭବିଷ୍ୟତ ଯୋଜନା ବିହୀନ । ଆଧୁନିକ ବ୍ୟକ୍ତିମାନସର ଏହି ବିଡ଼ମ୍ବିତ ସ୍ଥିତିର ପ୍ରକଟନ ପାଇଁ ପୁରାଣର 'ତ୍ରିଶଙ୍କୁ' ଚରିତ୍ର ନିର୍ବାଚିତ । ବିଶ୍ୱାମିତ୍ରଙ୍କ ତପଃଶକ୍ତି ବଳରେ ତ୍ରିଶଙ୍କୁ ଏକଦା ସ୍ୱର୍ଗକୁ ଯାତ୍ରା କରିବାବେଳେ ନିଜସ୍ୱ ପୁଣ୍ୟ ଅଭାବରୁ ଅମରାବତୀରୁ ପ୍ରତ୍ୟାଖ୍ୟାତ ହୋଇଥିଲେ । ଅନ୍ୟ ପକ୍ଷରେ ପୃଥିବୀକୁ ପ୍ରତ୍ୟାବର୍ତ୍ତନ କରିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ଏଣୁ ମଧ୍ୟ ସ୍ୱର୍ଗରେ ଏକ ଦୋଦୁଲ୍ୟମାନ ଅବସ୍ଥାରେ ତ୍ରିଶଙ୍କୁ କାଳଯାପନ କଲେ ।

ସାଂପ୍ରତିକ ବ୍ୟକ୍ତିସତ୍ତା ପାଇଁ ବିଶ୍ୱ ଏକ ମଧ୍ୟ ସ୍ୱର୍ଗ । ଆତ୍ମିକ ଶାନ୍ତିବିରହିତ ମନୋଭୂମିର କ୍ଲେଶ ମାତ୍ରାଧିକ । ରାଜନୀତି, ଧର୍ମ ଓ ସଂସ୍କୃତିର ଛଦ୍ମାବରଣ ତଳେ ସେ

ମୁକ୍ତିର ସନ୍ଧାନରତ, ଅଥଚ ଆତ୍ମପ୍ରତାରଣାପୂର୍ଣ୍ଣ ଜୀବନରେ ମୁକ୍ତି ଅବାସ୍ତବ । ଜୀବନର ଉଦ୍ଦେଶ୍ୟବିହୀନ ଯାତ୍ରା ପଥରେ ସେ କ୍ଲାନ୍ତ, ବିମର୍ଷ । ଆକାଶର ନୀଳିମାରେ ମୃତ୍ୟୁର ଗ୍ରସ୍ତ୍ରାପାତ । ଅନ୍ତରାତ୍ମା ଅଥୟ ଓ ଚଞ୍ଚଳ । ଶେଷଲକ୍ଷ୍ୟ ଅନୁପନୀତ । ତନ୍ଦ୍ରାଚ୍ଛନ୍ନ ଆଖିରେ ମୃତ୍ୟୁନାଚ ଦେଖୁଥିବା ମଣିଷଟି ଓଡ଼ିଶାର ବା ଭାରତର ନୁହେଁ, ସେ ସମଗ୍ର ବିଶ୍ୱର ଅନ୍ତର୍ଭୁକ୍ତ । ଭିଏତ୍ନାମର ଗଣହତ୍ୟା ତଥା ଧ୍ୱଂସୋନ୍ମୁଖୀ ନର ସଂହାରର ଭୁକ୍ତଭୋଗୀ ଲୋକାରଣ୍ୟରେ ତା'ର ନିଃସଙ୍ଗ ଜୀବନାଭୂତିର ଉପଲବ୍‌ଧି ଏକାନ୍ତ ଦୁଃଖଦାୟକ—

"ମୀରବାବୁ, ଲକ୍ଷ୍ମୀରଥ, ନଗରଲୋକ ଅନେକ ଜୀବନ
ମରୁ ପଦଚହ୍ନ ସବୁ, ଗହଳିର ଠେଲାପେଲା ସତ୍ତ୍ୱେ ଆହା
ସବୁ ଯେ କେତେ ଏକାକୀ କେତେ ସାଥିହୀନ (୧୦୮)"

ସ୍ମୃତିସିକ୍ତ ଅତୀତ ଦୁଃଖଦ । ଦ୍ୱାରକା ଧ୍ୱସ୍ତ ବିଧ୍ୱସ୍ତ । ଏଠକାର ବନରେ ଭ୍ରାତୃବିବାଦ, ପିତା-ପୁତ୍ରର ନିରର୍ଥକ କନ୍ଦଳ । ସମ୍ମୁଖରେ ନୈରାଶ୍ୟର ଅମା ଅନ୍ଧକାର । ସେ ଶାନ୍ତି ପାଇବାକୁ ଅଂକୁଳ ! ଭେତରର ଅନ୍ଧାରରୁ, ଗଛର ଶାଗୁଆପତ୍ର ଉପରେ ପଡ଼ିଥିବା ସୂର୍ଯ୍ୟର କିରଣକୁ ଅନୁଭବ କରିବାପାଇଁ ଉନ୍ମୁଖ । ଆତ୍ମୋପଲବ୍‌ଧି ତା'ର ଘଟିଚି, କିନ୍ତୁ କୋଽହଂର ଆର୍ତ୍ତିଚିତ୍କାର ସୋଽହଂରେ ଉପନୀତ ହୋଇପାରିନାହିଁ । ଜୀବନର ନଗ୍ନ ନିଷ୍ଠୁର ସତ୍ୟ ଅନୁଭୂତ ହୋଇଛି—

"ଜୀବନଟା ନିଜର କେନ୍ଦ୍ରବିନ୍ଦୁକୁ
ଭୟଙ୍କର ଏକ ବଙ୍କା ରାସ୍ତା (୧୦୯) ।"

ଦେହର ଉପଳ ଜୀର୍ଣ୍ଣ । ଅନୁଭବର ଝରଣା ଅନୁଚ୍ଛଳ । ପ୍ରାଣର ଆଲୋକ ସ୍ତିମିତ । କର୍ମଯୋଗରେ ସେ ବ୍ୟାପୃତ, ଅଥଚ ସେ ଜାଣେ, ତା'ର ସକଳ କର୍ମ ଅର୍ଥହୀନ । ବେଦନା ସୀମାତୀତ ! ଚେଷ୍ଟା ଅନ୍ତହୀନ, ଅଥଚ ତାହା ଅନ୍ତରାତ୍ମାକୁ ପ୍ରତାରିତ କରିବା ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ—

"ଚେଷ୍ଟା କରିବା ଯାଏ ଆସେ ଏ ଜାମ ସେ ଡାମ ଭଲ
ଯେ ହେତୁ ସକଳ କର୍ମ ଅର୍ଥହୀନ
ଏବଂ ବେଦନାର ସୀମା ଅନ୍ତହୀନ
ଅନ୍ତହୀନ ଯେତେ ଚେଷ୍ଟା ଠକିବାକୁ ଆପଣାକୁ (୧୧୦)"

ଅତୀତ ପୃଥିବୀର ସ୍ମୃତି ଓ ସ୍ୱପ୍ନ ବିନଷ୍ଟ । ନୂତନ ସଂସାର ରଚନାର ଆଶା, ଉଦ୍ଦୀପନା ଓ ପ୍ରତିଶ୍ରୁତି ମୃତ ।

ବସ୍ତୁତଃ ସାମ୍ପ୍ରତିକ ଯୁଗଚେତନା ପରିପ୍ରେକ୍ଷୀରେ ମିଥିକ ଚରିତ୍ରଗୁଡ଼ିକ ତୀବ୍ର ହତାଶା ଓ ନୈରାଶ୍ୟର ସମ୍ମୁଖୀନ । ସ୍ୱପ୍ନ ଓ କଳ୍ପନାର ମୀନାର ଧ୍ୱସ୍ତ ବିଧ୍ୱସ୍ତ । ତ୍ରିଶଙ୍କୁ ଯେପରି ମଧ୍ୟସ୍ୱର୍ଗରେ ଦୋଳାୟମାନ, ଦୁର୍ଯ୍ୟୋଧନ ସେହିଭଳି ରକ୍ତନଦୀ ସନ୍ତରଣ ପରେ ମୃତ୍ୟୁପାଇଁ ପ୍ରତୀକ୍ଷମାଣ । ସମାଜବାଦୀ କବିତାରେ ଦୁର୍ଯ୍ୟୋଧନ ଶୋଷକ ଗୋଷ୍ଠୀର ପ୍ରତିଭୂ । ବଙ୍ଗୀୟ କବି ନଜରୁଲ ଇସଲାମ ଓ ଓଡ଼ିଶାର କବି ରବିସିଂଙ୍କ କବିତାରେ ଦୁର୍ଯ୍ୟୋଧନ ଅନୁରୂପ ଭୂମିକାରେ ଅବତୀର୍ଣ୍ଣ । ସୀତାକାନ୍ତ ମହାପାତ୍ରଙ୍କ 'ଦୀପ୍ତି ଓ ଦ୍ୟୁତି'ରେ ଦୁର୍ଯ୍ୟୋଧନ ସ୍ୱାଭିମାନୀ ମାନବାତ୍ମାର ପ୍ରତୀକ । 'ଅଷ୍ଟପଦୀ'ର 'ରକ୍ତନଦୀ ସନ୍ତରଣ ପରେ' କବିତାରେ ସେ ଏକ ନିରର୍ଥକ ସ୍ଥିତିର ସୂଚକ । ତାଙ୍କର ସମସ୍ତ ଆଶା ଶେଷ । ଅତୀତ ଓ ଭବିଷ୍ୟତ ପ୍ରତି ଭୟବୋଧ ବିପୁଳ—

"ପଛକୁ ଚାହିଁବା ପାଇଁ ମୋତେ ଲାଜ ଭାରି ଡ଼ର
ଆଗକୁ ଅନାଇବାକୁ ମନେ ଆସେ ଭୀତି (୧୧୧)"

ସେ ଗୃହହୀନ, ଆଶ୍ରୟହୀନ, ବାସଚ୍ୟୁତ । ଜୀବନର ଆଲୋକିତ ଦିଗନ୍ତ ସମୂହ ଅନ୍ଧକାର-ଗ୍ରସ୍ତ । ସେ ସମ୍ପୂର୍ଣ୍ଣ ରୂପେ ଏକ ନେତିର ପ୍ରତୀକ ।

ପ୍ରକୃତିର କୋମଳ ବିଭବ ସାଂପ୍ରତିକ ବ୍ୟକ୍ତିସତ୍ତା ପାଇଁ ଅର୍ଥହୀନ । ବଉଦର ରଙ୍ଗୀନ ପକ୍ଷରେ ଆକାଶର ନୀଳିମା କ୍ରମଶଃ ସଙ୍କୁଚିତ ହେଉଥିବାବେଳେ ତହିଁରେ ସେ ଅଗ୍ନିସଂଯୋଗ କରେ, ପବନର ଗତିକୁ ସଙ୍କୁଚିତ କରେ । ଜୀବନ ସଂଗ୍ରାମର ସାଥୀ ତା'ର ଏକ କୁତ୍ସିତ ବାରନାରୀ । ପ୍ରେମରେ ପରିବ୍ୟାପ୍ତି ନାହିଁ, ଏଣୁ ନାୟକ ମୃତ୍ୟୁକୁ ନିଃଶବ୍ଦରେ ଅପେକ୍ଷା କରେ । ଉରୁଭଗ୍ନ ଲଗ୍ନ ନିକଟରେ ନିଜକୁ ଅସହାୟ ଭାବେ ସମର୍ପଣ କରିବା ପାଇଁ ପ୍ରସ୍ତୁତ ହୁଏ (୧୧୨) ।

ମୁକ୍ତି ପାଇଁ ପ୍ରାର୍ଥନାକଲେ ମଧ୍ୟ ଆତ୍ମବିଶ୍ୱାସ କ୍ଷୀଣ ହୋଇଥିବାରୁ ତାହା ବିଡ଼ମ୍ବିତ । ବ୍ୟକ୍ତି ମସ୍ତିଷ୍କବିହୀନ ଏକ କବନ୍ଧ । ପାର୍ଥିବ ମୃତ୍ୟୁ ପୂର୍ବରୁ ଜୀବନ୍ମୃତ୍ୟୁର ଜାଲରେ ସେ ଆବଦ୍ଧ ।

## ୮—ମୃତ୍ୟୁ ଓ ପୁନର୍ଜନ୍ମ

'ଅଷ୍ଟପଦୀ'ର 'ମାଟି ଓ ମଣିଷ' କବିତାରେ ଜୀବନ ପ୍ରତି ଏକ ସୁସ୍ଥ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ । ଆଲୋଚ୍ୟ କବିତାର ପ୍ରଥମ ପର୍ଯ୍ୟାୟରେ ମୃତ୍ୟୁଚେତନା ପ୍ରକଟିତ । କେବଳ ବସୁଦେବ ଓ ଦେବକୀ କାରାରୁଦ୍ଧ ନୁହନ୍ତି, ତାଙ୍କର ଅଗଣିତ ପୁତ୍ର, ନାତି ସମେତ ସମଗ୍ର ମାନବ ଜାତି ମଧ୍ୟ କାରାରୁଦ୍ଧ । ପ୍ରସ୍ତରର ବନ୍ଦୀଶାଳା ଭିତରେ ନିରନ୍ଧ୍ର ଅନ୍ଧକାରର ନିରଙ୍କୁଶ ରାଜତ୍ୱ—

"ଭିତରେ ଖାଲି ଅନ୍ଧାର
ଅନ୍ଧାରର ତନ୍ତୁ ସବୁ ଛନ୍ଦାଛନ୍ଦି, ଗୁଡ଼େଇ ଗୁଡ଼େଇ
× × × ×
ପଥରର ବନ୍ଦୀଶାଳା, ଭିତରେ ଅନ୍ଧାର

× × ×

ଆକାଶରେ ବଳସିତ ମହା ନୀରବତା (୧୧୩)"

ପଥରର ବନ୍ଦୀଶାଳାରେ ନିରନ୍ଧ୍ର ଅନ୍ଧକାରର ସ୍ୱକତ୍ୱ ମୃତ୍ୟୁଚେତନାର ଦ୍ୟୋତକ । ମୃତ୍ୟୁଚେତନାର ଏହି ସଞ୍ଚରଣ ବେଳେ ମାନବର ସକଳ ସ୍ୱପ୍ନ ଓ ସମ୍ଭାବନା ବିଡ଼ମ୍ବିତ (୧୧୪) । ସେ ଆତ୍ମାସୁଖାନ୍ୱେଷୀ । ପାର୍ଥିବ ଲୋଭ, ମୋହ ଓ ମାୟାର ପରିପୂର୍ତ୍ତି ତା'ର ଏକ ମାତ୍ର ଲକ୍ଷ୍ୟ । ଏଇ ପରିପ୍ରେକ୍ଷୀରେ ନିଃସୀମ ଶୂନ୍ୟତାବୋଧରେ ସେ କର୍ଜ୍ଜରିତ (୧୧୫) । କିନ୍ତୁ କବିତାର ଶେଷ ପର୍ଯ୍ୟାୟରେ ଏହି ଆତ୍ମକୃତ ପାପବୋଧରୁ ସେ ବିମୁକ୍ତ । ସେଥିପାଇଁ 'ମାଟି ଓ ମଣିଷ'ର 'କାରାଗାର', 'ମହାକାଳର ମୃତ୍ୟୁ' ଓ 'ଦୁଃସ୍ୱପ୍ନର ଛବି' ଆଦି ପର୍ଯ୍ୟାୟରେ ମୃତ୍ୟୁଚେତନା ପରିବ୍ୟାପ୍ତ ହୋଇଥିଲେ ମଧ୍ୟ 'ପ୍ରତିଧ୍ୱନି'ରେ ଆଶା ଓ ଆଶ୍ୱାସନାର ସଙ୍କେତ ସୁସ୍ପଷ୍ଟ । ଆକାଶ ମୃତ୍ୟୁହୀନ ନୀଳ ଦ୍ୟୁତିରେ ଉଦ୍‌ଭାସିତ । ମାଟିରେ ଫସଲର ଶୁଭ ସମ୍ଭାବନା ପ୍ରସାରିତ । ଏହିଭଳି ଏକ ଶୁଭ ଲଗ୍ନରେ ଦେବକୀ ପୁଣି ଥରେ ସନ୍ତାନସମ୍ଭବା ହୋଇଛନ୍ତି । ତାଙ୍କ ଗର୍ଭରୁ ଜନ୍ମ ନେଇଛନ୍ତି ଶ୍ରୀକୃଷ୍ଣ—ଶାନ୍ତି ଓ ସ୍ୱାଧୀନତାର ମୂର୍ତ୍ତିମାନ ବିଗ୍ରହ । କବିତାର ଶେଷ ଭାଗରେ ବନ୍ଦୀ ମାନବାତ୍ମାର ପ୍ରମୁକ୍ତ ଅନାୟାସ ଲକ୍ଷ୍ୟ—

"ଫସଲର ନିମନ୍ତ୍ରଣ, ରଜସ୍ୱଳା ମାଟିର ଆହ୍ୱାନ
ଅଷ୍ଟମ ଗର୍ଭର ସ୍ୱପ୍ନ, ଲୁହା ଆଉ ପଥରର
ପରିଧି ଓ ଅନର୍ଗଳ କଳଣୀକୁ କଣି
× × ×
ପ୍ରତିଧ୍ୱନି ଫେରିଆସେ କୁସୁମିତ କୋଳାହଳେ
ସବୁଜ କ୍ଷେତରେ (୧୧୬) ।"

'ମାଟି ଓ ମଣିଷ'ର ମିଥ୍ ମାଧ୍ୟମରେ ସାଂପ୍ରତିକ କାଳର ଅବକ୍ଷୟ ଓ ନିହତାଶା ମଧ୍ୟରେ ନୂତନ ଜୀବନର ପ୍ରତିଧ୍ୱନି ଝଙ୍କୃତ । ସୀତାକାନ୍ତଙ୍କ ମିଥିକ୍ କବିତା ପରଂପରାରେ 'ମାଟି ଓ ମଣିଷ' ଏକ ବ୍ୟତିକ୍ରମ । କାରଣ କେବଳ ଏହି କବିତାରେ ଜୀବନର ଶୁଭ ସନ୍ଦୀପନ ପାଇଁ ଆଶ୍ୱାସ ଓ ବିଶ୍ୱାସ ପ୍ରତିଷ୍ଠିତ । ଅନ୍ୟତ୍ର ଏହା ଜୀବନର ପ୍ରତିକୂଳ ବାସ୍ତବ ଦିଗର ପ୍ରମୂର୍ତ୍ତାୟନ ପାଇଁ ଉଦ୍ଦିଷ୍ଟ ।

**୯—କୁରୁକ୍ଷେତ୍ରର ସଂଗ୍ରାମ**

ସୀତାକାନ୍ତ ମହାପାତ୍ରଙ୍କ 'ଶବ୍ଦର ଆକାଶ'ର 'କୁରୁକ୍ଷେତ୍ର' ସାମ୍ପ୍ରତିକ ବିଶ୍ୱର ପୃଷ୍ଠଭୂମି। ଜୀବନଧାରଣ ପାଇଁ ବ୍ୟକ୍ତି ଏଠାରେ ନଖ-ଦନ୍ତ ସଂଗ୍ରାମର ସମ୍ମୁଖୀନ। କବିତାର ଉପୋଦ୍‌ଘାତରୁ ସାମ୍ପ୍ରତିକ କାଳର ଅବକ୍ଷୟ ସ୍ପଷ୍ଟ ଭାବେ ସୂଚିତ—

"ସମୟର ଖୋଳପା ଭିତରେ ଗୋଟି ପୋକ/ଘୁମେଉଥିଲି ଏକେଲା। ବାରମ୍ବାର ଗୋଟିଏ କଣରେ/ସାମ୍ନାରେ ମହାଶ୍ମଶାନ, ଦିନଟିର ଯୁଦ୍ଧକ୍ଷେତ୍ର/କୁହୁଡ଼ି ଓ ଅନ୍ଧାରରେ ନିଭି ଆସୁଥିଲା (୧୧୭)।"

ସମୟର ଖୋଳପା ସାମ୍ପ୍ରତିକ କାଳର ନିଃସଙ୍ଗ ପରିବେଶର ପ୍ରତୀକ। ଏହି ନିଃସଙ୍ଗତା ମଧ୍ୟରେ ମଣିଷ ମଣିଷ ନୁହେଁ, ସେ ଖୋଳପା ମଧ୍ୟରେ ଗୋଟିଏ ପୋକ। ଦେହରେ ସାରା ଦିବସର କ୍ଲାନ୍ତି। ସମ୍ମୁଖରେ ମହାଶ୍ମଶାନ— ଜୀବନ ସଂଗ୍ରାମର କୁରୁକ୍ଷେତ୍ର। କୁହୁଡ଼ି ଓ ଅନ୍ଧାର ଭିତରେ ଏହାର ସ୍ଥିତି ଶେଷ ପ୍ରାୟ।

ଆଉ ଏକ ସୂର୍ଯ୍ୟସ୍ନାତ ଦିନର ପ୍ରତ୍ୟାବର୍ତ୍ତନ ତା ପାଇଁ ବିଡ଼ମ୍ବିତ। ବ୍ୟକ୍ତିର 'ସଜ ଛନ ଛନ ସ୍ୱପ୍ନ' ସେଥିପାଇଁ କବନ୍ଧର ରୂପ ନିଏ। 'ନାଲି ନେଳି' ଆଶା ମଧ୍ୟରେ ଅନ୍ତର୍ନିହିତ ବର୍ଣ୍ଣାଢ୍ୟ ଜୀବନ ସ୍ୱପ୍ନ ଅସ୍ତଯାଏ (୧୧୮)। ସବୁଠାରୁ ଅଧିକ ବେଦନା-ଦାୟକ ସତ୍ୟଟି ହେଉଛି, ଏହି ଯନ୍ତ୍ରଣାଗ୍ରସ୍ତ ପରିବେଶରୁ ସେ ମୁକ୍ତି ପାଇବାକୁ ଚେଷ୍ଟା କଲେ ମଧ୍ୟ ବିଫଳ ହୁଏ। କାରଣ ସମ୍ମୁଖରେ ତାର ଲକ୍ଷ୍ମଣର ଗଣ୍ଡୀ—ସାମାଜିକ ନିର୍ଦ୍ଦେଶନାମାର ରକ୍ତଚକ୍ଷୁ। ସର୍ବୋପରି ସମରୋତ୍ତୀର୍ଣ୍ଣ ଯୁଦ୍ଧବିକ୍ଷୁବ୍ଧ ବିଶ୍ୱର ଶ୍ମଶାନାୟିତ ପରିବେଶରେ ତା'ର ଜୀବନୀଶକ୍ତି ନିଃଶେଷିତ—

"ଏ ମୃତ ଦିନଟା ମୋର
ଏ ଭୀଷଣ ଯୁଦ୍ଧକ୍ଷେତ୍ର ମୋର ଆପଣାର କୃତକର୍ମ
ନିଷ୍ଠୁର ନିସ୍ପୃହ ପୁଣି, ବେଦନାର ପରିଧିକୁ ଡେଇଁ ପାରିବିନି
ସାମ୍ନାରେ ଲକ୍ଷ୍ମଣର ଗାର (୧୧୯)"

ବ୍ୟକ୍ତିସତ୍ତା ସାମାଜିକ ଅନୁବନ୍ଧନ ମଧ୍ୟରେ କିଭଳି ଦିଗ୍‌ଭ୍ରାନ୍ତ ଭାବେ ସଂଗ୍ରାମରତ ତା'ର ସୂଚନା ଏଠାରେ ପ୍ରଦତ୍ତ।

**୧୦—ଶରଶଯ୍ୟାର ବ୍ୟଥା ଓ ବେଦନା**

'ଶବ୍ଦର ଆକାଶ'ର 'ଶରଶଯ୍ୟା'ରେ ମଧ୍ୟ ବ୍ୟଥା ଓ ବେଦନାର ସ୍ୱର ଉଚ୍ଚାରିତ। ସାଂପ୍ରତିକ ପୃଥିବୀ ହିଁ ମାନବ ପାଇଁ ଏକ ଶରଶଯ୍ୟା। ଜୀବନ-ସ୍ୱପ୍ନର ସ୍ଥିତି ସେଠାରେ ବିପର୍ଯ୍ୟସ୍ତ। ଏଣୁ ଶରଶଯ୍ୟାରେ ଶାୟିତ ଆଧୁନିକ ବ୍ୟକ୍ତିସତ୍ତାର ଆହ୍ୱାନ—

"ତେଣୁ ହେ ପୃଥିବୀ,
ଅଶ୍ରୁର ବହ୍ନିରେ ହୁଅ ଦୀପ୍ତିମାନ
ନଂପୁଂସକ ସମୟର ଜରାୟୁରେ
ବଞ୍ଚ ନାହିଁ ଆଉ ବଞ୍ଚ ନାହିଁ,
ମିଛଟାରେ ସ୍ୱପ୍ନର ବିହ୍ୱନ (୧୨୦) ।"

ସାଂପ୍ରତିକ ସମୟ ନଂପୁଂସକ । ନୂତନ ବୀଜବପନର ପ୍ରଚେଷ୍ଟା ସେଠାରେ ଏକ ବିଫଳ ପ୍ରୟାସ ମାତ୍ର । ତା'ର ମସ୍ତକରେ ଅଛି ଏକ ମୁକୁଟ, କିନ୍ତୁ ତାହା କଣ୍ଟାରେ ନିର୍ମିତ । ତା'ର ଶରୀର କ୍ଷତବିକ୍ଷତ । ନିଦାଘର ରୌଦ୍ରଦଗ୍ଧ ମଧ୍ୟାହ୍ନରେ, ଆକାଶର ଚାନ୍ଦ୍ରୋପଲର ଶୀତଳତା ଏକ ଦିବା ସ୍ୱପ୍ନ (୧୨୧) । ଆଧୁନିକ ଖ୍ରୀଷ୍ଟ, ଜୀବନର ଶାଶ୍ୱତ, ଦୀପ୍ତିମନ୍ତ ମୂଲ୍ୟବୋଧରୁ କେନ୍ଦ୍ରଚ୍ୟୁତ । ତା'ର ରକ୍ତ-ମାଂସରେ ଏହ୍ୱାର ସ୍ୱାକ୍ଷର ଅନ୍ତର୍ନିହିତ (୧୨୨) । ସେଥିପାଇଁ ସେ ଶରତ୍ୟାଗ କରିଛି । ତା'ର ଜୀବନ ଅନ୍ଧକାରଗ୍ରସ୍ତ ଏକ ସୁଡ଼ଙ୍ଗ ଭିତରେ ଶ୍ୱାସରୁଦ୍ଧ । ଏହି ସୁଡଙ୍ଗ ଭିତରେ ସେ କେବଳ ତୀବ୍ର ଅନ୍ତର୍ଦାହର ବହ୍ନିମାନ ଜ୍ୱାଳାରେ ଜର୍ଜ୍ଜରିତ ।

## ୧୧—ଚକ୍ରବ୍ୟୂହରେ ଅଭିମନ୍ୟୁ

ସୀତାକାନ୍ତ ମହାପାତ୍ରଙ୍କ 'ଅଭିମନ୍ୟୁ' କବିତାରେ ମିଥ୍ ପ୍ରତୀକ ମାଧ୍ୟମରେ ଏକ ଆତ୍ମମୁଖୀ ବ୍ୟଙ୍ଗ-ବିଦ୍ରୂପ ପ୍ରକଟିତ । ଅଭିମନ୍ୟୁ ମହାଭାରତର ଏକ ବିଶିଷ୍ଟ ଯୋଦ୍ଧା । ଅର୍ଜ୍ଜୁନ ଓ ସୁଭଦ୍ରାଙ୍କର ସେ ପୁତ୍ର । ଏକଦା ଅର୍ଜୁନ ସୁଭଦ୍ରାଙ୍କ ନିକଟରେ ଚକ୍ରବ୍ୟୂହ ମଧ୍ୟରେ ପ୍ରବେଶ କରିବାର କୌଶଳ ବର୍ଣ୍ଣନା କରିବାବେଳେ ଗର୍ଭସ୍ଥ ଅଭିମନ୍ୟୁ ତାହା ଶିକ୍ଷା କରିଥିଲେ । କିନ୍ତୁ ଅର୍ଜ୍ଜୁନ ବ୍ୟୂହରୁ ନିଷ୍କ୍ରାନ୍ତ ହେବାର କୌଶଳ ବର୍ଣ୍ଣନା କଲାବେଳେ ସୁଭଦ୍ରା ନିଦ୍ରାଭିଭୂତା ହୋଇ ପଡ଼ିବାରୁ ଗର୍ଭସ୍ଥ ଅଭିମନ୍ୟୁ ମଧ୍ୟ ନିଦ୍ରାଚ୍ଛନ୍ନ ହୋଇପଡ଼ିଲେ । ଫଳରେ ଅଭିମନ୍ୟୁଙ୍କ ପକ୍ଷରେ ବ୍ୟୂହଭେଦ ରହସ୍ୟ-ଆହରଣ ଅସଂପୂର୍ଣ୍ଣ ରହିଲା । ଏଥିଯୋଗୁଁ କୁରୁକ୍ଷେତ୍ର ସମରରେ ତାଙ୍କୁ ମୃତ୍ୟୁ ବରଣ କରିବାକୁ ପଡ଼ିଲା ।

ଆଧୁନିକ ଅଭିମନ୍ୟୁର ସମଗ୍ର ଜୀବନ ଏକ ଚକ୍ରବ୍ୟୂହ । ଅହର୍ନିଶ ସେ ଯନ୍ତ୍ରଣାକାତର । ପରିବେଶ ବିଷାକ୍ତ । ଉଭୟ ଆକାଶ ଓ ପୃଥିବୀର ପରିସର ଅନୁକୂଳ । ମାଟିର ହାହାକାର ବେଦନାଦାୟକ । ଏକ ନୃଶଂସ ବ୍ୟାଧର ଜାଲରେ ଚେତନା ଆବଦ୍ଧ । ପଞ୍ଚତନ୍ତ୍ରର କାହାଣୀ ସହ ମିଥ୍ ପ୍ରତୀକଟି ଏଠାରେ ସଂଯୁକ୍ତ । ପଞ୍ଚତନ୍ତ୍ରର ସେହି ବିଜ୍ଞାନୀ ବୟୋବୃଦ୍ଧ କପୋତର ପରାମର୍ଶରେ ଜାଲରେ ନିବଦ୍ଧ ଅନ୍ୟ

କପୋତଗୁଡ଼ିକ ଏକ ସଙ୍ଗରେ ଜାଲସହ ଆକାଶକୁ ଉଡ଼ିଯିବାରୁ ବ୍ୟାଧ କବଳରୁ ମୁକ୍ତ ପାଇଥିଲେ । ପଞ୍ଚତନ୍ତ୍ରର କାହାଣୀ ମାଧ୍ୟମରେ ସଂଘଶକ୍ତି ଓ ସମମ୍ବୋଚିତ ବିଗ୍ରହ ସମ୍ଭାବ୍ୟ ସଂକଟରୁ କିଭଳି ସମାଜକୁ ଉଦ୍ଧାର କରିପାରେ ତାହା ସୂଚିତ ।

ସାଂପ୍ରତିକ ଅଭିମନ୍ୟୁ ପାଇଁ ସଂଘବଦ୍ଧ ଜୀବନ ଏକ ଅବାସ୍ତବ ସତ୍ୟ । ଆକାଶରେ ଉଡ଼ିବାର ବାସନା ଏକ ଦୁରନ୍ତ ପରିକଳ୍ପନା, କାରଣ ଅକାଶ ଶ୍ୱାସରୋଧକାରୀ ଏକ ବିଷାକ୍ତ ଇଲାକା—

"ଆକାଶ ଆଉ ପବନରେ/ଏଠି ଏବେ ସୋରିଷଫେଟ ଫିଙ୍ଗିବାକୁ ଜାଗା ନାହିଁ/ ଯାବତ ଛୁଣ୍ଡା, ଗଇଁଠା, ତାଳପକା ଓ ଦୋରିଆ ବସ୍ତ୍ର, ନାମ ଧାରଣରେ/ଉଦ୍ଧ ଉଦ୍ଧ ଆକାଙ୍କ୍ଷାରେ/ଦରନଷ୍ଟ ଆଶା ଆଉ ଦରମୋଡ଼ା ସ୍ମୃତିର ସମ୍ଭାରେ/ଶ୍ୱାସରୁଦ୍ଧ ମୃତ ଏ ଇଲାକା/ଯା ଭିତରେ କେଉଁଣୀ ତ ଝାଡ଼ି ହେବାନି/କାଲି ଭଳି କିମିତି ଉଠିବ (୧୬୩) ?

ଆକାଶ ଏଠାରେ ଭୌଗୋଳିକ ଆକାଶ ନୁହେଁ । ଏହା ସ୍ୱୟଂ ଅପରିଚ୍ଛନ୍ନ ଚେତନାଲୋକ । ଛୁଣ୍ଡା, ଗଇଁଠା, ତାଳପକା ବସ୍ତ୍ର ପ୍ରତୀକ ମାଧ୍ୟମରେ ଚେତନାର ଖଣ୍ଡିତ ସ୍ୱରୂପ ସୂଚିତ । ଆଶା ସମ୍ପୂର୍ଣ୍ଣ ନିର୍ବାପିତ ନୁହେଁ ଅଥବା ପୂର୍ଣ୍ଣ ପ୍ରଜ୍ୱଳିତ ମଧ୍ୟ ନୁହେଁ । 'ଦରନଷ୍ଟ ଆଶା' ଶବ୍ଦ ଦୁଇଟି ମାଧ୍ୟମରେ ଚେତନାର ଦୋଳାୟମାନ ସ୍ଥିତି ପ୍ରକଟିତ ।

ଅତୀତର ସ୍ମୃତି ଦଗ୍ଧୀଭୂତ—ଅଙ୍ଗାରମୟ । ବର୍ତ୍ତମାନ ମୁମୂର୍ଷୁ । ଭବିଷ୍ୟତ କଦାକାର । ଜୀବନ ଚରମ ଶୂନ୍ୟତାରେ ମଗ୍ନ ଏକ ଚକ୍ରବ୍ୟୂହ । ଜୀବନ କକ୍ଷରେ ପ୍ରବେଶ କରିବାବେଳେ ଆଶା ଥିଲା ଅପରିସୀମ । ସମଧର୍ମୀ, ଦରିଦ୍ରବନ୍ଧୁ ପରିଜନଙ୍କର ସମ୍ପର୍କବଦ୍ଧ ଜୀବନର ସ୍ୱପ୍ନରେ ସେ ବିଭୋର ହୋଇପଡ଼ିଥିଲେ । ବାସ୍ତବ ଜୀବନକୁ ଲକ୍ଷ୍ୟ କଲାବେଳେ ଦୃଶ୍ୟ ହେଲା ବିପରୀତ । ସବୁଠାରେ ନିଃସଙ୍ଗତା ତଥା ନିର୍ଜନତାର ଏକଛତ୍ର ରାଜତ୍ୱ । ପ୍ରତ୍ୟେକ କୋଠରୀର ସ୍ୱରୂପ ଏକ ପ୍ରକାର, ଗତାନୁଗତିକ, କ୍ଲାନ୍ତିକର, ଜନମାନବଶୂନ୍ୟ । ଦରି, ବେଞ୍ଚ, ଟେବୁଲ, ଟେବୁଲ ସତେ ଅବା ପ୍ରତୀକ୍ଷମାଣ—"କାଲେ କିଏ ଆସି ପହଞ୍ଚିବ/ଅଗ୍ରନକ ସନ୍ଧ୍ୟା ହୋଇଗଲେ (୧୬୪) ।" ନିରର୍ଥକ ପ୍ରତୀକ୍ଷାର ନିଷ୍ଫଳ ପରିଣତି ବଡ଼ ଦୁଃଖାବହ । ଆତ୍ମବିଶ୍ୱାସ କ୍ଷୀଣ । ଅନ୍ଧାରରେ ନିଜର ଛାଇକୁ ଦେଖି ସେ ଭୂତ ବୋଲି ଚମକେ । ନିଜ ନିଶ୍ୱାସର ଝଡ଼ରେ ସେ ବିକ୍ଷୁବ୍ଧ ହୁଏ । ନଗର ସଭ୍ୟତାର କୋଳାହଳ ସୁତୀବ୍ର, ଅଥଚ ବନ୍ଧୁତ୍ୱ ପ୍ରାପ୍ତିର ଅଭିପ୍ସା ଅପରିପୂର୍ଣ୍ଣ । ତୃଷ୍ଣାର ଅନ୍ଧାର ଚେତନାକୁ ସନ୍ତମିତ । ପୃଥିବୀର ଲ୍ୟାଣ୍ଡସ୍କେପରେ ପ୍ରତିଫଳିତ ଚିତ୍ରରୁ ବ୍ୟକ୍ତି ତା'ର ଅବସ୍ଥା କଳନା କରେ । ଶାରୀରିକ ଗଠନ ଦୃଷ୍ଟିରୁ ସେ ମଣିଷ, କିନ୍ତୁ ବେଦନାରେ ଦଗ୍ଧୀଭୂତ । ତା'ର ଶରୀର ଅନବନମିତ ନୁହେଁ । ଅନ୍ତଃସତ୍ତା ବ୍ୟକ୍ତିତ୍ୱ-ବିହୀନ । ନିଜର ଅସମର୍ଥ ବ୍ୟକ୍ତିସତ୍ତା ସଂପର୍କରେ ସେ ସଚେତନ—

"ଏ ଆଶ୍ଚର୍ଯ୍ୟ ଲ୍ୟାଣ୍ଡସ୍କେପ ଉପରେ ଯିବାକୁ ହେବ
ମତେ ଖାଲି ଘୂମୁରି ଘୁମୁରି (୧୨୫)"

ସମସ୍ତ ସ୍ଥାଭିମାନ ବିଗ୍ଧନ, ସ୍ଥବିର । ପରସ୍ପର ସହ ସଂଲଗ୍ନ ଭଳି ମନେ ହେଉଥିବା ପ୍ରତ୍ୟେକ ମୁହୂର୍ତ୍ତ, ବାସ୍ତବତଃ ପରସ୍ପରଠାରୁ ବିଚ୍ଛିନ୍ନ । କାରଣ ଏହି ଆପାତଃ ସଂଲଗ୍ନ ମୁହୂର୍ତ୍ତର ନିକଟତମ ସ୍ଥିତି ପରସ୍ପରକୁ କଣ୍ଟକିତ କରିବା ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ । ଏଣୁ ସଂଶ୍ଳେଷର ପରିଣତି ଏକ ଶ୍ୱାସରୁଦ୍ଧ ସ୍ଥିତି । ନାୟକ, ନାୟିକା—ଉଭୟେ ଏହି ଅପ୍ରୀତିକର ପରିବେଶରେ ବନ୍ଦୀ । ମୁକ୍ତି ସୁଦୂର ପରାହତ । ଏଣୁ ସେମାନେ ମୁକ୍ତି ଚେଷ୍ଟାରୁ ବିରତ । ବ୍ୟାଧର ଜାଲ ଅନିଚ୍ଛା ସତ୍ତ୍ୱେ ସ୍ୱୀକୃତ—

" × × ଏ ଜାଲ ଚିରସ୍ଥ ହେଉ
ସତତ ଅକ୍ଷତ ରହୁ ବ୍ୟାଧ ଭ୍ରମ ବ୍ୟୂହ (୧୨୬)"

ବ୍ୟାଧ ଏଠାରେ ସାଂସାରିକ ସତ୍ତାର ପ୍ରତିଭୂ, ଯାହାର ବନ୍ଧନ ହିଁ ଅଭିମନ୍ୟୁର ଚକ୍ରବ୍ୟୂହ ।

## (୧୨)—ଯନ୍ତ୍ରଣାର 'ଅନନ୍ତ ଶୟନ'ରେ ଶାୟିତ ଆଧୁନିକ ମଣିଷ

ରମାକାନ୍ତ ରଥଙ୍କର 'ଅନନ୍ତ ଶୟନ'ର ମିଥିକ ପରିବେଶ ଅପେକ୍ଷାକୃତ ଜଟିଳ । ପୌରାଣିକ ପରଂପରାର 'ଅନନ୍ତ ଶୟନ'ର ଏହା ସଂପୂର୍ଣ୍ଣ ବିପ୍ରତୀପ ଭଳି ମନେ ହୁଏ । କବିଙ୍କର 'ଅନନ୍ତ ଶୟନ' ବିଷ୍ଣୁଙ୍କର ଅଲୌକିକ ଶଯ୍ୟା ଅଥବା ଏକ ଅତୀନ୍ଦ୍ରିୟ ଚେତନାର ଦ୍ୟୋତକ ନୁହେଁ । ସମଗ୍ର କବିତାରେ ବିଷ୍ଣୁଙ୍କର ପାରମାର୍ଥିକ ସତ୍ତାର କୌଣସି ସଂକେତ ନାହିଁ । ମିଥିକ୍ ପରିବେଶ ଓ ଈଶ୍ୱରର ସ୍ୱରୂପ ଏଠାରେ ସଂପୂର୍ଣ୍ଣ ପରିବର୍ତ୍ତିତ । ପୁରୁଷ ଏଠାରେ ପ୍ରଚଣ୍ଡ ପୌରୁଷ ବିବର୍ଜିତ । ନାରୀର ନାରୀତ୍ୱ ବିଡ଼ମ୍ବିତ—'ହେ ମୋର ପତ୍ନୀ/ମା ମୋର ମୃତ ଛୁଆଙ୍କର'-ପଂକ୍ତିରେ ବାରମ୍ବାର ଉଚ୍ଚାରଣ ମଧ୍ୟରେ ଏହାର ଧ୍ୱନ୍ୟାତ୍ମକ ସଙ୍କେତ ପ୍ରମୂର୍ତ୍ତ । କବିତାର ପ୍ରଥମ ପର୍ଯ୍ୟାୟରେ 'ସାପ' ମୁଖରେ ଏକ ପୃଷ୍ଠପଟ୍ଟ—

"ସାପ ବି ଗୋଟିଏ ଶେଯ, ବରଂ ବେଶି ନିରାପଦ ନଦ
ମାନେ କ'ଣ ମତ୍ ମତ୍ ଅନ୍ଧାରର ବଖରା ଭିତରେ
ନଚୁଟିଆ ଧୂଳି ପରି ଆମ୍ଭାହଙ୍କେ, କମ୍ବା କେଉଁ ଏକାକୀ ଶଟେଜ-
ବାଲ୍କର ସଙ୍ଗୀତ ପରି ଜଙ୍ଗଲର ନୀରବ ଗାଢରେ (୧୨୭)"

ଆତ୍ମା ଏଠାରେ ଅବିନଶ୍ୱର ନୁହେଁ । 'ନଚୁଟିଆ ଧୂଳି' ଭିତରେ ଆତ୍ମାର ବିଲୁପ୍ତି ତା'ର ଚିରନ୍ତନ ସତ୍ତା ବିରୋଧରେ ଏକ ଆହ୍ୱାନ । ସୁତରାଂ—

'ସାପ ବି ପାରିବ ନାହିଁ
ସାପ ଜମା ଗୁଡ଼ି ହୋଇଗଲେ
ଦେହର ଇଲାକା'

ପଂକ୍ତିରେ ସାପ ଯେ ଦୃଶ୍ୟମାନ ଦେହର ବା ଅଦୃଶ୍ୟ ଆତ୍ମାର ସଂରକ୍ଷକ ନୁହେଁ ତାହା ସୁସ୍ପଷ୍ଟ । ସୁତରାଂ 'ଅନନ୍ତ ଶୟନ'ରେ ସାପ ମୃତ୍ୟୁର ଏକ ଦୃଶ୍ୟମାନ ରୂପ । ସବୁଠାରୁ ଅଧିକ ଉଲ୍ଲେଖନୀୟ ବିଷୟ ହେଉଛି ପୌରାଣିକ 'ଅନନ୍ତ ଶୟନ'ର ଏହା ଏକ ବ୍ୟଙ୍ଗ କଟାକ୍ଷ—ଯନ୍ତ୍ରଣା ଓ ଅସାମର୍ଥ୍ୟବୋଧର 'ଅନନ୍ତ ଶୟନ'ରେ ଶାୟିତ ଆଧୁନିକ ମଣିଷର ଅସହାୟତ୍ୱ ଏଠାରେ ସୂଚିତ । ବ୍ୟକ୍ତି, ସାଂପ୍ରତିକ କାଳରେ ମୃତ୍ୟୁର ଶେଷହୀନ ସଂକ୍ରମଣ ମଧ୍ୟରେ ଅବସ୍ଥ । ଏହାକୁ ମୃତ୍ୟୁ ନକହି ବରଂ ଅପମୃତ୍ୟୁ କହିବା ଶ୍ରେୟସ୍କର । ନାୟକର ଅସାମର୍ଥ୍ୟ ଓ ମୃତବତ୍ସା ପତ୍ନୀର ଅସହାୟତ୍ୱ ମଧ୍ୟରେ ଜୀବନର ଦୟନୀୟ ସ୍ଥିତି ପ୍ରତିଫଳିତ—

"× × କିନ୍ତୁ କେଉଁ ହଠାତ୍ ଝଡ଼ରେ
ଆମର ଜାହାଜ ହେଲା ଚୂରମାର, ଏବଂ ତମେ ଭାସିଗଲାବେଳେ
ଅସହାୟ ହୋଇ ଆଉ ତଳଆଙ୍କୁ ଆଖି ପିଛୁଳାକେ
ମୋ ବାର୍ଦ୍ଧକ୍ୟ ନାନ୍ଦୁଅଛି ଶୂନ୍‌ଶାନ୍ ମଧ୍ୟରାତ୍ରିବେଳେ (୧୬୮)।"

ପୂର୍ବରୁ ସ୍ପଷ୍ଟ କରିଦିଆଯାଇଛି ଯେ 'ଅନନ୍ତ ଶୟନ'ର ମିଥ ଚେତନା ଅତ୍ୟନ୍ତ ଜଟିଳ । ପ୍ରେମ, ଘୃଣା, କୋମଳତା, ହିଂସ୍ରତା ଆଦି ପରସ୍ପରବିରୋଧୀ ଭାବୋଚ୍ଛ୍ୱାସ ମଧ୍ୟରେ ଏହି ଜଟିଳ ଭାବନା ଉଦ୍‌ଭୂତ । ଏଣୁ ନାୟକ ନଜର ପତ୍ନୀକୁ 'ତୋଫା ବଣ ଗଙ୍ଗଶିଉଳି' ରୂପେ ଅଭିହିତ କରିବା ପରେ ହିଁ ଦର୍ପଣରେ ତା'ର ମୃତ୍ୟୁଗ୍ରସ୍ତ ସ୍ୱରୂପ ପ୍ରଦର୍ଶିତ । ନାୟକ-ନାୟିକାଙ୍କ ଜୀବନ କାଗଜର ଡଙ୍ଗା ପାଣି ସୁଅରେ ଏକନିଷ୍ଠ ପ୍ରବାହିତ ହେବା ତ ଦୂରର କଥା, ଉଭୟଙ୍କର ଯୁଗଳ ସ୍ଥିତି ମଧ୍ୟ ସମୟର ଜଳସ୍ରୋତରେ ନଷ୍ଟ ହୁଏ । ଆଧ୍ୟାତ୍ମିକ ଜିଜ୍ଞାସା ପରିବର୍ତ୍ତେ ଜୈବିକ କାମନାର ପରିତୃପ୍ତି ମଧ୍ୟରେ ନାୟକର ଚେତନା ଭାରାକ୍ରାନ୍ତ । ସେ ଜାଣେ ତାର ନିରୋଧତା ଅସୀମ । ତେଣୁ ତା'ର ସ୍ୱୀକାରୋକ୍ତି—

"× × ମୁଁ ଉଲ୍ଲୁ, ପିନ୍ଧିବି ମୋର ମୁଣ୍ଡରେ ଏଥର
ତ୍ରିକୋଣାକାରର ଗୋଟେ ଗଧଟୋପି ପାଳିବାକୁ ଜୁବୁଲି ଛତର (୧୬୯)"

ଜୀବନର ଏହି ଆହତ ତଥା କ୍ଷତ-ବିକ୍ଷତ ସ୍ଥିତିର ଶଯ୍ୟାରେ ଆଧୁନିକ କାଳର ବ୍ୟକ୍ତିସତ୍ତା ଶାୟିତ ।

**୧୩—ନିଷ୍ଫଳ ପ୍ରୟାସ**

ରମାକାନ୍ତ ରଥଙ୍କ 'ହନୁମାନ' କବିତାର ହନୁମାନ 'ରାମାୟଣ'ର ହନୁମାନଙ୍କ ଏକ ବ୍ୟଙ୍ଗ ଆଲେଖ୍ୟ—

"ମୁଁ ଉଡ଼ୁଛି ନେଇ ମୋର ଉଲଗ୍ନ ଓ ପୃଥୁଳ ଶରୀର,
ବହୁତଳେ ଦିଶୁଅଛି ସହରର ସମୁଦ୍ରରେ ବଡ଼ ବଡ଼ କୋଠାଙ୍କ ଲହରି,
ରାସ୍ତାମାନେ ଅଦୃଶ୍ୟ ଓଃ ଭଗବାନ ! କାହିଁକି ସେମାନେ
ମତେ ଆଉ ଉଡ଼ିବାକୁ ଦେଲେ ନାହିଁ × × × (୧୩୦)"

ଉଲଗ୍ନ ଓ ପୃଥୁଳ ଶରୀରବିଶିଷ୍ଟ ହନୁମାନଙ୍କ ଏହି ଆକାଶ-ଯାତ୍ରା ଏକ ଦୁରନ୍ତ କାମନା । ସମସାମୟିକ ସମସ୍ତ ଚେତନା ପରିପ୍ରେକ୍ଷୀରେ ଏହା ଏକ ସ୍ୱପ୍ନ ମାତ୍ର । ଅଧିକନ୍ତୁ ଏହି ପରିକଳ୍ପନା ଏକ ମାନସିକ ବିକାର ଭାବେ ପରିଗଣିତ । ହନୁମାନଙ୍କୁ ଚିକିତ୍ସକଙ୍କର ପାଗଳ ରୂପେ ଅଭିହିତ କରିବା ମଧ୍ୟରେ ଏହା ସୂଚିତ ।

ହନୁମାନ ଏଠାରେ ସାଂପ୍ରତିକ ଆଧୁନିକ ମାନବର ପ୍ରତିଭୂ । ସଂଗ୍ରାମ ପାଇଁ ପ୍ରେରଣା ଅଥବା ବୀରତ୍ୱବୋଧ ତା' ନିକଟରୁ ଅନ୍ତର୍ହିତ । ପୁଣି ସମଗ୍ର ମାନବ ସଭ୍ୟତା ଅବକ୍ଷୟଗ୍ରସ୍ତ । ଏହା ବିରୋଧରେ ସଂଗ୍ରାମ ଘୋଷଣା ମଧ୍ୟ ଅସମ୍ଭବ । ଜୀବନ ନଗ୍ନ-ବ୍ୟଭିଚାର ମଧ୍ୟରେ ଗ୍ରସ୍ତ । ଗ୍ରେଶାକ୍ରାନ୍ତ ବାରବଧୂମାନଙ୍କର କାଶର ଶବ୍ଦରେ ଯୁଦ୍ଧର ହୁଙ୍କାର ନିସ୍ତବ୍ଧ । ବିପର୍ଯ୍ୟସ୍ତ ମାନବିକ ମୂଲ୍ୟବୋଧର ପୁନରୁଦ୍ଧାର ପାଇଁ ପ୍ରୟାସ ନିଷ୍ଫଳତାରେ ପର୍ଯ୍ୟବସିତ—

"ନଗର ନଗ୍ନତା ଦେଖି ଆଉ ଲୋକେ ହସୁ ନାହାନ୍ତି ଓ
ଶୁନ୍‌ଶାନ୍ ରାଜପଥ ମଝାହିଏ ଉଦ୍‌ଭ୍ରାନ୍ତ ଝଣ୍ଟିଆ ଭୂତରେ
ମେଘମାନେ ବାସୁଛନ୍ତି ମୃତ୍ୟୁ ପରି, ଯୁଦ୍ଧର ଗର୍ଜନ
ନିସ୍ତବ୍ଧ ଅସଂଖ୍ୟ ଶୀର୍ଣ୍ଣ ବେଶ୍ୟାଙ୍କର କାଶ ଶବ୍ଦ ଦ୍ୱାରା
କାହାକୁ ମାରିବା ପ୍ରଭୁ, କାହାକୁ ବା ଉଦ୍ଧାର କରିବା ?
ଉତ୍ତର ବିରଫ ହୁଏ, ସେତୁବନ୍ଧ ହୁଏ ଅନ୍ତର୍ଦ୍ଧାନ (୧୩୧)"

ସେତୁବନ୍ଧର ଅନ୍ତର୍ଦ୍ଧାନ ମଧ୍ୟରେ ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା ପାଇଁ ସାଂପ୍ରତିକ ଜୀବନବୋଧର ନିଷ୍ଫଳ ପ୍ରଚେଷ୍ଟା ପ୍ରତିଫଳିତ ।

**(ଘ)—ପ୍ରାଚୀନ ଶାସ୍ତ୍ରୀୟ ମୂଲ୍ୟବୋଧ ପ୍ରତି ବିଶ୍ଳେଷ**

ଭାରତର ପ୍ରାଚୀନ ଶାସ୍ତ୍ରୀୟ ମୂଲ୍ୟବୋଧ ଅନୁଯାୟୀ—ସୃଷ୍ଟି ମଧୁ-ନିସ୍ୟନ୍ଦିନୀ । ତାହା ଦିବ୍ୟାନନ୍ଦ ତଥା କଲ୍ୟାଣର ଉତ୍ସ । ଏଣୁ ବେଦର ଆର୍ଯ୍ୟ ଋଷି

ସମଗ୍ର ପୃଥିବୀକୁ ମଧୁମୟ କରିବା ପାଇଁ ଆକାଙ୍କ୍ଷା ପୋଷଣ କରିଥିଲେ । ସେମାନଙ୍କ ପାଇଁ ପବନର ଝଙ୍କାର ଥିଲା ମଧୁମୟ । ଶସ୍ୟ ଓ ବନସ୍ପତି—ମଧୁ ଭଣ୍ଡାରର ସଞ୍ଚୟ । ପୃଥିବୀର ପ୍ରତି ଧୂଳିକଣା ମଧୁମୟ ସ୍ନିଗ୍ଧତାରେ ଉଦ୍‌ଭାସିତ (୧୩୨) ।

ପ୍ରକୃତି ଓ ପରମେଶ୍ୱରଙ୍କୁ କେନ୍ଦ୍ର କରି ଏହି ବିଶ୍ୱସ୍ତ ଭାବନା, ସାଂପ୍ରତିକ କାଳରେ ବିରଳ । ପ୍ରାଚୀନ ଶାସ୍ତ୍ରର ଆନନ୍ଦମୟ ବିଶ୍ୱାସବୋଧ କ୍ରମଶଃ କ୍ଷୟମାଣ । ଭୂମିରେ ସେ ଭୂମାକୁ ଉପଲବ୍ଧି କରିପାରେ ନାହିଁ, ପକ୍ଷାନ୍ତରେ ତା'ର ଭୂମି—ଜରା, ବ୍ୟାଧି ଓ ମୃତ୍ୟୁର ଏକ ନରକପୁରୀ । ଆକାଶ ତା' ପାଇଁ ମହିମାନ୍ୱିତ ନୁହେଁ । ଭକ୍ତ-କବି ମଧୁସୂଦନଙ୍କ ପରି ଆକାଶର ସନ୍ଦର୍ଶନରେ କାଳଗତିକ ଲୋଭ, ମୋହ ଦୂରୀଭୂତ ହେବା ଅସମ୍ଭବ । ମଧୁସୂଦନଙ୍କ ଋଷିପ୍ରାଣ ଏହି ଉଦାର ଆକାଶର ପ୍ରଶାନ୍ତ ନୀଳିମାର ଦର୍ଶନରେ ସାଂସାରିକ ଭୋଗବାସନା ବିସ୍ମୃତ ହୋଇଯାଏ (୧୩୩) । କିନ୍ତୁ ଆଧୁନିକ ବାସ୍ତବବାଦୀ କବି ପାଇଁ ଆକାଶ ଇସ୍ପାତ-କଠିନ, ଯେଉଁଠାରେ ତା'ର କାବ୍ୟନାୟକର ଦୃଷ୍ଟିର ଦ୍ୟୁତି ବାଧାପ୍ରାପ୍ତ ହୋଇ ପୃଥିବୀକୁ ପ୍ରତ୍ୟାବର୍ତ୍ତନ କରେ—

> "ଆଖିର କପୋତ ମୋର ଆକାଶର ଇସ୍ପାତ ଦେହରେ
> ବାଧା ପାଇ ପ୍ରତିଦିନ ଫେରିଆସେ ଏଇ ପୃଥିବୀକୁ (୧୩୪)"

'ଆଖିର କପୋତ' ଏଠାରେ ନାୟକର ଦୃଷ୍ଟିଭଙ୍ଗୀର ପ୍ରତୀକ । ଏହି ଦୃଷ୍ଟିକୋଣ ତୀବ୍ର ମୃତ୍ୟୁବୋଧରେ ମ୍ରିୟମାଣ । ମୃତ୍ୟୁ ଏଠାରେ ଦେହାନ୍ତରର ତୀର୍ଥ ସୋପାନ ନୁହେଁ (୧୩୫) । ତାକୁ ଇହଲୋକରେ ବାରମ୍ବାର ମୃତ୍ୟୁ ବରଣ କରିବାକୁ ପଡ଼େ । ପ୍ରକୃତିର ସୌନ୍ଦର୍ଯ୍ୟ ତା' ପାଇଁ ନିରର୍ଥକ । ଜହ୍ନର ହ୍ଲାଦିନୀ ସୌନ୍ଦର୍ଯ୍ୟ ମ୍ରିୟମାଣ । ଚୈତ୍ର ଜରାଜୀର୍ଣ୍ଣ । ଏଇ ସମୟରେ ନାୟିକାର ମନର କପୋତ ମେଘ ମେଦୁରିତ ଆକାଶରେ ବିହରଣ ନ କରି ମେଘର ଇସ୍ପାତ ଦେହରେ ବାଧାପ୍ରାପ୍ତ—

> "ବସନ୍ତ ରାତିରେ ଛିନ୍ନ ବାଉଦରେ ବିବର୍ଣ୍ଣ ଜହ୍ନର
> ଏ ପାରରୁ ଭାସିଯାଇ ସେ ପାରରେ ମରିଯିବା କଥା—
> ଚଇତର ଜୀର୍ଣ୍ଣଦେହ ଏ ବାଲିର ଶ୍ଳେଟ ଶ୍ଳେଟ ଭଉଁରୀ ଭିତରେ
> ଏ ପାଖ ସେ ପାଖ ଯାଏ ଉଡ଼ି ଉଡ଼ି ତୁମେ କିଅଁ ଯାଉଁଛି ଯାଉଁଛି
> ତୁମେ ପୁଣି ଭଲ ପାଅ ତୁମେ ପୁଣି ହାତ ଧରି ଡାକ
> ତୁମର ଆତ୍ମା ବା କାହିଁ ? ମୋ ଦେହ ବା ଜୀବନ୍ତ କେଉଁଠି ?
> ମେଘର ଇସ୍ପାତ ଦେହ ଛିରି ପୁଣି ବାଧା ପାଏ ସେଠି ତୁମ
> ମନର କପୋତ (୧୩୬)

ଆଧୁନିକ କବି ପାଇଁ ଚୈତ୍ର ଲାବଣ୍ୟବନ୍ତାଙ୍କୁ ପ୍ରସ୍ତମଞ୍ଜୁଳା ଜଣାଇଥିବା ଚୈତ୍ର ନୁହେଁ । ଚୈତ୍ରର ଅବତରଣ ହେତୁ ନାୟକ-ନାୟିକା ଉନ୍ମତ୍ତ ନୁହନ୍ତି । କାରଣ ନାୟିକା ଆତ୍ମିକ ସୌନ୍ଦର୍ଯ୍ୟଶୂନ୍ୟା । ନାୟକର ଦେହ ସମସ୍ତର କ୍ଷୟିଷ୍ଣୁ ଧାରା ମଧ୍ୟରେ ମ୍ରିୟମାଣ । ଜୀବନ ପ୍ରତି ଏହି ନେତିଧର୍ମୀ ଦୃଷ୍ଟିଭଙ୍ଗୀ ହେତୁ ଜୀବନୀ-ଶକ୍ତିର ଉତ୍ସ, ସୂର୍ଯ୍ୟ କ୍ୟାଣ୍ଡେମିଡ ହୋଇଯାନ୍ତି, ବ୍ୟାଙ୍କେର ନଥିବା ଗ୍ରେଟ ଏକ ଟର୍ଚ୍ଚ ଲାଇଟ୍ ପରି (୧୩୭)

ପ୍ରାଚୀନ ମାନବ ଭଳି ସେ ଉନ୍ନତପାଦ ନୁହେଁ, ସେ ନତପାଦ, ଜୀବନରେ ଛନ୍ଦୋମୟ ଉଲ୍ଲାସରୁ ବଞ୍ଚିତ (୧୩୮) । ତା'ର ଜୀବନ କ୍ୟାଣ୍ଟରେ ମୃତ୍ୟୁ-ସିନ୍ଧୁର କରାଳ ଲହରୀ ସହ ସମ୍ମିଳିତ ହେବା ପାଇଁ ଅଗ୍ରଗାମୀ ନୁହେଁ, ପକ୍ଷାନ୍ତରେ ତା'ର ଔଦ୍ଧତ୍ୟ ଓ ଜୀବନ ସ୍ୱୟଂ ହିଁ ଏକ ମୃତ୍ୟୁସାଗର । ତାର ସମସ୍ତ ସର୍ବଦା ଶୂନ୍ୟ ନୁହେଁ, ପରିପୂର୍ଣ୍ଣ । କିନ୍ତୁ ଏ ପରିପୂର୍ଣ୍ଣତାର ସ୍ୱରୂପ ବଡ ଭୟଙ୍କର । ପୂର୍ଣ୍ଣରୁ ପୂର୍ଣ୍ଣ ବିୟୋଗ କରିବାପରେ ଯେଉଁ ପୂର୍ଣ୍ଣଟି ରହେ (୧୩୯) ତାହା ଭୟ ଓ ପାପବୋଧରେ ପରିପୂର୍ଣ୍ଣ—

"ଭୟ ଆଉ ପାପ ମିଶି ଏ ସମସ୍ତ ଅନ୍ତଃସତ୍ତା × ×

× × ×

ଦେଖୁ ଏହି ସହରର ଝାବର୍ଣ୍ଣ ଦେହରେ ଶୀତ, ଖଦଡ ଓ ଉଲ୍‌ର ପୋଷାକ

ଭିତରେ ହଠାତ୍ ଆସି ଛୁଡା ହୁଏ ପାପ ଆଉ ଭୟର ପ୍ରେତାତ୍ମା (୧୪୦)"

ବ୍ୟକ୍ତିର ସମ୍ପୃକ୍ତରେ ସମୁପସ୍ଥିତ ଏକ ମୂର୍ତ୍ତିମାନ ବିଗ୍ରହ—ତା'ର ପାପ ଓ ତଦ୍‌ଜନିତ ଭୟବୋଧର ପ୍ରେତାତ୍ମା । ଜୀବନର ସୌନ୍ଦର୍ଯ୍ୟସ୍ନାତ ବହୁମୁଖୀ ଆଭରଣ ଅନ୍ତରାଳରେ ତାର ଅନ୍ତଃରୂପ ଏକାନ୍ତ ଅସଫଳନ୍ତ । ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ଏଠାରେ ରୋମାଣ୍ଟିକ ନୁହେଁ, ବ୍ୟଙ୍ଗାତ୍ମକ । 'ଅମୃତସ୍ୟ ପୁତ୍ରାଃ' ମାନବର ନରକାଭିସାର ମଧ୍ୟରେ ବାସ୍ତବ ଜୀବନର ସମୃଦ୍ଧି ସମ୍ଭାବନା ବିପର୍ଯ୍ୟସ୍ତ । ଏଲିୟଟଙ୍କ ଲର୍ଡ଼କ୍ଲାଭରଟନଙ୍କ ଭାଷାରେ— "ଆଧୁନିକ ମଣିଷ ଏକ ରେଲଷ୍ଟେସନର ଶୂନ୍ୟ ପ୍ରତୀକ୍ଷାଳୟରେ ଶୂନ୍ୟକୁ ହିଁ ପ୍ରତୀକ୍ଷା କରିଥାଏ (୧୪୧) ।"

ବୁଦ୍ଧି, ବୋଧ ଓ ଭୌତିକ ପ୍ରାଚୁର୍ଯ୍ୟ ସତ୍ତ୍ୱେ ଜୀବନ ସାଂପ୍ରତିକ ବ୍ୟକ୍ତିସତ୍ତା ପାଇଁ ବିଡମ୍ବିତ । ଚଉଦ ବର୍ଷର ସୁନାନାକୀ ଝିଅଟିଏ ହସୁଥିବା ଭଳି ସୁନ୍ଦର ଏ ଜୀବନର ସ୍ଥିତି । କିନ୍ତୁ ଚୈତ୍ର ପ୍ରଥମା ଭଳି ସୁନାନାକୀ ଝିଅଟିର ଗ୍ରସ୍ତମୁଦାନ୍ତ ଭାଙ୍ଗି ଯାଇଛି । ଜୀବନର ସୁଖ, ସମ୍ଭୋଗ ଅନ୍ତରାଳରେ ରହିଥିବା ତ୍ରୁଟି ବିଚ୍ୟୁତି ସ୍ପଷ୍ଟଭାବେ ବାରି ହୋଇ ପଡୁଛି—

"ଚନ୍ଦ୍ରବର୍ଣ୍ଣର ସୁନାନାକୀ ଝିଅଟିର
ଶଙ୍ଖ-ଶୁଭ୍ର ନଳକୁର ମୁହଁରେ
ପେନ୍ଥାଏ ସଜଫୁଟା ମଲ୍ଲିଫୁଲ ହସ
× ×
ସେ ହସିଲା ମୋ ପାଇଁ
ହସ ଝିଲ ଝିଲ
ହସ ତଳେ ହଠାତ୍ ଦେଖିଲି ମୁଁ
ଗ୍ରୀଷ୍ମ ଦାନ୍ତ ତାର ଗୋଟେ ନାହିଁ (୧୪୨) ।"

ଜୀବନର ଏହି ବଞ୍ଚନାରୁ ଦୁଃଖ ଓ ବେଦନାର ସମ୍ଭବ । ଜୀବନର ପାରମ୍ପରିକ ମୂଲ୍ୟବୋଧ ପ୍ରତି ଅବିଶ୍ୱାସ ହେତୁ ଆତ୍ମଗ୍ଲାନିରେ ସେ ପୀଡ଼ିତ । ହିନ୍ଦୁଧର୍ମ ଜୀବନବୋଧ ପ୍ରତି ତା'ର ଶ୍ଳେଷ ପ୍ରଚୁର । ତା'ର ବିଶ୍ୱାସର ମୂଳଭିତ୍ତି ଦୋଦୁଲ୍ୟମାନ (୧୪୩) । ତା'ର ଜୀବନ ନାଟକର ନାୟକ ହେଉଛି ମୃତ୍ୟୁ । ମୃତ୍ୟୁ ହିଁ ରମାକାନ୍ତ ରଥଙ୍କ ରାଜାଙ୍କ ରୋମାନ୍ସର ନାୟକ । ମୃତ୍ୟୁ ଏଠାରେ ସମ୍ରାଟ ଭାବରେ ଅଭିହିତ । ମୃତ୍ୟୁର ବିପକ୍ଷ ପ୍ରତିଦ୍ୱନ୍ଦ୍ୱୀଙ୍କୁ ରୋମାନ୍ସ ରୂପେ ଅଭିହିତ କରାଯାଇ ମାନବ ଭାଗ୍ୟର ଅସହାୟତ୍ୱକୁ ଏଠାରେ ବ୍ୟଙ୍ଗ କରାଯାଇଛି । ଏଇ ପରିପ୍ରେକ୍ଷୀରେ ଆତ୍ମାର ଚିରନ୍ତନ ଅସ୍ତିତ୍ୱକୁ ମଧ୍ୟ ଆଧୁନିକ ମଣିଷ କଟାକ୍ଷପାତ କରିଛି । ଗୀତାକାରଙ୍କ ଭାଷାରେ—ଆତ୍ମା ଶସ୍ତ୍ରର ଅଚ୍ଛେଦ୍ୟ, ଅଗ୍ନିର ଅଦାହ୍ୟ ଓ ବାୟୁର ଅଶୋଷ୍ୟ (୧୪୪) । କିନ୍ତୁ ଏହି ଶାସ୍ତ୍ରୀୟ ବିଶ୍ୱାସବୋଧ ସାଂପ୍ରତିକ ମାନବ ପାଇଁ ଅର୍ଥହୀନ । ସେଥିପାଇଁ ତା'ର ସ୍ପଷ୍ଟ ଉଦ୍‌ଘୋଷଣା—

" × ପବନରେ କାଲି ଉଡ଼ିଗଲା
ଶସ୍ତ୍ରରେ ଅଚ୍ଛେଦ୍ୟ ଏବଂ ଅଗ୍ନିଦ୍ୱାରା ଅଦାହ୍ୟ ଆତ୍ମାର
ପକ୍ଷୀ, × × × (୧୪୫)

ବୈଷ୍ଣବ ରସତତ୍ତ୍ୱର ଐକାନ୍ତିକ ପ୍ରେମବୋଧ ପ୍ରତି ମଧ୍ୟ ଆଲୋଚ୍ୟ କବିତାରେ ଅବିଶ୍ୱାସବୋଧ ପ୍ରମୂର୍ତ୍ତି । ବିଦଗ୍ଧ ଚିନ୍ତାମଣି କାବ୍ୟର 'ଶ୍ୟାମ ଗତି ପଥେ ଗୋ'ର ଏକ ବ୍ୟଙ୍ଗ ସ୍ୱର ଏଠାରେ ସୁସ୍ପଷ୍ଟ—

"× × × ଉମର ମୁର୍ଦ୍ଧାର
ହଠାତ୍ କହୁଛି ଆଗୋ ସଖିଗଣ ଶ୍ୟାମ ପଦଧୂଳି
ବୋଳି ମୋର ଶିର, ଶ୍ୟାମ ଚନ୍ଦ୍ରମୂର୍ତ୍ତି ଦେଖାଅ ଓ ମୋର

ଜୀବନ ବାହାରି ଗଲେ ଶ୍ୟାମ ନାମ ହୃଦରେ ଲିହିବ,
ଶ୍ୟାମରୂପ ମୃତ୍ତିକାରେ ଲଦାଇ ଓ ଶ୍ୟାମ ବସନରେ
ମୋ ଅଙ୍ଗ ଘୋଡାଇ ଶ୍ୟାମ ଯିବା ପଥେ ଶବ ପୋତି ଦେବ (୧୪୬)''

କିନ୍ତୁ ହାରମୋନିୟମର କେଁ କଟର ଧ୍ୱନି ସହ ମୁର୍ଦ୍ଦାରିର ଏ ସ୍ୱଗତୋକ୍ତି ପ୍ରତି ନାୟକର ବିରକ୍ତିବୋଧ ସୂଚିତ ।

ପ୍ରୟୋଗବାଦୀ କବିତାରେ ବାସ୍ତବବାଦୀ ଚେତନା ଅପେକ୍ଷାକୃତ ଜଟିଳ । ଏହା ବସ୍ତୁକୈନ୍ଦ୍ରିକ ନୁହେଁ, ପକ୍ଷାନ୍ତରେ ବ୍ୟକ୍ତିକୈନ୍ଦ୍ରିକ । ନଗର-ସଭ୍ୟତାର ପରିସର ମଧ୍ୟରେ ବ୍ୟକ୍ତିର ଜୀବନ-ସଂଗ୍ରାମ ଏହାର ମୁଖ୍ୟ ଆଲେଖ୍ୟ । ନଗରସଭ୍ୟତାର କୃତ୍ରିମ ଜୀବନଚର୍ଯ୍ୟା ମଧ୍ୟରେ ମାନସିକ ଅସ୍ତିବୋଧକୁ କେନ୍ଦ୍ରକରି ଏହାର ଭାବଗତ ପ୍ରୟୋଗ ବିବର୍ତ୍ତିତ । ଏହି ଅସ୍ତିବୋଧ ସର୍ବଦା ପାଶ୍ଚାତ୍ୟ ପରମ୍ପରାରୁ ଆହୃତ ନୁହେଁ, ପକ୍ଷାନ୍ତରେ ଓଡ଼ିଶାର ନଗରକୈନ୍ଦ୍ରିକ ପରିସର ମଧ୍ୟରେ ଏହି ନିଃସଙ୍ଗତା ଓ ଅସ୍ତିବୋଧ ଏକ ଅନୁଭୂତ ସତ୍ୟ । ପ୍ରୟୋଗବାଦୀ କବି ସ୍ୱୟଂ ନଗର-ସଭ୍ୟତାର ଅଧିବାସୀ । ରାଧାନାଥଙ୍କ ଭଳି ସେ ନଗର-ନୌକାର ଗୁଣ ବୃକ୍ଷ ତଳରେ ଉପବିଷ୍ଟ । ଏଣୁ କାବ୍ୟ-ବକ୍ତବ୍ୟ ସହ ପ୍ରତ୍ୟକ୍ଷ ଭାବେ ସଂଶ୍ଳିଷ୍ଟ । ବ୍ୟକ୍ତିକୈନ୍ଦ୍ରିକ ଆବେଦନ ପ୍ରତିଫଳିତ ହୋଇଥିବାରୁ ଏହାର ଅବବୋଧ ସମସ୍ୟାସାପେକ୍ଷ । ସେହି କାରଣରୁ ପ୍ରୟୋଗବାଦୀ କବିତା ସାଧାରଣ ପାଠକ ନିକଟରେ ଦୁର୍ବୋଧ ବୋଲି ଅଭିଯୁକ୍ତ ହୁଏ । ଏହାର ଶବ୍ଦ ଯୋଜନା ତଥା ପ୍ରତୀକ ଓ ଚିତ୍ରକଳ୍ପ-ସମୃଦ୍ଧିର ପ୍ରୟୋଗ ପ୍ରଗତିବାଦୀ କାବ୍ୟଧାରା ତୁଳନାରେ ଭିନ୍ନ । ଉଭୟ କାବ୍ୟଚେତନାର ରୂପଗତ ବୈଶିଷ୍ଟ୍ୟ ପରବର୍ତ୍ତୀ ପରିଚ୍ଛେଦରେ ଉନ୍ମୋଚିତ ।

## ପାଦଟୀକା

(୧)—ଅଳଙ୍କାର ଶାସ୍ତ୍ରରେ ନାୟକର ଲକ୍ଷଣ ନିରୂପଣ କରି ଉଲ୍ଲେଖ କରାଯାଇଛି:—
"ତ୍ୟାଗୀ କୃତୀ କୁଲୀନଃ ସୁଶ୍ରୀକୋ ରୂପଯୌବନୋତ୍ସାହୀ ।
ଦକ୍ଷୋଽନୁରକ୍ତ ଲୋକସ୍ତେଜୋ ବୈଦଗ୍ଧଶୀଳବାନ୍‌ନେତା ।
ଦକ୍ଷଃକ୍ଷୀପ୍ରକାରୀ । ଶୀଳଂ ସଦ୍‌ବୃତ୍ତମ୍ ! ଏବମାଦି ଗୁଣ—
ସମ୍ପନ୍ନୋ ନେତା ନାୟକୋ ଭବତି ।
(ସାହିତ୍ୟ ଦର୍ପଣ-ତୃତୀୟ ପରିଚ୍ଛେଦ-ପୃ ୧୧୦)

ଅର୍ଥାତ୍ ଦାତା, କାର୍ଯ୍ୟକୁଶଳ, ସତ୍‌କୁଳୋତ୍ପନ୍ନ, ସୁନ୍ଦର, ବୁଦ୍ଧିମାନ୍, ଯୁବକ, ଉତ୍ସାହୀ, ନିରଳସ, ଲୋକମନୋରଞ୍ଜକ, ପ୍ରତାପୀ ଓ ସତ୍‌ସ୍ୱଭାବବିଶିଷ୍ଟ ବ୍ୟକ୍ତି ନାୟକ ପର୍ଯ୍ୟାୟଭୁକ୍ତ ।

(୨)—ଗୋବର ଗଣେଶ—ସମୁଦ୍ର ସ୍ନାନ-ଝଙ୍କାର ୧୯୫୨-ପୃ ୪

(୩)—ଗୋବର ଗଣେଶ—ସମୁଦ୍ରସ୍ନାନ-ପୃ ୪/୫

(୪)—ଗୋବର ଗଣେଶ-ସମୁଦ୍ରସ୍ନାନ-ପୃ ୫

(୫)—ତତ୍ରୈବ ।

(୬)—NoI am not Prince Hamlet, nor was meant to be·
Am an attendant lord, one that will do
To swell a progress, start a scene or two,
Advise the prince; no doubt an easy tool,
Defereential, glad to be of use,
Politic, cautious, and meticulous;
Full of high sentence, but a bit obtuse;
At times, indeed, almost ridiculous—
Almost, at times, the Fool.
(The Love Song of J. A. Prufrock-Eliot)

'ଗୋବର ଗଣେଶ'ର ସମାନ୍ତରାଳ ପଂକ୍ତି:—
"ମୁଁ ଲୁହେଁ ଧୂପର ହିରୋ, ଗାର୍ଲସ୍କୁଲ, ଚମ୍ପୁକର/ବା ଚମ୍ପୂର ନାୟକ/
ସୁରୁକଳା ଅଭାବ ମୋ ଠାରେ/ × × ×
ନାଟକର ଦୂତ ମୁଁ ମୋର କଣ ମୋଡ଼ମୋଡ଼ି ଧରି, ଢୋକ ଗିଳି ଗିଳି
ଆଣିଦେବା ରାଜ୍ୟର ଖବର"—ସମୁଦ୍ର ସ୍ନାନ-ପୃ ୫

(୭)—ଗୋବର ଗଣେଶ-ସମୁଦ୍ରସ୍ନାନ-ପୃ ୫
(୮)—The love song of J. A. Prufrock-T. S. Eliot
(୯)—ଗୋବର ଗଣେଶ-ସମୁଦ୍ରସ୍ନାନ-ପୃ ୮
(୧୦)—The love song of J. A. Prufrock-T. S. Eliot
(୧୧)— The love songs of J. A. Prufrock-T. S. Eliot
(୧୨)—ଗୋବର ଗଣେଶ-ସମୁଦ୍ର ସ୍ନାନ-ପୃ ୮
(୧୩)—"ଆକାଶର ଅନ୍ଧାରରେ ଏ ପୃଥିବୀ ବଗବର ବୁଲେ
ଖାରସାମ୍ୟ ଠିକ୍ ରଖି ଗ୍ରହତାରା ଜ୍ୟୋତିଷ୍କ ସହିତ
ଖାରସାମ୍ୟ ରଖେ କଟକରେ ହରେକୃଷ୍ଣ ଦାସ···········
ଯୌନ ଆଉ ପ୍ରଜନନ କିମ୍ବା ବୁଲେ ଠିକ୍ ନିୟମିତ"
(ହରେକୃଷ୍ଣ ଦାସ-ସମୁଦ୍ରସ୍ନାନ (୧) ପୃ ୩୦ ଝଙ୍କାର ୮/୧୦ ଅକ୍ଟୋବର ୧୯୫୭)
(୧୪)—The Unknown Citizen-W. H. Arden
(୧୫)—ହରେକୃଷ୍ଣ ଦାସ (୧)-ସମୁଦ୍ରସ୍ନାନ-ପୃ ୩୦
(୧୬)—ହରେକୃଷ୍ଣ ଦାସ (୧)-ସମୁଦ୍ର ସ୍ନାନ-ପୃ ୩୧
(୧୭)—ତତ୍ରୈବ
(୧୮)—ହରେକୃଷ୍ଣ ଦାସ (୨)-ସମୁଦ୍ର ସ୍ନାନ-ପୃ ୩୨
(୧୯)—ହରେକୃଷ୍ଣ ଦାସ (୨)-ସମୁଦ୍ର ସ୍ନାନ-ପୃ ୩୩
(୨୦)—ହରେକୃଷ୍ଣ ଦାସ (୨)-ସମୁଦ୍ର ସ୍ନାନ-ପୃ ୩୩
(୨୧)—ଶୁକଦେବ ଜେନା-ମଧ୍ୟପଦ ଲୋପୀ-ପୃ ୪୧
(୨୨)—ତତ୍ରୈବ
(୨୩)—ତତ୍ରୈବ
(୨୪)—ତତ୍ରୈବ—ପୃ ୪୧
(୨୫)—ତତ୍ରୈବ,
(୨୬)—ତତ୍ରୈବ-ପୃ ୪୨
(୨୭)—ତତ୍ରୈବ
(୨୮)—ତତ୍ରୈବ—ପୃ ୪୩
(୨୯)—ତତ୍ରୈବ
(୩୦)—ଚାର୍ବାକ ଦର୍ଶନମ୍—ସର୍ବ ଦର୍ଶନ ସଂଗ୍ରହଃ-ଅଧ୍ୟାୟ-୨ ଶ୍ଳୋକ-୨୬
(୩୧)—ପ୍ରତିମା ନାୟକ-ପାଣ୍ଡୁଲିପି-ସଚ୍ଚି ରାଉତରାୟ-ପୃ ୯୩

ଅଲକା ସାନ୍ୟାଲ-ପାଣ୍ଡୁଲିପି,-ସମୁଦ୍ରସ୍ନାନ (ଗୁରୁପ୍ରସାଦ ମହାନ୍ତି)
ବନଲତା-ଭାନୁମତୀର ଦେଶ-ସଚ୍ଚିରାଉତରାୟ
ପ୍ରଭାତୀ-ପ୍ରଭାତୀକୀ-ପ୍ରଣୟ ଓ ପରିଣୟ-ପିଙ୍ଗଳାର ସୂର୍ଯ୍ୟ-ବେଣୁଧର ରାଉତ ।

(୩୨)—ପାଣ୍ଡୁଲିପି-ପୃ ୯୩-ସଚ୍ଚିରାଉତରାୟ ଗ୍ରନ୍ଥାବଳୀ

(୩୩)—ତଦୈବ

(୩୪)—"ଆମ ପଛେ ଶୋଇଥିଲା ଦୀର୍ଘ ଦୁଇବର୍ଷର ଦୁନିଆ-/ଦୀର୍ଘ ଦୁଇବର୍ଷର ଜଗତ/
ଧୂସର ଧୂମଳ, ଧ୍ୱାନ୍ତ ଭୟଙ୍କର ପୁଣି ଯୁଦ୍ଧରତ ।"—ତଦୈବ-ପୃ ୯୩

(୩୫)—ପ୍ରଥମା ନାୟକ-ପାଣ୍ଡୁଲିପି- ପୃ ୯୪-ସଚ୍ଚିରାଉତରାୟ ଗ୍ରନ୍ଥାବଳୀ

(୩୬)—ତଦୈବ-ପୃ-୯୪

(୩୭)—ଭାନୁମତୀର ଦେଶ—ସଚ୍ଚିରାଉତରାୟ ଗ୍ରନ୍ଥାବଳୀ—ପୃ-୭୦୨

(୩୮) – ତଦୈବ

(୩୯)—ହେ ମୋର ପରମ ଧରମ—ମାନସିଂହ ଗ୍ରନ୍ଥାବଳୀ—ପ୍ରଥମଭାଗ—ପୃ-୧୪୮

(୪୦)—ପାଣ୍ଡୁଲିପି—ସଚ୍ଚିରାଉତରାୟ ଗ୍ରନ୍ଥାବଳୀ ପୃ-୩୯

(୪୧)—ତଦୈବ ।

(୪୨)—ଭାନୁମତୀର ଦେଶ—ସଚ୍ଚିରାଉତରାୟ ଗ୍ରନ୍ଥାବଳୀ—ପୃ-୭୨୭

(୪୩)—ତଦୈବ ପୃ-୭୨୯

(୪୪)—ତଦୈବ ପୃ-୭୨୮

(୪୫)—"ସବୁ ନୂଆ ସବୁ ଅଜଣା/ପର ଭିତରେ କାହୁଁ ଖୋଜି ପାଇବି/
ମୋର ନୂତନ ଜୀବନର ଠିକଣା/ସେ ଜୀବନ କାହିଁ ହେଲା/
ଭାନୁମତୀର ଦେଶ—ସଚ୍ଚିରାଉତରାୟ ଗ୍ରନ୍ଥାବଳୀ ପୃ-୭୩୩

(୪୬)—ଅଲକା ସାନ୍ୟାଲ—ସମୁଦ୍ର ସ୍ନାନ—ପୃ-୧୯ (ଝଙ୍କାର ଏପ୍ରିଲ ୧୯୫୪)

(୪୭)—"ଆଜି କାହୁଁ ଦେଖା ହେଲା ସମୟର ଡ଼େଉଁଲ୍ଗ୍ରେଭାଲ
ତୁମକୁ ଲୁଗୁଥିଲା ଶୃଗାଳତ, ଭଙ୍ଗା ନୂଆଖାଲି"
ଅଲକା ସାନ୍ୟାଲ—ପାଣ୍ଡୁଲିପି—ପୃ-୧୪୭ ସଚ୍ଚିରାଉତରାୟ ଗ୍ରନ୍ଥାବଳୀ

(୪୮)—ଦେଖିଚ କି ଦେଖିନାହିଁ ମନେ ମନେ ଯେବେ ଭାବୁଥିଲି—
ହଠାତ୍ ଯେ ହଜିଗଲ ତୁମକୁ ମୁଁ କେତେଇ ଖୋଜିଲି (ତଦୈବ-ପୃ-୧୪୬)

(୪୯)—ଅଲକା ସାନ୍ୟାଲ—ସମୁଦ୍ର ସ୍ନାନ ପୃ-୧୯

(୫୦)—ତଦୈବ ପୃ-୨୦

(୫୧)—ତଦୈବ

(୫୨)—ଅଲକା ସନ୍ୟାଲ—ସମୁଦ୍ରସ୍ନାନ—ପୃ-୨୦

(୫୩)—ପ୍ରସନ୍ନଜିତ୍ ପ୍ରଣୟ ଓ ପରିଣୟ—ପିଙ୍ଗଳାର ସୂର୍ଯ୍ୟ—୧୯୬୭-ପୃ-୭୧

(୫୪)—ତଦୈବ ।

(୫୫)—ତଦୈବ

(୫୬)—ତଦୈବ—ପୃ-୭୨

(୫୭) - ତଦୈବ ପୃ-୭୩

(୫୮)—ବୋଇତ ବନ୍ଦାଣ—କେତେ ଦିନର-୧୯୬୨-ପୃ-୭୪-ରମାକାନ୍ତ ରଥ

(୫୯)—ପିକନିକ୍—ସମୁଦ୍ରସ୍ନାନ—ପୃ-୩୫

(୬୦)—''ଟୁରିଷ୍ଟ ଆସନ୍ତି କେବେ, ସଙ୍ଗେଧରି ପିକ୍‌ନିକ ସରଞ୍ଜାମ/କାଟିବାକୁ ଅବସର ବେଳ/ଷ୍ଟୋଭ ଆଉ ସିଦ୍ଧାମାଂସ ଟିଣମାଛ/ସିଗାରେଟ, ଚକୋଲେଟ, ସତରଞ୍ଜି, ଯନ୍ତ୍ରବାକ୍‌ସଙ୍ଗୀତ/ସେମାନେ ବସନ୍ତ ସବୁ ସାଙ୍ଗ ହୋଇ ସମୁଦ୍ରକୁ ମୁହଁ କରି/ସଂବାଲୁଅ ପରି ବୁଣି ଆପଣାର ଖୋଷା''—ସୋନେଲ-ଅଷ୍ଟପଦୀ-୧୯୬୬

(୬୧)—ତପସ୍ୱିନୀ—ଗଙ୍ଗାଧର ଗ୍ରନ୍ଥାବଳୀ-ପୃ ୨୭୦

(୬୨)—''ଆଜିର ଏ ଉଷା ନୁହେଁ ସେହି ଉଷା/ଯାହା ଆଣେ ଜୀବନର ସ୍ୱାଦ /ନବ ପ୍ରଲୋଭନ ସଙ୍ଗେ ନବ ଆଶା/ × × × / ଏ ଉଷା ନକଲି ଉଷା / ନୁହେଁ ସତ୍ୟ !!!/ × ×/ ସହରି ତଳିର ଉଷା × × / କ୍ଷତପୂର୍ଣ୍ଣ ଡମିର ବିକାର (ସହରି ତଳିର ଉଷା-ପାଣ୍ଡୁଲିପି-ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ-ପୃ ୪୯/୫୦)·

(୬୩)—''ତେଣୁ ଉଷା ଆଗମନେ/ମାନବର ବାକ୍ୟ, ଆଶା ନ ହୁଏ ପୁଷ୍ପିତ/ପ୍ରସ୍ଫୁଟିତ କରଣେ ଆଜି ନ ଉଠେ ବିକଶି/ମଣିଷର ଲଘୁ ଚିତ୍ତ, ମାନସିକ ସ୍ୱାସ୍ଥ୍ୟ ପ୍ରଜାପତି ସମ ······ / × × ×/ଯନ୍ତ୍ରଶାଳେ ଘଣ୍ଟି ବାଜେ ଇଂଜିନର କ୍ରୂର ଆମନ୍ତ୍ରଣେ/ମାନବର ଶ୍ରମ ହୁଏ ପଣ୍ୟ ପରି ହେଲାରେ ବିକ୍ରୟ/ସହରି ତଳିର ଉଷା-ପାଣ୍ଡୁଲିପି-ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ-ପୃ—୪୯

(୬୪)—ହସ୍‌ପିଟାଲ୍—ସାପ୍ତି ଓ ଦୃଶ୍ୟ (୧୯୬୩) ପୃ ୫୯

(୬୫)—'Was he free ? Was he happy' (W. H. Arden-Unknown Citizen)

(୬୬)—ଯେମାନଙ୍କ ପରିଚୟ ଓ୍ୱାର୍ଡ୍‌ର ନମ୍ବର/କାହାରେ ପ୍ଲୁରୋ ବେଡ଼ର୍ ନମ୍ବର ସଂଖ୍ୟାର ଏ ପରିଚୟ ଏକା ସତ୍ୟ ଅନ୍ୟ ସବୁ ମିଛ

ଜୀବନ ଓ ଅନୁଭୂତି/ସ୍ୱାତନ୍ତ୍ର୍ୟ ଓ ଆସ୍ତିକତା/ସବୁ ଅପହୃତ
(ହସପିଟାଲ—ଘାସ୍ଫି ଓ ଦ୍ୟୁତି—ପୃ ୬୦)

(୬୭)—"ଏ ସହରର କୁଷ୍ଠ ରୋଗୀ/ବିକୃତ ଓ ଖଞ୍ଜ ଏ ସହର
ଯୋଡ଼ା ଚମ ବଙ୍କା ହାତ/ନାକ ଆଉ କାନ
ସ୍ୱେଦସିକ୍ତ ରାସ୍ତା ସବୁ ଘୁଞ୍ଚୁଥିବ/କଳାଦେହ
ଅଖାରେ ଘୋଡ଼ାଇ ଅଙ୍ଗ, କନାପଟି/ବାନ୍ଧିବାର ମୋହ·····"
(ସହରରେ ଗ୍ରୀଷ୍ମ-ଘାସ୍ଫି ଓ ଦ୍ୟୁତି—ପୃ ୨୭)

(୬୮)—ତତ୍ରୈବ—

(୬୯)—ତତ୍ରୈବ-ପୃ ୨୮

(୭୦)—ଦଲ୍ଲୀ (ଗଢ)— କେତେ ଦନର—ପୃ ୬୯

(୭୧)—ଦୁଇଟି ସ୍କେଚ—ଶବର ଆକାଶ—ପୃ-୩୪

(୭୨)—ତତ୍ରୈବ-ପୃ ୩୫

(୭୩)—କୌଣସି ଏକ ସହର ବିଷୟରେ—ଶବର ଆକାଶ—ପୃ ୨୭

(୭୪)—"What is the city over the mountains
Cracks and reforms and bursts in the violet air,
Falling towers / Jeruselom, Athens, Alexandra
Vienna, London/Unreal,"
The Waste Land—T. S. Eliot

(୭୫)—ତତ୍ରୈବ

(୭୬—କୌଣସି ଏକ ସହର ବିଷୟରେ—ଶବର ଆକାଶ—ପୃ ୨୮

(୭୭)—ତତ୍ରୈବ

(୭୮)—"ପୁରାତନ ଗଡ଼ଖାଇ, ଭଗ୍ନ ସ୍ତୂପ ବିଦୀର୍ଣ୍ଣ ପ୍ରାସାଦ
ନିଜ ଅସହାୟତାରେ ମଉ଼ ଅବସାଦ
ଶୋଚିଲା ଦାଢ଼ିରେ ଖେଳି ଯାଏ ତମାମ ବରଫ ହସ୍ତରେ
ସହର ଶିଶୁରେ କହେ ବୈତାଳକଥା କେତେ ଆଖ୍ୟାୟିକା
ଛଟା ଜାନ୍ତୁ, ଯୋଡ଼ା ମନ ନିଜ ହୃଦ ଶବ୍ଦେ ତାଳ ପକା"
(କୌଣସି ଏକ ସହର ବିଷୟରେ--ଶବର ଆକାଶ-ପୃ ୧୯)

(୭୯)—କାଚଘର-ବ୍ରଜନାଥ ରଥ

(୮୦)—ଇତିହାସ-ଶବ୍ଦର ଆକାଶ-ପୃ ୮୧

(୮୧)—ଶୀତଋତୁ—ଶବ୍ଦର ଆକାଶ—ପୃ ୮୯-ସମାବେଶ-ଅକ୍ଟୋବର ୧୯୬୮

(୮୨)— × × "ତା ପରେ ହଠାତ୍ ଯାଏ କଥାସବୁ ଆମର ମୁହଁକୁ
ଆମର ସବୁଚ ଶୋକ ସକାଳ ଓ ସଂଧ୍ୟାର ପ୍ରାର୍ଥନା
ଆମର ସବୁଚ ଜନ୍ମ ସଂଗ୍ରାମ ଓ ସ୍ୱପ୍ନର ସାଧନା
ଆମର ସବୁଚ ମୃତ୍ୟୁ ଦେହ ଆତ୍ମା ପ୍ରାଣର ବେଦନା
ଆମର ସବୁଚ ମୁକ୍ତ ସ୍ୱବଣ ଓ ସ୍ୱଧାର ବନ୍ଦନା ।"
ପିକନିକ୍-ସମୁଦ୍ର ସ୍ନାନ-ପୃ ୩୬

(୮୩)—ସହରର ଇତି କଥା-ଗାଁପ୍ତି ଓ ଦ୍ୟୁତି-ପୃ ୮୨

(୮୪)—ତିଳୋତ୍ତମା ସହର-ସସ୍ପସୃପ (୧୯୬୯) ପୃ ୮

(୮୫)—ହେ ସହର ହେ ମୋର ସହର-ସ୍ୱନୁଜା ସ୍ୱଓ

(୮୬)—ବିବର୍ଣ୍ଣ ସନ୍ଧ୍ୟାର ପରେ ସ୍ୱର୍ଭି ଆସେ ଧୀର ପଦକ୍ଷେପେ
ନଗରୀର ଭୂକୁପରେ ସତର୍କିତ ଆତତାୟୀ ସମ
କକ୍ଷତଳେ ତୀକ୍ଷ୍ଣ ଗୁପ୍ତି, କଳୁଷିତ ସ୍ୱରୂପ ଲୁଚ୍ଛଇ
ଅଜସ୍ର ଆଲୋକାସ୍ତ୍ରବେ ଚମତ୍କାର ଭଦ୍ରାମିର ଅଭିନୟ ରଚେ
ମହାନଗରୀର
ସ୍ୱର୍ଭି-ଅବତରଣ
—ବ୍ରହ୍ମୋତ୍ରୀ ମହାନ୍ତି

(୮୭)—କୁଟର୍ଜୀ ସହର ଉପବାସୀ/ପୁରୋହିତ ବିବସ୍ତ୍ର ଜାନୁର/ନଦ୍ରିତ ଓ ଜାଗ୍ରତ ପ୍ରହର (ଶ୍ଳୋକ-୧)
ଅନାବନା ଲୋକ କୁଟିଳ ସହର/ଘାଣିର ସଡ଼କ ଧୂଳିର ଝଗର (ଶ୍ଳୋକ-୨)
—ମଧ୍ୟପଦଲୋପୀ-ପୃ ୩୦/୩୧

(୮୮)—"ଲୁଚପାରେ ଦୁଃଖ, ଶୋକ, ଗୁଚ୍ଛ ଫୁଲ ଗୋଲ୍ଡଟ ଦରଜ
ସମସ୍ତର ପୃଥୁଳ ଅଣ୍ଟାରେ/ବର୍ତ୍ତମାନ ସଂଧ୍ୟା ଘାତ ଝାଟେରେ/
ସେ କେଉଁଠି କେଙ୍କି ବର୍ତ୍ତୁଳ ସ୍ୱପ୍ନର
ବକ୍ଷେର ଅଙ୍କାର ।"—(ଗ୍ରୁଡ଼-ମଧ୍ୟପଦଲୋପୀ-୧୯୬୧-ପୃ ୫୬)

(୮୯)—ଜଗଦମ୍ବା ହୋଟେଲର ନେଳୀ ଆଲୁଏାକୁ
ପତଙ୍ଗମାନେ ଆସନ୍ତୁ ସନ୍ଧ୍ୟା ଷ୍ଟେସନରେ ଲାଗିଥିବା

ଟ୍ରେନରୁ ଓହ୍ଲାଇ ଧାଇଁ ଅନାଗତ ଉଦ୍ଦେଶ୍ୟରେ ।
—ମଧ୍ୟ ପଦଲେପୀ-'ଗ୍ରୁନ୍ଥ' ପୃ ୫୮

(୯୦)—ଅକ୍ରୂର ଉବାଚ-ସମୁଦ୍ର ସ୍ନାନ-ପୃ ୬୮

(୯୧)—ସ୍ୱଗତ-କବିତା ୧୯୬୨-ପୃ ୧୮୦-୧୮୧

(୯୨)—ସ୍ୱଗତ-କବିତା ୧୯୬୨-ସ: ଗ୍ର: ଗ୍ରନ୍ଥାବଳୀ-ପୃ ୧୮୧

(୯୩)—"ମନେପଡେ ଦେଢ଼ବର୍ଷତଳେ/ପ୍ରେମରେ ମୁଁ ପଡ଼ିଥିଲି ପଞ୍ଚମରେ ଶୁକ୍ର ଅବା
ଶନି/ନବମରେ ବୃହସ୍ପତି କେଉଁକ୍ଷେତ୍ରେ ରାହୁ ଅବା ଚନ୍ଦ୍ରର ଚଳନ ?
ଲଜ୍ଜାତାର ଯଦି ଆସେ/ଆକାଶରେ ଜହ୍ନଯାଏ ହଠାତ୍ ନାଲ ହୋଇ/
ଖଡ଼ିରନ୍ତୁ କହୁଥିଲେ ଜ୍ୟୋତିଷ ସେ ସପ୍ତ ପୁରୁଷର
ପଶ୍ଚିମରୁ ଯେ ଆସିବ ନାଶ ଅବା ଅର୍ଦ୍ଧନାଶ କିମ୍ବା ଖଞ୍ଜ ବିକୃତ ପୁରୁଷ
ତା ସହିତ ସହବାସ ଅବା ଉପବାସ
କଦାଚିତ୍ ନ କରିବ, ଚକ୍ଷୁହାନି, ଅଙ୍ଗହାନି, ହାନି ହେବ ଆୟୁଷ ତୁମର ।"
—କାଳ ପୁରୁଷ-ସମୁଦ୍ର ସ୍ନାନ-ପୃ ୫୨/୫୩

(୯୪)—କାଳପୁରୁଷ—ସମୁଦ୍ର ସ୍ନାନ-ପୃ ୫୨/୫୩

(୯୫)—ତଦୈବ-ପୃ ୬୬

(୯୬)—ତଦୈବ-ପୃ ୫୮

(୯୭)—ଗରୁଡ଼—କେତେ ଦିନର-ପୃ ୮

(୯୮)—ତଦୈବ

(୯୯)—ଦୁର୍ଯ୍ୟୋଧନ—ଦୀପ୍ତି ଓ ଦ୍ୟୁତି—ପୃ ୯୯-୧୦୦

(୧୦୦)—"ଶୁଣିଲନି କାହାସ୍ୱର, ଅନ୍ତଃ-ସ୍ୱର ଛଡ଼ା/ × × / ଗବୋଲିତ ମଣିଷର
ପ୍ରତିନିଧି × ×"
—ଦୁର୍ଯ୍ୟୋଧନ—ଦୀପ୍ତି ଓ ଦ୍ୟୁତି-ପୃ ୯୯

(୧୦୧)—ଯୁଧିଷ୍ଠିର—ଦୀପ୍ତି ଓ ଦ୍ୟୁତି-ପୃ ୮୬

(୧୦୨)—ତଦୈବ,

(୧୦୩) ତଦୈବ -ପୃ ୮୭

(୧୦୪)—ମୃତ୍ୟୁନାଚ—ଅଷ୍ଟାଦୀ-ପୃ ୧

(୧୦୫)—ବ୍ରାହ୍ମଣସ୍ବର—ଉପକଥା—ତଦୈବ-ପୃ ୯

(୧୦୬)—"ତେଣୁ ପ୍ରେ ବ୍ୟର୍ଥ ଗାଥା × × ×
ମଣିଷର ଅଯତ୍ନାସ୍ତ ଶେଷ ଗାଥା
ଦେଶେ ଦେଶେ ଯାଯାବର, ଆଶ୍ରିତ, ବାସ୍ତୁନ

କେତେ ସୀମାରେଖା ଡ଼େଇଁ, ଡ଼େଇଁ କେତେ ଅକ୍ଷାଂଶ ଦ୍ରାଘିମା ×
ତେଣୁ ସେ ଲୋତକାପ୍ଳୁତ ଆଶ୍ରାସ୍ଥାନ ଶିଥିଳିକା-ସ୍ରୋତ ।”
(ସୁନ୍ଦରପୁର ଉପକଥା—ଅଷ୍ଟପଦୀ-ପୃ ୧୪)

(୧୦୭)—“ଖାଇଗୋଡ଼ାଏ ଏ ଧାଣ୍ଡ ଅଗଣା/ଓ ମାରବାଡ ସହରର ପଥ
ସବୁ ଆଜି ମୃତ ଧୂଳି; ସବୁ ଭଗ୍ନ ବ୍ୟର୍ଥ-ମନୋରଥ ।” (ଊର୍ବଶୀ-ପୃ ..୬)

(୧୦୮)—ତ୍ରିଶଙ୍କୁର ମଧ୍ୟସ୍ୱର୍ଗ—ଅଷ୍ଟପଦୀ-ପୃ ୪୪

(୧୦୯)—ଉର୍ବଶୀ

(୧୧୦)—ଉର୍ବଶୀ-ପୃ ୬୫

(୧୧୧)—ରକ୍ତନଦୀ ସଂତରଣପରେ—ଅଷ୍ଟପଦୀ-ପୃ ୯୩

(୧୧୨)—“ମୋଣ୍ଟୀବେଶ୍ୟା ରବର ଦ୍ଵା ଚମତ୍କାର ସ୍ତନ ନେଇ
ଖଣ ପେଟ ଉଲୁଣି ମୁଣ୍ଡରେ ମୁଣ୍ଡେ
ମୋର କାନ୍ଧେ ଭରାଦେଇ ପ୍ରେମକଥା ଗପେ
ଦୀର୍ଘଶ୍ୱାସ କେବେ ପାହେ, ମୃତ୍ୟୁ ଆସେ ମୁକ୍ତି ଦିଏ
× × × ×
ଉବୁ ଭଗ୍ନ ଲଗ୍ନ ଆଜି କେତେ ଦୂର
କେତେ ଦୂର ରଜନୀର ଅନ୍ତିମ ପ୍ରହର ।” ଉର୍ବଶୀ-ପୃ ୯୮

(୧୧୩)—ମାଟି ଓ ମଣିଷ—ଅଷ୍ଟପଦୀ-ପୃ ୧୭

(୧୧୪)—“ସ୍ୱର ସବୁ ବାରମ୍ବାର ଧକ୍କା ଖାଇ, ଫିଟି ହୋଇ
ପଥର କାନ୍ଥରେ ମାରବଲେ;/ସ୍ୱପ୍ନ ସବୁ ଚର୍ଚ୍ଚିତ କର୍ଙ୍କର ପର
ମଥା ଫିଟି, ଡ଼େଣା ଫିଟି ବନ୍ଧା ବନ୍ଦୀରେ/ଝର ପଙ୍କ ମଳେ ।”
(ଉର୍ବଶୀ-ପୃ ୧୯)

(୧୧୫)—“ମୁଁ ଗଢ଼ିଛୁ ମୋର ସୁଖ/ଭ୍ରଙ୍ଗିଚୁକ ଦେବାଳୟ, ଝଟାକା ମନ୍ଦିର
ପୋତି କାଲି ଗୀର୍ଜା ଆଉ ମସ୍ଜିଦ୍ କାବ୍ୟ ଓ ଲିପି ନା
ମୁଁ ମାରିଛୁ ଉଣ୍ଡି ଚପି, କାଢ଼ି ଅଣି ଅନ୍ତବୁଜୁଲାକୁ
ଟଙ୍କା ପାଇଁ ସୁନା ପାଇଁ, ପାଞ୍ଚଖଣ୍ଡ ପଡ଼ାପାଇଁ
ପ୍ରଗତି ଓ ଉନ୍ନତିଲ ପାଇଁ”—ଉର୍ବଶୀ-ପୃ ୨୮

(୧୧୬)—ମାଟି ଓ ମଣିଷ—ଅଷ୍ଟପଦୀ-ପୃ ୩୯-୪୦

(୧୧୭)—କୁରୁକ୍ଷେତ୍ର—ଶବର ଆକାଶ-ପୃ ୩୭-ଝଙ୍କାର—ଜାନୁୟାରୀ-୧୯୬୭

(୧୧୮) – "ସଜ ଛନ ଛନ ମୋର ସ୍ୱପ୍ନଙ୍କର କବନ୍ଧ ଓ
ହାତ ଗୋଡ଼ ଛୁଞ୍ଚ ଥିବା ନାଲି ନେଳି ମାଦଳ ଆଶାଟିମାନ/ଗଡ଼ୁଥାନ୍ତି

× × ×

ସଂଦେହର ବଲୁଆ, କୁକୁର ସବୁ ଦାନ୍ତରେ ରେକୁଟିଥାନ୍ତି
ସଜମଲ ଶୋକ ।"
କୁରୁକ୍ଷେତ୍ର—ଶବର ଆକାଶ-ପୃ ୩୮

(୧୧୯) – ତତ୍ରୈବ ।

(୧୨୦)—ଶରଶଯ୍ୟା—ଝଙ୍କାର-୧୯୬୮-ଏପ୍ରିଲ ଶବର ଆକାଶ-ପୃ ୪୪

(୧୨୧)—"କଣ୍ଟାର ମୁକୁଟ ସାଜ—ଜସରେ/ଅନେକ ଚନ୍ଦ୍ର/କାଠ, ଦେହ, ଲୁହାକଣ୍ଟା/
ନବଜ ପଶଚସ୍ତରେ ନରୁଲ ସଂଗମ/ଖରଜାଲ ନଦାଘରେ ଶୋଇରହି
ସ୍ୱପ୍ନ ଦେଖା/ଆକାଶର ତାରାଫୁଲେ ତୁଷାର, ତୁହିନ"—(ଶରଶଯ୍ୟା-ଶବର-
ଆକାଶ-ପୃ ୪୫)

(୧୨୨)—"ମୋ ରକ୍ତର ଝରଣାରେ/ଅଦ୍ଭୁତ ମନ୍ୱନ୍ତରର ଜରାସ୍ତୁର କଷ୍ଟ/
ମୋ ମାଂସର ଟୁକୁଡ଼ାରେ/ସଂଖ୍ୟାହିନ ସହବାସ, ସଂଗମର
ବିଭୂତ ବିନଷ୍ଟ ।" (ତତ୍ରୈବ-ପୃ ୪୫)

(୧୨୩)—ଅଭିମନ୍ୟୁ – ଶବର ଆକାଶ-ପୃ ୫୩

(୧୨୪)—ତତ୍ରୈବ-ପୃ ୫୬

(୧୨୫)—ତତ୍ରୈବ-ପୃ ୫୫

(୧୨୬)—ତତ୍ରୈବ-ପୃ ୫୭

(୧୨୭)—ଅନନ୍ତ ଶୟନ—ଅନେକ କୋଠରୀ-ପୃ ୨୬

(୧୨୮)—ତତ୍ରୈବ-ପୃ ୨୭

(୧୨୯)—ତତ୍ରୈବ-ପୃ ୨୮

(୧୩୦)—ହନୁମାନ—ଅନେକ କୋଠରୀ-ପୃ ୪୨

(୧୩୧)—ଅନନ୍ତ ଶୟନ—ଅନେକ କୋଠରୀ-ପୃ ୪୩

(୧୩୨)—ମଧୁବାତା ଋତାୟତେ/ମଧୁକ୍ଷରନ୍ତି ସିନ୍ଧବଃ × ×"
ଋକବେଦ ୧/୭/୯୦

(୧୩୩)—"ଧନ୍ୟ ଧନ୍ୟରେ ଆକାଶ ଧନ୍ୟ ତୋ ମହିମା
ମହାଭୟ ଉପୁଜଇ ତୋର ଦରଶନେ
ଉଦାର ପ୍ରଶାନ୍ତ ତୋର ଅନନ୍ତ ନୀଳିମା
ସଂସାରର କ୍ଷୁଦ୍ର ଭାବ ବିନାଶଇ କ୍ଷଣେ"
(ଆକାଶ ପ୍ରତି—କବିତାବଳୀ—ମଧୁସୂଦନ ଗ୍ରନ୍ଥାବଳୀ-ପୃ ୮୪)

(୧୩୪)—ଆଖିର କପୋତ—ସମୁଦ୍ର ସ୍ନାନ-ପୃ ୨୫

(୧୩୫)—"ଦେହିନୋଽସ୍ମିନ୍ ଯଥା ଦେହେ କୌମାରଂ ଯୌବନଂ ଜରା
ତଥା ଦେହାନ୍ତର ପ୍ରାପ୍ତିର୍ଧୀରସ୍ତତ୍ର ନ ମୁହ୍ୟତି ।"
ଶ୍ରୀମଦ୍ ଭଗବତ୍ ଗୀତା – ଦ୍ୱିତୀୟ ଅଧ୍ୟାୟ- ତ୍ରୟୋଦଶ ଶ୍ଳୋକ

(୧୩୬)—ଆଖିର କପୋତ—ସମୁଦ୍ର ସ୍ନାନ-ପୃ ୨୫

(୧୩୭)—"ଅପରାଜିତାର ଗାଢ଼ ବାଇଗଣି ବର୍ଣ୍ଣ ଉପରେ
ସୂର୍ଯ୍ୟ କେବେ ରହିଯାଏ ମୁହୂର୍ତ୍ତିକ ହଳଦିଆ ପ୍ରଜାପତି ପରି
ମଣିଷର କେତେ ସ୍ୱପ୍ନ ଓ ନିରାଶା କେତେ ଯୋଜନା ଓ କମିଟି ଭିତରେ
ସୂର୍ଯ୍ୟ କେବେ ନଭିଯାଏ ଆସ୍ତେ ଆସ୍ତେ ଗ୍ରେଟ ହୋଇ
ବ୍ୟକେଟର ନ ଥିବା ସାନ ଟର୍ଚ୍ଚ ଲାଇଟ୍ ପରି"
ହରେକୃଷ୍ଣ ଦାସ (୨)—ସମୁଦ୍ର ସ୍ନାନ-ପୃ ୩୩-୩୪

(୧୩୮)—"ତମେ ଗୀତଗାଇଲ ଓ ମୁଁ ଭାବିଲି ଯେଉଁରେ ନାଚ ଯିବି
ଯଦି ଓ ପାଗଳ ନାହିଁ, ମକଡ଼ି ପାଦ ନେଇ କିଏ ନାଚେ ?
× × ମକଡ଼ି ଏକ ପାଦ ଯୋଗୁଁ ଅପନ୍ତରା ଭିତରେ ମୁଁ ଥିବି"
ଅନ୍ୟଦିନ—କେତେଦିନର-ପୃ ୮୯

(୧୩୯) —ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ପୂର୍ଣ୍ଣ ମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।
ଅଧ୍ୟାତ୍ମୋପନିଷଦ—ଶାନ୍ତିପାଠ

(୧୪୦)—ହରେକୃଷ୍ଣ ଦାସ (୨)—ସମୁଦ୍ର ସ୍ନାନ-ପୃ ୩୩

(୧୪୧)—"It is just like sitting in an empty waiting room
in a railway station on a branch line after the

last train. × ×·For no one—for nothing."
The Elder Statesman-Act One-T. S. Eliot.

(୨୪୨)—ନିଷାଦ—ଶବ୍ଦର ଆକାଶ-ପୃ ୪୮

(୨୪୩)—"ଏବେକ ବାଟ ଆସିଲି ବିଶ୍ୱାସର ଭଙ୍ଗା·ଗୋଡ
ଏଣିକି ଭଙ୍ଗା ଖଡ଼ମ, ଛିଣ୍ଡା ଯୋତା ଓ ସବୁଜ ଆଶା
ମଲା ଘୋଡ଼ା, ଓଟଙ୍କର ପଞ୍ଜରା ସାଙ୍ଗରେ ମିଶିବାଲାଗି ଶୁଖିବା ପାଇଁ ।"
ସକାଳ, ସନ୍ଧ୍ୟା ଓ ରାତି—ଶବ୍ଦର ଆକାଶ-ପୃ ୮୬

(୨୪୪)—"ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ
ନଚୈନଂ କ୍ଳେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ"
ଶ୍ରୀମଦ୍ ଭଗବତ୍ ଗୀତା—ଦ୍ୱିତୀୟ ଅଧ୍ୟାୟ-ତ୍ରୟୋବିଂଶ ଶ୍ଳୋକ

(୨୪୫)—ରକ୍ତାଙ୍କ ରୋମାନ୍ସ—ସନ୍ଧ୍ୟାର ମୃଗୟା-ପୃ ୨୬

(୨୪୬)—ତତ୍ରୈବ

# ସପ୍ତମ ପରିଚ୍ଛେଦ

# ବାସ୍ତବବାଦୀ କାବ୍ୟ-ଶୈଳୀ

କବିର ବକ୍ତବ୍ୟ, କବିତାର ଆତ୍ମା । ଏହି ବକ୍ତବ୍ୟ ଶବ୍ଦ ମାଧ୍ୟମରେ ବାଣୀମୂର୍ତ୍ତି ପରିଗ୍ରହଣ କରେ । ସୁତରାଂ କବିତାର ଏକ ଦୃଶ୍ୟମାନ ରୂପ ଥାଏ । ତାହା ନିରାକାର ନୁହେଁ ସାକାର, ନିରାଲମ୍ବ ନୁହେଁ ଅବଲମ୍ବନ ସାପେକ୍ଷ । କବିର ଅମୂର୍ତ୍ତ ଭାବନା ରୂପକ ପ୍ରତୀକ, ଚିତ୍ରକଳ୍ପ, ଛନ୍ଦ ଓ ଭାଷା ଆଦିର ସ୍ପର୍ଶରେ ମୂର୍ତ୍ତିମନ୍ତ ହୋଇଥାଏ । ଅବଶ୍ୟ କବିତାର ଅଙ୍ଗ ଓ ଆତ୍ମା ମଧ୍ୟରୁ କେଉଁଟି ମହତ୍ତର ତାହା ଏକ ବିବଦମାନ ବିଷୟ । ଭାରତୀୟ କାବ୍ୟ-କଳାରେ ଆତ୍ମା ଅପେକ୍ଷା ଅଙ୍ଗ ଅଧିକ ମହତ୍ତ୍ୱପୂର୍ଣ୍ଣ । ଅଳଙ୍କରଣ ମାଧ୍ୟମରେ କାବ୍ୟିକ ବିନ୍ୟାସକୁ ଋଦ୍ଧିମନ୍ତ କରି ଅର୍ଥନୈତିକପ୍ରଭୁଙ୍କୁ ବିନୋଦିତ କରିବା ଥିଲା ଭକ୍ତଙ୍କର କାବ୍ୟିକ ଆଭିମୁଖ୍ୟ (୧) । ସପ୍ତଦଶ ଶତାବ୍ଦୀରେ ସ୍ପେନର କଲଟରା-ନିଶ୍‌ମୋ (Culteranismo) ସାହିତ୍ୟିକ ଆନ୍ଦୋଳନରେ ଅନୁରୂପ ଆଳଙ୍କାରିକ ବୈଶିଷ୍ଟ୍ୟ ଉଲ୍ଲେଖନୀୟ (୨) ।

କିନ୍ତୁ ବାସ୍ତବବାଦୀ କାବ୍ୟଚେତନାରେ ଅଙ୍ଗ ଅପେକ୍ଷା ଆତ୍ମାର ଭୂମିକା ମହତ୍ତର । 'ପୋଏଟିକ୍‌ସ ଏଣ୍ଡ ଏସ୍‌ଥେଟିକସ' (Poetics and Aesthetics) ଗ୍ରନ୍ଥରେ ଓ୍ୱାଇ ବାରବାଶ (Y. Barabash) ଏ ସମ୍ପର୍କରେ ମତଦେଇ କୁହନ୍ତି— ଗଣଚେତନା ସହ ସମନ୍ୱିତ ହିଁ ସୌନ୍ଦର୍ଯ୍ୟତତ୍ତ୍ୱର ପ୍ରଥମ ଓ ଶେଷ ଲକ୍ଷ୍ୟ ହେବା ବାଞ୍ଛନୀୟ (୩) ।

ମ୍ୟାକ୍‌ସିମ୍ ଗର୍କି 'ଦି ଆର୍ଟ ଅଫ ପୋଏଟ୍ରି' (The Art of Poetry) ଗ୍ରନ୍ଥରେ ବାସ୍ତବବାଦୀ କବିତାର ଆଙ୍ଗିକ ସମ୍ପର୍କରେ ଉଲ୍ଲେଖ କରିଛନ୍ତି—

"ବାସ୍ତବବାଦୀ କବିତାର ପ୍ରତ୍ୟକ୍ଷ ସମ୍ପର୍କରେ ଆସିବା ପୂର୍ବରୁ ବହୁବର୍ଷ ପର୍ଯ୍ୟନ୍ତ ବହୁ ଭ୍ରମ ଆଶ୍ରମ କରିଥିଲି । ମାତ୍ର ଏହାର ପ୍ରତ୍ୟକ୍ଷ ସମ୍ପର୍କରେ ଆସିବା ପରେ ଜାଣିଛି, ଏହା ଶୁଦ୍ଧ ମଧୁର ଅଥଚ ସରଳ ଭାଷା ପୁଣି ସ୍ୱଚ୍ଛତାର ଆଲୋକରେ ଦୀପ୍ତିମନ୍ତ ହେବା ଆବଶ୍ୟକ । ଏହା କ୍ଷୁଦ୍ରାତିକ୍ଷୁଦ୍ର ଆବେଗରେ ଆବଦ୍ଧ ନ ରହି ସତ୍ୟ ଓ ଶୁଦ୍ଧ ହୃଦୟାନୁଭୂତିର ଅଭିବ୍ୟକ୍ତିରେ ସମୃଦ୍ଧ ହେବା ବିଧେୟ (୪) ।

୧୯୦୫ ମସିହାରେ ପ୍ରକାଶିତ 'ପାର୍ଟି ଅର୍ଗାନାଇଜେସନ ଏଣ୍ଡ ପାର୍ଟି ଲିଟରେଚର' (Party Organisation and Party Literature) ଶୀର୍ଷକ ଗ୍ରନ୍ଥରେ ଲେନିନ କଳାକୁ ଗଣମୁଖୀ କରିବାପାଇଁ ଆହ୍ୱାନ ଦେଇଥିଲେ । ଏହି ଗଣଧର୍ମୀ କଳାର ଅଭିବ୍ୟକ୍ତି ଯଥାସମ୍ଭବ ଆଲଙ୍କାରିକତାମୁକ୍ତ ହେବା ବାଞ୍ଛନୀୟ ବୋଲି ତାଙ୍କର ମତ ।

ଆମ ଜାତିର ପିତା ମହାତ୍ମାଗାନ୍ଧୀଙ୍କ ଭାଷାରେ—"ପ୍ରକୃତ କଳାସୃଷ୍ଟି ସର୍ବସାଧାରଣଙ୍କର ଉପଲବ୍‌ଧିସାପେକ୍ଷ ହେବା ଆବଶ୍ୟକ । ପ୍ରୟୋଜନୀୟତାଠାରୁ ବିଚ୍ଛିନ୍ନ ହେବା ଉଚ୍ଚାଙ୍ଗ କଳାର ଧର୍ମ ନୁହେଁ (୫) ।"

## ପ୍ରଗତିବାଦୀ କାବ୍ୟ-ଶୈଳୀ ଓ ଏହାର ଗଣମୁଖୀ ଆବେଦନ

ସମାଜବାଦୀ ବାସ୍ତବବାଦ ପ୍ରଭାବିତ ଓଡ଼ିଆ ପ୍ରଗତିବାଦୀ କବିତାରେ ଏହି ଆଲଙ୍କାରିକତାମୁକ୍ତ ସହଜ ପ୍ରକାଶନ ଉପରେ ଗୁରୁତ୍ୱ ଦିଆଯାଇଛି । ସାଦୃଶ୍ୟତତ୍ତ୍ୱ (Correspondence Theory) ଅନୁଯାୟୀ ଗଣ ଜୀବନର ଯଥାଯଥ ଚିତ୍ର ତହିଁରେ ଅଭିବ୍ୟକ୍ତି ଲାଭ କରିଛି ।

ଓଡ଼ିଆ ପ୍ରଗତିବାଦୀ କାବ୍ୟଚେତନାର ଅନ୍ୟତମ ବିଶିଷ୍ଟ ରୂପକାର ସଚ୍ଚି ରାଉତରାୟ ମାର୍କିନ କବି ଓ୍ୱାଲ୍ଟ ହ୍ୱିଟମାନଙ୍କ ସହ କଣ୍ଠ ମିଳାଇ (୬) ସେଥିପାଇଁ ଉଚ୍ଚାରଣ କରିଛନ୍ତି—

> "ତମେ ମୋର ଛପାବହି ଯେତେବେଳେ ଛୁଅଁ
> ଛୁଅଁ ନୂଆ ମଣିଷର ଗ୍ରନ୍ଥ,
> ଏଇ ପୃଥିବୀର ସବୁ ମଣିଷ ଜାତି,
> ତା'ର ପ୍ରତିଟି ଖବର
> ରୂପ ପାଏ କବିତାରେ ମୋର (୭) ।"

କବି ଧରଣୀର ରାଜପଥର ଏକ ପଥଗ୍ଭରୀ । ସାଧାରଣ ମଣିଷ ଜୀବନର ବ୍ୟଥା ଓ ଅପମାନ ଜର୍ଜରିତ ଦୁଃଖଭରା କରୁଣ କାହାଣୀ ତାକୁ ଆକୁଳ ଅଧିର କରେ । ସେଇ ସାଧାରଣ ମଣିଷ ଜୀବନର ବାସ୍ତବ ଚିତ୍ରକୁ କବିତାରେ ସେ ବାଣୀମୂର୍ତ୍ତି ଦିଏ । ଭାଷାରେ ଅଳଙ୍କାରର ଇନ୍ଦ୍ରଜାଲ ରଚନା ତା'ର ଧର୍ମ ନୁହେଁ । ସରଳ, ସହଜ ଗଣଭାଷାର ପ୍ରୟୋଗ ତା'ର ସ୍ୱଧର୍ମ । ତା'ର କାବ୍ୟଚେତନାର ଫର୍ଦ୍ଦ ଏହିଭଳି—

> "ଧରଣୀର ରାଜପଥେ ବୁଲି ବୁଲି ପଥଗ୍ଭରୀ ମୁହିଁ
> ଯେ ବ୍ୟଥା ବାଜିଛି କାନେ ମଣିଷର ଅପମାନ ଛୁଇଁ

ଦେଉଛ ତାହାକୁ ବାଣୀ କହୁଛ ସେ ସାଧାରଣ କଥା
ଭାଷାର କପଟ ଜାଲେ ରଚନାହିଁ ଇନ୍ଦ୍ରଜାଲ ତଥା (୮)"

କାଳନ୍ଦୀ ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ଗୋଦାବରୀଶ ମହାପାତ୍ର, ମନମୋହନ ମିଶ୍ର, ରବି ସିଂ, ଜାନକୀ ବଲ୍ଲଭ ମହାନ୍ତି, ଗୋପାଳ ଚନ୍ଦ୍ର ମିଶ୍ର ପ୍ରମୁଖଙ୍କ ସମାଜବାଦୀ କବିତାର ଭାବପ୍ରକାଶନ ରୀତି, ପ୍ରଗତିବାଦୀ କାବ୍ୟଚେତନାକୁ ଆଧୁନିକ କବିତାର, ଦୁର୍ବୋଧ କାବ୍ୟ-ଶୈଳୀରୁ ମୁକ୍ତ କରିଛି—

(କ) "କିଏ ଉକାଏଛି କାହା ପାଇଁ ଫାଶୀ
କିଏ ସମାଜର ରୋଗ
କାହା ପିଠି ଲୋଡ଼େ କୋଡ଼ା ଓ ଚାବୁକ
କାହା ପାଇଁ ଜେଲ ଭୋଗ ।
ବଳେଇ କୁକୁର ଶୁଣାଅଛ ଦିନେ
ବୁଝେ ମାନ ଅପମାନ
ମଣିଷ କି ଦିନେ ନ ପାରିବ ବୁଝି
କିଏ ଶଳା ସଇତାନ (୯ଅ)"

(ଖ) "ସବହାରାର ଦଳ ଗୁଳି ଗୁଳି ଖରତର
ଚୂର ଚୂର ଜଞ୍ଜିର କାରାରେ
କଣ୍ଠେ ଖେଳୁ ହେ ତବ ବିଦ୍ୟୁତ ଧ୍ୟନବ
ବକ୍ଷେ ଝକଶୁ ପ୍ରୀତିଧାରାରେ
ମତ୍ତ ପାଗଳ ସମ ହସହସ ଅନୁପମ
ବୈଶାଖୀ ପୂର୍ଣ୍ଣିର କୂଳରେ (୯ଆ) ।"

(ଗ) "ତମେ ଯେ କପଟ କଥା ଗୁଡ଼େ ହୁଅ କହି—
ସବୁବେଳେ ଖାଲି ମିଳୁନାହିଁ ମିଳୁନାହିଁ
ଆମର ଦୁଆରେ ସବୁବେଳେ ଗୋଳମାଳ
କିଏ କହେ ଘିଅ କିଏ କହେ ନିଅ ତେଲ (୯ଇ) ।"

(ଘ) "ଦାବାନଳେ ପୋଡ଼ୁ ବନସ୍ଥିତ ଖଟି
ସମାନ ହେଲଣି କଙ୍କେ ଅଣ୍ଟା ପିଠି
ମିଳେନାଇ ଦିନେ ବରଷକେ ଛୁଟି
ଘିଅ ସରସର ମାଲିକର ରୁଟି
ଭୋକେ ମରେ ଆମ ପିଲାରେ············ (୯ଈ) ।"

(ଙ) "ତୁମକୁ ଧରି ମୁଁ ସୃଷ୍ଟି କରିବ ପୁଣ୍ଣିବାଦ
ପୋଛି ଦେବ ଯେତେ ଦୈନ୍ୟ-ଗର୍ତ
ଦୂରତେ କରିବ କାବ୍ୟ-ଅନଳେ ଭସ୍ମୀଭୂତ
ଦୁଃଖ ସାଗରେ ଝଡ଼ସମ ମୁଁ ତ ଉଠିବି ଫୁଲି
କାଳିଦେବା ପାଇଁ କୋଟି କୁଡ଼ିଆର ନଭିଲଚୂଲି (୯ଡ଼) ।"

(ଚ) "ଚଉଦିଗ ଶୁଭେସନ୍ଦ ଅଖବର ବାଣୀ ତୁଚ୍ଛତମ
ନାହିଁ ମିଳେ ନ୍ୟାଯ୍ୟ ଅଧିକାର ନ୍ୟୂନତମ (୯ଢ଼) ।"

(ଛ) "ଯୁଗ ଯୁଗ ପାଇଁ ଫେଇ ମାନବର ବନ୍ଧନ,
ସୁଖ ଶାନ୍ତିର ମୈତ୍ରୀ ପରଶେ ଗଠିତ ସିଂହାସନ,
ହେ ଚିର ଯାତ୍ରୀ, ସେ ଦିନ କରିବ ମଣ୍ଡନ
ନେବ ନବ ଯୁଗ ସନ୍ଧାନ (୯ଏ) ।"

ଏହି କବିତା ଗୁଡ଼ିକ ବାର୍ତ୍ତାଧର୍ମୀ ଶୈଳୀରେ ରଚିତ । ଏଗୁଡ଼ିକ ଗାନଧର୍ମୀ ନୁହେଁ ଆବୃତ୍ତିଧର୍ମୀ, କିନ୍ତୁ ଗୀତଧର୍ମୀ କାବ୍ୟାବେଗ ଭିତ୍ତିରେ ବିପୁଳ । ଭାବପ୍ରକାଶନଗତ ବଳିଷ୍ଠତା ପରିବର୍ତ୍ତେ ଅଭିବ୍ୟକ୍ତିଜନିତ କ୍ଷିପ୍ରତା ଏହାର ବୈଶିଷ୍ଟ୍ୟ । କାରଣ ଏହାର ଅଭିବ୍ୟକ୍ତି କୌଶଳ ଦାର୍ଶନିକ୍ ନୁହେଁ, ସରଳ । ଜଟିଳ ଭାବ ମାଧୁରୀ ପରିବର୍ତ୍ତେ ଏହା ସହଜ ଓ ସାବଲୀଳ ।

## ପ୍ରଗତିବାଦୀ କବିତାର ଶବ୍ଦ ପ୍ରୟୋଗ

ପ୍ରଗତିବାଦୀ କବିତା ସୂତ୍ରରେ ଓଡ଼ିଆ କାବ୍ୟ ଜଗତରେ କେତେକ ନୂତନ ଶବ୍ଦର ସଂଯୋଜନା ଉଲ୍ଲେଖନୀୟ । ଯେ ଭଳି ମଜ୍‌ଦୁର, ଧାଙ୍ଗଡ଼ ହାରୁଡ଼ି, ପୁଞ୍ଜିବାଦୀ, ଦଳିତ, ପୀଡ଼ିତ, ଲାଲସେନା, ସର୍ବହରା ଓ ଇନ୍‌କିଲାବ ଆଦି ଶବ୍ଦ ପ୍ରଗତିବାଦୀ କବିତାରେ ନୂତନ କାବ୍ୟିକ ମର୍ଯ୍ୟାଦା ଲାଭ କରିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ—

(ଅ) " × × ମୁଁ ଅଟେ ଏକ
କବି ପ୍ରସ୍ତରକ
ପୁଞ୍ଜିବାଦୀ ସମାଜର
ଧ୍ୱଂସର ଗାୟକ (୧୦ଅ) ।"

(ଆ) "ମଣିଷ ମଣିଷ ଶୁଭିଲା ଦୂରରୁ ଡ଼ାକ
ଦୁନିଆର ଯେତେ ଦଳିତ ପୀଡ଼ିତଯାକ,

ସ୍ପନ୍ଦନ ସେଇ ପୁଲକ ପଲ୍ଲବରେଖା
ବନ୍ଧୁର ପଥେ ବନ୍ଧୁ ସେ ମୋର ଏକା (୧୦ଆ) ।"

(ଇ) "**ସାମ୍ୟବାଦର** ଯଜ୍ଞକୁଆରେ ତୁମର **ରକ୍ତକେତନ** ତଳେ
ସମବେତହେଲେ ଭକ୍ତସାଧକ ବାଧା ବନ୍ଧନ ବିଶୋଷ ହେଲେ (୧୦ଇ)"

(ଈ) "ଦେଖ ବିଶ୍ୱର ତରୁଣ ବାହିନୀ ! ଦେଶରେ **ସର୍ବହରା**
ନୂତନ ଯୁଗର ସୂର୍ଯ୍ୟଆଲୋକେ ଭୂମଧ୍ୟ ଜଳ ତୋଷ (୧୦ଈ) ।"

(ଉ) "ଶୁଣ **ମଜ୍‌ଦୁର**ଗଣ !
ତମେତ ଗଢ଼ିଛ ଦୁନିଆସାରର
ସବୁ ଦୌଲତ୍‌ଧନ ।
× × ×
ତମର **ହାଡ଼ଗୁଣ୍ଡ** ଗୁଳକେ ତିଆରି
ସଭ୍ୟତା ହେଲ୍‌ପରେ
ତମେ କିଆଁ ହେଲ ପଶୁରୁ ଅଧମ
ନରକ ଦରମରେ (୧୦ଉ) ।"

(ଊ) "କହୁଛ ଷ୍ଟାଲିନ ଏପ୍ରିଲ
ଏପ୍ରିଲ ପଛଣ ଆଗୁ **ଲାଲସେନା**
ଦେଖିବେ ବର୍ଲିନ (୧୦ଊ) ।"

ପ୍ରଗତିବାଦୀ କବିତାରେ କାବ୍ୟିକ ଶବ୍ଦବିନ୍ୟାସ ପରିବର୍ତ୍ତେ କାବ୍ୟ-ବକ୍ତବ୍ୟର ଆବଶ୍ୟକତା ଉପଯୋଗୀ ଶବ୍ଦ ବିନ୍ୟସ୍ତ । ଏହାର ଆବେଦନ ମଧ୍ୟ ସମାନୁପାତିକ ଭାବରେ ଗଣମୁଖୀ ।

## ପ୍ରଗତିବାଦୀ କବିତାରେ ରୂପକର ଭୂମିକା

ରୂପକର ସଂଜ୍ଞା ନିର୍ଦ୍ଦେଶ କରିବାକୁ ଯାଇ ରେମଣ୍ଡ ଗ୍ରୁମ୍ କହନ୍ତି—

"ତୁଳନା ଦୃଶ୍ୟଧର୍ମୀ ପରିକଳ୍ପନାର ଏକ ପ୍ରାଥମିକ ଗଠନ, ଯାହା ରୂପକର ପୂର୍ବଜ । ଏହି ତୁଳନା ମଧ୍ୟରୁ ଗୋଟିଏ ଅସ୍ପଷ୍ଟ ବା ଅନୁକ୍ତ ରହି ଅପରଟିରେ ଅନ୍ତର୍ଭୁକ୍ତ ହୋଇଥାଏ (୧୧) ।"

କବିତାରେ ଦୁଇଟି ସ୍ୱତନ୍ତ୍ର ଏକ ଓ ଅବିଚ୍ଛିନ୍ନ ନ ହେଲେ ରୂପକସୃଷ୍ଟି ବିଫଳ ହୋଇଥାଏ । 'ମାର୍ଟିନ ଗ୍ରେ'ଙ୍କ ଭାଷାରେ—

"ଦୁଇଟି ଭିନ୍ନଧର୍ମୀ ବସ୍ତୁ ବା ଧାରଣାର ତୁଳନାଠାରୁ ରୂପକର ସ୍ଥିତି କିଛିଟା ଊର୍ଦ୍ଧ୍ୱରେ । କାରଣ ଏହି ରୂପକ ଦୁଇଟି ଭିନ୍ନଧର୍ମୀ ଭାବଚିତ୍ରକୁ ଓତଃପ୍ରୋତ ଭାବେ ଜଡ଼ିତ କରାଇଦିଏ (୧୨) ।"

ଲ. ଟି. ଲେମନ କୁହନ୍ତି—ଉପମା ଦୁଇଟି ସମାନ୍ତରାଳ ବସ୍ତୁକୁ 'ପରି', 'ଯଥା' ଆଦି ଶବ୍ଦ ସଂଯୋଜନା ମାଧ୍ୟମରେ ତୁଳନା କରିଥାଏ । କିନ୍ତୁ ରୂପକରେ ଦୁଇଟି ସମାନ୍ତରାଳ ବସ୍ତୁ ମଧ୍ୟରେ ଅଭେଦତ୍ୱ ଆରୋପ କରାଯାଇଥାଏ । (୧୩)

ପ୍ରାଚୀନ, ମଧ୍ୟଯୁଗ ତଥା ଆଧୁନିକ ଯୁଗର ଆଦ୍ୟପାଦର କବିତାରେ ଉପମାନ ଓ ଉପମେୟ ମଧ୍ୟରେ ଅଭେଦତ୍ୱ ଆରୋପ କରିଯାଇ ରୂପକ ଅଳଙ୍କାର ସୃଷ୍ଟି କରାଯାଉଥିଲା । ଯେ ଭଳି—

"ଚିହ୍ନି ଅଦଭୂତେ ଅପୂର୍ବ ଲାବଣ୍ୟ
ରୂପସୀ ରୂପସାଗରେ
ରୂପ ଲୋଭି
ନୃପ କୁମାରଙ୍କ ମନ
ମୀନ ବୁଡ଼ିଗଲା ଝରେ (୧୪) ।"

ଏଠାରେ 'ରୂପ'ରେ 'ସାଗର' ଓ 'ମନ'ରେ 'ମୀନ' ଆରୋପିତ ହୋଇଛି । ରୂପକ ଅଳଙ୍କାର ମାଧ୍ୟମରେ କାବ୍ୟ ସୌନ୍ଦର୍ଯ୍ୟ ଶାଦ୍ୱଳିତ ହୋଇଛି ।

'ରୂପକ' କିନ୍ତୁ ବାସ୍ତବବାଦୀ କବିତାରେ ଏକ କାବ୍ୟାଳଙ୍କାର ମାତ୍ର ନୁହେଁ । କାରଣ କେବଳ ବାହ୍ୟ ସାଦୃଶ୍ୟ ଉପରେ ଏହା ନିର୍ଭର କରେ ନାହିଁ । ପ୍ରଗତିବାଦୀ କବିତାରେ ଏହାର ବହୁଳ ପ୍ରୟୋଗ ଲକ୍ଷ୍ୟ କରାଯାଏ । ଯେଭଳି କବି ରାଉତରାୟଙ୍କ 'ଝଡ଼' କବିତାରେ 'ଝଡ଼', ସାମାଜିକ ବିପ୍ଳବର ଏକ ରୂପକ—

"ଏଇ ଯେ ଆସୁଛି ଝଡ
କର ସଖୀ ତା'ରେ ନମସ୍କାର (୧୫) ।"

ରୂପକର ଉପମେୟ (tenor) ଏଠାରେ ବିପ୍ଳବ, ଯାହା ଉହ୍ୟ ବା ଅନୁକ୍ତ । ଉପମାନ (vehicle) ଏଠାରେ 'ଝଡ'—ଯାହା ଅଭିବ୍ୟକ୍ତ । ରାଉତରାୟଙ୍କ 'ଝଡ଼' ଏକ କାବ୍ୟାଳଙ୍କାର ମାତ୍ର ନୁହେଁ, ଏହା ସ୍ୱୟଂ କାବ୍ୟ-ବକ୍ତବ୍ୟର ଭାରକେନ୍ଦ୍ର ।

ଅନନ୍ତ ପଟ୍ଟନାୟକଙ୍କ 'ଏଇ ମଇ ଦିବସ' କବିତାରେ ମଧ୍ୟ 'ରକ୍ତ ତାରକା' ବିପ୍ଳବର ଏକ ରୂପକ—

"ବନ୍ଦୀ ଜନତା ସ୍ୱର୍ଗ କାସ୍ତର ଜାଳେ
ବନ୍ଧନଏ ଆମ ରକ୍ତ ତାରକା ସ୍ୱଳେ
ମୁକ୍ତ ଅମୋଦେ ଗୁଲଇ ବଳଯେ ଦ୍ୟୁସି
ବିଶ୍ୱର ଦରବାରେ × × (୧୬) ।"

ସଚ୍ଚି ରାଉତରାୟଙ୍କ **'ନାଲ ନଭେମ୍ବର'** ମନୋଜ ଦାସଙ୍କ 'ହେମ' କବିତାର **ରକ୍ତ ପ୍ରଭାତ,** ବ୍ରଜନାଥରଥଙ୍କ 'ଆଗାମୀ କାଲିର ଇଙ୍ଗିତ'ର **'ରକ୍ତ କଳ',** ମନମୋହନ ମିଶ୍ରଙ୍କ 'କୋଟିକଣ୍ଠେ'ର **'ଲାଲ ପତାକା'** ଆଦି ରୂପକ ସାମାଜିକ ବିପ୍ଳବ ଓ ବିଦ୍ରୋହର ରକ୍ତରାଗରେ ଉଦ୍‌ଭାସିତ (୧୭) । ଚନ୍ଦ୍ରମଣି ବେହେରାଙ୍କ ଅଙ୍ଗୀକାର କବିତାର **'ଲୌହକାର'** ଶୋଷକ ଗୋଷ୍ଠୀର ଅଭେଦ୍ୟ ଦୁର୍ଗର ରୂପକ (୧୮ କ) । ଏହାର ଧ୍ୱଂସ ପାଇଁ କବି ଅଙ୍ଗୀକାରବଦ୍ଧ । ସଚ୍ଚି ରାଉତରାୟଙ୍କ 'ଝଡ଼' ପରି ନାୟିକବି ତୁଳସୀ ଦାସଙ୍କ 'ଆହ୍ୱାନ' କବିତାର 'ଝଡ଼' ବିପ୍ଳବର ରୂପକ (୧୮ ଖ) ।

ପ୍ରଗତିବାଦୀ କବିତା ଗଣଜୀବନ ପାଇଁ ଉଦ୍ଦିଷ୍ଟ ହୋଇଥିବାରୁ ଜଟିଳ—ପ୍ରତୀକ ଓ ଚିତ୍ରକଳ୍ପର ପ୍ରୟୋଗ ତହିଁରେ ସ୍ୱଳ୍ପ । ପ୍ରୟୋଗବାଦୀ କବିତାରେ ରୂପବିନ୍ୟାସ କ୍ଷେତ୍ରରେ ହିଁ ପ୍ରତୀକ ଓ ଚିତ୍ରକଳ୍ପର ବ୍ୟାପକ ରୂପାୟନ ଉଲ୍ଲେଖନୀୟ ।

## ପ୍ରୟୋଗବାଦୀ କାବ୍ୟ-ଶୈଳୀରେ ଚିତ୍ରକଳ୍ପର ଭୂମିକା

ଚିତ୍ରକଳ୍ପବାଦ ରୋମାଣ୍ଟିକ କବିତା ବିରୋଧରେ ଏକ ଆହ୍ୱାନ ବୋଲି ଚିତ୍ରକଳ୍ପବାଦର ପ୍ରବକ୍ତା ହ୍ୟୁମ ଓ ପାଉଣ୍ଡ ପ୍ରମୁଖଙ୍କର ମତ । ୧୯୦୮ ମସିହାରୁ ହ୍ୟୁମଙ୍କ 'ପୋଏଟ୍ରି କ୍ଲବ'ର ସ୍ଥାପନା ମାଧ୍ୟମରେ ଏହି ଚିତ୍ରକଳ୍ପବାଦର ଆଦ୍ୟ ରୂପ ରଚନା ସଂଘଟିତ ହୋଇଥିଲା । ଏଜ୍ରା ପାଉଣ୍ଡ, ଆମିଲୋଏଲ ପ୍ରମୁଖ ଏହି ଚିତ୍ରକଳ୍ପ ସଂକ୍ରାନ୍ତରେ ୧୯୧୩ ମସିହାରେ 'Des Imagistes' ଶୀର୍ଷକ ଏକ ମୁଖପତ୍ର ପ୍ରକାଶ କରିଥିଲେ । ଏହି ଚିତ୍ରକଳ୍ପବାଦ ଆନ୍ଦୋଳନକାରୀମାନଙ୍କ ଉଦ୍ୟମରେ ୧୯୧୫ ମସିହାରେ 'ସମ ଇମେଜିଷ୍ଟ ପୋଏଟ୍ସ' (Some Imagist Poets) ଗ୍ରନ୍ଥ ମଧ୍ୟ ପ୍ରକାଶ ପାଇଥିଲା ।

ଚିତ୍ରକଳ୍ପବାଦର ପ୍ରବକ୍ତାମାନଙ୍କ ମତରେ "ଆଧୁନିକ ବାସ୍ତବବାଦୀ କବିତାରେ ଭାବ ଓ ଚିନ୍ତାଦର୍ଶ ଅପେକ୍ଷା ଚିତ୍ରକଳ୍ପ (ଦୃଶ୍ୟଧର୍ମୀତ୍ୱ) ପ୍ରାଧାନ୍ୟ ଲାଭ କରିଥାଏ । ଏଥିରେ କାବ୍ୟିକ ଭାଷା ସଂଯୋଜନା ପରିବର୍ତ୍ତେ ସରଳ ଓ ସାଧାରଣ କଥିତ ଭାଷାର ପ୍ରୟୋଗ, ବିସ୍ତୃତ ପରିବର୍ତ୍ତେ ସଂକ୍ଷିପ୍ତ ଓ ପରିମିତ, ଅସଂହତ ପରିବର୍ତ୍ତେ ସଂହତ, ଭାବପ୍ରବଣତା ପରିବର୍ତ୍ତେ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଓ ଶୃଙ୍ଖଳାବଦ୍ଧ ଛନ୍ଦ

ପରିବର୍ତ୍ତେ ମୁକ୍ତ ଛନ୍ଦ ରହିବା ଆବଶ୍ୟକ (୧୯) ।" ରୂପକ ଭଳି ଚିତ୍ରକଳ୍ପର ତୁଳନାରେ ଆକୃତିଗତ ସମ୍ବନ୍ଧ ରହେନାହିଁ । ରୂପକରେ ଦୁଇଟି ବସ୍ତୁର ଅଭେଦତ୍ୱ ଆରୋପ କରାଯାଇଥାଏ ଓ ଉପମେୟ (tenor) ଉହ୍ୟ ରହିଥାଏ । କିନ୍ତୁ ଚିତ୍ରକଳ୍ପରେ ଏହି ଦୁଇଟି ବସ୍ତୁ ପାଖକୁ ପାଖ ରହିଥାନ୍ତି । ସୁତରାଂ ଉଭୟ ଉପମେୟ (tenor) ଓ ଉପମାନ (vehicle) ଉପସ୍ଥିତ ଥାନ୍ତି । ଯେଉଁଭଳି ଟି. ଏସ୍. ଏଲିଅଟଙ୍କ 'ପ୍ରିଲ୍ୟୁଡ୍ସ୍' (Preludes) କବିତାରେ ନଗର ସଭ୍ୟତାର ତଥାକଥିତ ଆଧୁନିକ ମଣିଷର ଅନ୍ତରାତ୍ମା, ନଭଶ୍ଚୁମ୍ବୀ ଦୁଇ ଅଟ୍ଟାଳିକା ମଧ୍ୟବର୍ତ୍ତୀ ସୀମିତ ଆକାଶ ରୂପେ ବିବୃତ—

"His soul stretched tight across the skies
That fade behind a city block (୨୦)"

ଯେଉଁଭଳି ହ୍ୟୁମଙ୍କ ଶରତ ରାତ୍ରିର ଜହ୍ନ ମଧ୍ୟରେ ଶ୍ରମଶୀଳାକ୍ରାନ୍ତ ଏକ କୃଷକର ଘର୍ମାକ୍ତ ଅଭିବ୍ୟକ୍ତି ପ୍ରକଟିତ । ଆକାଶରେ ତାରାର ବିବର୍ଣ୍ଣ ରୂପବିଶ୍ୱ ମଧ୍ୟରେ ନଗର ଶିଶୁର ଦଯ୍ନୀୟ ମୁଖଶ୍ରୀ ପ୍ରତିଫଳିତ (୨୧) ।

ପ୍ରୟୋଗବାଦୀ କବିତାରେ ଚିତ୍ରକଳ୍ପର ପ୍ରୟୋଗ, ତାହାର ବାସ୍ତବଧର୍ମୀ ବକ୍ତବ୍ୟ ଅଥବା ଆବେଦନକୁ ଖଣ୍ଡିତ କରେ ନାହିଁ । ପକ୍ଷାନ୍ତରେ ଏହାର ବକ୍ତବ୍ୟ ଓ ଆବେଦନକୁ ତୀକ୍ଷ୍ଣ ଓ ଶାଣିତ କରିଥାଏ । କାରଣ ଏକ ଉନ୍ନତ କବିତା, ଭାବାନୁଭୂତିର ଶୁଷ୍କ ଉଚ୍ଛ୍ୱାସ ମାତ୍ର ନୁହେଁ; ପକ୍ଷାନ୍ତରେ ତହିଁରେ ଭାବ ସଂବେଗକୁ ଆୟତ୍ତ ଓ କୌଶଳର ସହ ରୂପାନ୍ତରିତ କରିବାର ଅସାଧାରଣ ଶକ୍ତି ରହିବା ବାଞ୍ଛନୀୟ (୨୨) ।

ଆଧୁନିକ ଓଡ଼ିଆ ବାସ୍ତବବାଦୀ କବିତା ବିଶେଷତଃ ପ୍ରୟୋଗବାଦୀ କବିତାରେ ଚିତ୍ରକଳ୍ପର ବହୁ କାବ୍ୟିକ ବିନ୍ୟାସ ରହିଛି । କବି ଗୁରୁପ୍ରସାଦ, ତାଙ୍କର ପ୍ରଗତିବାଦୀ କାବ୍ୟଧାରା ମଧ୍ୟରୁ ଚିତ୍ରକଳ୍ପର ପରୀକ୍ଷା-ନିରୀକ୍ଷା ଆରମ୍ଭ କରିଥିଲେ । 'ଲାବଣ୍ୟବତୀକୁ ଚନ୍ଦ୍ରଭାନୁର ଚିଠାଉ' କବିତାରେ ଜହ୍ନକୁ 'ଟିଣର ଜହ୍ନ' ରୂପେ ଅଭିବ୍ୟକ୍ତ କରି ଚନ୍ଦ୍ରସଂପର୍କିତ କୋମଳକାବ୍ୟିକ ପରିଭିଙ୍କି ବିରୋଧରେ ସେ ପ୍ରଚଣ୍ଡ ବିସ୍ଫୋରଣ ସୃଷ୍ଟି କରିଥିଲେ (୨୩) । ତାଙ୍କର ପ୍ରୟୋଗବାଦୀ କବିତାରେ ଏହି ଉଦ୍ୟମ ଅଧିକ ସ୍ପଷ୍ଟ ଓ ଶାଣିତ । 'ପ୍ରଥମା ନାୟିକା' କବିତାରୁ ଏହାର ଏକ ଦୃଷ୍ଟାନ୍ତ ଉଦ୍ଧାର କରାଯାଉଛି—

"ଜାପାନୀ କାଗଜଫୁଲ ପରି ଦେହେ ବୟସର ଧୂଳି
ପଚାରିଲି—ଭଲ ଅଛ ? କଣ୍ଠେମୋର ବିଷଣ୍ଣ ଗୋଧୂଳି (୨୪) ।"

ପାରମ୍ପରିକ ମଧ୍ୟଯୁଗୀୟ କାବ୍ୟସମ୍ଭାରରେ ନାୟିକାର ତନୁ କନକ (ସୁନା) ଭଳି ଉଜ୍ଜ୍ୱଳ ଓ ଲତାଭଳି ନମ୍ର ତଥା କୋମଳ, ପୁଣି 'ବିଷଦ ଘନ'ରେ 'ଚପଳା ପ୍ରଭା' ଭଳି ଦ୍ୟୁତିମତୀ ତା'ର ତନୁ ଶୋଭା—

"× × ରସାଣ ରଜତ ବାଡ଼େ କନକ ଲତାକି ଜଡ଼େ

ବିଷଦ ଘନରେ କିସେ

ଚପଳା ପ୍ରଭା (୨୫) ।"

ପଲ୍ଲଙ୍କ ଅଙ୍କଶାୟିତା ଭକ୍ତନାୟିକା ଲାବଣ୍ୟବତୀ ହିଁ ଏଠାରେ ସ୍ୱୟଂ 'କନକଲତା' ।

କିନ୍ତୁ ଗୁରୁପ୍ରସାଦଙ୍କ ବାସ୍ତବବାଦୀ କାବ୍ୟ-ନାୟିକା ପ୍ରତିମାର ଦେହ (ତନୁ ନୁହେଁ) କାପାଯିା କାଗଜ ଫୁଲ ପରି ମ୍ଳାନ । ନାରୀତ୍ୱର କାନ୍ତ ଓ କୋମଳ ସୌରଭ'ତା' ପାଇଁ ସୁଦୂର ପରାହତ । ବସ୍ତିଘର ଧୂଳିରେ ସେ ବିମର୍ଷ । ବାସ୍ତବ ଜୀବନ ସଂଗ୍ରାମ ମଧ୍ୟରେ ଆଧୁନିକ ନାରୀର ବିପନ୍ନ ସ୍ଥିତି ଏଠାରେ ଏକ ଦୃଶ୍ୟଧର୍ମୀ ଚିତ୍ରକଳ୍ପ (Visual Image) ମାଧ୍ୟମରେ ପ୍ରମୂର୍ତ୍ତ ।

କବି ଗୁରୁପ୍ରସାଦଙ୍କ 'ପ୍ରତିଶ୍ରୁତି' କବିତାରେ କାବ୍ୟ-ନାୟକର ନିଃସଙ୍ଗ ମନର ସ୍ଥିତି ଏକ ଦୃଶ୍ୟମାନ ରୂପକଳ୍ପ ମଧ୍ୟରେ ପ୍ରତିଫଳିତ—

"ସକାଳେ ଏକ/ହାସପାତାଳର ନଗ୍ନ ଦ୍ୱାରା/ଏ ବେଳେଟା/

ତା' ଉପରେ ଚୁପ୍ ଚାପ ହୋଇ/ଶୋଇ ରହିଛି/ଅଶାନ୍ତ ମନ/

ଯେମିତି ଅବା ହଜିଯାଇଥିବା ବ୍ୟାଡ୍‌ମିଣ୍ଟନ/ବଲ୍‌ଟା/

ପଡ଼ି ରହିଥାଏ ଖେଳ ପରେ/କେଉଁ କଣ୍ଟା ଅରମା ଭିତରେ/

ରକ୍ତାକ୍ତ ହୋଇ (୨୭) ।

ହସ୍‌ପିଟାଲ୍‌ରେ ଚିକିତ୍ସିତ ହେଉଥିବା ମଣିଷଟି ପରିବାରର ଏକ ଅନାବଶ୍ୟକ ଭାର । ଆତ୍ମୀୟସ୍ୱଜନଙ୍କ ଉଦାସୀନତା ହେତୁ ତା'ର ଚେତନା ଏକାନ୍ତ ମ୍ରିୟମାଣ । ଅରମା ବଣରେ ହଜିଯାଇଥିବା ବ୍ୟାଡ଼ମିଂଟନ ବଲ (କର୍କ) ସହ ନାୟକର ଦୟନୀୟ ସ୍ଥିତି ଏଠାରେ ତୁଳନାତ୍ମକ ଭାବରେ ସୂଚିତ । ଜୀବନର ରଙ୍ଗଭୂମିରେ ହଜିଯାଇଥିବା କର୍କଟି ପରି ନାୟକ ପ୍ରତ୍ୟାଖ୍ୟାତ ।

ରମାକାନ୍ତ ରଥଙ୍କ 'ଇନ୍ଦ୍ରଧନୁ' କବିତାରେ ଚିତ୍ରକଳ୍ପର ବାସ୍ତବଧର୍ମୀ ପ୍ରୟୋଗ ମଧ୍ୟ ଉଲ୍ଲେଖନୀୟ—

"ତା'ପରେ ଦେଖିନୁ ଆମେ ତମସାଙ୍କେ ହଠାତ୍ ଦିଗନ୍ତେ

ବିଭିନ୍ନ ବର୍ଣ୍ଣରେ ଦଗ୍‌ଧ ଇନ୍ଦ୍ରଧନୁ ଆଦ୍ର୍ୟ ପୁଣି ଷ୍ଟିକ ବର୍ଷାରେ

ସାପପରି ଚକ୍ ଚକ୍ କରୁଥିଲା ଆକାଶର ସନ୍ଦେହ ଭିତରେ ।

× × ×

ଏବଂ ଆମେ ଜଳୁଥିଲୁଁ ଯେତେବେଳେ ବିଭକ୍ତ ଅନ୍ତରେ
କେଉଁଫଟା ଦର୍ପଣରେ ମୁହଁଦେଖା ପରି କରି ମୁହଁ × × (୨୭) ।

କାବ୍ୟପ୍ରସଙ୍ଗରେ ଇନ୍ଦ୍ରଧନୁ, କଳ୍ପନାର ବର୍ଣ୍ଣୋଜ୍ଜ୍ୱଳ୍ୟର ବାହକ । କିନ୍ତୁ ରମାକାନ୍ତଙ୍କ ଇନ୍ଦ୍ରଧନୁ କାବ୍ୟ-ନାୟକର ମନର ଦିଗନ୍ତରେ ଜୈବିକ କାମନାର ବହ୍ନିରେ ଦଗ୍ଧୀଭୂତ, ପୁଣି କେବେ ବା ପ୍ରଶମିତ କାମନାର ବର୍ଷାରେ ଆର୍ଦ୍ର ଓ ଅବଦମିତ । ଇନ୍ଦ୍ରଧନୁର 'ସାପପରି ଚକ୍ ଚକ୍' ହେବା ମଧ୍ୟରେ ଏହି ଜୈବିକ କାମନା ସୂଚିତ । ପୁନଶ୍ଚ ନାୟକର ମନର ଆକାଶ କାମନାର ଅବଦାନ ହେତୁ ଶାନ୍ତ, ଶୀତଳ ନୁହେଁ, ପକ୍ଷାନ୍ତରେ ସନ୍ଦେହ ଓ ସଂଶୟଗ୍ରସ୍ତ । ଆଧୁନିକ ଜୀବନର ସନ୍ଦେହଗ୍ରସ୍ତତା ଏହା ମଧ୍ୟରେ ପ୍ରକଟିତ । ଉଦ୍ଧୃତ କବିତାର ଦ୍ୱିତୀୟ ପଂକ୍ତିରେ 'ଫଟାଦର୍ପଣ' ଚିତ୍ରକଳ୍ପ ମଧ୍ୟରେ ସଂଶୟଦଗ୍ଧ ଦ୍ୱିଧାବିଭକ୍ତ ବ୍ୟକ୍ତିମାନସର ଅନ୍ତଃରୂପ ଉନ୍ମୋଚିତ ।

ପ୍ରକୃତିର ସୌକୁମାର୍ଯ୍ୟ ଆଧୁନିକ ମଣିଷ ପାଇଁ ନିରର୍ଥକ । ଏଣୁ ଏଲିୟଟଙ୍କ 'ପ୍ରିଲିଉଡ଼' (Preludes)ର ଶୀତ-ସନ୍ଧ୍ୟା ମଧ୍ୟରେ ସିଗାରେଟ୍‌ର ଶେଷ ଖଣ୍ଡ ଭଳି ଦିନ ବିଦାୟ ନିଏ (୨୮) । ସୀତାକାନ୍ତ 'ଉଦ୍ଧରଣ' କବିତାରେ ସମାନ୍ତରାଳଭାବେ, ଗୋଧୂଳି ସିଗାରେଟ ଧୂଆଁ ପରି ନିଃଶବ୍ଦରେ ନିଃଶେଷିତ ହୁଏ—

"ଗୋଧୂଳି ଯାଉଚି ସରି
ସିଗାରେଟ ଧୂଆଁ ପରି
ଟି ପାର୍ଟି ଗାର୍ଡ଼ନ ପାର୍ଟିରେ (୨୯) ।"

ଆଧୁନିକ ବାସ୍ତବବାଦୀ କବିତାରେ ମଧ୍ୟଯୁଗୀୟ ଗୋଧୂଳିର ମାଣିକ୍ୟ-ହୀର-ରଥାଙ୍ଗ-ବିଳାସ ବିବର୍ଜିତ । ଏଭଳି ମାଣିକ୍ୟ (ସୂର୍ଯ୍ୟ), ହୀର (ଚନ୍ଦ୍ର)ର ସଂଯୋଗ ଲକ୍ଷ୍ୟ କରାଯାଇଥିଲା ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି'ର କାବ୍ୟାକାଶରେ (୩୦)କିନ୍ତୁ ସାଂପ୍ରତିକ କାଳର ବାସ୍ତବଧର୍ମୀ ପରିବେଶ ମଧ୍ୟରେ ଚନ୍ଦ୍ର-ସୂର୍ଯ୍ୟ ସମ୍ପୃକ୍ତ ଗୋଧୂଳିର ଐଶ୍ୱର୍ଯ୍ୟ ସୁଦୂର ପରାହତ । ଆଧୁନିକ ମଣିଷ, ଟି ପାର୍ଟି ଓ ଗାର୍ଡ଼ନ ପାର୍ଟିର ସୋଫେଷ୍ଟିକେସନ ସହ ଅଧିକ ସମ୍ପୃକ୍ତ । ସିଗାରେଟ ତା'ର ତଥାକଥିତ ଆଧୁନିକ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ସୁତରାଂ ଚନ୍ଦ୍ର-ସୂର୍ଯ୍ୟର ବିଳାସ ଅପେକ୍ଷା ଗୋଧୂଳିର ସିଗାରେଟ ଧୂଆଁ ପରି ଶୂନ୍ୟୋତ୍ସାରଣ ଏହି ଜୀବନ ପାଇଁ ଅଧିକ ବାସ୍ତବ ।

ଦରଭଙ୍ଗା କୋଠାର ଚୂନ, ସୁର୍କି, ଇଟାଝଡ଼ା ରୂପ ଭିତରେ ବାସ୍ତବବାଦୀ କବି ଚେତନା 'ଘାଆ, ଦେହ, ରୂମହୀନ ରାସ୍ତାର ଧେଡ଼ୀ କୁତି'ର ଦୟନୀୟ ସ୍ୱରୂପ ଲକ୍ଷ୍ୟ

କରିଛି । ଚିତ୍ରକଳ୍ପର ପ୍ରୟୋଗରେ କାବ୍ୟଧର୍ମୀ ସୌକୁମାର୍ଯ୍ୟ ଅବଶ୍ୟ ଅନୁପଲବ୍ଧ; କିନ୍ତୁ ବାସ୍ତବ ଜୀବନର ଅନାବୃତ୍ତ ସ୍ଥିତି ଅନାୟାସଲଭ୍ୟ । ସବୁଠାରୁ ଅଧିକ ଉଲ୍ଲେଖନୀୟ କାବ୍ୟ-କୌଶଳ ହେଉଛି ନଗରର ଜରାଜୀର୍ଣ୍ଣ ସୌଧ, ଏଠାରେ କବିଙ୍କର ଲକ୍ଷ୍ୟ ନୁହେଁ ପକ୍ଷାନ୍ତରେ ଉପଲକ୍ଷ୍ୟ । ସାଂପ୍ରତିକ ମାନବ-ସଭ୍ୟତାର ସୌକୁମାର୍ଯ୍ୟ ବିହୀନ, କୁତ୍ସିତ ବୀଭତ୍ସ ସ୍ୱରୂପ ଏହା ମାଧ୍ୟମରେ ପ୍ରକଟିତ—

"ଦରଭଙ୍ଗା କେତେ କୋଠା
ଚୂନ ସୁର୍କି ଇଟା ସବୁ ପଡ଼ିଲାଣି ଝଡ଼ି
ଘାଆ ଦେହ, ରୁମହୀନ
ଏ ରାସ୍ତାର ଧେଡ଼ି କୁଷ୍ଠୀପରି
ଜରାଗ୍ରସ୍ତ, ବିସ୍ମୟ ବିହୀନ
ଜୀର୍ଣ୍ଣ ପୁରାତନ
ଅଥବା ଏ କାହାର ଜୀବନ (୩୯) ?"

ଆଧୁନିକ ଜୀବନର ବାସ୍ତବସ୍ଥିତି ସହ ପ୍ରକୃତି ପ୍ରତି କବି-ମାନସର ଦୃଷ୍ଟିଭଙ୍ଗୀ ମଧ୍ୟ ରୂପାନ୍ତରିତ । ରମାକାନ୍ତ ରଥ ଓ ସୌଭାଗ୍ୟ ମିଶ୍ରଙ୍କ ଯଥାକ୍ରମେ 'ବସନ୍ତ ଋତୁ' ଓ 'ଅନ୍ୟ ଏକ ବସନ୍ତ' କବିତାର ଚିତ୍ରକଳ୍ପ ସଂଯୋଜନା ମଧ୍ୟରେ ଏହା ପ୍ରତିଫଳିତ । ବସନ୍ତ ସେମାନଙ୍କ ପାଇଁ "ପୁଷ୍ପର ପ୍ରାଚୁର୍ଯ୍ୟ, ଭ୍ରମରର ଗୁଞ୍ଜନ ଓ ମଳୟାନିଳରେ ଚନ୍ଦନର ସୁବାସ ନେଇ ଅବତରଣ କରେନାହିଁ (୩୨) ।" ରମାକାନ୍ତଙ୍କ ବସନ୍ତ ଆସେ ଏକ 'ଧଳା ନର୍ସ' ପରି—

"ଶୀତର ଯନ୍ତ୍ରଣା ପରେ
ଦେହ ଧୋଇ ଉଷୁମ ପାଣିରେ
ଶେଯରେ ପକାଇ ସଫାଚଦର
ଓ
ଧଳା ନର୍ସ ପରି ବସନ୍ତ ଆସିଚି
ତାର ବଳିଲା ହାତରେ
ଘଣ୍ଟା ଚକ୍ ଚକ୍ କରେ (୩୩) ।'

ବସନ୍ତର ଏହି ଅନ୍ତଃରୂପ ମଧ୍ୟରେ ମୃତ୍ୟୁ ଓ ଜୈବିକ କାମନା ଯୁଗପତ୍ ସଂକେମିତ । 'ଧଳା ନର୍ସ' ଚିତ୍ରକଳ୍ପ ମଧ୍ୟରେ ଜୀବନର ପ୍ରାଣ ପ୍ରାଚୁର୍ଯ୍ୟ ଅସ୍ତମିତ । ଅନ୍ୟ-ପକ୍ଷରେ 'ବଳିଲ ବଳିଲା ହାତ' ମଧ୍ୟରେ ଜୈବିକ କାମନା ପ୍ରମୂର୍ତ୍ତି ।

ସୌଭାଗ୍ୟ ମିଶ୍ରଙ୍କ ବସନ୍ତ ସମ୍ପର୍କିତ ଚିତ୍ରକଳ୍ପ ମଧ୍ୟ ବଡ଼ ବେଦନା ବିଦଗ୍ଧ । ଏହି ବିଷାଦ ଓ ବେଦନା ସହ ରୋମାଣ୍ଟିକ ଚେତନା ସମ୍ପୃକ୍ତ ବିଶ୍ୱାସ—

"ବସନ୍ତ ବିବ୍ରତଶୀଳ, ପଶୁ ବେଲପତ୍ର ପରି ଭାସେ
ଅନ୍ୟ ବନ୍ଧୁ ନଦୀଙ୍କର ସାଗର-ସଙ୍ଗମେ
ଶିମୁଳିର ସନ୍ଧ୍ୟାଗମେ (୩୪) ।"

ପାରମ୍ପରିକ ଚେତନାରେ ବସନ୍ତ ତାରୁଣ୍ୟର ଋତୁ । କିନ୍ତୁ ସୌଭାଗ୍ୟଙ୍କ 'ବସନ୍ତ'ରୁ ତାରୁଣ୍ୟ ଅପହୃତ । ଜୀବନର ପାବନ-ଶୋଭନ ସ୍ୱରୂପ ଅସ୍ତମିତ । 'ପଶୁ ବେଲପତ୍ର' ଚିତ୍ରକଳ୍ପ ମଧ୍ୟରେ ନିଷ୍ପାପ ତାରୁଣ୍ୟରହିତ ବୀଭତ୍ସ ଜୀବନ-ଦୃଷ୍ଟି ପ୍ରକଟିତ । ଶିମୁଳିର ରକ୍ତରାଗ ମଧ୍ୟରେ ଯୌବନବତୀ ନାୟିକା-ନଦୀ ସମୂହଙ୍କର ସାଗର-ସଂଗମ ଜୀବନକୁ ଦୀପ୍ତ ଓ ତୃପ୍ତ କରେ ନାହିଁ, ଅଧିକନ୍ତୁ ଜୀବନୀଶକ୍ତିକୁ ନିଃଶେଷିତ କରିଦିଏ (୩୫) । ସୁତରାଂ 'ବସନ୍ତ' ଆଧୁନିକ ବାସ୍ତବବାଦୀ କବିଚେତନା ପାଇଁ ତାରୁଣ୍ୟର ଉତ୍ସ ନୁହେଁ, ତାହା ମୃତ୍ୟୁ ଓ ମୈଥୁନର ଏକ କୁତ୍ସିତ ପରିଧି । ଚିତ୍ରକଳ୍ପର ସଂଯୋଜନା ମାଧ୍ୟମରେ ଏହି ଅଭିବ୍ୟକ୍ତିର ସ୍ୱରୂପ ବର୍ଣ୍ଣନାତ୍ମକ ନୁହେଁ, ତାହା ବ୍ୟଞ୍ଜନାତ୍ମକ । ସୁତରାଂ କାବ୍ୟଶକ୍ତି ସମାନୁପାତିକ ଭାବେ ଶାଣିତ, ସଂହତ ଓ ତୀକ୍ଷ୍ଣ ।

ଚିତ୍ରକଳ୍ପ କେବଳ ଉପମା ଭଳି କବିତାର ଏକ ସୌନ୍ଦର୍ଯ୍ୟବ୍ୟଞ୍ଜକ ଧର୍ମ ନୁହେଁ । ମଧ୍ୟଯୁଗୀୟ କାବ୍ୟ ପରମ୍ପରାର ଉପମାଭଳି କାବ୍ୟ-ବକ୍ତବ୍ୟଠାରୁ ବିଚ୍ଛିନ୍ନ ମଧ୍ୟ ନୁହେଁ; ପକ୍ଷାନ୍ତରେ ନିବିଡ଼ ଭାବେ ସଂପୃକ୍ତ ତଥା ବାସ୍ତବଧର୍ମୀ କାବ୍ୟଚେତନାର ବ୍ୟଞ୍ଜନାତ୍ମକ ପରିପ୍ରକାଶର ଏକ ବଳିଷ୍ଠ ବାହକ ।

## ପ୍ରୟୋଗବାଦୀ କାବ୍ୟ-ଶୈଳୀରେ ପ୍ରତୀକର ଅଭିବ୍ୟକ୍ତି

ପ୍ରତୀକର ସଂଜ୍ଞା ନିରୂପଣ କରି ଇଂରାଜୀ କବି କୋଲରିଜ କହିଛନ୍ତି—

"ପ୍ରତୀକ ବାସ୍ତବତାର ଅଂଶ ଗ୍ରହଣ କରେ ଓ ତା'ର ଅବବୋଧରେ ସହାୟକ ହୋଇଥାଏ (୩୬) ।

କବିତା କେବଳ ଅର୍ଥାନୁକୂଳକ ନୁହେଁ, ଅଧିକନ୍ତୁ ଏହା ଭାବର ଅଭିବ୍ୟଞ୍ଜକ ହେବା ମଧ୍ୟ ଆବଶ୍ୟକ । ପ୍ରତୀକ କବିତାର ଏହି ଭାବ ଅଭିବ୍ୟଞ୍ଜନାରେ ସହାୟକ ହୋଇଥାଏ । ସାଧାରଣତଃ ବୌଦ୍ଧିକ ଭାବଧାରା ଅମୂର୍ତ୍ତ ରୂପକୁ ପ୍ରମୂର୍ତ୍ତ କରିବା ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ । ଏଣୁ ଚିତ୍ରକଳ୍ପ ପରି ଏହା ମଧ୍ୟ କାବ୍ୟର ଏକ ସୌନ୍ଦର୍ଯ୍ୟ ବିଧାୟକ ଧର୍ମ ନୁହେଁ, ପକ୍ଷାନ୍ତରେ କାବ୍ୟ-ବକ୍ତବ୍ୟର ଏକ ବଶିଷ୍ଟ ଭାରକେନ୍ଦ୍ର ।

ଭାରତର ପ୍ରାଚୀନ ସାହିତ୍ୟ ପରମ୍ପରାରେ ପ୍ରତୀକ ପ୍ରୟୋଗର ଦୃଷ୍ଟାନ୍ତ ଲକ୍ଷ୍ୟ କରାଯାଏ । ଉଭୟ 'ବେଦ' ଓ 'ଉପନିଷଦ'ର 'ଦ୍ୱାସୁପର୍ଣ୍ଣା' (ଦୁଇପକ୍ଷୀ) ଯଥାକ୍ରମେ ଜୀବାତ୍ମା ଓ ପରମାତ୍ମାଙ୍କର ପ୍ରତୀକ । ନିଖିଳ ବିଶ୍ୱ-ବୃକ୍ଷରେ ବସିଥିବା ଦୁଇପକ୍ଷୀଙ୍କ ମଧ୍ୟରୁ ଗୋଟିଏ ପକ୍ଷୀ, ବୃକ୍ଷର ଫଳ ଭକ୍ଷଣ କରୁଛି ; ଅପର ପକ୍ଷୀଟି ନିରାସକ୍ତ ଭାବେ ବସିରହିଛି । ପ୍ରଥମ ପକ୍ଷୀଟି ସଂସାରର ମାୟା-ମୋହ ଜାଲରେ ଆବଦ୍ଧ ଜୀବାତ୍ମା । ଦ୍ୱିତୀୟଟି ସର୍ବଦ୍ରଷ୍ଟା ପରମାତ୍ମା (୩୭) ।

ଶ୍ରୀମଦ୍ ଭାଗବତକାର ଜଗନ୍ନାଥ ଦାସ ମଧ୍ୟ ଏହି ପ୍ରତୀକ ଗୁଡ଼ିକୁ ଓଡ଼ିଆ ଭାଷାରେ କାବ୍ୟିକ ଅଭିବ୍ୟକ୍ତି ପ୍ରଦାନ କରିଛନ୍ତି (୩୮) ।

ପ୍ରାଚୀନ ସଂସ୍କୃତ ସାହିତ୍ୟର ଅନ୍ୟଏକ ପରିଚିତ ପ୍ରତୀକ ହେଉଛି ହଂସ—ଯାହା ଜୀବାତ୍ମା ଅର୍ଥରେ ପ୍ରଯୁକ୍ତ (୩୯) । ଓଡ଼ିଆଲୋକ କବି କର୍ଣ୍ଣର 'ଅନ୍ଧବାହୁନେ ହଂସହୀନ' ଉକ୍ତିରେ ହଂସ 'ଜୀବ' ର ପ୍ରତୀକ । ଅଚ୍ୟୁତାନନ୍ଦଙ୍କ 'ବ୍ରହ୍ମଶାଙ୍କୋଳି'ରେ ହଂସ-ଜୀବାତ୍ମାର ପ୍ରତୀକ (୪୦) ।

ଅପଭ୍ରଂଶ ସାହିତ୍ୟରେ ମଧ୍ୟ ବହୁ ପ୍ରତୀକ ପ୍ରଯୁକ୍ତ । ଲୁଇପାଦଙ୍କର ଏକ ଗୀତିକାରେ ତରୁ, କାୟା ଓ ତା'ର ପଞ୍ଚଶାଖା, ମନୁଷ୍ୟର ପଞ୍ଚେନ୍ଦ୍ରିୟର ପ୍ରତୀକ (୪୧) । ଆଧୁନିକ ଚିତ୍ରକଳା ଓ ସାହିତ୍ୟରେ ପ୍ରତୀକର ପ୍ରୟୋଗ ପ୍ରଚୁର । ଫ୍ରାନ୍ସର ବୋଦ୍-ଲେୟାର, ମାଲର୍ମେ ଓ ଭର୍ଲେନ ପ୍ରମୁଖ ଏହି ଆନ୍ଦୋଳନର କର୍ଣ୍ଣଧାର । ଏଠାରେ ଉଲ୍ଲେଖନୀୟ ଯେ ପ୍ରାଚୀନ କାବ୍ୟଧାରାର ପ୍ରତୀକ ଭଳି ଆଧୁନିକ କାବ୍ୟ ପରମ୍ପରାରେ ପ୍ରଯୁକ୍ତ ପ୍ରତୀକଗୁଡ଼ିକ ପ୍ରଥାସିଦ୍ଧ ନୁହନ୍ତି, ପକ୍ଷାନ୍ତରେ ବ୍ୟକ୍ତିନିଷ୍ଠ । ସୁତରାଂ ଏ ଗୁଡ଼ିକର ଉପଲବ୍ଧି କେତେକାଂଶରେ ଆୟାସସାଧ୍ୟ ଓ ଜଟିଳ । ଆଧୁନିକ ଜୀବନର ଜଟିଳ ମନୋଦଶାର ବାସ୍ତବ ରୂପାୟନ କ୍ଷେତ୍ରରେ ଏହାର ପ୍ରୟୋଗ ଅନିବାର୍ଯ୍ୟ ।

ଆଧୁନିକ କବିତାରେ ପ୍ରତୀକର ପ୍ରୟୋଗ କିଭଳି ବାସ୍ତବଧର୍ମୀ ପରିବେଶର ଦ୍ୟୋତକ, ତା'ର ସୂଚନା କବି ଗୁରୁପ୍ରସାଦ ମହାନ୍ତିଙ୍କ 'କାଳପୁରୁଷ' କବିତାରୁ ଉଦ୍ଧାର କରାଯାଇପାରେ—

"ବର୍ଷା ଋତୁ ନିଷ୍ଠୁର ନିର୍ମମ ଫୁଟାଇ
ରଙ୍ଗଣୀ ଫୁଲ ଶତ କୁଢ଼
କାଛ ବାଡ ମୂଳେ, ହାତରେ ଅଗରି ରସ ମାଟିତଳେ
ଚେରମୂଳେ ଟାଣି

ବର୍ଷା ପଡ଼େ ବର୍ଷା ପଡ଼େ ଝର ଥରାଇ ମୁମୂର୍ଷୁ ଆତ୍ମା
ଥୁଣ୍ଟା ଗଛ
ଶିଅ ମୂଳେ ମୂଳେ, ବର୍ଷା ପଡେ ଝର ଝର ଅସରନ୍ତ
ବର୍ଷା ପଡେ ଝର (୪୨) ।"

'ବର୍ଷା ଋତୁ' ପ୍ରାଚୀନ ଅଳଙ୍କାର ଶାସ୍ତ୍ରରେ ଶୃଙ୍ଗାର ଚେତନାର ଉଦ୍ଦୀପନ ବିଭାବ । କିନ୍ତୁ ଆଧୁନିକ କାବ୍ୟ ଚେତନାରେ ତା'ହା ମୃତ୍ୟୁର ସଂକେତାତ୍ମକ । ସାଂପ୍ରତିକ ଯୁଗ ଚେତନାର ଜୀବନୀଶକ୍ତି ରହିତ ମୁମୂର୍ଷୁ ଅନ୍ତଃସତ୍ତା ଏହା ମଧ୍ୟରେ ମର୍ମରିତ । ଅଭିବ୍ୟକ୍ତିର ମୂଳ ସୂତ୍ରଟି ଆହୃତ ହୋଇଛି ଇଂରାଜୀ କବି ଟି. ଏସ୍. ଏଲିୟଟ୍ଙ୍କ କାବ୍ୟକୃତିରୁ—

"April is the cruellest month, breeding
Lilacs out of the dead land, mixing
Memory and desire stirring
Dull roots with spring rain (୪୩)"

ବାସନ୍ତୀ-ବର୍ଷା (Spring Rain) ଏଠାରେ ମୃତ୍ୟୁ ଚେତନାର ପ୍ରତୀକ । ଏପ୍ରିଲ ପାଶ୍ଚାତ୍ୟ ପରଂପରାରେ ବସନ୍ତଋତୁ । କିନ୍ତୁ ତହିଁରେ ନବସୃଷ୍ଟିର ସମ୍ଭାବନା ପରିବର୍ତ୍ତେ ବର୍ଷାର ନିରବଚ୍ଛିନ୍ନତା ଏକ ଭୟାବହ ମୃତ୍ୟୁ ରୂପରେ ଅବତୀର୍ଣ୍ଣ । ତହିଁରେ ନୀଳ-ଲୋହିତ ଲିଲାକ୍ସ ପୁଷ୍ପର ସୂଚନା ଥିଲେ ମଧ୍ୟ ଏଲିୟଟ୍ଙ୍କ ମୃତ୍ୟୁ-ଉପତ୍ୟକାରେ ତାହା ମ୍ରିୟମାଣ ।

କେବଳ ପାଶ୍ଚାତ୍ୟ ପରମ୍ପରା ନୁହେଁ ପ୍ରାଚୀନ ପ୍ରତୀକଗୁଡ଼ିକୁ ଆଧୁନିକ କବି ସାମ୍ପ୍ରତିକ ବାସ୍ତବଧର୍ମୀ ପରିବେଶ ମଧ୍ୟରେ ନୂତନ ରୂପରେ ଉପସ୍ଥାପନ କରିଛନ୍ତି । ଗୁରୁପ୍ରସାଦଙ୍କ 'କାଳପୁରୁଷ' କବିତାରୁ ଏହିଭଳି ଏକ ପ୍ରତୀକର ଦୃଷ୍ଟାନ୍ତ ଉଦ୍ଧାର କରାଯାଇପାରେ—

"ଆହେ ରାଜା ପରୀକ୍ଷିତ ତକ୍ଷକର ଦଂଶନେ ଅମର
ଦେହାନ୍ତ ହେଲାରେ ରାଜା ପ୍ରାୟଶ୍ଚିତ୍ତ ଗୋଟିଏ ଉପର
କିନ୍ତୁ ମୋର ସମ୍ମୁଖରେ ଏ ବିଚିତ୍ର ଏକାପାଦ ବିଶିଷ୍ଟ ବୃଷଭ (୪୪)"

ଶ୍ରୀମଦ୍ ଭାଗବତ'ର 'ବୃଷଭ' ସ୍ୱୟଂ ଧର୍ମାବତାର—

"ଭୁ ଧର୍ମ ଧର୍ମ କଥା କହୁ ଧର୍ମେ ବୃଷଭ ରୂପ ବହୁ
ତୋହର ଚତୁର ଚରଣ ପ୍ରଥମ ଯୁଗ ଆଚରଣ
ସତ୍ୟ ଶଉଚ ଦୟା ସତ୍ୟ ଏ ଯୁଗ ଅନୁରୂପେ କୃତ

ସତ୍ୟର ସଙ୍ଗେ ତପ ଗଲା     ଶଉଚ ତ୍ରେତାରେ ରହିଲା
ଦ୍ୱାପର ଗଲା ଦୟା ସଙ୍ଗେ     ମିଥ୍ୟା ରହିଲା କଳିଯୁଗେ (୪୫) ।"

'ଶ୍ରୀମଦ୍ ଭାଗବତ'ରେ କଳି ଆଗମନର ସୂଚନା ରହିଥିଲେ ମଧ୍ୟ, ତହିଁରୁ ପରିତ୍ରାଣର ଉପାୟ ସୂଚିତ । କଠୋର ତପସ୍ୟା ଦ୍ୱାରା କୃଷ୍ଣ ପ୍ରାପ୍ତି ହେଲେ କଳି ଯୁଗର ଅଧୋପତନରୁ ମୁକ୍ତି ଲାଭ କରିବା ସମ୍ଭବ ବୋଲି ଭାଗବତକାରଙ୍କ ବିଶ୍ୱାସ ।

ଆଧୁନିକ କବି ପାଇଁ ମିଥ୍ୟାଶ୍ରିତ ସଂକ୍ରମିତ କଳି ଯୁଗରୁ ପ୍ରତ୍ୟେକଙ୍କୁ ପରିତ୍ରାଣର ସମ୍ଭାବନା ନଷ୍ଟ । ଏଣୁ 'ଶ୍ରୀମଦ୍‌ଭାଗବତ'ର 'ଏକପାଦ ବୃଷଭ', ତା'ର ଉଦ୍‌ବୃତ୍ତ ଏକପାଦ ହରାଇ ଭୂଲୁଣ୍ଠିତ ।

କବି ସୀତାକାନ୍ତଙ୍କ 'ସ୍ୱଗତ'ରେ ମଧ୍ୟ ପ୍ରତୀକର ଅନୁରୂପ ଜଟିଳ ପ୍ରୟୋଗ ଲକ୍ଷ୍ୟ କରାଯାଏ —

"ଏ ମୋର ବିକଳାଙ୍ଗ ସତ୍ତା ଯେବେ ନିଆଁ ଗାଡ଼େ
ଆପଣାକୁ ପ୍ରଦକ୍ଷିଣ କରେ
ଜ୍ୱଳନ୍ତ ବିସ୍ମୃତ ଘରେ ଶରୀର ଭେଦରେ
ପୁଣି ପ୍ରେତ ମୁଁ ନିଆଁରେ ଖେଳେ (୪୭) ।"

'ବିକଳାଙ୍ଗ ସତ୍ତା' ଏଠାରେ କାବ୍ୟ-ନାୟକର ଦ୍ୱୈତ ବ୍ୟକ୍ତିତ୍ୱର ପ୍ରତୀକ । 'ପ୍ରେତ' ମୃତ୍ୟୁ ଚେତନାର ପ୍ରତୀକ । 'ନିଆଁ' ଯୌନ ଚେତନାର ପ୍ରତୀକ । ମୃତ୍ୟୁ ଚେତନା (death drive) ଓ ଯୌନ ଚେତନା (sex drive) ଏହି ପ୍ରତୀକଗୁଡ଼ିକ ମଧ୍ୟରେ ଏକତ୍ର ସମାବିଷ୍ଟ ।

'ଭଗ୍ନମନ୍ଦିରର ଦେଶ' ରେ 'ବାଘ' ଅଦମ୍ୟ ଯୌନ କାମନାର ପ୍ରତୀକ । ଏହି ପ୍ରତୀକଟି 'ତରଙ୍ଗ' ଓ ବନିତାଙ୍କର ପାରସ୍ପରିକ ଆକର୍ଷଣରେ ଏକ ପୃଷ୍ଠପଟ—

"ପୁଣି ମହାବଳ ବାଘର ହୁଙ୍କାର
ତରଙ୍ଗ ଓ ବନିତା ଆଖିରେ ଭାସି ଉଠିଲା
ଏକ ପୀତ ମାର୍ବେଲ ରଙ୍ଗର ବାଘ
ଚମତ୍କାରେ ତା'ର ଶୀର ଧନୁକର ଦାଗ (୪୭)"

'ଶୀର ଧନୁକର ଦାଗ' ଏଠାରେ ଜୈବିକ କ୍ରିୟାର ଏକ ପୃଷ୍ଠଭୂମି । ସେହିଭଳି 'ସାପ' ପ୍ରତୀକ ମଧ୍ୟ ଏଠାରେ ନାୟକ-ନାୟିକାଙ୍କ ସମ୍ଭାବ୍ୟ ମିଳନର ଏକ ପୃଷ୍ଠପଟ୍ଟିକା—

"ବନିତା ପଚାରିଲା— ସିଏ କିଏ ?
ତରଙ୍ଗ କହିଲା—ସାପ, ସାପ, ସାପ (୪୮)"

ସୀତାକାନ୍ତଙ୍କ 'ସମୁଦ୍ରର ଇତିକଥା' କବିତାରେ ଆଧୁନିକ ଜୀବନର ସମାଧାନ ରହିତ ଜଟିଳ ସମସ୍ୟା ସମ୍ପୃକ୍ତ 'ବୁଢ଼ିଆଣୀ ଜାଲ' ପ୍ରତୀକ ମାଧ୍ୟମରେ ଅଭିବ୍ୟକ୍ତ (୪୯)। ସେହିଭଳି ଜଞ୍ଜାଳଗ୍ରସ୍ତ ଅମଲାଗଣ (Bureaucrats) 'ଦରମଲା ମାଛ' ଓ ଅମଲାତନ୍ତ୍ର (Bureaucracy) 'ଖାଲୋଇ' ପ୍ରତୀକ ମାଧ୍ୟମରେ ପ୍ରକଟିତ (୫୦)।

ରମାକାନ୍ତ ରଥଙ୍କ 'ଅନନ୍ତ ଶୟନ' କବିତାର ଏକ ସ୍ତବକରେ ମୃତ୍ୟୁଗ୍ରସ୍ତ ଆଧୁନିକ ବ୍ୟକ୍ତିମାନସର ସ୍ଥିତିକୁ ପ୍ରତୀକଗୁଚ୍ଛର ପ୍ରୟୋଗ ଦ୍ୱାରା କାବ୍ୟିକ ଅଭିବ୍ୟକ୍ତି ଦିଆଯାଇଛି—

"ତା'ହେଲେ ମୁଁ ଚାଲି ଚାଲି ଯାଉଛି ସେ ବାଲିର ନଈଁରେ
ତଣ୍ଟି ମୋର ଶୁଖିଯାଏ, ସତେ ବା ମୁଁ ଗିଳୁଅଛି ଶୁଖିଲା କାଗଜ।
ଆଣ୍ଠୁ ଥୁରୁ ଥୁରୁ ହୁଏ, ତଳିପାର ଫୋଟକା ସତ୍ତ୍ୱେ ମୁଁ
କାହାପାଇଁ ଜାଣେ ନାହିଁ କିନ୍ତୁ ଚାଲେ ତଥାପି ନଈଁରେ (୫୧)।"

'ବାଲିର ନଈଁ' ଏଠାରେ ଯନ୍ତ୍ରଣାପୀଡ଼ିତ ଜୀବନଯନ୍ତ୍ରାର ପ୍ରତୀକ। ଜୀବନର ଶୁଷ୍କ ଭୂମିରେ ଶସ୍ୟର ଅଙ୍କୁରୋଦ୍‌ଗମ ସ୍ୱପ୍ନ। ଏଣୁ ସେ ଆଉ ଫେରିବେ ନାହିଁ/ ଯେଉଁଠାରେ ଯଥେଷ୍ଟ ଧାନର ଖେତରେ/ଚରନ୍ତି ଶୁଆ (୫୨)।'

'ଧାନଖେତ' ଓ 'ଶୁଆ'—ଏଠାରେ ପରିପୂର୍ଣ୍ଣ ଜୀବନ ସ୍ୱପ୍ନର ପ୍ରତୀକ। କିନ୍ତୁ ନାୟକ ବାସ୍ତବ ଜୀବନ ଭୂମିର ଅଗ୍ନିଦାହରେ ଦଗ୍ଧୀଭୂତ। ଜୀବନୀ ଶକ୍ତିର ସଂରକ୍ଷଣ ପାଇଁ ତା'ର ନିଷ୍ଫଳ ପ୍ରୟାସ 'ଶୁଖିଲା କାଗଜ' ପ୍ରତୀକ ମାଧ୍ୟମରେ ପ୍ରମୂର୍ତ୍ତ।

ଦୀପକ ମିଶ୍ରଙ୍କ କବିତାରେ ଅନୁରୂପ ଭାବେ 'ନଈଁ' ଜୀବନ ଯନ୍ତ୍ରଣାର ପ୍ରତୀକ ରୂପେ ପ୍ରକାଶିତ—

ମୋତେ ଘେରି ଖରା ଖାଲି ଖରା
ନଈଁ-ଚରା ଖରା
ଉପରେ ଓହଳି ବୁଲେ ଲକ୍ଷ ବନ୍ୟତାରା
ମଧ୍ୟ ଖଣ୍ଡ କେବଳ ଅ'ାଛି
କେହି ନାହିଁ × × ‹ (୫୩)"

'ନଈଁ-ଚରାଖରା' ପ୍ରତୀକ ମାଧ୍ୟମରେ ଯନ୍ତ୍ରଣାଗ୍ରସ୍ତ ଜୀବନରେ ମୃତ୍ୟୁ ଚେତନା ସଂକ୍ରମିତ ହେବାବେଳେ 'ବନ୍ୟତାରା' ପ୍ରତୀକ ମଧ୍ୟରେ ଯୌନକାମନା ସଞ୍ଚରିତ। କିନ୍ତୁ ଏହି ଯୌନିକ ମନା, କାବ୍ୟ ନାୟକର ସାମ୍ପ୍ରତିକ ବାସ୍ତବଭୂମିରେ ସୁଦୂର ପରାହତ। ବର୍ତ୍ତମାନ-ଚରମ ନିଃସଙ୍ଗତାବୋଧରେ ଗ୍ରସ୍ତ। 'କେହି ନାହିଁ ମୋହର ବ୍ୟତୀତ' ପଂକ୍ତିରେ ଏହା ସୂଚିତ।

ଆଧୁନିକ କବିତାର ପ୍ରତୀକ ବହୁ ସ୍ଥଳରେ ସାଧାରଣ ପରିସରରୁ ଆହୃତ । ଯେଉଁଭଳି 'ବଗିଚ୍ଚ' ଓ 'ଭଙ୍ଗା ଖଟିଆ'—ଉଭୟ ପ୍ରତୀକ ଯଥାକ୍ରମେ ରମାକାନ୍ତ ରଥଙ୍କ 'ମାଷ୍ଟ୍ରାଣୀ' ଓ ସୀତାକାନ୍ତ ମହାପାତ୍ରଙ୍କ 'ରୋଗଶଯ୍ୟା' କବିତାରେ ସାଂପ୍ରତିକ ଜୀବନର ପ୍ରତୀକ (୫୪) ।

ବସ୍ତୁତଃ ପ୍ରତୀକ ମାଧ୍ୟମରେ ବାସ୍ତବବାଦୀ କାବ୍ୟ ଚେତନାର ବ୍ୟଞ୍ଜନାତ୍ମକ ଅଭିବ୍ୟକ୍ତି କୌଶଳ ଅଧିକ ତୀକ୍ଷ୍ଣ ଓ ଶାଣିତ । ବ୍ୟକ୍ତିଗତ ପ୍ରୟୋଗ ହେତୁ ସ୍ଥଳ-ବିଶେଷରେ ଦୁର୍ବୋଧ୍ୟତା ଦୋଷଯୁକ୍ତ ହେଲେ ମଧ୍ୟ, ଜଟିଳ ଜୀବନ ଚିତ୍ରର ପ୍ରକଟନ କ୍ଷେତ୍ରରେ ଏହାର ପ୍ରଯୁକ୍ତି ସମୁଚିତ ।

## ବାସ୍ତବବାଦୀ କବିତାର ଭାଷା ପ୍ରୟୋଗ କୌଶଳ

କଥ୍ୟ-ଭାଷା ସହ କାବ୍ୟ-ଭାଷାର ସମନ୍ୱୟ ବାସ୍ତବବାଦୀ କବିତାର ଏକ ବିଶିଷ୍ଟ ଧର୍ମ । ଆଧୁନିକ ଗଳ୍ପ, ଉପନ୍ୟାସ ଓ ନାଟକରେ କାବ୍ୟଧର୍ମୀ ପ୍ରତୀକ ଓ ଚିତ୍ର-କଳ୍ପର ଅନୁପ୍ରବେଶ ଘଟିବା ଭଳି, କବିତାରେ ଗଳ୍ପ, ଉପନ୍ୟାସ ଓ ନାଟକ ଭଳି କଥ୍ୟ-ଭାଷାର ସଞ୍ଚରଣ ଘଟୁଛି । କାବ୍ୟ-ଭାଷା ସହ କଥ୍ୟ-ଭାଷାର ମିଳନ ହେତୁ କବିତାର ବାସ୍ତବ ପ୍ରକାଶନ କୌଶଳ ଅଧିକ ତ୍ୱରାନ୍ୱିତ ହୋଇଛି ।

ଅବଶ୍ୟ କାବ୍ୟିକ ଶୁଦ୍ଧ ତତ୍ସମ ଶବ୍ଦ ସହ କଥିତ ଦେଶଜ ଶବ୍ଦର ମିଳନରେ ସଂଘଟିତ କାବ୍ୟରଚନା ରୀତି ମଧ୍ୟଯୁଗୀୟ ସାହିତ୍ୟ ପରମ୍ପରାର ମଧ୍ୟ ଏକ ବୈଶିଷ୍ଟ୍ୟ ଥିଲା । ବିଦଗ୍ଧ ଚିନ୍ତାମଣିକାର ଅଭିମନ୍ୟୁ ଏ ସମ୍ପର୍କରେ କହିଥିଲେ—

> "ଦିବ୍ୟ-ଅଦିବ୍ୟ ଭାଷାରେ ପଦ ହେବ ସିଦ୍ଧି
> ଦେଖ ମହାଜନ ମାର୍ଗ ପରମ୍ପରା ବିଧି (୫୫) ।"

ଅଭିମନ୍ୟୁଙ୍କ ପୂର୍ବରୁ ଶିଶୁ ଶଙ୍କର, ଦେବ ଦୁର୍ଲଭ, ଦୀନକୃଷ୍ଣ ଓ ଭଞ୍ଜ ପ୍ରମୁଖଙ୍କ କାବ୍ୟ ପରମ୍ପରାରେ ଭାଷାର ଏହି ଦିବ୍ୟ (ତତ୍ସମ) - ଅଦିବ୍ୟ (କଥିତ) ପ୍ରୟୋଗ ଲକ୍ଷ୍ୟ କରାଯାଇଥିଲା । ଶିଶୁଶଙ୍କରଙ୍କ 'ଭାଷାଭିଳାଷ'ରୁ ଏହାର ଏକ ଦୃଷ୍ଟାନ୍ତ ଉଦ୍ଧାର କରାଯାଉଛି—

> "ଲୁବ୍ଧ ସେବତୀ ମଲ୍ଲୀ କୋବଦାର/ଇନ୍ଦୁ କରଣ ଭୂମିକ ଗୋଚର ।
> ତୋ ମୁଖ ଶୋଭାକୁ ନପାରେ ଜିଣି/କରଣ ଗୁହ୍ଲଳ ଏ ଦଶାମଣି
> ଚଯ ଅଛି ପିଣ୍ଡୁନ । କଲା ଶେଷ ହୋଏ ଉଆଁସ ଦିନ (୫୬)"

ଏଠାରେ 'ଇନ୍ଦୁ', 'ମୁଖ', 'ଶୋଭା', 'କିରଣ', 'ନିଶାମଣି, ଓ 'ପିଶୁନ' (ମୂର୍ଖ) ଆଦି ତତ୍ସମ ଶବ୍ଦସବୁ 'କଣି', 'ଗୁଣ୍ଡିଲ', 'ହୋଏ, 'ଉଆଁସ' ଆଦି ଦେଶଜ ଶବ୍ଦର ମିଳନରେ ଶିଶୁଙ୍କର ପ୍ରକୃତି ବର୍ଣ୍ଣନା କରିଛନ୍ତି । ଦେଶଜ ଶବ୍ଦ ଗୁଡ଼ିକ ବାସ୍ତବଧର୍ମୀ ପରିବେଶକୁ ଶାଣିତ କରିବା ପାଇଁ ଉଦ୍ଦିଷ୍ଟ ହୋଇ ନାହାନ୍ତି ।

କିନ୍ତୁ ଆଧୁନିକ ବାସ୍ତବବାଦୀ କବିତାରେ ଦେଶଜ ଶବ୍ଦଗୁଡ଼ିକ ବାସ୍ତବଧର୍ମୀ ପରିବେଶକୁ ଶାଣିତ ଓ ତୀକ୍ଷ୍ଣ କରିବା ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ।

କବି ରାଉତରାୟଙ୍କ କାବ୍ୟଧାରାରୁ ଏହାର ସୂଚନା ଦିଆଯାଇପାରେ—

(କ) "ମୃତବତ୍ସା ଗାଭୀ
ଊର୍ଦ୍ଧ୍ୱଶ୍ୱାସେ ଛିନ୍ନ କରେ ନାଭି ।
ମରିଚି ତା ବତ୍ସତରୀ,
ଅଛି ଖାଲି ତା'ର ଏକ ଆକାର ନକଲି—
ଅଦ୍‌ଭୁତ ବାଛୁରୀ
ଚିରିକନା କାଗଜେ ତିଆରି (୫୭) ।"

'ଗାଭୀ' ଓ 'ବତ୍ସତରୀ' (ବାଛୁରୀ) ପରିପୂର୍ଣ୍ଣ ଜୀବନର ପ୍ରାଣପ୍ରାଚୁର୍ଯ୍ୟର ସ୍ମାରକ । ସମ୍ଭବ ପ୍ରାଚୀନ ମୂଲ୍ୟବୋଧର ଅଭିବ୍ୟକ୍ତି ପାଇଁ ଦୁଇଟି ଶୁଦ୍ଧ ତତ୍ସମ ଶବ୍ଦ (ଗାଭୀ, ବତ୍ସତରୀ) ପ୍ରଯୁକ୍ତ । କିନ୍ତୁ ଗାଭୀଟି ମୃତବତ୍ସା । ସାଂପ୍ରତିକ ସମାଜର ଭୁଗ୍‌ଣ, ପ୍ରତାରଣାପୂର୍ଣ୍ଣ ସ୍ୱରୂପକୁ ଅଭିବ୍ୟକ୍ତ କରୁଛି 'ଅଦ୍‌ଭୁତ ବାଛୁରୀ' (ବତ୍ସତରୀ ନୁହେଁ) । ସେହି 'ଅଦ୍‌ଭୁତ ବାଛୁରୀ'ଟି ନକଲି—ବର୍ତ୍ତମାନର ସମାଜ ଚେତନାଭଳି । ଦୁଇଟି ଦେଶଜ ଶବ୍ଦର ପ୍ରୟୋଗ ମାଧ୍ୟମରେ ଏହି କୃତ୍ରିମ ଅନ୍ତଃସ୍ୱରୂପକୁ ପ୍ରକଟିତ କରାଯାଇଛି । ସେ ଦୁଇଟି ଶବ୍ଦ ହେଉଛି—'ଚିରିକନା' ଓ 'କାଗଜ' ।

(ଖ) "ଜାଣେ ଜାଣେ ଏବେ ସୁଦ୍ଧା ହୋଇନି ସମସ୍ତ
ତେରଅଛି ସୂର୍ଯ୍ୟର ଉଦୟ ।
ଘରଆଡ଼େ କଳାଘୂମ ଅନ୍ଧକାର ନାଚେ,
ଆକାଶର କାଚେ
ଦେଖାଯାଏ ଗୋଟେ ଅଧେ ପାହାନ୍ତିଆ ତରା,
କେଉଁ ମୃତ ବନ୍ଦରର ବତୀଖୁମ୍ବପରି
ଆକାଶର ଦାଢ଼େ ଦାଢ଼େ ଦଉଡ ପହରା (୫୮) ।"

ସୀତାକାନ୍ତଙ୍କ କବିତାଟିର ଦ୍ୱିତୀୟ ଦୃଷ୍ଟାନ୍ତଟିରେ ସୂର୍ଯ୍ୟୋଦୟର ସମସ୍ତ ଅନାଗତ । ଏହି ସୂର୍ଯ୍ୟୋଦୟ—ଜୀବନର ଦୀପ୍ତିମନ୍ତ ମୁହୂର୍ତ୍ତର ପ୍ରକାଶନ ପାଇଁ ଉଦ୍ଦିଷ୍ଟ । ପ୍ରାଚୀନ ସାଂସ୍କୃତିକ ମୂଲ୍ୟବୋଧ ସହ ଚେତନାଟି ଘନିଷ୍ଠ ଭାବେ ସଂଶ୍ଳିଷ୍ଟ ଥିବାରୁ କବି ସଚେତନ ଭାବେ 'ହଟସ୍ତ' ('ଉଇଁକ' ନୁହେଁ) ତତ୍ସମ ଶବ୍ଦଟି ପ୍ରୟୋଗ କରିଛନ୍ତି । କିନ୍ତୁ ସାଂପ୍ରତିକ ସମସ୍ତ ଚେତନା ମୂଲ୍ୟବୋଧର ରୁଗ୍ଣ ସ୍ଥିତିରେ ଆଛନ୍ନ । 'କଳାଧୂମ' ('କୃଷ୍ଣାଭ'ନୁହେଁ) ଦେଶଜ ଶବ୍ଦ ମାଧ୍ୟମରେ ଜୀବନର ନୈରାଶ୍ୟ ଦଗ୍ଧ ଅସ୍ତିତ୍ୱକୁ ପ୍ରକଟିତ କରାଯାଇଛି । ପାହାନ୍ତି ('ପ୍ରଭାତ' ନୁହେଁ) ତାରାର ଆଲୁଅ ଏକ ଉଜ୍ଜ୍ୱଳ ଆଲୋକ ସ୍ତମ୍ଭ ପରି ଆକାଶର ଅନ୍ଧାରକୁ ନିଶ୍ଚିହ୍ନ କରିପାରୁ ନାହିଁ । ମୃତ ବନ୍ଦରର 'ବତୀଖୁମ୍ବ' ଭଳି ତାର ମ୍ରିୟମାଣ ସ୍ଥିତି ମଧ୍ୟରେ ଏହା ପ୍ରକଟିତ । ଦେଶଜ ଓ ତତ୍ସମ ଶବ୍ଦକୁ ଯୁଗପତ୍ ପ୍ରୟୋଗ କରି କବି କେବଳ କାବ୍ୟିକ ବିକ୍ଷୋଭ ସୃଷ୍ଟି କରିନାହାନ୍ତି, ପ୍ରାଚୀନ ଓ ସାଂପ୍ରତିକ ମୂଲ୍ୟବୋଧ ସମ୍ପର୍କିତ ପାର୍ଥକ୍ୟବୋଧ ତହିଁରେ ସୁସ୍ପଷ୍ଟ ଓ ଶାଣିତ ହୋଇଛି ।

(ଗ) "କେଉଁ ନିର୍ଜନ ଘରର ହତାରେ
ରାତି ଜଗୁଆଳର
ମିଞ୍ଜି ମିଞ୍ଜି ଲଣ୍ଠଣଟି ପରି
ମନଟା ଖାଁ ଖାଁ କରେ
ଏଇ ମନ
ଜନମାନବ ହୀନ
ଘରର ଚଟାଣ ।
କିମ୍ବା ଯହିଁ କିଆ ଯାଉ ନଥିବା
ଏକ କୋଟର
ଗଛ
ଅପନ୍ତରା ପିଣ୍ଡାରେ (୫୯) ।"

ମନର ନିଃସଙ୍ଗ ଅସ୍ତିତ୍ୱର ପ୍ରତିପାଦନ ପାଇଁ 'ଖାଁ ଖାଁ' ଦେଶଜ ଶବ୍ଦର ଅଭିବ୍ୟକ୍ତ ବଡ ଅର୍ଥବହ । ନିଃସଙ୍ଗ ଅନୁଭୂତିର ସ୍ୱରୂପ ଏହା ମାଧ୍ୟମରେ କରୁଣୋଚ୍ଛଳ । ପୁଣି 'ରାତି-ଜଗୁଆଳ' ର 'ଲଣ୍ଠଣ' (ଲଣ୍ଠନ ନୁହେଁ)ର ଅନୁଜ୍ଜ୍ୱଳତା 'ମିଞ୍ଜି ମିଞ୍ଜି' ଶବ୍ଦ ଦୁଇଟି ମାଧ୍ୟମରେ ପ୍ରକଟିତ । କଥ୍ୟ-ଭାଷାର ପ୍ରୟୋଗ ଦ୍ୱାରା କବିତା ଯେ ଅଧିକ ବ୍ୟଞ୍ଜନାତ୍ମକ ହୋଇପାରେ ସୀତାକାନ୍ତ ତାହାକୁ ଉପରୋକ୍ତ 'ଦର୍ପଣ' ଶୀର୍ଷକ କବିତାରେ ପ୍ରମାଣିତ କରିଛନ୍ତି । 'ଦର୍ପଣ'ରେ ପ୍ରତିଫଳିତ ମନଟି ଯେ ଏକାନ୍ତ ଭାବେ ପରିତ୍ୟକ୍ତ ତାହା

'ଅପନ୍ତାରା ପିଣ୍ଡା' (ପରିତ୍ୟକ୍ତ ପ୍ରାଙ୍ଗଣ) ଶବ୍ଦ ଦୁଇଟି ମାଧ୍ୟମରେ ପ୍ରମୂର୍ତ୍ତି । ଜୀବନର କୋଳାହଳ, ଫୁଲର ସମାରୋହ ସେଠାରେ ସ୍ୱପ୍ନ । ମନଟିର ଅପୂର୍ଣ୍ଣିତ ସ୍ଥିତି ପାଇଁ କବି ପାଶ୍ଚାତ୍ୟ 'କୋଟନ' ଶବ୍ଦଟିକୁ ପ୍ରୟୋଗ କରିଛନ୍ତି । କାରଣ ଏହି ବିଦେଶୀ ଗଛଟି ପୁଷ୍ପବର୍ଜିତ ।

ସୁତରାଂ ବାସ୍ତବବାଦୀ କବି ସ୍ୱକୀୟ କାବ୍ୟଚେତନାର ପ୍ରକଟନ ପାଇଁ ଭାଷା ପ୍ରୟୋଗରେ ପାରମ୍ପରିକ ରୀତିବଦ୍ଧତାକୁ ସାଧାରଣତଃ ପ୍ରତ୍ୟାଖ୍ୟାନ କରିଥାନ୍ତି । ତାହା ଦ୍ୱାରା କବିତା କେବଳ ଅଧିକ କାବ୍ୟିକ ସୌନ୍ଦର୍ଯ୍ୟସ୍ନାତ ଯେ ହୁଏ ତା ନୁହେଁ, ବକ୍ତବ୍ୟ ଅଧିକ ତୀକ୍ଷ୍ଣ ଓ ଶାଣିତ ମଧ୍ୟ ହୋଇଥାଏ—

(ଘ) "ବଡ଼ ବଡ଼ଆଙ୍କ ଚିନ୍ତା ନାହିଁ
ତାଙ୍କ ପାଇଁ ଅଛି ହାର୍ଟଫେଲ,
ଅଛି କରୋନାର—
ଯେତେ ଝିଙ୍କମାରି ଖାଲି ମଧ୍ୟବିତ୍ତଙ୍କ ପାଇଁ—
ସବୁ ଲମ୍ବା, ଚୌଡ଼ା ହନ୍ତସନ୍ତିଆ ବେମାର,
ବେରିବେରି, ଗୋଦର, ଉଦର ଫୁଲା,
ଧଇଁ ନାଳଝାଡ଼ା
ଏ ଭେଜାଲ ଯୁଗରେ ସବୁ ସଂଭବ (୬୦) ।"

ମଧ୍ୟବିତ୍ତ ସମାଜର ନିରବଚ୍ଛିନ୍ନ ଜୀବନ-ସଂଗ୍ରାମ 'ଝିଙ୍କମାରି' ଭଳି ଏକ କଥ୍ୟ-ଭାଷାର ଶବ୍ଦ ମାଧ୍ୟମରେ ଧ୍ୱନ୍ୟାତ୍ମକ ରୀତିରେ ଅଭିବ୍ୟକ୍ତ । ଉଚ୍ଚବର୍ଗଙ୍କ ପାଇଁ ଜୀବନ ଭଳି ମୃତ୍ୟୁ ମଧ୍ୟ ଏକାନ୍ତ ଓ ନିସ୍ତରଙ୍ଗ । 'ହାର୍ଟଫେଲ' ଶବ୍ଦଟିର ପ୍ରୟୋଗ ମାଧ୍ୟମରେ ଏହା ପ୍ରମୂର୍ତ୍ତି । ସେମାନଙ୍କ ପାଇଁ ଉନ୍ନତ ଚିକିତ୍ସାର ବ୍ୟବସ୍ଥା 'କରୋନାର' (ଇଣ୍ଟେନସିଭ କେୟାର ୟୁନିଟ୍) ଶବ୍ଦରେ ରୂପାୟିତ । ମଧ୍ୟବର୍ଗ ପାଇଁ ମୃତ୍ୟୁ ଏଭଳି ଶାନ୍ତ, ଶୀତଳ ନୁହେଁ । ସୁତରାଂ ହୃଦ୍ ରୋଗ ନୁହେଁ । ଧଇଁ, ନାଳଝାଡ଼ା, ଗୋଦର, ବେରିବେରି ଆଦି ରୋଗରେ ସେମାନେ ନିତ୍ୟନିଯୁତ ଜର୍ଜ୍ଜରିତ । ଯନ୍ତ୍ରଣାଗ୍ରସ୍ତ ଏଇ କେଟଣା ଜୀବନକୁ ପ୍ରକାଶ କରିବା ପାଇଁ ସଚେତନ ଭାବେ ରାଉତରାୟ 'ହନ୍ତସନ୍ତିଆ' ଶବ୍ଦଟିକୁ ପ୍ରୟୋଗ କରିଛନ୍ତି ।

ଭାଷା ପ୍ରୟୋଗ କ୍ଷେତ୍ରରେ ଆଧୁନିକ ବାସ୍ତବବାଦୀ କବିର ପରିସର ସୀମିତ ନୁହେଁ, ତାହା ପରିବ୍ୟାପ୍ତ । ତତ୍ସମ ଠାରୁ ଦେଶଜ, ପ୍ରାଚ୍ୟଠାରୁ ପାଶ୍ଚାତ୍ୟ ଶବ୍ଦ ଓ ଭାଷା—ସବୁଠି ତା'ର ମୁକ୍ତ ବିଚରଣ । ଉପର ଉଦ୍ଧୃତ ଦୃଷ୍ଟାନ୍ତ ଗୁଡ଼ିକରେ ଏହା ସୁସ୍ପଷ୍ଟ ହୋଇଛି ।

ସଚ୍ଚି ରାଉତରାୟଙ୍କ ପରେ ଗୁରୁ ପ୍ରସାଦଙ୍କ କବିତାରେ ଏହି କାବ୍ୟ-କୌଶଳର ଚମତ୍କାରିତା ଲକ୍ଷ୍ୟ କରାଯାଏ—

(କ) "ଝିଟଷ୍ଣି ଦେହର କେତେ ସ୍ୱପ୍ନମାରେ ସମୟର ଦାଆ
ଆଜଯାଏ କାଟି କାଟି କେତେ ଦେହ ଓଠର ଫସଲ
କେତେ ମାଂସ ଚମ ଗନ୍ଧ ଜୂର ହୋଇ ମାଟିରେ ମାଟିରେ
ଏ ବାଲିରେ ମରଗଲା କେତେ ଦେହ ରୂପର ଜଙ୍ଗଲ (୭୧) ।"

(ଖ) "ତୁମର ଦେହରେ କିନ୍ତୁ ଝିଟଷ୍ଣି ବସନ୍ତ ଯାଏ ପଇଟ୍ଟା ଦେଇ
ଆଉ ମୋର ଏ ଦେହରେ ତୁମର ଏ ବସନ୍ତର ରକ୍ତସ୍ତୂପ ମୋଟେ
କମି ନାହିଁ (୭୨) ।"

(ଗ) "ଏହି ଦୂର ଆକାଶର ଧୂସର ଦେହରେ
ଶୀତର ପାଉଁଶ ଗୋଳି ଆସେ ଏ ପକ୍ଷୀ, କୁହୁଡ଼ି ଓ କାକରର
ରାତ (୭୩) ।"

(ଘ) "ମୁଁ ଆଜି ପଠାଏ ମୋର ଏ ବିରହ ଭସ୍ମ ପୁଣି
ସ୍ତୂପ ସ୍ତୂପ ନିରର୍ଥକ ବାଲି
ମୁଁ ପଠାଏ ତୁମ ପାଇଁ ମୋର ରୋଗ ଯନ୍ତ୍ରଣା ଓ
ମୋ ଦେହର ଝାଳ ଆଉ ଲାଳର ଖବର
ମୁଁ ପଠାଏ ତୁମ ଆଡ଼େ ମୋର ଶତ ପ୍ରେତାତ୍ମାର ନକ୍ସା
ଯେତେ ଆଶା ଆଉ
ମୋର ପିତୃ ପୁରୁଷର ଜରାମୃତ୍ୟୁ ବ୍ୟାଧିର ଖବର (୭୪) ।"

ପ୍ରଥମ ଉଦ୍ଧୃତିରେ 'ଝିଟଷ୍ଣି', 'ଦେହ', 'ସ୍ୱପ୍ନ', 'ସମୟ' ଓ 'ରୂପ' ଆଦି ତତ୍ସମ ଶବ୍ଦ ସହ 'କେତେ', 'ମରେ', 'କାଟି କାଟି', 'ଓଠ', 'ଜୂର' ଆଦି ଦେଶଜ ଶବ୍ଦର କାବ୍ୟିକ ସମନ୍ୱୟ ସଂଘଟିତ । ମଣିଷର ଦେହ ଉପରେ ସମୟର ପ୍ରଭାବ କେତେ ଶାଣିତ ଓ ନିଷ୍ଠୁର ତା'ର ସୂଚନା ଦେବାପାଇଁ ଉକ୍ତ ଉକ୍ତି ଉଦ୍ଦିଷ୍ଟ । ସେଥିପାଇଁ ସମୟକୁ ଶସ୍ୟଉତ୍ପାଟକ 'ଦା' ସହ ତୁଳନା କରାଯାଇଛି । ସମୟର 'ଦା' କାଟି ନେଇଛି ଯୌବନୋଦ୍ଦୀପ୍ତ ଦେହ ଓ ଓଠର ଫସଲ । 'କାଟି କାଟି' ଅସମାପିକା କ୍ରିୟା ସୂଚକ ଦେଶଜ ଶବ୍ଦ ଦୁଇଟିର ପୁନଃପୌନିକ ପ୍ରୟୋଗ ମାଧ୍ୟମରେ ସମୟର ନିର୍ମମ ପ୍ରକ୍ରିୟା ସୂଚିତ ।

ଦ୍ୱିତୀୟ ଦୃଷ୍ଟାନ୍ତର ବୈଶିଷ୍ଟ୍ୟ ଧ୍ୱନ୍ୟାତ୍ମକ ଭାଷା ପ୍ରୟୋଗ କୌଶଳ । ଉଭୟ ତତ୍ସମ ଓ ଦେଶଜ ଶବ୍ଦର ସଂଯୋଗ ମାଧ୍ୟମରେ ଏହା ସମ୍ପାଦିତ । ନାୟିକାର

ଯୌବନୋତ୍ତୀର୍ଣ୍ଣ ଦେହର ବାସ୍ତବସ୍ଥିତିକୁ ସୂଚାଇବା ପାଇଁ 'ବିବର୍ଣ୍ଣ ବସନ୍ତ' ଓ 'ପଞ୍ଚଟଙ୍କା' ଶବ୍ଦଦ୍ୱୟ ପ୍ରଯୁକ୍ତ । କିନ୍ତୁ ନାୟିକା ପ୍ରତି ନାୟକର ଆକର୍ଷଣ ଅସମାପ୍ତ । ଏହା କୈବିକ ଉତ୍ତେଜନା ପ୍ରଣୋଦିତ । 'ବସନ୍ତର ରକ୍ତ ଗ୍ରୁପ ମୋଟେ କମେ ନାହିଁ । ଉକ୍ତ ସ୍ତରର 'ବସନ୍ତ' ଓ 'ରକ୍ତଗ୍ରୁପ' (ଯାହା ମୋଟେ କମିନାହିଁ) ଶବ୍ଦ ମାଧ୍ୟମରେ ଏହା ଅଭିବ୍ୟକ୍ତ । ଶବ୍ଦଟିର ପ୍ରୟୋଗ ମାଧ୍ୟମରେ ଶୀତ ଋତୁର ବିବର୍ଣ୍ଣ ପ୍ରାକୃତିକ ସ୍ଥିତି ପ୍ରତିପାଦିତ ।

ତୃତୀୟ ଦୃଷ୍ଟାନ୍ତରେ 'ପାଉଁଶ'—ଦେଶଜ ଶବ୍ଦଟିର ପ୍ରୟୋଗ ମାଧ୍ୟମରେ ଶୀତ ଋତୁରେ ବିବର୍ଣ୍ଣ ପ୍ରାକୃତିକ ସ୍ଥିତି ପ୍ରତିପାଦିତ ।

ଚତୁର୍ଥ ଦୃଷ୍ଟାନ୍ତଟିରେ ସାଂପ୍ରତିକ ବ୍ୟକ୍ତିସତ୍ତାର ଯୌନାବେଗ, ମୃତ୍ୟୁବୋଧ ଓ ନଷ୍ଟ ପାରମ୍ପରିକ ସ୍ଥିତିର ସୂଚନା ପ୍ରଦତ୍ତ । ଯୌନାବେଗର ପ୍ରକଟନ ପାଇଁ 'ଝାଳ' ଓ 'ତାତି' ଶବ୍ଦ ପ୍ରଯୁକ୍ତ । କିନ୍ତୁ ନାୟକର ବିରହ ମଧ୍ୟରେ ଭୟବୋଧ ସୁସ୍ପଷ୍ଟ । ତେଣୁ ପ୍ରେମ ତା' ପାଇଁ ଅର୍ଥହୀନ—'ନିରର୍ଥକ ବାଲି' ଶବ୍ଦ ଦୁଇଟି ମାଧ୍ୟମରେ ଏହା ପ୍ରକାଶିତ କାରଣ ବାଲିରେ ଶସ୍ୟର ସମ୍ଭାବନା ଏକ ଦୂରନ୍ତ ସ୍ୱପ୍ନପ୍ରବଣତା ମାତ୍ର । ନାୟକର ନଷ୍ଟ ପରମ୍ପରା, ଶାଶ୍ୱତ ମୂଲ୍ୟବୋଧର କେନ୍ଦ୍ରଚ୍ୟୁତି ପାଇଁ, 'ପିତୃ ପୁରୁଷ', 'କବି', 'ବ୍ୟାଧି' ଓ 'ମୃତ୍ୟୁ' ଭଳି ତତ୍ସମ ଶବ୍ଦ ଗୁଡ଼ିକ ବ୍ୟବହୃତ । ଏହି ବିଡମ୍ବନାର ସମ୍ବାଦ ପ୍ରେରଣ ପାଇଁ 'ଖବର' ଭଳି ଏକ ଯାବନିକ ଶବ୍ଦ ପ୍ରଯୁକ୍ତ । କାରଣ ଆମର ସାଂପ୍ରତିକ ଜନ ଜୀବନ ସହ ଏହି ଶବ୍ଦଟି ଅଧିକ ସଂଶ୍ଳିଷ୍ଟ ।

ଆଧୁନିକ ବାସ୍ତବବାଦୀ କବିର ଭାଷା ପ୍ରୟୋଗ କୌଶଳ କେବଳ ତତ୍ସମ୍ ଓ ଦେଶଜ ଶବ୍ଦର ଯୁଗପତ୍ ଗୁମ୍ଫନରେ ସଂଘଟିତ ନୁହେଁ, ଅଧିକନ୍ତୁ ତତ୍ସମ ଓ ଦେଶଜ ଶବ୍ଦ ସମୂହର ଧ୍ୱନ୍ୟାତ୍ମକ ପ୍ରୟୋଗ ବୈଶିଷ୍ଟ୍ୟରେ ମଧ୍ୟ ସମୃଦ୍ଧ । ସୁତରାଂ ବର୍ଣ୍ଣନା ବାହୁଲ୍ୟ ପରିବର୍ତ୍ତେ ଚିତ୍ରରେ ବ୍ୟଞ୍ଜନାତ୍ମକ ପରିମିତିବୋଧ ପ୍ରତୁଳ ।

ଉଭୟ ରମାକାନ୍ତ ରଥ ଓ ସୀତାକାନ୍ତ ମହାପାତ୍ରଙ୍କ ବାସ୍ତବବାଦୀ କବିତା ପରିପ୍ରେକ୍ଷୀରେ ଏହାର ଯଥାର୍ଥ୍ୟ ଆହୁରି ସୁସ୍ପଷ୍ଟ ହେବ ।

ରମାକାନ୍ତ ରଥଙ୍କ କବିତାରୁ ପ୍ରଥମେ ଏହାର ଉଦ୍ଧୃତି ଦିଆଯାଉ—

(କ) "ଆଉ ନାହିଁ, ଏ ସୁନ୍ଦର ଜନ୍ମ ଆରପାଖେ
ଶୁହିଁବାର ଅସରନ୍ତି ସ୍ୱପ୍ନ ଓ ଭୁଲିବାର ବିସ୍ମୃତି ଭିତରେ
ମନେ ରଖିବାର ବାଟ ହଜିଗଲା ଅବାଧ କ୍ଳାନ୍ତିରେ,
ଲଫଙ୍ଗା ମନର ଆଶା ବୁଲୁଥିଲା ବେଳେ ଅନ୍ଧାରରେ
ରକ୍ତାକ୍ତ ମୋଡ଼ାଣିଠାରେ ଅସମ୍ପୂର୍ଣ୍ଣ ମୃତ୍ୟୁ ସବୁ ଝୁଣ୍ଟି ପଡ଼େ
ଆତ୍ମ ସମର୍ପଣ କଲା କୁସିତର ଜରୁଣି ବନ୍ଧରେ (୭୫) ।"

(ଖ) "ମୁଁ ଠିଆ ହୋଇଚ ଅବା ହୋଇ ନାହିଁ
କେଉଁ ଲେଖି ବୁଡା ପର, ଯାର
ଜୀବନଯାକର ନୋଟ୍ ଉଡ଼ିଗଲା ଶୁଖିଲା ବତାସେ
ମରୁଭୂମି ମଧ ଭାଗେ ? ମୁଁ କାନ୍ଦୁଚ ବା କାନ୍ଦୁନଥିଲ
ତମର ଫୁର୍ତ୍ତିର ଭୟେ ନୁହେଁ, କିନ୍ତୁ କାଲେ କେଉଁ
ଫୁଲ୍‌କା ଫୁଲ୍‌କା ଗାଲ
ଆଉଁସି ଲେଉଡ଼ବ ମୋର ଶୁଖିଲା ଗାଲର ପାଲସ (୭୬)

(ଗ) "× × × ବଞ୍ଚିବାର ଜାଗା ଲେଡ଼ା ଥିଲେ
ଏଠାରେ କପର ନେବ ନିଃଶ୍ୱାସ ମୁଁ ଯେଉଁଠି ଶୁଖିଚ
ଦକ୍ଷିଣା ହାଓ୍ୱାର ଶବ ? ଚଲେ ଏଇ ବଲ ବାଡ଼ ସବୁ
ନଗ୍ନକିଆ । କ୍ୱଚତ୍ ବଲଦ ଗୋଟେ କଣ୍ଟାଧାନ ମୂଳାକୁ
ଖୁଂପୁଛୁ (୭୭) ।"

ପ୍ରଥମ ଉଦ୍ଧୃତରେ ସ୍ମୃତରୁ ମନର ମୁକ୍ତି ନାହିଁ । ଏ ସ୍ମୃତ ରୋମାଣ୍ଟିକ ଚେତନାର ବଳାତ୍ମ ନୁହେଁ । ଏହା ଅନ୍ଧକାରଗ୍ରସ୍ତ ଅବଚେତନ ମନର ବଳୟରେ ସଞ୍ଚିତ । ଜୀବନର ସୁଖଦ ମୁହୂର୍ତ୍ତରେ ରୋମାଞ୍ଚକୁ 'ସୁନ୍ଦର କଳ୍ପ' ଶବ୍ଦ ଦୁଇଟି ମାଧ୍ୟମରେ ଅଭିବ୍ୟକ୍ତକ୍ଷମ କରାଯାଇଛୁ । ଆଧୁନିକ ମଣିଷ ପାଇଁ ଏ ସୁନ୍ଦର କଳ୍ପମୟ ମୁହୂର୍ତ୍ତ ସୁଦୂର ପରାହତ । ତା'ର ମନ ଇତସ୍ତତଃ ବକ୍ଷିପ୍ତ । ମନର ଏହି ଇତସ୍ତତଃ ବକ୍ଷିପ୍ତ ଭାବକୁ ଏକ ଯାବନକ ଶବ୍ଦ 'ଲଫଙ୍ଗା' ମାଧ୍ୟମରେ ପ୍ରକାଶ କରାଯାଇଛୁ । କିନ୍ତୁ ସ୍ମୃତର ବନ୍ଧନରୁ ମୁକ୍ତ କାହିଁ ? ତେଣୁ ତା'ର ମନ ଝୁଣ୍ଟି ପଡ଼ୁଛୁ 'କୁରାଡି' ଭଳି ତୀକ୍ଷଣ ସ୍ମୃତର 'ଇରୁଣ୍ଡି ବନ୍ଧ'ରେ । ଦେଶଜ ଶବ୍ଦର ପ୍ରୟୋଗ ଦ୍ୱାରା ସ୍ମୃତର ତୀକ୍ଷ୍ଣତା ଅଧିକ ଅନୁଭବବେଦ୍ୟ ହେଉଛୁ । 'ରକ୍ତାକ୍ତ ମୋଡାଣି' ମଧ୍ୟରେ ତତ୍ସମ ଓ ଦେଶଜ ଶବ୍ଦ ସଂଯୁକ୍ତ ହୋଇଛୁ । ଚେତନ ଚଉର ସୁନ୍ଦର କଳ୍ପ ଠାରୁ ଅବଚେତନ ଚଉର ଯାତାପଥ ଭିନ୍ନଧର୍ମୀ । ଅବଚେତନର କ୍ଷତାକ୍ତ ସ୍ମୃତର ସ୍ୱରୂପ ଏହା ମାଧ୍ୟମରେ ଘନୀଭୂତ ।

ଦ୍ୱିତୀୟ ଉଦ୍ଧୃତରେ ନାୟକ ଜୀବନର ସୁଖ, ଶାନ୍ତିର ସମସ୍ତ ସମ୍ଭାବନା ବଲୁପ୍ତ ହେବାର ଭାବନା—'ଲେଖିବୁଡାର ଜୀବନଯାକର ନୋଟ ଉଡ଼ିଗଲା ଶୁଖିଲା ବତାସେ' ପଂକ୍ତିରେ ପ୍ରମୂର୍ତ୍ତ । ନାୟକର ବେଦନାକ୍ତ ଭାବନାକୁ ଅଭିବ୍ୟକ୍ତକ୍ଷମ କରିବାପାଇଁ କବ କେବଳ ଦେଶଜ ଶବ୍ଦ ଉପରେ ନିର୍ଭର କର ନାହାନ୍ତି, ଲୋକ ପରମ୍ପରାର ଲେଖିବୁଡ଼ାର, ଐଶ୍ୱର୍ଯ୍ୟ ଅବଲୁପ୍ତ ହେବା ଜନତ ବଷାଦବୋଧ ମଧ୍ୟ ସମାନ୍ତରାଳ ଭାବେ ପ୍ରକଟିତ କରିଛନ୍ତି । ଉଦ୍‌ଭିନ୍ନ ଯୌବନା ନାୟିକା 'ଗାଲ'ର

ବିଶେଷଣ 'ଫୁଲ୍ଲା ଫୁଲ୍ଲା' ଓ ଯୌବନୋତ୍ତୀର୍ଣ୍ଣ ନାୟକର ଗାଲ ବିଶେଷଣ 'ଶୁଖିଲି' ଦେଶଜ ଶବ୍ଦର ବ୍ୟଞ୍ଜନାତ୍ମକ ପ୍ରୟୋଗ ଏଠାରେ ଉଲ୍ଲେଖନୀୟ । ଏହା ମାଧ୍ୟମରେ ନାୟକ-ନାୟିକାଙ୍କର ସାଂପ୍ରତିକ ସ୍ଥିତିର ପାର୍ଥକ୍ୟ ଉପଲବ୍ଧ ।

ତୃତୀୟ ଉକ୍ତିରେ 'ଦକ୍ଷିଣା ଦ୍ୱାଓ୍ୱାର ଶବ', 'କଲୁଟିଆ ବିଲବାଡ଼ି', ନାୟକର ନିଃସଙ୍ଗ ଅସ୍ତିତ୍ୱ ତଥା ଶ୍ୱାସରୋଧକାରୀ ସ୍ଥିତିର ସୂଚକ । ଏହି ନିଃସଙ୍ଗତା ମଧ୍ୟରେ 'ବଳାଦ' ଶବ୍ଦର ପ୍ରୟୋଗ ଆଧୁନିକ ମଣିଷର ନିରର୍ଥକ ସ୍ଥିତିର ପ୍ରତିପାଦକ । ପରିପୂର୍ଣ୍ଣ ଜୀବନର ଶସ୍ୟ ସମ୍ଭାରର ଉପଭୋକ୍ତା ହେବା ତା' ପକ୍ଷରେ ଅସମ୍ଭବ । କଣ୍ଟାଧାନ ମୂଳକୁ ଖୁମ୍ପିବା ତା'ର ଭବିତବ୍ୟ । ବକ୍ତବ୍ୟର ବ୍ୟଞ୍ଜନାତ୍ମକ ଅଭିବ୍ୟକ୍ତି ପାଇଁ କବି ଲୋକ ଭାଷା ଉପରେ ନିର୍ଭରଶୀଳ ।

ସୀତାକାନ୍ତ ମହାପାତ୍ରଙ୍କର କେତେକ ବାସ୍ତବବାଦୀ କବିତାରୁ ଭାଷାର ଅନୁରୂପ ପ୍ରୟୋଗ ସାଫଲ୍ୟ ଉଦ୍ଧାର କରାଯାଉଛି—

(କ) "କନ୍‌ସାର୍ଟ, ଅଭିନେତା ଓ ଦର୍ଶକ
 କେହି ଆଉ ନାହିଁ
 ଅଛି ଖାଲି ନୋଗ୍ସ କୋଗ୍ସ
 କେଇ ଖଣ୍ଡ ସତରଞ୍ଜି, ଦରି
 ବାଉଁଶ ଫାଶିଖୁଣ୍ଟରୁ
 ଝୁଲୁଥିବା ପମ୍ପସୁନ
 ଦର ନିଭା ପେଟ୍ରୋମାକ୍‌ସ
 ଅବସାଦ, ହାଇ
 ଆଉ କୁହୁଡ଼ିରେ ଘଡି ଆସେ ଘର (୬୮) ।

(ଖ) "ଇଏ କଣ ଭୂତଖାନା ଚୁପ୍ ଗୁପ ଫୁସ ଫାସ ଷଡ଼ଯନ୍ତ୍ର
 ଶୁକୁଟା ସେମେଣ୍ଟ କଥା ପଦେ ପଦେ ଶୁଭେ ରହି ରହି (୬୯) ।"

(ଗ) "ଏବେ ତୋପା ଦଶିଲାଣି ଯନ୍ତ୍ରଣାର ବିଭିନ୍ନ ପୃଥିବୀ
 ବେଦନାରେ ଜୁଡ଼ୁ ବୁଡ଼ୁ ସ୍ୱତନ୍ତ୍ର ଆତ୍ମା ଅନଳେ ଦପ୍ ଦପ୍ ଜଳେ
 ସାମନାର ନାଲିକୋଠା ବାରଣ୍ଡାରେ ସେ ଝିଅର ମୁକ୍ତାକବରୀ
 ଜାମା ଯୋଡ଼ କୁଣିଆଙ୍କ ଆଗେ ଆଗେ ଭଣ୍ଡାରୀ ଖରୁଆଦଳ
 ନିଭିଲି-ଜଳିଲି ସ୍ମୃତି କାମନା ଓ ଭବିଷ୍ୟତ
 ପ୍ରକୃତିର କୁହାଟ ଓ ବିବେକର ଦାରୁଣ ପ୍ରହସନ (୭୦) ।"

ପ୍ରଥମ ଉଦ୍ଧୃତିରେ ସନ୍ଧ୍ୟାରେ ଆୟୋଜିତ ଅପେକ୍ଷା ଦେଖୁଥିବା ନାୟକ ପ୍ରିୟବ୍ରତର ନିଃସଙ୍ଗ ଜୀବନାନୁଭୂତି ପ୍ରତିପାଦିତ । ତା'ର କ୍ଲାନ୍ତି ଓ ଅବସାଦ 'ନୋଗ୍-କୋଗ୍ ସତରଞ୍ଜି' ଓ 'ପମ୍ପସ୍ଥିନ ପେଟ୍ରୋମାକ୍ସ' ଆଦି ବାକ୍ୟଖଣ୍ଡ ମଧ୍ୟରେ ପ୍ରମୂର୍ତ୍ତ । କନସାର୍ଟ, ପେଟ୍ରୋମାକ୍ସ ଶବ୍ଦ ଗୁଡ଼ିକ ପାଶ୍ଚାତ୍ୟ ପରମ୍ପରାରୁ ଆହୃତ । ପୁଣି ପମ୍ପ ଭଳି ପାଶ୍ଚାତ୍ୟ ଶବ୍ଦ ସହ 'ସ୍ଥିନ' ଭଳି ପ୍ରାଚ୍ୟ ଶବ୍ଦର ଏକତ୍ର ସମନ୍ୱୟ । ପ୍ରିୟବ୍ରତର ଏକାକୀତ୍ୱ-ବୋଧର ଚରମ ସୂଚନା 'ଦରିକଣ୍ଡି' ଦେଶଜ ଶବ୍ଦ ମଧ୍ୟରେ ପ୍ରକଟିତ । ତତ୍ସମ, ଦେଶଜ ଓ ପାଶ୍ଚାତ୍ୟ ଶବ୍ଦ ଗୁଡ଼ିକ ଆଧୁନିକ କବିତାରେ କେବଳ ଶବ୍ଦରେ ସୀମାବଦ୍ଧ ନୁହେଁ, ପ୍ରତୀକାତ୍ମକ ପ୍ରୟୋଗ କୌଶଳ ମଧ୍ୟରେ ସେଗୁଡ଼ିକ ନୂତନ ଅର୍ଥାଭିବ୍ୟକ୍ତିରେ ସମୃଦ୍ଧ ।

ଦ୍ୱିତୀୟ ଉଦ୍ଧୃତିରେ ପ୍ଲାଟଫର୍ମର ଜନଶୂନ୍ୟ ସ୍ଥିତି ପାଇଁ 'ଭୂତଖାନା' ଶବ୍ଦ ପ୍ରୟୋଗ କରାଯାଇଛି, ଯେଉଁଠି ବା କ୍ୱଚିତ୍ ବାକ୍ୟାଳାପ ଶୁଭୁଚି । ତାହା ସତେ ବା ଏକ ଷଡ଼ଯନ୍ତ୍ର । 'ଚୁପ୍ ଚୁପ୍' 'ଫୁସ୍ ଫାସ' ଦେଶଜ ଶବ୍ଦ ଦୁଇଟିର ପ୍ରୟୋଗ ମାଧ୍ୟମରେ ଷଡ଼ଯନ୍ତ୍ରର ସ୍ୱରୂପକୁ ତୀକ୍ଷ୍ଣ କରାଯାଇଛି । ଅନ୍ୟ ପକ୍ଷରେ ରହିଛି 'ଶୁଖୁଟା' 'ସେମେଣ୍ଟା' ଦେଶଜ ଶବ୍ଦ । ଆଧୁନିକ ଜୀବନର ନୀରସତା ଓ ଶୁଷ୍କତା ଏହା ମାଧ୍ୟମରେ ସୂଚିତ ।

ତୃତୀୟ ଦୃଷ୍ଟାନ୍ତରେ ନାୟକ ଆତ୍ମାର ବେଦନାବିଦ୍‌ଗଧ ତଥା ଯନ୍ତ୍ରଣାଜର୍ଜ୍ଜରିତ ସ୍ଥିତି ଯଥାକ୍ରମେ 'ଜୁଡ଼ୁବୁଡ଼ୁ' ଓ 'ଦପ୍ ଦପ' ଶବ୍ଦ ମାଧ୍ୟମରେ ଘନୀଭୂତ । ଦୁଇଟିଯାକ ଶବ୍ଦ ଦେଶଜ । ତହିଁରୁ ବିଶିଷ୍ଟ ଧ୍ୱନ୍ୟାର୍ଥ ପ୍ରକଟିତ, କିନ୍ତୁ ଜୀବନରେ ପରିପୂର୍ଣ୍ଣ ପ୍ରାଚୁର୍ଯ୍ୟ ପାଇଁ ଆଶା ଅନ୍ତର୍ହିତ । 'ନାଲିକୋଠା ବାରଣ୍ଡାରେ ଝିଅର ମୁକୁଳା କବରୀ' ମଧ୍ୟରେ ଏହା ପ୍ରମୂର୍ତ୍ତ । 'ଜାମା ଯୋଡ଼ି କୁଣିଆ', 'ଭଣ୍ଡାର ଘରୁଆ' ମଧ୍ୟରେ ମଙ୍ଗଳୋତ୍ସବର ସୂଚନା ପ୍ରଦତ୍ତ । ସେଥିପାଇଁ ମଧ୍ୟ କବି ଦେଶଜ ଶବ୍ଦ ଉପରେ ନିର୍ଭରଶୀଳ । କିନ୍ତୁ ସ୍ମୃତିର ଯନ୍ତ୍ରଣାରେ ସେ କାତର । ସ୍ମୃତିର ବିଶେଷଣ—'ଜଳିଲ-ନିଭିଲ' । ଦୁଇଟି ଭିନ୍ନ ଧର୍ମୀ ଦେଶଜ ଶବ୍ଦର ପ୍ରୟୋଗ ଦ୍ୱାରା କବି ମନର ମୁକୁରରେ ସ୍ମୃତିର ଲୁଚକାଳି ଖେଳ ସୃଷ୍ଟି କରିଛନ୍ତି । ଅବଦମିତ ଜୈବିକ ପ୍ରବୃତ୍ତିର ଉନ୍ମୋଚନ ପାଇଁ ବ୍ୟବହୃତ ହୋଇଛି ଦେଶଜ ଶବ୍ଦ–'କୁହାଟ', 'ଯନ୍ତ୍ରଣା', 'ଅନଳ', 'କବରୀ', 'କାମନା', 'ସ୍ମୃତି', 'ବିବେକ' ଓ 'ପ୍ରହରୀ' ଆଦି ତତ୍ସମ ଶବ୍ଦଗୁଚ୍ଛ 'ଡୋଫା', 'ଜୁଡ଼ୁବୁଡ଼ୁ', 'ଦପ୍ ଦପ୍', 'ଜାମାଯୋଡ଼ି' ଓ 'ମୁକୁଳା' ଆଦି ଦେଶଜ ଶବ୍ଦସହ ଏକତ୍ର ହୋଇ ଗୁମ୍ଫିତ କାବ୍ୟିକ ସିମ୍ଫୋନୀ ସୃଷ୍ଟି କରୁଛନ୍ତି ।

## ବାସ୍ତବବାଦୀ କବିତାରେ ଛନ୍ଦର ସ୍ଥିତି

ବାସ୍ତବବାଦୀ କବିତାର ମୁକ୍ତଛନ୍ଦ (Free verse or verse-libre)ର ବାହକ । ବକ୍ତବ୍ୟର ମୁକ୍ତ ପ୍ରକାଶନ ଦୃଷ୍ଟିରୁ ଏହି ଛନ୍ଦର ପ୍ରୟୋଗ ଏକାନ୍ତ

ଗୁରୁତ୍ୱପୂର୍ଣ୍ଣ । ସୁତରାଂ ସାଂପ୍ରତିକ କାଳର ବାସ୍ତବବାଦୀ କବିଚେତନା ଏହି ମୁକ୍ତ ଛନ୍ଦକୁ ସର୍ବାଦୌ ସ୍ୱୀକୃତି ଦେଇଛି । ଜାନକୀ ବଲ୍ଲଭ ମହାନ୍ତିଙ୍କ 'ତୁମେ ମୋର ଯୁଗର କବିତା' ଏହାର ଏକ ବିଶୁଦ୍ଧ ସ୍ୱରଲିପି । ପ୍ରାଚୀନ ଓ ଆଧୁନିକ କବିତାର ଛନ୍ଦ ଭେଦର ସ୍ୱରୂପ ଶଂସିତ କବିତାରେ ସୁସ୍ପଷ୍ଟ । ପ୍ରଣୟର ଗୋଲାପ-ମଦିରା ନିଶାରେ ବିଭୋର ପ୍ରାଚୀନ କାବ୍ୟ-ରମଣୀ ଛନ୍ଦର ଦୋଳିରେ ଝୁଲି ଝୁଲି ଅବତରଣ କରେ । କିନ୍ତୁ ଆଧୁନିକ କବିତା ରଚନା ଛନ୍ଦ ଗଦ୍ୟଧର୍ମୀ । ଏଣୁ ଗଦ୍ୟ ସହ ସେ ହାତମିଳାଏ—ସାଲିସ କରେ (୭୧) । 'ସେ ଚଳ ଚଳ ଚୂଲି ପାରେ ପୁଣି ଧାଇଁ ପାରେ ଖେଳାଳୀର ସମ', ଅର୍ଥାତ୍ ତା'ର ଗତିବେଗ ପ୍ରାଚୀନ ଛନ୍ଦ ଅଥବା ରାଗରାଗିଣୀର ଶାସ୍ତ୍ରୀୟ ବନ୍ଧନରେ ରୁଦ୍ଧ ନୁହେଁ ।

ଆଧୁନିକ ଓଡ଼ିଆ କବିତାର ଏହି ମୁକ୍ତ ଛନ୍ଦ ପ୍ରସଙ୍ଗଟି ଆହୃତ ହୋଇଛି ପାଶ୍ଚାତ୍ୟ ପରମ୍ପରାରୁ । ଫରାସୀ କାବ୍ୟ ପରମ୍ପରାରୁ ଏହାର ଅଗ୍ରସମାରମ୍ଭ । ଗୁଷ୍ଟେଭ କାହାନ୍ (Gustave Kahn) ଫରାସୀ କବିତାର ରେନାଁସା କାଳରେ ଏହି ମୁକ୍ତ ଛନ୍ଦର ପ୍ରଚଳନ ପାଇଁ ଆହ୍ୱାନ ଦେଇଥିଲେ । ୧୯୧୦ ମସିହାରେ ଗ୍ଲେସ ଭିଲ୍ଡ୍ରେକ୍ ଓ ଜର୍ଜ ଡୁହେମେଲଙ୍କ 'Notes Surla technique poetique' (A Defence of Verse Libre) ପୁସ୍ତକରେ ମୁକ୍ତଛନ୍ଦର ପ୍ରଶସ୍ତ ପ୍ରୟୋଗ କୌଶଳର ବୈଶିଷ୍ଟ୍ୟ ପ୍ରଦର୍ଶିତ । ଷୋଡ଼ଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଫରାସୀ କବିତାରେ ଆଲେକ୍‌ଜାଣ୍ଡ୍ରିଆ ବୃତ୍ତ (Alaxandrine Metre)ର ପ୍ରଚଳନ ଥିଲା । ଏହାର କଠୋର ଶୃଙ୍ଖଳା ବିରୋଧରେ ମୁକ୍ତ ଛନ୍ଦ ଥିଲା ଏକ ଆହ୍ୱାନ ।

ଇଂରାଜୀ ତଥା ମାର୍କିନ୍ କବିତାରେ ମୁକ୍ତ ଛନ୍ଦର ବିଶିଷ୍ଟ ପ୍ରବର୍ତ୍ତକଗଣ ଥିଲେ ଓ୍ୱାଲଟ୍ ହୁଇଟ୍‌ମାନ, ଟି. ଏସ୍. ଏଲିୟଟ, ଏଜ୍‌ରା ପାଉଣ୍ଡ ପ୍ରମୁଖ । କଥିତସ୍ୱର ଅନୁସରଣରେ ଛନ୍ଦର ଗତି ନିର୍ଦ୍ଧାରିତ ହେବା ଆବଶ୍ୟକ ବୋଲି ଏଜ୍‌ରା ପାଉଣ୍ଡ ମତଦେଇଥିଲେ । ଫରାସୀ କବି ଏମିଲ ଭେର୍‌ହାରେଁ, ଭିଲେଁ-ଗ୍ରିଫିନ୍ ଏବଂ ଫ୍ରାନ୍‌ସିସ୍ ଜେମ୍‌ସଙ୍କ ପରି ଏଲିୟଟ ପାରମ୍ପରିକ ପଦ୍ୟକବିତା ସହ ମୁକ୍ତ ଛନ୍ଦବିଶିଷ୍ଟ କାବ୍ୟ-ଶୈଳୀର ଏକତ୍ର ମିଳନ ଦେଖାଇଥିଲେ । ସାଂପ୍ରତିକ କାଳର ବାସ୍ତବବାଦୀ କବିଗଣ ସମାନ୍ତରାଳ ଭାବେ ପାରମ୍ପରିକ ପଦ୍ୟକବିତା ସହ ଗଦ୍ୟଧର୍ମୀ ମୁକ୍ତ କାବ୍ୟ-ଶୈଳୀର ଯୁଗପତ୍ ସମନ୍ୱୟ ସୃଷ୍ଟି କରିଛନ୍ତି । ଏହି ପରିପ୍ରେକ୍ଷୀରେ ସଚ୍ଚି ରାଉତରାୟ, ଗୁରୁ ପ୍ରସାଦ ମହାନ୍ତି, ସୀତାକାନ୍ତ ମହାପାତ୍ର ଓ ରମାକାନ୍ତ ରଥ ପ୍ରମୁଖ ସ୍ମରଣୀୟ ।

ସଚ୍ଚି ରାଉତରାୟଙ୍କ 'ମୁକ୍ତ' କବିତାର ଏକ ଉଦ୍ଧୃତିରୁ ଏହି ମୁକ୍ତ ଛନ୍ଦ ପ୍ରୟୋଗର ବୈଶିଷ୍ଟ୍ୟ ଲକ୍ଷ୍ୟ କରାଯାଉ—

"ପଦଚନ୍ଦ୍ର !
ଖାଲି ସେମାନେ ପଥ ଖୋଜି ଫେରିଛନ୍ତି ।
ପାଇ ନାହାନ୍ତି ।
ସେମାନଙ୍କୁ ବ୍ୟଙ୍ଗ କରି ହସୁଚି ଆଶ୍ୱିନ ।
ଶେଷ ମେଘ ଯାଇଚି ମିଳାଇ ।
ଉପରେ ଝିଙ୍କର ସୂର୍ଯ୍ୟ, ବର୍ଷା ନାହିଁ,
ବର୍ଷା ଜମା ନାହିଁ ।
ତମେ କ'ଣ ଜାଣିଥିଲ ପ୍ରଣୟର ପ୍ରଥମ ପାହାନ୍ତି
ଲାଗି ଧୂଆଁ, ଧୂଳି
ସିବ ବୋଲି ଏମିତି ମଣ୍ଡଳ (୭୨) ?

ଏହି ଉଦ୍ଧୃତିଟିରେ ଉଭୟ ଯତିହୀନ ମୁକ୍ତ ଛନ୍ଦ ସହ ଯତିକବିତାର ଅନ୍ତ୍ୟମେଳ ଏକତ୍ର ପ୍ରକଟିତ । ପ୍ରଥମ ପଂକ୍ତିରେ 'ପଦଚନ୍ଦ୍ର' ଶବ୍ଦର ଅନ୍ତ୍ୟ 'ନ' ସହ, ଚତୁର୍ଥ ପଂକ୍ତିର 'ଆଶ୍ୱିନ'ର ଅନ୍ତ୍ୟ'ନ'ର ମେଳ ରହିଛି । ସେହିଭଳି ଦ୍ୱିତୀୟ ଓ ତୃତୀୟ ପଂକ୍ତିର ଶେଷ ବର୍ଣ୍ଣ ସାମଞ୍ଜସ୍ୟ ରହିଛି । ଅଷ୍ଟମ ପଂକ୍ତିର 'ପାହାନ୍ତି' ସହ ଶେଷ ଦୁଇ ପଂକ୍ତିର 'ଧୂଳି' ଓ 'ମଣ୍ଡଳ'ର ବ୍ୟଞ୍ଜନ ବର୍ଣ୍ଣ ସାମ୍ୟ ନଥିଲେ ମଧ୍ୟ ସ୍ୱରସାମ୍ୟ ରହିଛି । ସବୁଠାରୁ ଅଧିକ ଉଲ୍ଲେଖନୀୟ ହେଉଛି ସ୍ତବକଟିର ପ୍ରତ୍ୟେକ ପଂକ୍ତିର ଅକ୍ଷର ସଂଖ୍ୟା ପରସ୍ପରଠାରୁ ଭିନ୍ନ । ପାରମ୍ପରିକ ଛନ୍ଦୋବଦ୍ଧ କବିତାର ଅକ୍ଷର ଓ ପାଦ ସାମ୍ୟ ଏହି କବିତାରେ ପ୍ରତ୍ୟାଖ୍ୟାତ । ଏହାର ପ୍ରକାଶଭଙ୍ଗୀ କାବ୍ୟଧର୍ମ ଓ କଥନ ଧର୍ମର ସମନ୍ୱୟରେ ପରିପୁଷ୍ଟ ।

ସୀତାକାନ୍ତଙ୍କ 'ଖାତକ' କବିତାର ଏକ ଉଦ୍ଧୃତି ମାଧ୍ୟମରେ ମୁକ୍ତ ଛନ୍ଦର ପ୍ରୟୋଗ ଲକ୍ଷ୍ୟ କରାଯାଇପାରେ:—

"ସ୍ତ୍ରୀ କୁହନ୍ତି, ଖୁସିଣ ମାଇଚଆ,
କଣପଣା
ସାର୍ଟିଫିକେଟ୍‌ଟା ଆଉ କାହାଠୁ ମିଳିଥିଲେ
ହୋଇଥାନ୍ତା ଖାସା, ବୋଧହୁଏ ଅଧିକ ମୂଲ୍ୟବାନ୍
ସେ ଯାହାହେଉ, ସେଥିକି ପରବାୟ କରନ୍ତି ନାହିଁ
ସିଏ (୭୩) ।"

ଉଦ୍ଧୃତ ସ୍ତବକର ଛ'ଟି ପଂକ୍ତିର ଅକ୍ଷର ସଂଖ୍ୟା ପରସ୍ପରଠାରୁ ଭିନ୍ନ । 'କଣପଣା' ଶବ୍ଦ ସହ 'ଖାସା' ଶବ୍ଦର ମେଳ ଘଟିଥିଲେ ମଧ୍ୟ 'ଖାସା, ଶବ୍ଦଟି ପଂକ୍ତି ଶେଷରେ ନରହି ମଧ୍ୟ ଭାଗରେ ଅବସ୍ଥାପିତ । କବିତା ଗୁଡ଼ିକରେ ମୁକ୍ତ ଛନ୍ଦ ବା ଗଦ୍ୟ ଛନ୍ଦର ପ୍ରୟୋଗ କରାଯାଇଥିଲେ ମଧ୍ୟ, ଏଗୁଡ଼ିକ ପୂର୍ଣ୍ଣତଃ ଗଦ୍ୟଧର୍ମୀ ନୁହେଁ । ଗଦ୍ୟ-ଧର୍ମୀ କଥନଶୈଳୀ ମଧ୍ୟରେ କାବ୍ୟିକ ପ୍ରବହମାନତା କବିତାର ଉଚ୍ଚାରଣ ପଦ୍ଧତି ମଧ୍ୟରେ ପ୍ରମୂର୍ତ୍ତ ।

ଗୁରୁପ୍ରସାଦ ମହାନ୍ତିଙ୍କ କବିତାରେ ଏହି ଛନ୍ଦର ସମାନ୍ତରାଳ ପ୍ରୟୋଗ ଉଲ୍ଲେଖନୀୟ—

"ରାସ୍ତାରେ ବା ଘୋଡ଼ା ଗାଡ଼ି ? ମଟର ହର୍ଣ୍ଣ ?/
କୋଡା ମାଡ଼ି କିଏ ଆସି ରାସ୍ତାରେ ବା/ ଏଠିଛାଡ଼ା ହେଲା ?

କିଏ ସେ ଡ଼ାକୁଚି ତଳେ ? କିଏ ସେ ବାହାରେ ?
କୋଡା ଶବ୍ଦ ପାହାଚ ଉପରେ
ଆଜି ସନ୍ଧ୍ୟା ବର୍ଷାଭରା । ଭାରି ବର୍ଷା । ଆଉ ସବୁ ଭଲ ତ ତୁମର
ଭଲ ସବୁ । କଣ ଭଲ ? ସବୁଭଲ କିଛି ନାହିଁ ଖରାପ ଖବର (୭୪) ।

ଉଦ୍ଧୃତ ଦୃଷ୍ଟାନ୍ତଟିରେ ପ୍ରତ୍ୟେକ ପଂକ୍ତି ଅପର ପଂକ୍ତିଠାରୁ ଅକ୍ଷର ସଂଖ୍ୟାଦୃଷ୍ଟିରୁ ପ୍ରାୟ ସ୍ୱାତନ୍ତ୍ର୍ୟ ରକ୍ଷା କରିଛନ୍ତି । କିନ୍ତୁ ସ୍ତବକଟିର ସାମଗ୍ରିକ ପଠନୋତ୍ତର ପ୍ରଭାବ ମଧ୍ୟରେ ଏକ କାବ୍ୟିକ ପ୍ରବହମାନତାର ସ୍ୱର ଝଙ୍କୃତ ହେଉଛି । ବାକ୍‌ଶୈଳୀ ମଧ୍ୟରେ ସାଙ୍ଗୀତିକ ଉଚ୍ଛ୍ୱାସ ଗୁରୁପ୍ରସାଦଙ୍କ ମୁକ୍ତ ଛନ୍ଦ ଭିତ୍ତିକ କାବ୍ୟ କୌଶଳର ଏକ ଉଲ୍ଲେଖନୀୟ ବୈଶିଷ୍ଟ୍ୟ ।

ମୁକ୍ତ ଛନ୍ଦ ପ୍ରୟୋଗର ଅନ୍ୟ ଏକ ସଫଳ ଦୃଷ୍ଟାନ୍ତ, ତାଙ୍କର 'ଦୃଷ୍ଟିର ଦିଗନ୍ତ' କବିତାରୁ ଉଦ୍ଧାର କରାଯାଇ ପାରେ—

"ଏ ଦୃଷ୍ଟିର ଦିଗନ୍ତରେ ଚରମ ଏ ପିପାସାର ଚରମ ବ୍ୟର୍ଥତା
ହୁଏତ ନନ୍ଦାର ଖୋଜେ ଦୂର ଗାଁଆ ଜୀବନର ଦାରିଦ୍ର୍ୟ ଅଭାବ ଆଉ
ସମୟର ନିରର୍ଥକ ସମବେଦନାରେ
ଆଜି ତେଣୁ ମୋ ମନରେ ଗୋଡ଼ିବାଣ ଫୁଲ ଫୁଟେ
ପଥ ଝଡ଼େ ଅଶ୍ୱତ୍ଥର ଝଡ଼ା ପତ୍ର (୭୫) ।

ଛନ୍ଦୋବଦ୍ଧ, ସାଂଗୀତିକ ସ୍ୱର, ତାଳ ଲୟ ସମନ୍ୱିତ କାବ୍ୟ-ଶୈଳୀ ମଧ୍ୟରେ ନାୟକ ଜୀବନର ନୈରାଶ୍ୟ ତଥା ବିଡ଼ମ୍ବିତ ଜୀବନ ସ୍ୱପ୍ନ ଏଭଳି ବାସ୍ତବ ରୂପ ପରି-ଗ୍ରହଣ କରିପାରିନଥାନ୍ତା । ଏଣୁ ବାସ୍ତବବାଦୀ କାବ୍ୟ-ବକ୍ତବ୍ୟର ପରିପ୍ରକାଶ ପାଇଁ ମୁକ୍ତଛନ୍ଦ ଏକାନ୍ତ ଅନୁକୂଳ ।

ରମାକାନ୍ତ ରଥଙ୍କ 'ଅନେକ କୋଠରୀ'ରେ ମୁକ୍ତ ଛନ୍ଦର ବ୍ୟବହାର ଲକ୍ଷ୍ୟ କରାଯାଏ—

"ବନ୍ଧନ ଲାଗିଲା ଯାଇ ସେମାନଙ୍କ ଆଖିର ବନ୍ଦରେ
ଜାହାଜ ଉପରେ ବନ୍ଧୁ ମାଛରଙ୍କା ଚଢ଼େଇ ଉଡ଼ିଲେ
ଦେହରୁ ଆଇଁସ ବାସ୍ନା ଗୁଡ଼ି ଏବଂ ଅପରାହ୍ନ ହାଓ୍ୱା ଦୋହଲାଇ
ଡେଣାର ପଂଖାରେ । ମାଟି ଲଭେ ନାହିଁ ମିଞ୍ଜି ମିଞ୍ଜି ଆଲୁଅ ରାସ୍ତାରୁ
କୁହୁଡ଼ିର କ୍ୟାନ୍‌ଭାସ ଉପରେ ସେ ଲାଲ ଟହ ଟହ
ଫଳ କ'ଣ ମତେ ଡ଼ାକେ ଆସିବାକୁ ଭିଡ଼ ଭାଙ୍ଗି ମିଛ ଶୁଭେଚ୍ଛାର ।
କିମ୍ବା ସେ ପ୍ରତ୍ୟାଶା ମୋର ପ୍ରଚ୍ଛନ୍ନ କ୍ଷୁଧାର (୭୬) ।

ଉଦ୍ଧୃତ ସ୍ତବକଟିରେ ଗଦ୍ୟ ଓ ପଦ୍ୟ ଛନ୍ଦର ସୁମଧୁର ସମନ୍ୱୟ ସଂଘଟିତ । ଶେଷ ଦୁଇ ପାଦରେ କାବ୍ୟିକ ଯତିପାତ ଘଟିଥିବା ବେଳେ ପ୍ରଥମ ପଂକ୍ତିଗୁଡ଼ିକ ଗଦ୍ୟ ଶୈଳୀରେ ରଚିତ । ପାରମ୍ପରିକ ଛନ୍ଦୋବଦ୍ଧ କାବ୍ୟ ରଚନା କ୍ଷେତ୍ରରେ ସାଧାରଣତଃ ସ୍ତବକର ଶେଷପଂକ୍ତିର ଶେଷ ଅକ୍ଷରରେ ପୂର୍ଣ୍ଣଚ୍ଛେଦ ଘଟିଥାଏ । କିନ୍ତୁ ଉଦ୍ଧୃତ ସ୍ତବକରେ ପୂର୍ଣ୍ଣଚ୍ଛେଦ ପଂକ୍ତିର ମଧ୍ୟଭାଗରେ ସୂଚିତ । ରେଖାଙ୍କିତ "ଡେଣାର ପଙ୍ଖାରେ" ଅଂଶରେ ଏହା ପ୍ରତିଫଳିତ । ପୁଣି ସ୍ୱର ଓ ବ୍ୟଞ୍ଜନର ପୁନଃଯୌଜିକ ପ୍ରୟୋଗ ମାଧ୍ୟମରେ ମୁକ୍ତଛନ୍ଦ ମଧ୍ୟରେ ସୁନିର୍ଦ୍ଦିଷ୍ଟ ଆରୋହଣ ଓ ଅବରୋହଣ ରମାକାନ୍ତଙ୍କ କବିତାକୁ ଅନେକତ୍ର ଶ୍ରୁତି ମଧୁର କରିଛି—

"ସେ କି ନୀଳବର୍ଣ୍ଣ ମୋର ଦପ୍‌ଦପ୍ ଆଶାର ତାରାର ?
ସେ କ'ଣ ସୂର୍ଯ୍ୟାସ୍ତ ଦୂର ସମୁଦ୍ରର ନିର୍ଜନ ଦ୍ୱୀପର ?
କିମ୍ବା ସେ ମୋ ମରୁଭୂମି ପ୍ରଜ୍ୱଳିତ ସାଗର ଯାହାର
ମୋ ଭାଗ୍ୟର ଦର୍ପଣରେ ପ୍ରତିବିମ୍ବ ମୋ ନିଜ ଅଗ୍ନିର (୭୭) ?

ସୀତାକାନ୍ତ ମହାପାତ୍ରଙ୍କ 'ଉତ୍ତରଣ'ରେ କଥ୍ୟଗୀତ ମଧ୍ୟରେ ମୁକ୍ତ ଛନ୍ଦର ପ୍ରୟୋଗ ଉଲ୍ଲେଖନୀୟ—

"ହାଲେ ହାଲେ
ଜାଲ ଅଛନ୍ତି
ଫେରି ମିଳେଙ୍ଗେ
ଆଉ ଶୁଭ ରାତ୍ରି
× × ×
ଟିଏ କେତେ ଭଲ ପାଣି
ଦହଯାତା ଆଉ ଦେହଯାଣି (୭୮)

ନଗର ସଭ୍ୟତାର ଗାର୍ଡ଼େନ ପାର୍ଟିରେ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଥିବା ସଂପର୍କର ବହିର୍ମୁଖୀନତା କେତେକ ତଥାକଥିତ ଶୁଭ ସମ୍ଭାଷଣ ମଧ୍ୟରେ ଏଠାରେ ସୂଚିତ । ବକ୍ତବ୍ୟର ଉପସ୍ଥାପନ ଶୈଳୀରେ କଥ୍ୟ ରୀତିର ପ୍ରତିଫଳନ ସୁସ୍ପଷ୍ଟ । ତାଙ୍କ ଅନ୍ୟ ଏକ କବିତାରୁ ଏହି କଥନଧର୍ମୀ ଛନ୍ଦ ପ୍ରୟୋଗର ଦୃଷ୍ଟାନ୍ତ ଉଦ୍ଧାର କରାଯାଉଛି—

"ସମୟର ମୁକୁରରେ ନିଜ ଛବି, ଥରେ ଦେଖି
କେଉଁ ଏକ ଅଶୁଭ ଲଗନେ
ଚମକି ମୁଁ ବ୍ୟତିବ୍ୟସ୍ତ ହୋଇ
ରାଗରେ ଦର୍ପଣ ଭାଙ୍ଗି, ନିର୍ବାସନ ଦଣ୍ଡ ଦେଲି
ମୋ ମନକୁ, ମୋ ଆତ୍ମାକୁ
ମୋ ଦେହକୁ ମଧ୍ୟ (୭୯) ।"

ବସ୍ତୁତଃ ଆଧୁନିକ କବିତା ପାରମ୍ପରିକ ଛନ୍ଦୋମୟତାରୁ ମୁକ୍ତ ଏବଂ ଧାଡ଼ିବନ୍ଧା ଯତିପାତ ବିବର୍ଜିତ । ଛନ୍ଦୋବଦ୍ଧ କବିତା ପରି ଏହା ଭଙ୍ଗା ଭଙ୍ଗା ଧାଡ଼ିରେ ଲେଖା ଯାଇପାରେ । ସ୍ଥଳ ବିଶେଷରେ ଛନ୍ଦ ଆରୋହ ଓ ଅବରୋହ ବିଶିଷ୍ଟ ହୋଇପାରେ ଏବଂ ଏହାର ନିର୍ଦ୍ଦିଷ୍ଟ ଅଂଶରେ ଯତିପାତ ନିୟମ ରହିପାରେ । କିନ୍ତୁ ସମସ୍ତ କବିତାଟି ଧରାବନ୍ଧା ଧାଡ଼ିରେ ଆବଦ୍ଧ ହୋଇପାରେ ନାହିଁ ବା ପାରମ୍ପରିକ ଛନ୍ଦୋବଦ୍ଧତାରେ ଛନ୍ଦ ହୋଇପାରେ ନାହିଁ ।

## ବିଷୟାନୁବର୍ତ୍ତିନୀ ସଂପୃକ୍ତି (Objective Correlative)

କବିତାରେ ବିଷୟବସ୍ତୁ, ପରିସ୍ଥିତି ଓ ଘଟଣା ନିଚୟର ସୁଷ୍ଠୁ ସମାବେଶ, ନିର୍ଦ୍ଦିଷ୍ଟ ଭାବ ସୃଷ୍ଟିର ମୌଳିକ ସୂତ୍ର ଭାବରେ କାର୍ଯ୍ୟ କରିଥାଏ । କବି-ସମାଲୋଚକ ଟି. ଏସ୍. ଏଲିୟଟ ସେଥିପାଇଁ 'ବିଷୟାନୁବର୍ତ୍ତିନୀ ସଂପୃକ୍ତି' ଶୀର୍ଷକ କାବ୍ୟିକ ବିଭାବର ପରିକଳ୍ପନା କରିଥିଲେ । ଏହି ନୂତନ ପରିକଳ୍ପନାର ବ୍ୟାଖ୍ୟା ପ୍ରଦାନ କରି ସେ କହିଥିଲେ—

"କବିତାରେ ଆବେଗ ପରିପ୍ରକାଶର ଏକମାତ୍ର ପନ୍ଥା ହେଉଛି ବିଷୟାନୁବର୍ତ୍ତିନୀ ସଂପୃକ୍ତି । ଏକ ଗୁଚ୍ଛ ବସ୍ତୁ, ଏକ କାବ୍ୟିକ ଅବସ୍ଥିତି ଓ ଘଟଣାର ସମାହୃତି ହେଉଛି ସେହି ସୁନିର୍ଦ୍ଦିଷ୍ଟ ଆବେଗ ପ୍ରକାଶନର ଏକ ସୂତ୍ର । ଫଳରେ ସେହି ଅନ୍ତର୍ନିହିତ କାବ୍ୟିକ ତଥ୍ୟ ଇନ୍ଦ୍ରିୟାନୁଭୂତି ଓ ଅଭିଜ୍ଞତା ପ୍ରାପ୍ତ ହୁଏ, ଯାହା ସେହି ଆବେଗର କ୍ଷିପ୍ର ଉଦ୍‌ବୋଧନର ସହାୟକ ହୋଇଥାଏ (୮୦) ।"

୧୯୧୯ ମସିହାରେ 'ହାମଲେଟ୍ ଓ ତାଙ୍କର ସମସ୍ୟାବଳୀ' (Hamlet and his Problems) ଶୀର୍ଷକ ପ୍ରବନ୍ଧରେ ଏଲିୟଟ ଏହି କାବ୍ୟ-ମାଧ୍ୟମଟିର ସୂଚନା ଦେଇଥିଲେ । ରୋମାଣ୍ଟିକ କବିତାର ଅଭିବ୍ୟକ୍ତିଗତ ବିକ୍ଷିପ୍ତି ବିରୋଧରେ ଏହା ଥିଲା ଏକ କାବ୍ୟିକ ଆହ୍ୱାନ । ଟି. ଏସ୍. ଏଲିୟଟଙ୍କ 'ଦି ଓ୍ୱେଷ୍ଟଲାଣ୍ଡ'ର ଗ୍ରୀଷ୍ମାରେ ରଚିତ ଗୁରୁ ପ୍ରସାଦ ମହାନ୍ତିଙ୍କର 'କାଳ ପୁରୁଷ' ଦୀର୍ଘ କବିତାରୁ ଏହି 'ବିଷୟାନୁବର୍ତ୍ତିନୀ ସଂପୃକ୍ତି'ର ସୂଚନା ଦିଆଯାଇପାରେ ।

କବିତାର ଶେଷ ପାଞ୍ଚଟି ପଂକ୍ତିର ଅମୃତ ପ୍ରତ୍ୟାଶାକୁ ବାଦଦେଲେ ସବଂଙ୍କ ବର୍ଷାର ନିରବଚ୍ଛିନ୍ନତା ମଧ୍ୟରେ ମୃତ୍ୟୁ ଚେତନାର ସଂସ୍ରବ 'କାଳପୁରୁଷ'ର ପ୍ରତିପାଦ୍ୟ ବକ୍ତବ୍ୟ । 'ବାଲି' ଓ 'ଅଙ୍ଗାର' ଆଦି ବସ୍ତୁ ପ୍ରତୀକ ମାଧ୍ୟମରେ ଏହି ମୃତ୍ୟୁ ଚେତନାର ସ୍ୱରୂପ ସୂଚିତ—

ସେ ଦିନ ଆସିଲା ବର୍ଷା ଛିନ୍ନ ଭିନ୍ନ ବିଶୃଂଖଳ ଅସଂଯତ ବଉଦର ସୁଅ

× × × ×

କ୍ଲାନ୍ତମୋର ଦେହ ଲୁଚି ମାଡ଼ି ଆସେ ବାଲିରେ ମାଡ଼ିଆସେ ବାଲି ଓ ଅଙ୍ଗାର
ପାଦଯେବେ ଛନ୍ଦି ହୁଏ ଅନ୍ଧାରରେ ଗୁଡ଼ିକଙ୍କ ନଖ
ଦେହ ମୋର ଘେରି ରଖେ ସ୍ତୂପ ସ୍ତୂପ କୁଢ଼ କୁଢ଼ ବାଲି ଓ ଅଙ୍ଗାର (୮୧)

ବର୍ଷାର ନିରବଚ୍ଛିନ୍ନ ସଞ୍ଚରଣ ମଧ୍ୟରେ କୁଢ଼ କୁଢ଼ ବାଲି ଓ ଅଙ୍ଗାରରେ ସ୍ତୂପୀଭୂତ ଶରୀର, ମୃତ୍ୟୁ ଚେତନାର ବାହକ । ସମଗ୍ର କବିତାରେ, ଜୀବନକୁ ଅଚ୍ଛନ୍ନ କରିଛି, ବର୍ଷା । ଏହି ବର୍ଷା ନବଜୀବନକୁ ଉଦ୍ରିକ୍ତ କରିପାରୁନାହିଁ । ବିବର୍ଣ୍ଣ ଧାଲିକୁ ଶସ୍ୟଶ୍ୟାମଳା କରିବା ପାଇଁ 'ଆଷାଢ଼ର ପ୍ରାଣାନ୍ତ ପ୍ରୟାସ' ବ୍ୟର୍ଥ ହୋଇଛି—

"ଅନ୍ଧାର ଆସିବ ଖସି ଆକାଶରୁ ଆବୋରି ପୃଥିବୀ
ପଛରେ ତୁମର ସ୍ତବ୍ଧ ବାଲି ଆଉ ବାଲି ପରେ ବାଲି
ନିଷ୍ଫଳ ବାଲିରେ ନଷ୍ଟ ଆଷାଢ଼ର ପ୍ରାଣାନ୍ତ ପ୍ରୟାସ (୮୨) ।"

ଜୀବନର ଏହି ବିଫଳ ତଥା ନିରର୍ଥକ ସ୍ଥିତିମଧ୍ୟରେ ପ୍ରଣୟ ଦେହଧର୍ମୀ—ଏକ ଜୈବିକ ପ୍ରକ୍ରିୟା । ରୁଜ୍, ବ୍ରଣ, ଚକୋଲେଟ ଓ ଲାଲ ଟୋପ ଆଦି ବସ୍ତୁପ୍ରତୀକ ମଧ୍ୟରେ ଏହା ପ୍ରତିଫଳିତ । ଏହି ଦେହଧର୍ମୀ ପ୍ରଣୟ ବିକାର ବେଳେ ଶ୍ରାବଣର ଝିପି ଝିପି ବର୍ଷାର ସ୍ୱର ସେ ଛନ୍ଦ ରେଗୀଟ କାଶ ତଳ ବିବର୍ଣ୍ଣ ଓ ମର୍ମଦାହୀ ଆବେଦନ ନେଇ ସମୁପସ୍ଥିତ—

"ସହରର ଉପରେ ଯାଏ ଭାସି ଭାସି ଅସରନ୍ତ ଧୂସର ବଉଦ
ଧୂସର ଏ ଆକାଶରେ ନେଶି ହୋଇ ରହିଯାଏ ପ୍ରଥମା, ମିନଥ, ମୀରା
ରୁଲ୍, ବ୍ରଣ୍ଡ, ଚକୋଲେଟ, ଲାଲ ଛେପ ରଖିଯାଏ ଦାଗ
ସ୍ମୃତି ଦାସ ଛୁଡା ହୁଏ କାର ରଖି କାନ ଡେ଼ର ଶୁଣେ
ସିମସ୍ତର କ୍ଷୟକାଶ ଟିପି ଟିପି ମର୍ମାନ୍ତକ ଚେଷ୍ଟାର ଶବଦ (୮୩) ।"

ବିଷୟାନୁବର୍ତ୍ତିନୀ ସଂପୃକ୍ତ କବିତାକୁ ରୋମାଣ୍ଟିକ ବର୍ଣ୍ଣନା ବିଳାସରୁ ମୁକ୍ତ ରଖିଥାଏ । କବିତାକୁ ବ୍ୟଞ୍ଜନାତ୍ମକ ଅଭିବ୍ୟକ୍ତି ଦେବା କ୍ଷେତ୍ରରେ ଏହାର ବୈଶିଷ୍ଟ୍ୟ ଅନସ୍ୱୀକାର୍ଯ୍ୟ ।

ସୀତାକାନ୍ତ ମହାପାତ୍ରଙ୍କ 'ମୁଁ ଓ ଅନ୍ଧାର' କବିତାରେ ମଧ୍ୟ ଏହି ବିଷୟାନୁବର୍ତ୍ତିନୀ ସଂପୃକ୍ତିର ପ୍ରୟୋଗ ସାର୍ଥକ ରହିଛି । ଜୀବନର ସ୍ଥବିର, ଅଚଞ୍ଚଳ, ଜଡ଼ ତଥା ଅଥର୍ବ ଚେତନାକୁ ଚଳଚଞ୍ଚଳ, ଜାଗ୍ରତ ଓ ବେଗବାନ କରିବା ଶଂସିତ କବିତାର ବକ୍ତବ୍ୟ (୮୪) । ଏହି ଚନ୍ଦ୍ରାଧାରର ପରିପ୍ରକାଶ ପାଇଁ କବି କେତେକ ବିଷୟାନୁବର୍ତ୍ତିନୀ ସଂପୃକ୍ତିର ସୂଚନା ଦେଇଛନ୍ତି । ପ୍ରଥମତଃ ଅନ୍ଧାରର ସମୁଦ୍ରକୁ ଅତିକ୍ରମ କରିବାକୁ ଚାହୁଁଥିବା ଏକ ଇଲିସି । ଦ୍ୱିତୀୟତଃ ଜଗନ୍ନାଥର ଅନ୍ଧାର ଭିତରୁ ଆଲୋକରେ ଅବତରଣ କରିବାକୁ କାମନା କରୁଥିବା ଏକ ଭ୍ରୂଣ । ତୃତୀୟତଃ ମାଟିର ଅନ୍ଧାର ବୁକୁରେ ଏକ ଜ୍ୱଳନ୍ତ ଲାଭା ସ୍ରୋତ—

"ଅବୋଧ, ଅଗମ୍ୟ ଏଇ ଅନ୍ଧାରର ସମୁଦ୍ରରେ
ମୁଁ ଗୋଟେ ଇଲିସି
ଚଢ଼ି ଚଢ଼ି ପାଣିର ପାହାଚ
କାଟି କାଟି ଅଧା ଗ୍ରାଇ ଆଲୁଅର ନାଚ

× × ×

ଅନ୍ଧାରରୁ ବଢ଼ାଉଛି ଆଲୁଅକୁ ହାତ
ପାଇବାକୁ ଦୁନିଆର ଆଲୁଅ ଓ ମେଘଗ୍ରାଇ
ଜଗନ୍ନାଥର ଅନ୍ଧକାରରେ ହାତଯୋଡ଼ି
ମୁଁ ଗୋଟିଏ ଭ୍ରୂଣ ?

× × ×

ଏ ଧରିତ୍ରୀ ଅନ୍ଧାର ବୁକୁରେ
କେତେ ମାଟି, ବାଲି ଆଉ
ପଥରର ତଳେ
ମୁଁ ଗୋଟେ ଲାଭାର ସ୍ରୋତ (୮୫) ।"

ରମାକାନ୍ତ ରଥଙ୍କ 'ଲଣ୍ଠନ' କବିତାରେ ମଧ୍ୟ ବିଷୟାନୁବର୍ତ୍ତିନୀ ସଂପୃକ୍ତିର କାବ୍ୟିକ ପ୍ରୟୋଗ ଉଲ୍ଲେଖନୀୟ । ସାମାଜିକ ଚେତନାର ଅନ୍ତରାଳରେ, ନ ଯୁବକର ଅନ୍ତର୍ଲୋକରେ ନାୟିକା ପ୍ରତି କାମନାର ଜୁଆର ଉଦ୍‌ବେଳିତ ; କିନ୍ତୁ ଲଣ୍ଠନର ଧାତବ ପରିବେଷ୍ଟନୀ ଅନ୍ତରାଳରେ ଅଗ୍ନିର ନିୟନ୍ତ୍ରିତ ଶିଖା ଭଳି ତା'ର କାମନା ସାମାଜିକ ଜୀବନର ବାହ୍ୟାଗ୍ରର ତଥା କଠୋର ନିୟମ-ଶୃଙ୍ଖଳା, ମଧ୍ୟରେ ଅବଦମିତ । କବିତାର ଶୀର୍ଷକ 'ଲଣ୍ଠନ' ହିଁ ସ୍ୱୟଂ ଏଠାରେ ବିଷୟାନୁବର୍ତ୍ତିନୀ ସଂପୃକ୍ତ ।

ଏହା ବ୍ୟତୀତ 'ସର୍କସ ବାଘ ପରି ଦୁର୍ଦ୍ଦାନ୍ତ ନିଆଁ ସୁନା ପିଲ୍'ର ସର୍କସ ବାଘ ଓ ଶେଷ ପଂକ୍ତିର 'ମିଲିଟ୍ରିର ଧୋବି' ଏବଂ 'ଇସ୍ତ୍ରୀକରା ଅଧା ପଞ୍ଜାବୀ' ମଧ୍ୟ ସାମାଜିକ ଶୃଙ୍ଖଳା ମଧ୍ୟରେ ପ୍ରପୀଡ଼ିତ ମାନସିକ ଚେତନାପାଇଁ ପ୍ରଯୁକ୍ତ ଏକ ଏକ ବିଶିଷ୍ଟ ବିଷୟାନୁବର୍ତ୍ତିନୀ ସଂପୃକ୍ତ—

"ନିଆଁ ଜଳେ ଧୋଷା ମାଳ, ମାଳ ଏଇ ହିଟର ପରିଧି
ସର୍କସର ବାଘ ପରି ଏ ଦୁର୍ଦ୍ଦାନ୍ତ ନିଆଁ ସୁନା ପିଲ୍,

× × × ×

× × ମୁଁ ଜଳୁଛୁ ଓ ଜଳୁଚ ତୀବ୍ର ଦାଉଦରେ
ମିଲ୍ଟ୍ରିର ଧୋବି ଆଉ ଇସ୍ତ୍ରୀକରା ଅଧାକାମିଜରେ (୮୬) ।"

କାବ୍ୟ-ଶୈଳୀ ଅବ୍ୟକ୍ତ ଭାବନାର ବସ୍ତୁ ରୂପାୟନ । ଏହା ଏକ ଆୟାସସାଧ୍ୟ କଳା । ଭାବନାର ବସ୍ତୁ ରୂପାନ୍ତରୀକରଣ ନିରପେକ୍ଷ କବି-କର୍ମ ଉପରେ ନିର୍ଭରଶୀଳ । କବିତା ସାମ୍ପ୍ରଦାୟିକତାର ବଳୟରୁ ଊର୍ଦ୍ଧ୍ୱକୁ ଗତି କରିବା ବେଳେ ରୋମାଣ୍ଟିକ ଚେତନା ସଂକ୍ରମଣର ସମ୍ଭାବନା ରହିଥାଏ । ଏଣୁ ଅନୁଭୂତ-ସତ୍ୟକୁ କାବ୍ୟ ସତ୍ୟରେ ରୂପାନ୍ତରିତ କରିବା ବେଳେ ବାସ୍ତବବାଦୀ ଶିଳ୍ପ-କଳା ଇନ୍ଦ୍ରିୟବେଦ୍ୟ ହେବା ବାଞ୍ଛନୀୟ । ପାରିପାର୍ଶ୍ୱିକ ଜୀବନ ଭୂମିର ବସ୍ତୁଧର୍ମୀ ଅଭିବ୍ୟକ୍ତି ବୈଚିତ୍ର୍ୟ ହିଁ ଉକ୍ତାଙ୍ଗ ବାସ୍ତବଧର୍ମୀ କଳାର ବୈଶିଷ୍ଟ୍ୟ ।

## ପାଦଟୀକା

(୧)—"ମୂର୍ତ୍ତିବନ୍ତ କରି ମୁଦ୍ରାଙ୍କିତ ବସ୍ତୁରଇ/ ଏଣୁକରି ଥିବ ଅଳଙ୍କାର ଯୁକ୍ତହୋଇ/ ପଦ ସରଳ ଧ୍ୱନିରେ ଶ୍ରବଣ ମୋହିବ/ଅର୍ଥଜନ ପ୍ରକରକୁ ଆନନ୍ଦ କରିବ" (ଲବଣ୍ୟବତୀ—୧/୭-୮) ପ୍ରାଚୀଗ୍ରନ୍ଥମାଳା-(୩)

(୨)-Culteranismo is a literary movement of seventeenth century Spain characterised by its elaborate latinate language.
A Dictionary of Literary Terms—Martin Gray-p 59

(୩)—"Affinity with the people is the alpha and omega of aesthetics". (Poetry and Aesthetics)

(୪)—"I had to toil for many years/Before I saw that poetry/ Means simple words that strike the ear/ And luminous clarity/No pretty passions should obscure/With thousands Frivolities/The heart that reigns true and pure".—The Art of Poetry—Maxis Rilsky

(୫)—(କ) A real work of art should appeal to all
(Gandhi, Among The Great)
(ଖ) Beauty divorced from utility is inconceivable.
Diary of M. Desai—p-224

(୬)—"Comrade this is no book/Who touches this touches a man"
—Songs of Myself-Leaves of Grass (Walt Whitman)

(୭)—ରାଜକେମା-ପାଣ୍ଡୁଲିପି-(୧୯୪୭) ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ-ପୃ ୧୫୧.
(୮)—କବରାର କବର-(ପାଣ୍ଡୁଲିପି)-ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ-ପୃ ୬
(୯ଅ)—କଏ ଶଳା ସଇତାନ-କ୍ଷଣିକ ସତ୍ୟ-କାଳନ୍ଦୀ ରଚନାବଳୀ-୧ମ ଭାଗ-ପୃ ୪୨୧
(୯ଆ,—ପ୍ରଳୟ ଆବାହନ—ଅଲେଡ଼ାଲେଡ଼ା-ପୃ ୬
(୯ଇ) – ତୁମେ ଓ ଆମେ—କଣ୍ଟା ଓ ଫୁଲ— ଗୋଦାବରୀଶ ଲେଖାବଳୀ-ପୃ ୫

(୯ଈ)—କବି କଣ୍ଠେ—୧୭ ସଙ୍ଗୀତ (୧୯୫୧)-ମନମୋହନ ମିଶ୍ର
(୯ଉ)—ହେ ମୋର ଶାସକ—୧୯୫୭—ପଥପ୍ରାନ୍ତର କବିତା—ରବି ସିଂ
(୯ଊ)—ଅଗଷ୍ଟ ପନ୍ଦର—ଜାନକୀ ବଲ୍ଲଭ ମହାନ୍ତି—ବିଚିତ୍ର ବର୍ଣ୍ଣିକା-ପୃ ୮୨
(୯ଏ)—ନୂତନ ମୂଲ୍ୟ-ଗୋପାଳ ଚନ୍ଦ୍ର ମିଶ୍ର-ଅଗଷ୍ଟ ୧୯୫୯-ଡ଼ଗର
(୧୦ଅ)—ଗ୍ରୀକଜେମା (ପାଣ୍ଡୁଲିପି)- ସଚି ରାଉତରାୟ ଗ୍ରନ୍ଥାବଳୀ-ପୃ ୧୪୮
(୧୦ଆ)—ଛୁରୀଟିଏ ଲୋଡ଼ା-୧୯୩୯-କାଳନ୍ଦୀ ରଚନାବଳୀ-୧ମ ଭାଗ-ପୃ ୨୭୫
(୧୦ଇ)—ଲେନିନ—୧୯୬୪—ଉଠ କଙ୍କାଳ—ଗୋଦାବରୀଶ ଲେଖାବଳୀ-ପୃ ୨୫୯
(୧୦ଈ)—ଷ୍ଟେନ—ଅଭିଯାନ—ସ: ରା: ଗ୍ରନ୍ଥାବଳୀ-ପୃ ୭୫୭
(୧୦ଉ)—ହାରୁଡ଼—ଅଭିଯାନ—ସ: ରା: ଗ୍ରନ୍ଥାବଳୀ-ପୃ ୭୫୯
(୧୦ଊ)—ବର୍ଲିନ—ପାଣ୍ଡୁଲିପି—ସ: ରା: ଗ୍ରନ୍ଥାବଳୀ-ପୃ ୮୫

(୧୧)—Comparison is the elementary form of visual imagination. It precedes metaphor which is a comparison in which one of the terms is missing unless indeed the two terms are fused into one"
(La Probleme du Style—Page-81)

(୧୨) "A metaphor goes further than a comparison between two different things or ideas by fusing them together."—Martin Gray (A Dictionary of Literary Terms-p. 12)

(୧୩)—"A similie is a comparison of two unlike things using 'like' or 'as,'. A metaphor calls attention to the similarities of two otherwise unlike things by treating them as identical."
—A Glossary for the study of English-p-172

(୧୪)—ଇନ୍ଦୁମତୀ—ଗଙ୍ଗାଧର ଗ୍ରନ୍ଥାବଳୀ-ପୃ ୨୬
(୧୫)—ଝଡ଼—ପାଣ୍ଡୁଲିପି—ସଚି ରାଉତରାୟ ଗ୍ରନ୍ଥାବଳୀ-ପୃ ୧
(୧୬)- ଏଇ ମଇ ଦିବସ—ଅନନ୍ତ ପଟ୍ଟନାୟକ, ରୁଇର ଛଟା-ପୃ ୧୩
(୧୭)—"**ନାଲି ସଲାମ** କରରେ ଆଜି ଶକ୍ତ କରି ମୁଠା
ବିପ୍ଳବର ଜନ୍ମ ଦିନେ ଝଣ୍ଡା ତୋର ଉଠା।"
(ନାଲି ନଭେମ୍ବର—ଅଭିଯାନ—ସଚି ରାଉତରାୟ ଗ୍ରନ୍ଥାବଳୀ -ପୃ ୭୯୧)

(୧୭କ)—"**ରକ୍ତ ପ୍ଲାବିତ** ଆଲୋକିତ ଆମେ ପୁଣି ଏ ଶପଥ ନେଉ
ତୁମ ରକ୍ତର ପ୍ରତିକଣା ପାଇଁ ପ୍ରତିଶୋଧ ଆମେ **ଖୋଜୁଁ** ।"
(ହେମ-ପରଧ୍ୱନି-ପୃ-୪୮-ମନୋଜ ଦାସ)

(୧୭ଖ)—"ଆଖିର ଲୋତକ, ବୁକୁର ରକ୍ତ ଯେଉଁଠାରେ ବହୁ ସିକ୍ତ କରୁଛୁ ମାଟି
ଅନାଗତ ଏକ ପ୍ରତ୍ୟୁଷେ ତହିଁ **ଫୁଟିବ** ନଷ୍ଟେ କୋଟିଏ **ରକ୍ତ କଳ** ।"
(ଆଗାମୀକାଲର ଇଙ୍ଗିତ—ବ୍ରଜନାଥ ରଥ-ଡଗର-ଜୁଲାଇ ୧୯୪୮)

(୧୭ଗ)—**ଲାଲ ପତାକା ଲାଲ ପତାକା** । ଦେଶେ ଦେଶେ ଗଢ଼େ ସୃଷ୍ଟି **କୂଳ**
ଇଲ୍‌କା ଦିନ ନଶୀଥର **ଫୁଲ** ମଥିତ ଶେଯେ
ଚମକ ତୁର୍କିସ୍ଥା ସୃଷ୍ଟିଥିଲା **ତୋ** ତେଜେ
—ମନମୋହନ ମିଶ୍ର-କୋଟି କଣ୍ଠେ-ପ୍ରଥମ ସଙ୍ଗୀତ ।

(୧୮କ)—"ଆମେ ବି ସଂଗ୍ରାମ ପାଇଁ /ଅଗ୍ନିଗର୍ଭ ଆମ ଅଙ୍ଗୀକାର/ନୂତନ ସୂର୍ଯ୍ୟରେ
ସୃଷ୍ଟି/ପ୍ରିୟତମା କଣ୍ଠିଯିବା ଆଜି/ଆମେଇ ଶୁଣିବା କାଲି **ଲୌହ କାରା**
ପଡ଼ିଅଛୁ ଭାଙ୍ଗି ।"
(**ଅଙ୍ଗୀକାର** ଚନ୍ଦ୍ରାମଣି ବେହେରା—ନୂତନ ସ୍ୱାକ୍ଷର—ପୃ ୭୨)

(୧୮ଖ)—"ଆରେ ଦୁର୍ମଦ ଆରେ **ଅଦମିତ**
ତଥାପି **ଅଛୁରେ** ଅଛୁରେ ବେଳ
ବଜ୍ର ବେଗରେ **ଝଡ** ଝଙ୍କାରେ
ଧରା ତଳ କରରେ ଉଦ୍‌ବେଳ ।"
ଆହ୍ୱାନ—୧୯୭୯-ଆଦ୍ୟରଶ୍ମି-ତୁଳସୀ ଦାସ-ପୃ ୨୨

(୧୯)—"The Imagists were a group of poets including Ezra Pound, Amy Lowell, and T. E. Hulme who felt that poetry should present images (usually visual) rather than ideas and emotions, use common rather than poetic language, be concentrated, rather than prolix, definite rather than vaguely descriptive, objective rather than emotional. They preferred free verse to patterned verse."
Lee-Te-Lemon-A Glossary for the study of English-p 118

(୨୦)—Preludes—T. S. Eliot

(୨୧)—"A touch of cold in the/Autumn night I walked abroad And saw the ruddy moon lean over the hedge Like a red-faced farmer/ I did not stop to speak, but nodded, /And round about were the wistful stars/With whitefaces like town children."
T. E. Hulme-Autumn

(୨୨)—"A good poem is for instance, not an outbrust of pure feeling but is the result of a more than common power of controlling and manipulating feelings."
The Idealism of Julion Benda—The New Republic, chapter-L VIII, p 107

(୨୩)—"ବାହ୍ୱାରେ କଲହ୍ୱରତ/ଭିକାସ୍ତ ଦ' ଜଣ/ଉପରେ ଟିଣର ଜହ୍ନ/ ଯାଏ ବୁଡ଼ି ଈଷତ୍ କୁହୁଡ଼ି।" (ଲାବଣ୍ୟବତୀକୁ ଚନ୍ଦ୍ରଶାନୁର ଚିଠାଉ-ପାଣ୍ଡୁଲିପି-ସଚ୍ଚିରାଉତରାୟ ଗ୍ରନ୍ଥାବଳୀ

(୨୪)—ପ୍ରଥମା ନାୟକ-ପାଣ୍ଡୁଲିପି-ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ

(୨୫)—ଲାବଣ୍ୟବତୀ—୧୧/୧୨

(୨୬)—ପ୍ରତିଗ୍ରସ୍ଥା—କବିତା ୧୯୬୨, ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ ପୃ-୧୯୪

(୨୭)—ଇନ୍ଦ୍ରଧନୁ—କେତେ ଦିନର—ରମାକାନ୍ତ ରଥ ପୃ-୯୧

(୨୮)—"The winter evening settles down
With smell of steak in passage-ways six o' clock
The burnt-out ends of smoky days"
(Preludes—T. S. E liot)

(୨୯)—ଉଦ୍ଧରଣ—ଦୀପ୍ତି ଓ ଦ୍ୟୁତି ପୃ-୯

(୩୦)—ତାତପିଣ୍ଡି କ ବଳାବ ବଗୃଶ କ କାମଦେବ/ମାଣିକ୍ୟ ସ୍ୱର—ରଥାଙ୍ଗ ପେଷି ଦେଇଛୁ ବିୟୋଗୀ ସୁଖ-ଦୁଃଖଦ ସମ୍ଭୋଗୀସୁଖ—ଦୁଃଖଦ,/ପରସ୍ପର ବିରୋଧାଭାସକୁ କରୁଛୁ ।
(ବଦ୍‌ଗଧ ଚନ୍ତାମଣି—୩୦/୩)

(୩୧)—ଉତ୍ତରଣ—ଗୀତି ଓ ଦ୍ୱନ୍ଦ୍ୱ-୧୯୬୩

(୩୨)—"ତେନ ବର୍ଷିପତାକ୍ଷ୍ୟର୍ଥଂ ପବନେନ ସମନ୍ତତଃ
ଅମୀ ସଂସକ୍ତ ଶାଖାଗ୍ର ଗ୍ରଥିତା ଇବ ପାଦପାଃ ।
ସ ଏଷ ସୁଖସଂସ୍ପର୍ଶୋ ବାତି ଚନ୍ଦନ ଶୀତଳାଃ
ଗନ୍ଧ ମଭ୍ୟ ବହନ୍ ପୁଣ୍ୟଂ, ଶ୍ରମାପନୟନୋଽନିଳଃ

× × ×

ଷଟ୍‌ପଦୈରନୁ କୂଜଦ୍‌ଭିର୍ବନେଷୁ ମଧୁଗନ୍ଧଷୁ ।"
(ବାଲ୍ମୀକି ରାମାୟଣ—କିଷ୍କିନ୍ଧ୍ୟାକାଣ୍ଡ—୧/୧୫)

(୩୩)—ବସନ୍ତଋତୁ—ସନ୍ଦିଗ୍ଧ ମୃଗୟା ପୃ-୧୨

(୩୪)—ଅନ୍ୟ ଏକ ବସନ୍ତ—ମଧ୍ୟପଦଲୋପୀ,

(୩୫)—"ବସନ୍ତ ମାନେ କୌଣସି ନଈ ପାର ହେବା/

× × ×

ଦେହର ମଶାଣି ଦାଢ଼େ ନିଜ ନିଜ ଆଖିକୁ ଖୁମ୍ପିବା/ନିଜ ରକ୍ତ ଚୁଷିବାର
ଏପରି ପ୍ରଶସ୍ତ କୂଳ/ଭୟାନକ ଋତୁ/ଆଉ କେହି ନାହିଁ ।"
(ଅନ୍ୟ ଏକ ବସନ୍ତ—ମଧ୍ୟପଦଲୋପୀ)

(୩୬)—"A symbol partakes of reality which it renders intelligible."
(Biographia Literaria—Coleridge)

(୩୭)—"ଦ୍ୱା ସୁପର୍ଣ୍ଣା ସୟୁଜା ସଖାୟା/ସମାନ ବୃକ୍ଷଂ ପରିଷ-ସ୍ୱ ଜାତେ ।
ତୟୋରନ୍ୟଃ ପିପ୍‌ପଳଂ ସ୍ୱାଦତ୍ୟ/ନଶ୍ନନ୍ୟୋ ଅଭିଚାକଶୀତି ।"
(ଋକ୍‌ବେଦ ୧ । ୧୬୪ । ୨୦, ସର୍ବାନନ୍ଦ, ମୁଣ୍ଡକ ଶ୍ୱେତାଶ୍ୱେତର ଉପନିଷଦରେ ମଧ୍ୟ ଏହି ଶ୍ଲୋକଟି ସଂଯୋଜିତ)

(୩୮)—"ଏକଇ ପକ୍ଷୀ ତା'ର ଫଳ/ଭୁଞ୍ଜଇ ନିତ୍ୟ ମହାବଳ
ସେ ଫଳ ଖାଇ ନିତ୍ୟ ଭୋଳେ/ନିରତେ ପଶେ ନାନା ଘରେ ।
ଯେ ଆର ପକ୍ଷୀ ଥାଇ ଭୋକେ/ସକଳ ସାକ୍ଷୀ ରୂପେ ଦେଖେ
ବୃକ୍ଷର ଫଳ ଯେ ଭୁଞ୍ଜଇ/କଳ୍ପିତ ଜାଲେ ସେ ପଡ଼ଇ ।"
(ଜଗନ୍ନାଥ ଦାସ—ଭାଗବତ ୧୧/୧୬)

(୩୯ କ) – "ନବଦ୍ୱାରେ ପୁରେଦେହୀ ହଂସୋଲୀଳାୟତେ ବହିଃ × × ।"

(୩୯ ଖ)—"ହଂସଃ ଶୁଚ ଦ୍ୱସୁ-ରନ୍ତରୀକ୍ଷ
× ×
ନୃଷଦ୍ୱର ସଦୃତ ସଦ୍‌ବ୍ୟୋମ ସଦ୍‌ବଜା × × "
କଠୋପନିଷଦ ୨ । ୨ । ୨

(୪୦)—ସେ ହଂସ ବଗୁରଇ ଶରୀର/ଉଡ଼ି ଯିବାର ପାଞ୍ଚେ କଡେ୍ୟ
ତାହାକୁ କରଉ ଆକଣ୍ଠ/ତେଣାକୁ ଧର ପକ୍ଷ କାଣ୍ଟ
(ବ୍ରହ୍ମ ଶାଙ୍କୋଳ—ପୃ ୧୬)

(୪୧)—"କାଆ ତରୁବର ପଞ୍ଚବିଡାଳ/ଚଞ୍ଚଳ ଚିଏ ପଇଠୋ କାଳ ।"
ଲୁଇପାଦାନମ-ଆଶ୍ଚର୍ଯ୍ୟ ଚର୍ଯ୍ୟାଚଯ୍ୟ(ଡକ୍ଟର କରୁଣାକର କରଙ୍କ ପୁସ୍ତକର
ପୃ-୩୩-୫ରୁ ଉଦ୍ଧୃତ)

(୪୨)—ସମୁଦ୍ର ସ୍ନାନ—କାଳ ପୁରୁଷ
(୪୩)—The Wasteland—T. S. Eliot.
(୪୪)—କାଳ ପୁରୁଷ—ସମୁଦ୍ର ସ୍ନାନ ପୃ-୬୫
(୪୫)—ଶ୍ରୀମଦ୍ ଭାଗବତ—୧-୧୭
(୪୬)—ସ୍ୱଗତ – କବିତା ୧୯୬୨ ସ: ସ୍ୱ: ଗ: ପୃ-୧୮୪
(୪୭)—ସ୍ୱପ୍ନ ମଣ୍ଡାର ଦେଶ—ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ ପୃ-୬୦୮
(୪୮)—ତନ୍ଦ୍ରୈବ

(୪୯)—"କଳି ପିଉଛନ୍ତି କେତେ ପଥର କଣ୍ଟାଳୀ/ପଥର କଣ୍ଟୁଛି ଯିନା ଜୀବନର
ବୁଢ଼ିଆଣୀ ଜାଲ କଣ୍ଟୁନାହିଁ/କାଠଧରେ ସେମାନଙ୍କର/
ଜୀଇବାର ମୋଟା ମୋଟା ଅଟର୍ଣ୍ଣା ଜୁଆଳ ।"
ସହରର ଇତକଥା—ଶାନ୍ତି ଓ ଦ୍ୟୁତି ପୃ-୮୪

(୫୦)—"ଅଥଚ ତା' ପରେ ସିଏ ନାକରେ କାନରେ ଭରି
ମାଛ ପରି ଲାଞ୍ଜ ପିଟି ମଣିଷର ସମୁଦ୍ର ପହଁରି
× × × ଅଫିସକୁ ପଶିଯାଏ
ଖସିପଡ଼େ ପରିଚିତ ଖାଲେଇ ଭିତରେ
× × ×
ଦାରମଲା ମାଛଟିର ଆଖିଦୋଟି କଲବଲ ଗୁହେଁ ନୀରବରେ ।
(ଶବ୍ଦର ଆକାଶ—ଅନ୍ୟପୃଥିବୀ ପୃ-୪୦)

(୫୧)—ଅନ୍ୟେ ଶଯ୍ୟନ—ଅନେକ କୋଠରୀ, ପୃ-୩୩

(୫୨)—ତନ୍ନୈବ

(୫୩)—ଅନୁଷ୍ଟୁପ—ଦୀପକ ମିଶ୍ର,-ପୃ ୧-୧୯୬୮

(୫୪କ)—"ଏ ବଗିଚ୍ଚ ପରିଷ୍କାର, ମାଟି ତା'ର ବାରମ୍ବାର ଖୋଳି ଖରାରେ ତା' ଅନ୍ତପୋଡ଼,/ପୋକ ଜୋକ ଏବଂ ଚେରମୂଳ ସବୁ ନଷ୍ଟ କରି ତାକୁ ମୁଁ ବସିବା ଲାଏକ କରୁଛି/ଏଠି ବସେଁ × × × ଏ ବଗିଚ୍ଚ ବଡ଼ଚମତ୍କାର।"
(ଝଙ୍କାର-ଅକ୍ଟୋବର-୧୯୬୮)

(୫୪ଖ)—"ସେଥିପାଇଁ ବୋଧହୁଏ ତମପରି ମୁଁ ମୋର ଶୋଇ ରହେ
ଚୁପ୍ ହୋଇ, ମୋର ଦଦରା ଭଙ୍ଗା ଖଟିଆରେ
ତକିଆରେ ମୁଣ୍ଡ ପୋତି ପୃଥିବୀ ଉଠିଗଲେ।"
(ବୈଶାଖୀ ୧୯୬୮—ଶବର ଆକାଶ-ପୃ ୩୦)

(୫୫)—ବଦରଗ୍ଧ ଚନ୍ଦ୍ରାମଣି—୧/୩୪

(୫୬)—ଭଷାଭିଳାଷ—୧୦/୧୩

(୫୭)—ଶ୍ରୀ ଚନ୍ଦ୍ରାମଣି ମହାନ୍ତ—ପାଣ୍ଡୁଲିପି—ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ-ପୃ ୧୦୦

(୫୮)—ସ୍ୱାକ୍ଷର—ତନ୍ନୈବ—ପୃ ୧୫୨

(୫୯)—ଧର୍ଷଣ—ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ-ପୃ ୨୦୫

(୬୦)—ଏକ ବିଖ୍ୟାତ ନେତାଙ୍କ ଶ୍ରାଦ୍ଧ ସଭାରେ ପଠିତ କବିତା—ସ: ରା: ଗ୍ର: ପୃ ୨୫୨

(୬୧)—ସନେଟ୍ ୧—ସମୁଦ୍ରସ୍ନାନ-ପୃ ୪୧

(୬୨)—ସନେଟ୍ ୯—ସମୁଦ୍ରସ୍ନାନ-ପୃ ୪୯

(୬୩)—ଜହ୍ନତ ଗୋଧୂଳି-ତନ୍ନୈବ-ପୃ ୨୬

(୬୪)—ଚିଠି—ସମୁଦ୍ରସ୍ନାନ-ପୃ ୨୩

(୬୫)—ପ୍ରତ୍ୟାବର୍ତ୍ତନ—ଅନେକ କୋଠରୀ-ପୃ ୨୩

(୬୬)—ବାଘ ଶିକାର—ଅନେକ କୋଠରୀ-ପୃ ୭

(୬୭)—ଅନେକ କୋଠରୀ-ପୃ ୧

(୬୮)—ଦଶକୋଟି ଚରଣ—ଦୀପ୍ତି ଓ ଦ୍ୟୁତି-ପୃ ୫୦

(୬୯)—ଦୁଇଟି ସ୍କେଚ—ଶବର ଆକାଶ-ପୃ ୬୬

(୭୦)—କୁହୁଡ଼ି—ଶରତର ଆକାଶ-ପୃ ୬୪-୬୫

(୭୧)—"ଛନ୍ଦର ଦୋଳରେ ଖେଳ, ଢ଼ଳ ଢଳ ଦୋହଲ ଦୋହଲ
କୁହୁଡ଼ିରେ ପହଁର ପହଁର/
ପ୍ରଣୟ-କଶାରେ ଯେବେ ଚାବୁଚଲେ ଫୁଟଇ ଗୋଲପ

× × ×

ତମେ ଆସ ସେ ଲଗନେ ଚୁପ୍ ଗୁପ୍ ଅଭ ସନ୍ତର୍ପଣେ

× × ×

ଅର୍ବାଚୀନ ଗଦ୍ୟସାଥେ ମିଶାଇଣ ହାତ/
କଶନଥ ସାଲସ୍ ସହସା ।"
—ତୁମେ ମୋର ଯୁଗର କବିତା—ଜାନକୀବଲ୍ଲଭ ମହାନ୍ତି

(୭୨)—ଶ୍ରୀ ଚନ୍ଦ୍ରାମଣି ମହାନ୍ତି—ପାଣ୍ଡୁଲିପି—ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ ପୃ-୧୦୦

(୭୩)—କୀଚକ—ନବିତା ୧୯୬୨-ସା. ସ୍ୱ: ଗ ପୃ-୨୧୬

(୭୪)—କାଳପୁରୁଷ—ସମୁଦ୍ର ସ୍ନାନ ପୃ-୫୫

(୭୫)—ଦୃଷ୍ଟିର ଦିଗନ୍ତ—ସମୁଦ୍ରସ୍ନାନ ପୃ-୪୦

(୭୬)—ଅନନ୍ତ ଶୟନ—ଅନେକ କୋଠରୀ-ପୃ ୩୨

(୭୭)—ତନ୍ନୈବ

(୭୮)—ଉତ୍ତରଣ—ଧୀପ୍ତି ଓ ଦ୍ୟୁତି-ପୃ ୩୧

(୭୯)—ଆତ୍ମରକ୍ଷା—ତନ୍ନୈବ ପୃ-୬୫

(୮୦)—"The only way of expressing emotion in the form of art is by finding an 'objective correlative' in other words, a set of objects, a situation, a chain of events which shall be the formula of that particular emotion, such that when the external facts, which must terminate is sensory experience, are given, the emotion is immediately

evoked."—An essay on 'Hamlet and his Problems'—T S. Eliot—quoted from A Dictionary of Literary Terms—Martin Gray. P. 143

(୮୧)—କାଳପୁରୁଷ—ସମୁଦ୍ରସ୍ନାନ ପୃ-୫୨

(୮୨)—ତତ୍ରୈବ ପୃ-୬୧

(୮୩)—ତତ୍ରୈବ ପୃ-୫୪

(୮୪)—ଖୋଜିବୁଲେ ପଥ ମୋର ବପ୍ଳଗାର/ଘର୍ଷିବାକୁ, ପୋଡ଼ିବାକୁ, ଜାଳିବାକୁ
ଯେତେ ଯାହା ସ୍ଥାବର ଅଚଳ/ସ୍ଥିର ଅଚଞ୍ଚଳ
ଜଡ଼ ଅଥବା ଜୀବନ/ଆଣିବାକୁ ଟିକେ ସନ୍ଦୀପନ
—ମୁଁ ଓ ଅନ୍ଧାର-ଦୀପ୍ତି ଓ ଦ୍ୟୁତି-ପୃ ୮୯

(୮୫)—ମୁଁ ଓ ଅନ୍ଧାର—ଦୀପ୍ତି ଓ ଦ୍ୟୁତି-ପୃ ୮୮-୮୯

(୮୬)—ଲଣ୍ଡନ - କେତେ ଦିନର-ପୃ ୪୩

# ପୃଷ୍ଠଭୂମି

ସ୍ରଷ୍ଟାର ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ତଥା ଜୀବନ-ସତ୍ୟର ଉପଲବ୍ଧିରୁ ସାରସ୍ୱତ ଚେତନା ଉଦ୍‌ଭୂତ । ଏଣୁ କଳା ଓ କଳାକାର—ଉଭୟ ସମକାଳୀନ ଯୁଗ-ଚେତନା ଓ ଜୀବନଧାରାର ପ୍ରାଣ ସ୍ପନ୍ଦନ ଦ୍ୱାରା ପ୍ରଭାବିତ ହେବା ଅନିବାର୍ଯ୍ୟ । ଜୀବନ-ସତ୍ୟର ଉପଲବ୍ଧିଗତ ପାର୍ଥକ୍ୟବୋଧକୁ କେନ୍ଦ୍ର କରି କଳା ଓ ସାହିତ୍ୟର ଅନ୍ତଃସ୍ୱର ବିବର୍ତ୍ତିତ । ଏହି ଅନୁକ୍ରମରେ କ୍ଳାସିକ୍‌ରୁ ନବ୍ୟ-କ୍ଳାସିକ, ନବ୍ୟ-କ୍ଳାସିକରୁ ରୋମାଣ୍ଟିକ, ରୋମାଣ୍ଟିକରୁ ନବ୍ୟ-ରୋମାଣ୍ଟିକ, ନବ୍ୟ-ରୋମାଣ୍ଟିକରୁ ବାସ୍ତବବାଦୀ ଓ ବାସ୍ତବବାଦରୁ ନବ୍ୟ-ବାସ୍ତବବାଦୀ ଚେତନାର ରୂପ-ରୂପାନ୍ତର ଉଲ୍ଲେଖନୀୟ । ସମକାଳୀନ ଜୀବନ-ଧାରାର ଘଟଣା ଓ ଅନୁଭୂତି ପ୍ରତି ଏକାନ୍ତ ବିଶ୍ୱସ୍ତତା ବାସ୍ତବବାଦୀ ଶିଳ୍ପ-କଳାର ବୈଶିଷ୍ଟ୍ୟ । ଏହି କାଳ ସଚେତନତା ବାସ୍ତବବାଦୀ ଓଡ଼ିଆ କାବ୍ୟଧାରାକୁ କିଭଳି ପ୍ରଭାବିତ କରିଛି, ଶଂସିତ ନିବନ୍ଧରେ ତାହା ପ୍ରତିପାଦିତ ।

ଊନବିଂଶ ଶତକର ଜର୍ମାନ ଦାର୍ଶନିକ ହେଗେଲ ଏକଦା ମତଦେଇଥିଲେ—କବିତାର ଭବିଷ୍ୟତ ଅନ୍ଧକାରମୟ । ଚିନ୍ତାର ବାହକ ରୂପେ ଭବିଷ୍ୟତରେ ଗଦ୍ୟ ହିଁ ଅଗ୍ରାଧିକାର ଲାଭ କରିବ । ଜଟିଳ ଚିନ୍ତା ପ୍ରସୂତ ଭାବରାଜିର ବିଶାଳତାକୁ କବିତା ମାଧ୍ୟମରେ ପ୍ରକାଶ କରିବା ଅସମ୍ଭବ ହେବ । ମାତ୍ର କବିତା ମାଧ୍ୟମରେ ଏ ଯୁଗର ଜଟିଳ ଚିନ୍ତାଧାରା କିଭଳି ଆତ୍ମପ୍ରକାଶ କରିପାରେ, ତାହା ଆଲୋଚ୍ୟ ଯୁଗର ବାସ୍ତବବାଦୀ କବିତାରେ ପ୍ରତିଫଳିତ । ବରଂ ଯୁଗ-ସମସ୍ୟାରୁ ଆତ୍ମ-ବିରତି ଓ ଆତ୍ମଗୋପନ କରିବା ଏକ ପଳାୟନପନ୍ଥୀ ଚିନ୍ତାଧାରା ବୋଲି ବାସ୍ତବବାଦୀ କବିମାନଙ୍କର ଅଭିମତ—

"ମରୁଭୂମିର ବାଲୁକା ସ୍ତୂପରେ ମୁଣ୍ଡ ଗୁଞ୍ଜି ବାଲି ହରିଣ କମ୍ବା ଅଷ୍ଟ୍ରୀଚ ପକ୍ଷୀ ଯେପରି ଝଡ଼ ସେମାନଙ୍କୁ ସ୍ପର୍ଶ କରିପାରିବ ନାହିଁ ବୋଲି କଳ୍ପନା କଲେ ସୁଦ୍ଧା ଝଡ଼ କବଳରୁ ସେ ମୁକ୍ତି ପାଇପାରେ ନାହିଁ, ବାସ୍ତବତାଠାରୁ ପଳାୟନର ସ୍ୱପ୍ନ ଦେଖିବା ସେହିଭଳି ଏକ ବିଫଳ ପ୍ରଚେଷ୍ଟା (୧) ।"

ସୁତରାଂ ବାସ୍ତବସଚେତନତା କଥା-ସାହିତ୍ୟ ଭଳି କାବ୍ୟ-ସାହିତ୍ୟର ଏକ ବିଶିଷ୍ଟ ପକ୍ଷ—୧୯୩୮ରୁ ୧୯୭୦ ମଧ୍ୟବର୍ତ୍ତୀ ଓଡ଼ିଆ କାବ୍ୟଧାରାରେ ବାସ୍ତବବାଦର

(୧)—ପାଣ୍ଡୁଲିପି—ନନ୍ଦୀମୁଖ—୪—ସଚ୍ଚି ରାଉତରାୟ

ପ୍ରବେଶ ଓ ପରିପ୍ରକାଶ ସୂତ୍ରରେ ଏହା ଆଲୋଚିତ । ଏହି ପରିପ୍ରେକ୍ଷୀରେ ପ୍ରଗତିବାଦୀ ଓ ପ୍ରୟୋଗବାଦୀ କାବ୍ୟ ଚେତନା ମଧ୍ୟରେ ବାସ୍ତବବାଦର ଅଭିବ୍ୟକ୍ତି ବୈଚିତ୍ର୍ୟ ପରିଷ୍ଫୁଟ ।

ପ୍ରଗତିବାଦୀ କାବ୍ୟଧାରା ମୁଖ୍ୟତଃ ସାମାଜିକ ଚେତନା ପ୍ରଣୋଦିତ । ପ୍ରୟୋଗବାଦୀ କାବ୍ୟଧାରା ବ୍ୟକ୍ତିବାଦୀ ଚିନ୍ତା ପ୍ରଭାବିତ । ଗୋଟିକରେ ଜୀବନର ସ୍ଥିତାବସ୍ଥା ବିରୋଧରେ ଅଭିଯାନ ଓ ଆଶାବାଦର ମନ୍ତ୍ରଜନିନାଦ ଝଙ୍କୃତ । ଅପରଟିରେ ସାଂପ୍ରତିକ କାଳର ଜୀବନଧାରା ପ୍ରତି ଦୃଷ୍ଟିଭଙ୍ଗୀ ଶ୍ଳେଷାତ୍ମକ । ଗୋଟିକର ଲକ୍ଷ୍ୟ, ଉତ୍କଟ ଶ୍ରେଣୀ ବୈଷମ୍ୟର ବିଲୋପ । ଅନ୍ୟଟିରେ ବୁଦ୍ଧିଜୀବୀ ସମାଜର ଆଟୋପ, ଆଡମ୍ବର ଅନ୍ତରାଳରେ ଅନ୍ତର୍ନିହିତ ସାମାଜିକ ମୂଲ୍ୟବୋଧର ଅବକ୍ଷୟ ଓ ହତାଶା-ନୈରାଶ୍ୟର ସ୍ୱର ଉନ୍ମୋଚିତ । ବସ୍ତୁତଃ ପ୍ରାଦେଶିକ, ଜାତୀୟ ତଥା ଆନ୍ତର୍ଜାତୀୟ ସମସ୍ୟା ସମୂହର କର୍କଶ, କଙ୍କରିଳ, ବନ୍ଧୁର ପଥରେ ବାସ୍ତବବାଦୀ କାବ୍ୟଧାରାର ପଦଯାତ୍ରା ଏକାନ୍ତ ବୈଚିତ୍ର୍ୟମଣ୍ଡିତ ।

ପ୍ରଗତିବାଦୀ କାବ୍ୟଧାରାରେ ବାସ୍ତବବାଦୀ ଚେତନାର ସ୍ୱରୂପ ପ୍ରଦର୍ଶନବେଳେ ନିବନ୍ଧଟିରେ କାଳନ୍ଦୀ ଚରଣ ପାଣିଗ୍ରାହୀ, ସଚ୍ଚି ରାଉତରାୟ, ବୈକୁଣ୍ଠନାଥ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ଗୋଦାବରୀଶ ମହାପାତ୍ର, କୁଞ୍ଜ ବିହାରୀ ଦାଶ, ରଘୁନାଥ ଦାସ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ମନମୋହନ ମିଶ୍ର, ସୁନନ୍ଦ କର, ଲକ୍ଷ୍ମୀଧର ନାୟକ, ରବି ସିଂ ପ୍ରମୁଖଙ୍କ ସୃଷ୍ଟି ବିଶେଷଭାବେ ଆଲୋଚିତ । ଏହି କବିମାନଙ୍କର ରଚନା ଅବକ୍ଷୟଗ୍ରସ୍ତ ସମାଜ ଓ ରାଜନୀତିର ପୁନର୍ବିନ୍ୟାସ ପାଇଁ ଉଦ୍ଦିଷ୍ଟ । ସୁତରାଂ ଏହି କାବ୍ୟ ଚେତନା ମୁଖ୍ୟତଃ ସଂସ୍କାର-ଧର୍ମୀ । ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମଗ୍ର ମାନବ ସଭ୍ୟତା ପ୍ରତି 'ବସୁଧୈବ, କୁଟୁମ୍ବକମ୍'ର ବାର୍ତ୍ତାରେ ଏହା ସମୃଦ୍ଧ । ସାମାଜିକ ସମତା ପ୍ରତିଷ୍ଠା ପାଇଁ ଭାରତବର୍ଷରେ ଉଭୟ ଗାନ୍ଧୀବାଦୀ ତଥା ମାର୍କସବାଦୀ ଚିନ୍ତାଧାରା ପ୍ରବାହିତ । ଏହି ଚିନ୍ତାଧାରାର ପ୍ରତିଫଳନ ପ୍ରଗତିବାଦୀ ଓଡ଼ିଆ କାବ୍ୟଧାରାରେ ସମାନ୍ତରାଳ ଭାବେ ପରିଦୃଷ୍ଟ । ଏହି କବିମାନଙ୍କର ସ୍ୱର ପୃଥକ୍ ହେଲେ ମଧ୍ୟ, ସମାଜବାଦର ପ୍ରତିଷ୍ଠା ପାଇଁ ସେମାନଙ୍କର ସମ୍ବେଦନା ଅନ୍ତର୍ସ୍ପର୍ଶୀ । ସାମାଜିକ ପ୍ରଗତି ପଥରେ ପଥରୁଦ୍ଧ କରୁଥିବା ବାଧା-ବିଘ୍ନ ତଥା ପ୍ରତିବନ୍ଧକ ବିରୋଧରେ ଅଗ୍ରସର ହେବାପାଇଁ ବିପ୍ଳବାତ୍ମକ କବିତା ରଚନା କରିବାରେ ଏହି କବିମାନଙ୍କର ଭୂମିକା ସ୍ୱାଗତଯୋଗ୍ୟ । ଶୋଷିତ ଶ୍ରେଣୀ ମଧ୍ୟରେ ଦୁର୍ବାର ଆଶା, ଆକାଙ୍କ୍ଷା ସୃଷ୍ଟି କରିବା ଦିଗରେ ସେମାନଙ୍କର ଭୂମିକା ଉଲ୍ଲେଖନୀୟ । ସାମାଜିକ ବୈଷମ୍ୟ ବିରୋଧରେ ସ୍ୱର ଉଦାତ୍ତ ଓ ଗାମ୍ଭୀର୍ଯ୍ୟ-ପୂର୍ଣ୍ଣ । ମାତ୍ର କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କ କବିତାର ଶିରୋନାମା (କାଏ ଶଳା ସଇତାନ) ଅପେକ୍ଷାକୃତ ଲଘୁ ରସାତ୍ମକ ହୋଇ ପଡ଼ିଥିବା ଭଳି ମନେହୁଏ ।

ଧର୍ମୀୟ ବ୍ୟାମୋହ ବିରୋଧରେ ମାନସିଂହ, ଜାନକୀ ବଲ୍ଲଭ, ଗୋଦାବରୀଶ, କାଳିନ୍ଦୀ ଚରଣ, ବିନୋଦ ନାୟକ, ଜ୍ଞାନୀନ୍ଦ୍ର ବର୍ମା, ସଚ୍ଚିରାଉତରାୟ ପ୍ରମୁଖ ସ୍ୱର ଉତ୍ତୋଳନ କରିଥିଲେ ମଧ୍ୟ ମାନସିଂହ, ଜାନକୀ ବଲ୍ଲଭ ଓ ଗୋଦାବରୀଶଙ୍କ ସ୍ୱର ଅପେକ୍ଷାକୃତ ନମ୍ର ଓ ଧୀର । ପକ୍ଷାନ୍ତରେ କାଳିନ୍ଦୀ ଚରଣ ଓ ରାଉତରାୟଙ୍କ ସ୍ୱର ଉଗ୍ର ଓ ବୈପ୍ଳବିକ । ଏହି ଉଭୟ ଚିନ୍ତାଧାରା ମଧ୍ୟରୁ ଗୋଟିଏ ଗାନ୍ଧୀବାଦ ଓ ଅନ୍ୟଟି ମାର୍କସବାଦ ଦ୍ୱାରା ପ୍ରଭାବିତ ।

ଅବହେଳିତବର୍ଗର ଦୁଃଖ, ଦୈନ୍ୟ ବିରୋଧରେ କୃଷ୍ଣଚନ୍ଦ୍ର ତ୍ରିପାଠୀ,-ମାନସିଂହ, କୃଷ୍ଣବିହାରୀ ପ୍ରମୁଖଙ୍କ ସ୍ୱର ଉଲ୍ଲେଖନୀୟ । ସେମାନଙ୍କ କବିତାଗୁଡ଼ିକରେ ଅବହେଳିତବର୍ଗର କରୁଣ ଚିତ୍ର ସଫଳଭାବେ ପ୍ରତିଫଳିତ ହୋଇଥିଲେ ମଧ୍ୟ, ତହିଁରେ ସେମାନଙ୍କର ଦୈନ୍ୟ ଅପନୋଦନ ପାଇଁ ଦ୍ୟୋତନା ଥିବା ଭଳି ମନେ ହୁଏନାହିଁ ।

ମିଥିକ ଚରିତ୍ରର ପ୍ରୟୋଗ ଦ୍ୱାରା ପ୍ରଗତିବାଦୀ କାବ୍ୟଧାରାର ବୈପ୍ଳବିକ ଆହ୍ୱାନ ଶାଣିତ ହୋଇ ପାରିଛି । ପୁରାଣର ବିଶିଷ୍ଟ ଚରିତ୍ରଗୁଡ଼ିକ ଏଠାରେ ସଂଗ୍ରାମୀ ସମାଜର ଅଗ୍ରଦୂତ ରୂପେ ଚିତ୍ରିତ । କଂସ (ରକ୍ତବୀଜର ଅଭିଯାନ—ଅଭିଜ୍ଞାନ-ସଚ୍ଚି ରାଉତରାୟ), ଦୁର୍ଯ୍ୟୋଧନ ଓ ଦୁଃଶାସନ (ଅଭିମନ୍ୟୁ- ରବି ସିଂ)ଶୋଷକ ଗୋଷ୍ଠୀର ସର୍ବକାଳୀନ ପ୍ରତିଭୂ । ଭଗୀରଥ, ଫାଲଗୁନ (ବାଜିରାଉତ-ସଚ୍ଚି ରାଉତରାୟ), ଅଭିମନ୍ୟୁ (ଅଭିମନ୍ୟୁ-ରବି ସିଂ), ହଳଧର (ରକ୍ତବୀଜର ଅଭିଯାନ—ଅଭିଜ୍ଞାନ-ସଚ୍ଚି ରାଉତରାୟ) ପ୍ରମୁଖ ସଂଗ୍ରାମୀ ଚେତନାର ଆବାହକ । ଓଡ଼ିଆ କାବ୍ୟ-କଳାରେ ଏ ଜାତୀୟ ପ୍ରୟୋଗ ନୂତନ ହେଲେ ମଧ୍ୟ, ଶ୍ଳାଘ୍ୟ । ଶୋଷିତ ଓ ଶୋଷକର ଚିରନ୍ତନ ସଂଘର୍ଷ ମଧ୍ୟରେ ଶୋଷିତ ଶ୍ରେଣୀର ଉତ୍ଥାନ ପାଇଁ ଆହ୍ୱାନ ଏଠାରେ ବୈପ୍ଳବାତ୍ମକ ।

ଗଡ଼ଜାତ ଆନ୍ଦୋଳନ ଉପରେ ଆଧାରିତ ସଚ୍ଚିରାଉତରାୟଙ୍କ 'ମାର୍ ତୁ ଯେତେ ଗୁଳି', 'ବାରୁଦ ଘରେ', 'ଦେଖିନେବୁଁ ତାକୁ', 'ଚାହିଁଥାରେ ରାଜା ଠକ ରାଜାକୁ' କବିତା ଗୁଡ଼ିକର ଅନ୍ତଃସ୍ୱର ଏକମୁଖୀ ହେଲେ ମଧ୍ୟ ଉତ୍ସାହ, ଉନ୍ମାଦନା ତଥା ବୈପ୍ଳବିକ ଆହ୍ୱାନରେ ଉଚ୍ଛିମନ୍ତ । ଗଡ଼ଜାତ ଶାସନର ବିଲୟ ପରେ ଶାସକ-ମାନଙ୍କର ରାଜକୀୟ ଆଡମ୍ବର ଓ ଆଭିଜାତ୍ୟର ଅବକ୍ଷୟ ପ୍ରତି ଗୋଦାବରୀଶ ମହାପାତ୍ରଙ୍କ ଲେଖନୀ (ମୁକୁଟର ପରାଜୟ)ର ଭୂମିକା ଶ୍ଳେଷଶାଣିତ ।

ଓଡ଼ିଶାର ଅର୍ଥନୀତି ଉପରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରତିକୂଳ ପ୍ରଭାବ ଚିତ୍ରଣ ଦୃଷ୍ଟିରୁ ଗୋଦାବରୀଶ ମହାପାତ୍ରଙ୍କ କାବ୍ୟ ଚେତନାର ଭୂମିକା ସ୍ମରଣୀୟ, କିନ୍ତୁ ଏହି ସଂକ୍ରାନ୍ତୀୟ କବିତାଗୁଡ଼ିକ ('ନେହି କାଗଜ', 'ପୂଜା', 'ସାଇକେଲ') ର କଳାଗତ

ସାର୍ଥକତା କ୍ଷୀଣ । ବକ୍ତବ୍ୟ ସମାନୁପାତିକ ଭାବେ ଅଛି । ଦୃଷ୍ଟାନ୍ତ ସ୍ୱରୂପ 'ହେ କାଗଜ' କବିତାର ପାଦଟୀକାରୁ ହିଁ ଏହା ଦ୍ୱିତୀୟ ବିଶ୍ୱଯୁଦ୍ଧର କାଗଜ ସଙ୍କଟ ଉପରେ ଆଧାରିତ ବୋଲି ସ୍ପଷ୍ଟ ହୁଏ । ଅନ୍ୟଥା କବିତାର ପରିସର ମଧ୍ୟରେ ଏହା ଅସ୍ପଷ୍ଟ । ସଚ୍ଚି ରାଉତରାୟଙ୍କ 'ବୋମାରୁ' ଓ 'ସେଲଟାର' (ପାଣ୍ଡୁଲିପି) କବିତା ଦୁଇଟି ମଧ୍ୟ ଦ୍ୱିତୀୟ ବିଶ୍ୱଯୁଦ୍ଧ ଉପରେ ଆଧାରିତ । ଦୁଇଟିଯାକ କବିତାରେ ରୋମାଣ୍ଟିକ ଚେତନାର ସଂକ୍ରମଣ ଘଟିଥିବାରୁ, ଯୁଦ୍ଧ ଜନିତ ବିଭୀଷିକାର ବାସ୍ତବ-ସ୍ୱରୂପ ମନ୍ଦୀଭୂତ ।

ଗାନ୍ଧୀଜୀଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ସମର୍ପିତ ହୋଇଥିବା କବିତାଗୁଡ଼ିକ ମଧ୍ୟରୁ ମାନସିଂହଙ୍କ 'ବାପୁ ତର୍ପଣ', ଗୋଦାବରୀଶ ମହାପାତ୍ରଙ୍କ 'ସନ୍ନ୍ୟାସୀ ରାଜା' ଓ 'ସାବରମତୀର ମହାମାନବର ଚରଣ ତଳେ' କବିତାଗୁଡ଼ିକରେ ଗାନ୍ଧୀଜୀଙ୍କ ଚିନ୍ତା ଓ ଚେତନାର ସାବଲୀଳ ଚିତ୍ର ପ୍ରଦତ୍ତ । ରାଉତରାୟଙ୍କର ଏହି ଚେତନା-ସଂପର୍କିତ କବିତା (ଶିବାଗ୍ନି-ଅଭିଜ୍ଞାନ)ର କାବ୍ୟିକ ପ୍ରତୀକ ଓ ଚିତ୍ରକଳ୍ପଗୁଡ଼ିକ ଅପେକ୍ଷାକୃତ ଜଟିଳ । 'ଅଗଷ୍ଟ ବିପ୍ଳବ' ଉପରେ ଆଧାରିତ ନିତ୍ୟାନନ୍ଦ ମହାପାତ୍ରଙ୍କ 'ଫାଶିପରେ', 'ମାଷ୍ଟର ସାନାସ୍ୱା', 'ବନ୍ଦୀ ବନ୍ଦନା' ଆଦି କବିତା ରାଷ୍ଟ୍ରୀୟ ସ୍ୱାଧୀନତା ପାଇଁ ଉଦାତ୍ତ ଆହ୍ୱାନରେ ଅଭିଷିକ୍ତ, କିନ୍ତୁ ସ୍ୱାଧୀନତା ପରବର୍ତ୍ତୀ କାଳରେ ଗାନ୍ଧୀବାଦୀ ମୂଲ୍ୟବୋଧର ଅବକ୍ଷୟ ସଂପର୍କରେ ରଚିତ 'କାଳରକ୍ତ'ର କବିତାଗୁଡ଼ିକ କାବ୍ୟିକ ସାବଲୀଳତା ପରିବର୍ତ୍ତେ ପ୍ରବନ୍ଧସୁଲଭ ଗାମ୍ଭୀର୍ଯ୍ୟରେ ଭାରାକ୍ରାନ୍ତ ।

ଇଂରେଜ ଶାସନ ବିରୋଧରେ ଆଜାଦ ହିନ୍ଦ ଫୌଜର ଐତିହାସିକ ଦିଲ୍ଲୀ ଅଭିଯାନ ସଚ୍ଚି ରାଉତରାୟ (ଜୟହିନ୍ଦ-ପାଣ୍ଡୁଲିପି), ଗୋଦାବରୀଶ ମହାପାତ୍ର (ଲାଲକିଲ୍ଲା-ପାହାଚ ତଳର ଘାସ) ଓ ଗଡ଼ନାୟକ (ସେନାନୀ ସୁଭାଷ-ମୌସୁମୀ)ଙ୍କ ଲେଖନୀରେ ରୂପାୟିତ, କିନ୍ତୁ ରାଉତରାୟଙ୍କ ଅପେକ୍ଷା ଗୋଦାବରୀଶ ମହାପାତ୍ର ଓ ଗଡ଼ନାୟକଙ୍କ କବିତା ଅଭିଯାନର ଦୃପ୍ତ ଆହ୍ୱାନରେ ଦୀପ୍ତିମନ୍ତ ।

ସାଂପ୍ରଦାୟିକ ବିଦ୍ୱେଷ ଉପରେ ଆଧାରିତ ମାନସିଂହଙ୍କ 'ମାଟିଆବୁରୁଜ'ରେ ଓଡ଼ିଆମାନଙ୍କର ଐତିହାସିକ କୀର୍ତ୍ତି କବିତାରେ ସାଂପ୍ରଦାୟିକ ବିଦ୍ୱେଷର କୁତ୍ସିତ ତାଣ୍ଡବ ଲୀଳାର ଆଲେଖ୍ୟ ଅଙ୍କିତ । ଗଡ଼ନାୟକଙ୍କ 'ଗୁର୍ଖାସିପାହୀ'ରେ ମୁସଲମାନ-ମାନଙ୍କ ଦ୍ୱାରା ନିର୍ଯ୍ୟାତନାରେ ବିକ୍ଷୁବ୍ଧ ହିନ୍ଦୁମାନଙ୍କର ମୁସଲମାନ ସମ୍ପ୍ରଦାୟ ପ୍ରତି ପ୍ରତିଶୋଧ ପରାୟଣତାର ଚିତ୍ର ପ୍ରଦତ୍ତ । ଏଇ ପରିପ୍ରେକ୍ଷୀରେ ରାଉତରାୟଙ୍କ 'ମାଟିଆ ବୁରୁଜର କନ୍ୟା' କବିତାଟି ବିଶେଷ ଉଲ୍ଲେଖଯୋଗ୍ୟ । ଦଙ୍ଗାକ୍ରାନ୍ତ ମାଟିଆବୁରୁଜର ଆକାଶରେ ଉଇଁଥିବା ଏହି କନ୍ୟା ନବ ଅରୁଣିମାଦୀପ୍ତ ସୂର୍ଯ୍ୟୋଦୟର ଏକ ପୂର୍ବାଭାସ । ପ୍ରଗତିବାଦୀ

କାବ୍ୟ ଚେତନା ସୃଜନଧର୍ମିଷ୍ଟ ଉଦ୍ଦେଶ୍ୟପ୍ରଣୋଦିତ ହୋଇଥିବାରୁ କଳାତ୍ମକ ଚିନ୍ତାର ଭଙ୍ଗୀରେ ଗୌଣ । ଏହି ପରିପ୍ରେକ୍ଷୀରେ ଜଣେ ପ୍ରଗତିବାଦୀ କବିଙ୍କର ନିଜସ୍ୱ ସ୍ୱୀକାରୋକ୍ତି ଉଲ୍ଲେଖନୀୟ—

"କବିତା ଲେଖିବା ପାଇଁ ଅନେକ ସମୟରେ ଅନେକ କବିତା ଲେଖିଥାନ୍ତି, କିନ୍ତୁ ଏ ସବୁ କବିତା, କବିତା ଲେଖିବା ଉଦ୍ଦେଶ୍ୟରେ ଲେଖାହୋଇ ନଥିଲା । ଜୀବନର ଗତିପଥରେ ସାମାଜିକ ଓ ରାଜନୀତିକ ସମସ୍ୟାର ବହୁ ବୈଚିତ୍ର୍ୟପୂର୍ଣ୍ଣ ଘଟଣା ମୋ ଆଖିରେ ପଡ଼ିଛି । ସେଥିରୁ କେତେକ ହାସପରିହାସଭିତ୍ତି, କେତେକ ଅଶ୍ରୁଳ ଅଭିଯୋଗରେ ଭରପୂର, ଆଉ କେତେକ ଜାତିର ସ୍ଖଳନଜନିତ କ୍ଳେଶ-କାଳିମାରେ ପରିପୂର୍ଣ୍ଣ ଭାବରେ ମୋ ଆଖିରେ ପ୍ରତିଭାତ ହୋଇଛି । × × × ସମସାମୟିକ ଚିନ୍ତାଧାରାର ଏହା ଏକ ଚିତ୍ରମାତ୍ର (୨) ।"

ଏଣୁ ପ୍ରଗତିବାଦୀ କାବ୍ୟ-ଚେତନାରେ ପ୍ରଚ୍ଛଦଧର୍ମୀ ସ୍ୱର ଝଙ୍କୃତ ହୋଇଥିଲେ ମଧ୍ୟ ସମସାମୟିକ ସମାଜ ଚେତନାର ପ୍ରତିଫଳନ ଦୃଷ୍ଟିରୁ ଏଗୁଡ଼ିକର ଅବଦାନ ସ୍ୱାଗତଯୋଗ୍ୟ ।

୧୯୪୫ ମସିହାରେ 'ଶଙ୍ଖ' ପତ୍ରିକାରେ 'ପ୍ରଥମା ନାୟିକା' ପ୍ରକାଶିତ ହେବା ସଙ୍ଗେ ଓଡ଼ିଆ କବିତା ପରମ୍ପରାରେ ପ୍ରୟୋଗବାଦୀ କାବ୍ୟ ଚେତନାର ଭିତ୍ତିଭୂମି ସ୍ଥାପିତ ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଯୁଗ ଯୁଗ ଧରି ମାନବିକତା, ମୈତ୍ରୀବୋଧ, ସାମାଜିକ ସାମ୍ୟ ଆଦି ଚିନ୍ତାଧାରା ସହ ପରିଚିତ ପାଠକମାନସ ଏହି କାବ୍ୟଚେତନାରୁ ଏକ ନୂତନ ସ୍ୱାଦ ଆସ୍ୱାଦନ କରିବାର ସୁଯୋଗପାଇଲା । ନୂତନ ଚିତ୍ରକଳ୍ପ ପ୍ରୟୋଗ ସହ ନୂତନ ଚିନ୍ତାର ସମାବେଶ ଭଙ୍ଗୀରେ କିଭଳି ଅନ୍ତର୍ନିହିତ ହୋଇଥିଲା ତାହା ଷଷ୍ଠ ପରିଚ୍ଛେଦରେ ଆଲୋଚିତ ହୋଇଛି । 'ପ୍ରଥମା ନାୟିକା' କବିତାରେ ରାଜନୀତିଗ୍ରସ୍ତ ଚିନ୍ତା କ୍ଷେତ୍ରରେ ଦୁଇଟି ନୂତନ ପ୍ରୟୋଗ ଦର୍ଶାଇଛନ୍ତି । ପ୍ରଥମତଃ, ଯୌଥ ପରିବାର ବିଲୟର ପରିଣତି । ଦ୍ୱିତୀୟତଃ, ସ୍ୱାବଲମ୍ବନଶୀଳା ନାରୀର ପାରିବାରିକ ଦାୟିତ୍ୱ ବହନର ସାମର୍ଥ୍ୟ । 'ପ୍ରଥମା ନାୟିକା' କବିତାର ନୂତନ ପ୍ରୟୋଗ 'ଭାନୁମତୀର ଦେଶ'ରେ ଅଧିକ ବିକଶିତ । ପ୍ରଥମାର ସ୍ୱାବଲମ୍ବନଶୀଳତା ପରିବାରର ଆର୍ଥିକ ଅନଟନପ୍ରସୂତ, କିନ୍ତୁ 'କନକ'ର (ଭାନୁମତୀର ଦେଶ)ର ଆତ୍ମନିର୍ଭରଶୀଳତା ସ୍ୱକୀୟ ସ୍ୱାଭିମାନପ୍ରଭୂତ ।

---

୨—କଣ୍ଟା ଓ ଫୁଲ (କ କହିଲେ କବିତାଲେ)—ଗୋଦାବରୀଶ ମହାପାତ୍ର

ଚଳିତ ଶତାବ୍ଦୀର ଷଷ୍ଠ ଦଶନ୍ଧ ବେଳକୁ ନାରୀ ଚରିତ୍ର ମୂଲ୍ୟବୋଧଜନିତ ବିଚ୍ୟୁତି ପ୍ରତି ପ୍ରୟୋଗବାଦୀ କାବ୍ୟ ପରମ୍ପରାରେ ଶାଣିତ କଟାକ୍ଷ ପ୍ରଯୁକ୍ତ । ନାରୀର ପାରମ୍ପରିକ ଶାଶ୍ୱତ ମୂଲ୍ୟବୋଧର କେନ୍ଦ୍ରଚ୍ୟୁତି ଏହି କବିତା ଗୁଡ଼ିକରେ ପ୍ରଦର୍ଶିତ । ଏହି ପରିପ୍ରେକ୍ଷୀରେ ଗୁରୁ ପ୍ରସାଦଙ୍କ 'ଅଳକା ସାନ୍ୟାଲ' (ସମୁଦ୍ରସ୍ନାନ) ଓ ବେଣୁଧର ରାଉତଙ୍କ 'ପ୍ରତ୍ତାଜା : ପ୍ରଣୟ ଓ ପରିଣୟ' (ପିଙ୍ଗଳାର ସୂର୍ଯ୍ୟ) କବିତା ଦୁଇଟି ବିଶେଷ ଉଲ୍ଲେଖନୀୟ । ପ୍ରତୀକଧର୍ମୀ ଶବ୍ଦ ସଂଯୋଜନା ତଥା ଚିତ୍ରକଳ୍ପର ପ୍ରୟୋଗଦ୍ୱାରା କବିତା ଦୁଇଟି ଚିତ୍ତାକର୍ଷକ, ମାତ୍ର ଗୁରୁପ୍ରସାଦଙ୍କ କବିତାରେ ଅଳକାର ଅବମୂଲ୍ୟାୟନର ପୃଷ୍ଠପଟରେ ନିହିତ ପୁରୁଷ ପ୍ରଧାନ ସମାଜର ନଷ୍ଟାମୀ ଅନୁଦ୍‌ଘାଟିତ । ଅନ୍ୟ ପକ୍ଷରେ ବେଣୁଧର ରାଉତଙ୍କ କବିତାରେ ନାରୀ ଲାଳସାର ମୂର୍ତ୍ତିମନ୍ତ ପ୍ରତିମା ରୂପେ ଆବିର୍ଭୂତ ହେବାବେଳେ ପୁରୁଷ ତା'ର କାମନାର କ୍ରୀଡ଼ନକ ଭାବେ ଚିହ୍ନିତ । ଏଣୁ ବାସ୍ତବତାବୋଧ ଏଠାରେ କ୍ଷୁଣ୍ଣ ଓ ଅପରିପୂର୍ଣ୍ଣ ରହିଥିବା ଭଳି ମନେହୁଏ ।

ପ୍ରୟୋଗବାଦୀ କାବ୍ୟ ଚେତନାର ନାରୀ ଚରିତ୍ର ଅପେକ୍ଷା ପୁରୁଷ ଚରିତ୍ର-ଗୁଡ଼ିକ ଅଧିକ ନିଃସଙ୍ଗତାବୋଧର ସମ୍ମୁଖୀନ । ଜୀବନର କ୍ଲାନ୍ତି, ବିତୃଷ୍ଣା, ଅବସାଦ, ଅଭାବ ଓ ପାପବୋଧର ଏକ ଏକ ଜ୍ୱଳନ୍ତ ପ୍ରତିଭୂ ରୂପେ 'ହରେକୃଷ୍ଣ ଦାସ' (ସମୁଦ୍ରସ୍ନାନ), 'ଗୋବର ଗଣେଶ' (ସମୁଦ୍ରସ୍ନାନ) ତଥା 'ଶୁକଦେବ ଜେନା' (ମଧ୍ୟପଦଲୋପୀ) ଆଦି ପ୍ରତିଷ୍ଠିତ । ଏହି ବ୍ୟର୍ଥତାବୋଧ ଏକ ପକ୍ଷରେ ନଗର ସଭ୍ୟତାର ଆତ୍ମକୈନ୍ଦ୍ରିକ ମନୋବୃତ୍ତିପ୍ରସୂତ, ଅନ୍ୟ ପକ୍ଷରେ ଆତ୍ମୀୟ ପାପବୋଧ ତଥା ବ୍ୟକ୍ତିତ୍ୱର ବିଡମ୍ବନା ପ୍ରଣୋଦିତ । ଜୀବନ ପ୍ରତି ଏମାନଙ୍କର ଦୃଷ୍ଟିଭଙ୍ଗୀ ନଞର୍ଥକ ତଥା ବିଷାଦାତ୍ମକ । ରୋମାଣ୍ଟିକ କାବ୍ୟର ନାୟକମାନେ ମଧ୍ୟ ବିଷାଦବୋଧରେ ବିଧୁର ହୋଇପଡ଼ିଥିବା ଲକ୍ଷ୍ୟ କରାଯାଏ । ସେଥିପାଇଁ ବାସ୍ତବ ଜୀବନଭୂମିରୁ ସେମାନଙ୍କର ଚେତନା ଦୂର ସୁଦୂର କଳ୍ପନାର ଲୋକକୁ ଯାତ୍ରା କରିଥାଏ । ମାତ୍ର ବାସ୍ତବଧର୍ମୀ କାବ୍ୟ ନାୟକ ପକ୍ଷରେ ଦିଗନ୍ତର ଯାତ୍ରା ଅସମ୍ଭବ । କାରଣ ତା'ର ଚେତନା ବାର୍ଦ୍ଧକ୍ୟଗ୍ରସ୍ତ । ଅଧ୍ୟାତ୍ମବାଦୀମାନଙ୍କ ଭଳି ଅନନ୍ତ, ଅସୀମ, ପରମେଶ୍ୱରଙ୍କ ସାନ୍ନିଧ୍ୟ ପାଇଁ ଏହି କାବ୍ୟ-ନାୟକ ବ୍ୟାକୁଳ ନୁହେଁ । ସେ ଜାଣେ ଯେ ତା'ର ସମଗ୍ର ଜୀବନକାଳ ସେଇ ଅଜ୍ଞାତ ସତ୍ତାର ସନ୍ଧାନ ପାଇଁ ଯଥେଷ୍ଟ ନୁହେଁ । ଏଣୁ ସନ୍ଧାନ ଅନାବଶ୍ୟକ । ଉଭୟ ଜୀବନ ଓ ମୃତ୍ୟୁ ପ୍ରତି ତା'ର ଭୟବୋଧ ବ୍ୟାପକ । ବିଚ୍ଛିନ୍ନତାବୋଧ ଓ ଅହଂଶୂନ୍ୟତା ତା'ର ଜୀବନ ଯନ୍ତ୍ରଣାର ପୃଷ୍ଠପଟ ।

ଚଳିତ ଶତାବ୍ଦୀର ଷଷ୍ଠ ଦଶନ୍ଧରୁ ଓଡ଼ିଆ କାବ୍ୟଧାରାରେ ମିଥ୍‌କୁ କେନ୍ଦ୍ର କରି ନବ-ନିର୍ମିତିର ଅଭ୍ୟୁଦୟ ଘଟିଛି । ଯେଉଁ ପ୍ରୟୋଗବାଦୀ କବିଗଣ ଏହି ଧାରାରେ

କବିତା ରଚନା କରିବାର ସ୍ୱାତନ୍ତ୍ର୍ୟ ସୃଷ୍ଟି କରିଛନ୍ତି ସେମାନେ ହେଲେ ଗୁରୁପ୍ରସାଦ-ମହାନ୍ତି, ସଚ୍ଚି ରାଉତରାୟ, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର ପ୍ରମୁଖ । ପ୍ରୟୋଗବାଦୀ ଓଡ଼ିଆ କାବ୍ୟଧାରାରେ, ମିଥିକ ଚରିତ୍ର ଓ ପରିବେଶ, କେତେକ କ୍ଷେତ୍ରରେ ଅପରିବର୍ତ୍ତିତ ରୂପେ ଆଧୁନିକ କାଳ ସହ ସଂଯୁକ୍ତ । ଦୃଷ୍ଟାନ୍ତ ସ୍ୱରୂପ ସୀତାକାନ୍ତ ମହାପାତ୍ରଙ୍କ କବିତା (ମୃତ୍ୟୁନାଚ, ସ୍ୱନ୍ଦନସ୍ୱର ଉପକଥା-ଅଷ୍ଟପଦୀ)ରେ 'ଶ୍ରୀମଦ ଭାଗବତ'ର ଯଦୁବଂଶ ଧ୍ୱଂସ ସଂକ୍ରାନ୍ତୀୟ ମିଥରେ ଅନ୍ତର୍ନିହିତ ଆତ୍ମଘାତୀ ମନୋଭାବ ସାଂପ୍ରତିକ କାଳର ମାରଣାସ୍ତ୍ର ପ୍ରତିଯୋଗୀ ମାନବର ଭସ୍ମାସୁର ବୃତ୍ତିସହ ସଂପୃକ୍ତ । ପ୍ରାକ୍ତନ ଓ ଆଧୁନିକ ଏଠାରେ ଏକ ଯୋଗସୂତ୍ରରେ ସଂରକ୍ଷିତ । ଏହି ଧାରାର ଅନ୍ୟକେତେକ କବିତାରେ ମିଥିକ ଚରିତ୍ର ଓ ପରିବେଶ ପରିବର୍ତ୍ତିତ ଯୁଗଚେତନାର ପ୍ରଭାବରେ ବିବର୍ତ୍ତିତ । ଉଦାହରଣସ୍ୱରୂପ ସଚ୍ଚି ରାଉତରାୟଙ୍କ 'ସ୍ୱଗତ' (କବିତା-୧୯୬୨)ର ଅର୍ଜୁନ, ରମାକାନ୍ତ ରଥଙ୍କ 'ହନୁମାନ' (ଅନେକ କୋଠରୀ) ଓ 'ଅନନ୍ତ-ଶୟନ' (ଅନେକ କୋଠରୀ) ଆଦି ମିଥିକ ଚରିତ୍ର ଓ ପରିବେଶ, ସେମାନଙ୍କ ପୌରାଣିକ ପରମ୍ପରାରୁ କକ୍ଷଚ୍ୟୁତ । ପୁରାଣର ଅମିତ ଶକ୍ତିଶାଳୀ ଚରିତ୍ର ଓ ଅଲୌକିକ ପରିବେଶ, ଯୁଗ ସଂକଟ ମଧ୍ୟରେ ମ୍ରିୟମାଣ । ଏଇ ପରିପ୍ରେକ୍ଷୀରେ ସାଂପ୍ରତିକ କାଳର ଶକ୍ତିହୀନତା ତଥା ଜୀବନ-ଯନ୍ତ୍ରଣାର ସ୍ୱରୂପ ପ୍ରକଟିତ ।

ପ୍ରୟୋଗବାଦୀ କାବ୍ୟଧାରା ବହୁ ଭିନ୍ନଧର୍ମୀ ସ୍ୱରର ଏକ ବୈଚିତ୍ର୍ୟପୂର୍ଣ୍ଣ ସମାବେଶ । ବାସ୍ତବବାଦ ଏହି ସ୍ୱର ସମୂହ ମଧ୍ୟରୁ ଅନ୍ୟତମ । ଏଣୁ ପ୍ରୟୋଗବାଦୀ କାବ୍ୟଧାରାର ବାସ୍ତବ ଚିନ୍ତା ମଧ୍ୟରେ କେତେକ ସ୍ଥାନରେ ରୋମାଣ୍ଟିକ ତଥା ଅଧ୍ୟାତ୍ମବାଦୀ ଚିନ୍ତାଧାରା ସଂଚରିତ । ଉଦାହରଣ ସ୍ୱରୂପ ସୀତାକାନ୍ତ ମହାପାତ୍ରଙ୍କ 'ସହରରେ ଗ୍ରୀଷ୍ମ' (ଶାନ୍ତି ଓ ଦ୍ୟୁତି) ଓ 'ଦୁଇଟି ସ୍କେଚ' (ଶବ୍ଦର ଆକାଶ) କବିତାରେ ବାସ୍ତବବାଦୀ ଚିନ୍ତାଧାରା ସହ ଯଥାକ୍ରମେ ଆଧ୍ୟାତ୍ମିକ ତଥା ନବ୍ୟ-ରୋମାଣ୍ଟିକ ଚିନ୍ତାଧାରା ପ୍ରତିଫଳିତ ।

ରମାକାନ୍ତ ରଥଙ୍କ 'କେତେ ଦିନର', 'ଅନେକ କୋଠରୀ', 'ସନ୍ଦିଗ୍ଧ ମୃଗୟା' ଆଦି କାବ୍ୟ ଗ୍ରନ୍ଥରେ ବାସ୍ତବବାଦୀ ଚେତନା ସଂପର୍କିତ ପରୀକ୍ଷା-ନିରୀକ୍ଷା ସର୍ବାଧିକ । ଶାଶ୍ୱତ ମୂଲ୍ୟବୋଧ ସକଳ ପ୍ରତି ଅବିଶ୍ୱାସବୋଧ ତଥା ଜୀବନର ସସୀମତାର ସ୍ୱର ଏହି କବିତା ଗୁଡ଼ିକରେ ଅନୁରଣିତ । ମାତ୍ର ଏହି ସଂକଳନସ୍ଥ କବିତା-ଗୁଡ଼ିକର 'ବାଘ', 'ଲଣ୍ଠନ' ଓ 'ରାଜା' ଆଦି ପ୍ରତୀକ ତଥା ରୂପକଳ୍ପ ଗୁଡ଼ିକ ଏଭଳି ବ୍ୟକ୍ତିନିଷ୍ଠ ଯେ ସାଧାରଣ ପାଠକ ପକ୍ଷରେ ଏହାର ଅବବୋଧ କଷ୍ଟସାଧ୍ୟ । କବିତା ଗୁଡ଼ିକର ସାମଗ୍ରିକ ଭାବପ୍ରବାହ ମଧ୍ୟ ସ୍ଥଳବିଶେଷରେ ବିଚ୍ଛିନ୍ନ ।

ପାଶ୍ଚାତ୍ୟ କାବ୍ୟ ଚେତନା ପରି ଆଧୁନିକ ଓଡ଼ିଆ ବାସ୍ତବବାଦୀ କାବ୍ୟଧାରାର ସମସ୍ତ ଘଟଣା ଓ ଚରିତ୍ର ନଗରସଭ୍ୟତାର କ୍ୟାନଭାସରେ ଚତ୍ରିତ । ନଗର ସଭ୍ୟତାର ଅଭିବୃଦ୍ଧି ଆଜି ଏକ-ଦେଶିକ ନୁହେଁ ସାର୍ବଦେଶିକ । ସହର ଜୀବନର କ୍ରମବର୍ଦ୍ଧମାନ ଆତ୍ମକୈନ୍ଦ୍ରିକ ମନୋବୃତ୍ତି ମଧ୍ୟରେ ମଣିଷର ଜୀବନ କଭଳି ସଂକୀର୍ଣ୍ଣତାର ଅନ୍ଧଗଳିରେ ନିପୀଡ଼ିତ ତାହା ପାଶ୍ଚାତ୍ୟ ତଥା ଭାରତୀୟ କବିତାରେ ସମାନ୍ତରାଳ ଭାବେ ପ୍ରତିଫଳିତ । ଓଡ଼ିଶାର ନଗର ସଭ୍ୟତା, ପାଶ୍ଚାତ୍ୟ ଅଥବା ଭାରତର ମହାନଗରୀଗୁଡ଼ିକ ଭଳି ସଂକଟସଂକୁଳ ନହେଲେ ମଧ୍ୟ ସ୍ୱକୀୟ ସମସ୍ୟାର ବଳୟରେ ପୀଡ଼ିତ । ଏଣୁ ପ୍ରୟୋଗବାଦୀ ଓଡ଼ିଆ କାବ୍ୟ ଚେତନା କେତେକ ସ୍ଥଳରେ ପାଶ୍ଚାତ୍ୟ ପରୀକ୍ଷାଧର୍ମୀ କାବ୍ୟ ପରମ୍ପରା ଦ୍ୱାରା ପ୍ରଭାବିତ ହୋଇଥିଲେ ହେଁ ମୌଳିକ ଚେତନାର ସ୍ୱାକ୍ଷରରେ ମଧ୍ୟ ତାହା ରଞ୍ଜିମନ୍ତ ହୋଇପାରିଛି ।

ବାସ୍ତବବାଦ ଏକ ସ୍ଥାଣୁ ବା ସ୍ଥିତିସ୍ଥାପକବାଦ ନୁହେଁ । ତହିଁରେ କ୍ଲାସିକ ଓ ରୋମାଣ୍ଟିକ କବିତାର ରୂପସଜ୍ଜା, ଶବ୍ଦସମ୍ଭାରର ସୁରୁଚି ସମାବେଶ ଅଥବା କଳ୍ପନାର ଅହେତୁକ ଉଦ୍ଭଟ ବିଳାସ କାମ୍ୟ ନୁହେଁ । ଅଧିକନ୍ତୁ ମଣିଷର ଚେତନ ତଥା ଅବଚେତନ ମନର ଘାତ-ପ୍ରତିଘାତ, ଉତ୍ଥାନ-ପତନର ସ୍ୱଚ୍ଛନ୍ଦ ପରିବେଷଣ ହିଁ ତା'ର ଧ୍ୟେୟ । ବାସ୍ତବବାଦୀ କଳାରେ ଜୀବନର ଯଥାଯଥ ଚିତ୍ର ପ୍ରକଟିତ ହେଉ-ଥିବାରୁ କାବ୍ୟିକ ସୌନ୍ଦର୍ଯ୍ୟ ତହିଁରେ ଖଣ୍ଡିତ ହେବାର ସମ୍ଭାବନା ରହିଥାଏ । ଏଣୁ ଏହି କାବ୍ୟ ଚେତନାରେ ଯଥାର୍ଥ ଜୀବନ-ସତ୍ୟ ଓ କାବ୍ୟ-ସତ୍ୟର ନିବିଡ଼ ସମ୍ମିଳନ ଅନିବାର୍ଯ୍ୟ । ଏହି ହେତୁ "ଅନୁକରଣ ପରିବର୍ତ୍ତେ ରୂପାନ୍ତରୀକରଣ, ଅବିକଳ ପୁନରୁପସ୍ଥାପନ ପରିବର୍ତ୍ତେ ଅଭିପ୍ସିତ ବସ୍ତୁର କଳାତ୍ମକ ପ୍ରତିଚିତ୍ରଣ ତଥା ଦୃଶ୍ୟମାନ ଜଗତର ନକଲ ପରିବର୍ତ୍ତେ ଇନ୍ଦ୍ରିୟବେଦ୍ୟ ପ୍ରତିଫଳନ ବାସ୍ତବବାଦୀ କଳାର ଧର୍ମ ହେବା ବାଞ୍ଛନୀୟ (୩) ।"

---

(୩)" S. Langer prefers the term transformation to imitation. This consists in the rendering of desired appearance without any actual representative of it by the production of an equivalent sense-impression rather than literal similar ones. (quoted from—Realism—D. Grant. p-66)

ସାଂପ୍ରତିକ ଯୁଗର ଜୀବନଧାରା ଏକ ସଙ୍କଟଜନକ ମୁହୂର୍ତ୍ତ ମଧ୍ୟଦେଇ ଗତିଶୀଳ । ସାମାଜିକ ସଂଘାତ ପରିବର୍ତ୍ତେ ଅନ୍ତଃସ୍ଥଳର ଚେତନା-ସଂଘାତ ଆଜି ବୃହତ୍ତର । ସାମାଜିକ ବାସ୍ତବତା ପରିବର୍ତ୍ତେ ଅନ୍ତଃବାସ୍ତବତା ପ୍ରତି କବିମାନସ ଅଧିକ ଧ୍ୟାନଶୀଳ । ଶାଶ୍ୱତ ମୂଲ୍ୟବୋଧ ସକଳ ସାମ୍ପ୍ରତିକ ସମସ୍ୟାର ଧ୍ୱଂସ କାରାଗାରରେ ଅବରୁଦ୍ଧ । ଶ୍ରେଣୀ-ବିଭାଜନ ଅପେକ୍ଷା ଅନ୍ତରାତ୍ମାର ବିଭାଜନ ବଳବତ୍ତର । ମାନସିକ ସ୍ଥିତି ଦ୍ୱିଧାଗ୍ରସ୍ତ । ସାମାଜିକ ଅଙ୍ଗୀକାରବୋଧ ଖଣ୍ଡିତ । ଏହି ଅସହାୟତ୍ୱରୁ ମୁକ୍ତି ପାଇଁ ଯେଉଁ ସଂଗ୍ରାମ ଆବଶ୍ୟକ ତାହା କେବଳ ସ୍ଲୋଗାନ ଉପରେ ନିର୍ଭରଶୀଳ ହୋଇ ପାରିବ ନାହିଁ । କାରଣ ଏହାର ଆଭ୍ୟନ୍ତରୀଣ ଦୃଶ୍ୟପଟ ହିଁ ଅଧିକ ଗୁରୁତ୍ୱପୂର୍ଣ୍ଣ । କବିମାନସ ଏହି ନୂତନ ବାସ୍ତବତାର ସମ୍ମୁଖୀନ ବ୍ୟକ୍ତିତ୍ୱର ସଙ୍କଟନିରୂପଣ ପାଇଁ ସନ୍ଧାନରତ, କିନ୍ତୁ ବଳିଷ୍ଠ ଲୋକ ସମ୍ପର୍କ ଅଭାବରୁ ଏହି କାବ୍ୟ ଜଗତ କ୍ଳିଷ୍ଟତାର ଭାରରେ ସ୍ଥଳବିଶେଷରେ ଭାରାକ୍ରାନ୍ତ । କାବ୍ୟ-କଳା ମାଧ୍ୟମରେ ବାସ୍ତବ ଚିନ୍ତା ହୃଦ୍ୟ ସମ୍ବେଦନଶୀଳତାରେ ରୂପାନ୍ତରିତ ହୋଇ ପାରିଲେ ସାଂପ୍ରତିକ ବାସ୍ତବବାଦୀ କାବ୍ୟ-ଚେତନା ଅଧିକ ସମାଜନିଷ୍ଠ ହୋଇ ପାରିବ ।

## ପରିଶିଷ୍ଟ (୧)

# ଅତି-ବାସ୍ତବବାଦ (Surrealism)

### ଅତି-ବାସ୍ତବବାଦର ରୂପରେଖ

ଅତି-ବାସ୍ତବବାଦ (Surrealism) ଫରାସୀ ସ୍ଥାପତ୍ୟ ଓ ଚିତ୍ରକଳାରେ ସର୍ବପ୍ରଥମେ ଆତ୍ମପ୍ରକାଶ କରିଥିଲା । ମାଲର୍ମେ, ର୍ୟାବୋଁ, ଫର୍ଲିଅନେୟାର ପ୍ରମୁଖ ଏହାକୁ ସାହିତ୍ୟିକ ସ୍ୱୀକୃତି ଦେଇଥିଲେ । ଅତି-ବାସ୍ତବବାଦୀ କବିତାରେ ବକ୍ତବ୍ୟ ସମ୍ପର୍କରେ ସୂଚନା ଦେଇ ୧୯୬୪ ମସିହାରେ ଆନ୍ଦ୍ରେ ବ୍ରେତୋନ କହିଥିଲେ—

"ପ୍ରେମ, ବିଦ୍ରୋହ, ରହସ୍ୟ, ସ୍ୱାଧୀନତା, ଇଚ୍ଛାର ଉଲ୍ଲାସ (exaltation of desire), ବ୍ୟଙ୍ଗ ହାସ୍ୟ ତଥା ଅବଚେତନ ବିଶ୍ୱର ଚିନ୍ତାଧାରା ଆଦି ଅତିବାସ୍ତବବାଦୀ କବିତାର ମୁଖ୍ୟ ଭିତ୍ତିଭୂମି (୧) ।"

ଅତିବାସ୍ତବବାଦ ସହ ସମ୍ପୃକ୍ତ ପ୍ରେମ, ସ୍ୱାଧୀନତା ଓ ବିଦ୍ରୋହ ଆଦର୍ଶକୁ ଏହାକୁ ସାଧାରଣତଃ ରୋମାଣ୍ଟିକ୍‌ବାଦର ଏକ ପ୍ରଲମ୍ବନ ରୂପେ ଗ୍ରହଣ କରିବାର ସମ୍ଭାବନା ରହିଥାଏ । କିନ୍ତୁ ରୋମାଣ୍ଟିକବାଦରେ, ଅତିବାସ୍ତବବାଦର ଅବଚେତନ ଚିତ୍ତବିଶ୍ଳେଷଣ ଲକ୍ଷ୍ୟ କରାଯାଏ ନାହିଁ । ଅତିବାସ୍ତବବାଦରେ ପ୍ରେମ, ଏକ ଉଦଗ୍ର ଯୌନ ଚେତନା । ବିଦ୍ରୋହ, ଏକ ସାମାଜିକ ଶୃଙ୍ଖଳା ବିରୋଧୀ ଚିନ୍ତାଧାରା । ସ୍ୱାଧୀନତା ଅବଚେତନ ମନର ପ୍ରବୃତ୍ତି ସମୂହର ମୁକ୍ତ ସଞ୍ଚରଣ । ରୋମାଣ୍ଟିକବାଦର ସ୍ୱପ୍ନଲୋକ କୋମଳ ଅନୁଭୂତିରେ ରସସିକ୍ତ । କିନ୍ତୁ ଅତିବାସ୍ତବବାଦୀର ସ୍ୱପ୍ନ ହିଂସ୍ର, ବୀଭତ୍ସ କାମନା ପ୍ରଣୋଦିତ ।

ପ୍ରଥମ ବିଶ୍ୱଯୁଦ୍ଧର ଅବକ୍ଷୟ ଏହାର ଅଭ୍ୟୁଦୟର ପୃଷ୍ଠପଟ୍ଟ । ବ୍ୟକ୍ତିର ବାହ୍ୟସ୍ଥିତି ପରିବର୍ତ୍ତେ ତା'ର ଅନ୍ତଃମନର ଅସୁସ୍ଥତା ଉପରେ ଏହା ଆଧାରିତ । ମନୋବୈଜ୍ଞାନିକ ଫ୍ରଏଡ୍ ଅବଚେତନ ସ୍ତରର ଏହି ପ୍ରକ୍ରିୟା ସମୂହକୁ ମନସ୍ତାତ୍ତ୍ୱିକ ବାସ୍ତବତା (Psychic Reality) ରୂପେ ଅଭିହିତ କରିଛନ୍ତି । ଇଡ୍ ଦ୍ୱାରା ପରିଚାଳିତ ଏହି ସ୍ତର ଲିବିଡୋ (Libido)ର ଆବଶ୍ୟକତାକୁ ପରିପୂରଣ କରେ । ଲିବିଡୋ ମୁଖ୍ୟତଃ ଯୌନ ପ୍ରବୃତ୍ତିକୁ ବୁଝାଉଥିଲେ ମଧ୍ୟ, ସାମଗ୍ରିକ ଭାବେ ଏହାର ଦୁଇଟି ଦିଗ ରହିଛି । ଯଥା—(କ) ଏରସ୍ (Erus) (ଖ) ଥାନାଟସ୍

(Thanatus) । ଏରସ୍, ଏକ ଜୀବନଧର୍ମୀ ପ୍ରବୃତ୍ତି । ପକ୍ଷାନ୍ତରରେ ଥାନାଟସ୍ ଏକ ମୃତ୍ୟୁ ପ୍ରବୃତ୍ତି । ଅବଚେତନ ଚିତ୍ତ ଉପରେ ମୃତ୍ୟୁ ପ୍ରବୃତ୍ତିର ପ୍ରଭାବ ଅଧିକ ବଳିଷ୍ଠ । ବସ୍ତୁନିଷ୍ଠ ବାସ୍ତବବାଦ ସହ ଏହାର ସମ୍ବନ୍ଧ ଗୌଣ । ଅତିବାସ୍ତବବାଦ ମୁଖ୍ୟତଃ ବ୍ୟକ୍ତିର ଅବଚେତନ ସ୍ତରରେ ସୀମାବଦ୍ଧ ।

ଅତିବାସ୍ତବବାଦକୁ ଉପନିଷଦୀୟ 'ତୈଜସ' ସହ କେତେକ ସମାଲୋଚକ ସମନ୍ୱିତ କରିଥାନ୍ତି । 'ଉପନିଷଦ'ରେ 'ଜାଗରଣ', 'ସ୍ୱପ୍ନ' ଓ 'ସୁଷୁପ୍ତି' ଭେଦରେ ମନର ସ୍ତରଭେଦ ରହିଛି । ମନ ବା ଚେତନାର ଜାଗରିତାବସ୍ଥା, ଉପନିଷଦରେ 'ବୈଶ୍ୱାନର' ରୂପେ ସଂଜ୍ଞାସୂଚିତ । ସ୍ୱପ୍ନାବସ୍ଥାରେ ଅବଚେତନ ପ୍ରବୃତ୍ତି ନିରୂପିତ । ଏହାର ନାମ ତୈଜସ। ସୁଷୁପ୍ତିରେ ଚେତନା-ସତ୍ତା ଓ ସ୍ୱପ୍ନ-ସତ୍ତା, ଅତୀନ୍ଦ୍ରିୟ ଚେତନା ସହ ସମ୍ମିଳିତ ହୋଇଥାନ୍ତି । ଏହା ଫଳରେ ଜନ୍ମ ନିଏ ପରମ-ବାସ୍ତବତା (Higher Reality) । 'ପିଙ୍ଗଳାର ସୂର୍ଯ୍ୟ'ର 'କାବ୍ୟ-ମୁଖ'ରେ ଶ୍ରୀ ଜୀବନାନନ୍ଦ ପାଣି ଏଇ ପରିପ୍ରେକ୍ଷୀରେ ଅଭିମତ ଦେବାକୁ ଯାଇ କହିଛନ୍ତି—

"ସ୍ୱପ୍ନାବସ୍ଥାରେ ଚେତନାରୁ ଉଦ୍‌ଭୂତ କବିତାକୁ 'ତୈଜସ' କବିତା ରୂପେ ଅଭିହିତ କରାଯାଇ ପାରେ । ଏଇ ତୈଜସ କବିତାକୁ ଦିନାକେତେ ଡିଣ୍ଡିମ ବଜାଇ ଫରାସୀ ସର୍‌ରିଅଲିଷ୍ଟ ପୋଏଟ୍ସ୍ କହି ବୁଢ଼େ ନାଚିଗଲେ । ସେଇ ଉନ୍ମାଦନାର ଉଷୁମ କାଳକ୍ରମେ ଥଣ୍ଡା ପଡ଼ିଗଲା (୨) ।

କିନ୍ତୁ ଉପନିଷଦର ଏହି ତୈଜସ ଅବସ୍ଥାରେ ଅତି-ବାସ୍ତବବାଦର ଅବଦମିତ ଯୌନ କାମନା ଅଥବା ମୃତ୍ୟୁର ନିରଙ୍କୁଶ ସଂଚରଣ ଲକ୍ଷ୍ୟ କରାଯାଏ ନାହିଁ । ଅବଶ୍ୟ ଅତିବାସ୍ତବବାଦର ଅବଚେତନ ପ୍ରକ୍ରିୟା, କଳାତ୍ମକ ରୀତିରେ ସାମାଜିକ ଜୀବନର ଚେତନ-ସତ୍ତା ସହ କାବ୍ୟିକ ଯୋଗସୂତ୍ର ରକ୍ଷା କରିଥାଏ । ବ୍ୟକ୍ତିର ଅବଦମିତ ପ୍ରବୃତ୍ତି-ସମୂହ ସ୍ୱପ୍ନାବସ୍ଥାରେ ବିଭିନ୍ନ ଅନୁସଙ୍ଗ ସାହାଯ୍ୟରେ କାବ୍ୟାୟିତ ହୁଏ । ଏହି ପରିପ୍ରେକ୍ଷୀରେ ଯଥାକ୍ରମେ ଇଂରାଜୀ, ବଙ୍ଗଳା, ହିନ୍ଦୀ ଓ ଓଡ଼ିଆ କାବ୍ୟଧାରାର ବିଶ୍ଳେଷଣ ଦ୍ୱାରା ଅତିବାସ୍ତବବାଦର ସ୍ୱରୂପ ଉନ୍ମୋଚିତ କରାଯାଉଛି ।

**ଇଂରାଜୀ କବିତାରେ ଅତିବାସ୍ତବବାଦୀ ଚିନ୍ତାଧାରା**

ପାଶ୍ଚାତ୍ୟ କାବ୍ୟ-ସମାଲୋଚକଗଣ ଜର୍ଜବାର୍କେର (George Barker) ଡେଭିଡ୍ ଗ୍ୟାସ୍‌କୋନ୍ (David Gascoyne) ଓ ଡିଲନ୍ ଥୋମାସ୍ (Dylan Thomas ପ୍ରଭୃତିଙ୍କ କବିତାରେ ଅତିବାସ୍ତବବାଦୀ ଚିନ୍ତାଧାରା ପ୍ରତିଫଳିତ

ହୋଇଛିବୋଲି ଉଲ୍ଲେଖ କରିଛନ୍ତି । ଏହି କବିତାଗୁଡ଼ିକ ଅବଚେତନ ମନର ସମ୍ମୋହିତ ଅବସ୍ଥାର ଯଥାଯଥ କାବ୍ୟିକ ଅଭିବ୍ୟକ୍ତି । ଡେଭିଡ଼ ଗ୍ୟାସକୋନ୍‌ଙ୍କର ଏକ କବିତା ପରିପ୍ରେକ୍ଷୀରେ ଏହାର ଦୃଷ୍ଟାନ୍ତ ଦିଆଯାଇପାରେ—

"ଦୂରବୀକ୍ଷଣ ଯନ୍ତ୍ରଗୁଡ଼ିକ ମୁହଁରୁ ବାଲିଗୁଡ଼ିଏ ନିକ୍ଷିପ୍ତ ନଦୀର ସ୍ରୋତରେ ଖସି ପଡ଼ୁଛନ୍ତି । ଘୂର୍ଣ୍ଣାୟମାନ ଅଗ୍ନିଶିଖାର ସ୍ତର ଉପରେ, ଯାହା ଦ୍ରାବକ ବିନ୍ଦୁରେ ପରିଣତ ହୋଇଯାଉଛି । ଗର୍ଜିଲ ପଶୁଗୁଡ଼ିକ ବାୟୁଶୂନ୍ୟ ଗହ୍ୱରେ ଘୂରି ବୁଲୁଛନ୍ତି । ସେମାନଙ୍କ ଚର୍ମରୁ ପ୍ରଜାପତି ଗୁଡ଼ିଏ ବାହାରି ପଡ଼ୁଛନ୍ତି । ସେମାନଙ୍କର ଜିଭ ଗଛ ପରି ବଢ଼ି ଯାଉଛି । ସେହିଗଛ ଗୁଡ଼ିକ ମେଘର ସାଙ୍କୁ ପିନ୍ଧି ମନମାଫିକ୍ ଖେଳୁଛନ୍ତି (୩) ।" ଚେତନସତ୍ତା ଠାରୁ ଅବଚେତନ ମନର ଦୂରଗାମୀ ସ୍ଥିତି, ଏଠାରେ ଦୂରବୀକ୍ଷଣ ଯନ୍ତ୍ର ପ୍ରତୀକ ମାଧ୍ୟମରେ ପ୍ରମୂର୍ତ୍ତ । ଘୂର୍ଣ୍ଣାୟମାନ ଅଗ୍ନିଶିଖା ପ୍ରଜ୍ୱଳିତ ଅନ୍ତଃସତ୍ତାର ସ୍ୱାରକ । ସାମାଜିକ ପରିବେଶ ମଧ୍ୟରେ ଆପାତତଃ ମାର୍ଜିତ ପରିଦୃଷ୍ଟ ହେଉଥିବା ବ୍ୟକ୍ତିସତ୍ତାର ଅନ୍ତର୍ଲୋକର ଉଦଗ୍ର ପାଶବିକ କାମନା ପଶୁର ଗର୍ଜନ ମଧ୍ୟରେ ସୂଚିତ ! ବ୍ୟକ୍ତିର ଅବଚେତନ ଚିତ୍ତର ଅଦମ୍ୟ କାମନା ଚର୍ମରୁ ଉଦ୍‌ଗତ ପ୍ରଜାପତିସମୂହ ମଧ୍ୟରେ ପ୍ରତିବିମ୍ବିତ । ଅବଦମିତ କାମନାସମୂହର ମୁକ୍ତ ସଞ୍ଚରଣ ଗଛଗୁଡ଼ିକର ମନମାଫିକ କ୍ରୀଡ଼ା କରିବା ମଧ୍ୟରେ ପ୍ରତିଫଳିତ । ପୁଣି ଏହି ଅବଚେତନ ବିଶ୍ଳେଷଣ କୌଣସି ସୁନିର୍ଦ୍ଦିଷ୍ଟ ବ୍ୟକ୍ତି ବିଶେଷର ଅନ୍ତର୍ଲୋକର ଚିତ୍ର ନୁହେଁ । ଏହା ସାମଗ୍ରିକ ଭାବେ ସାମୂହିକ ଅବଚେତନ (Collective unconscious)ର ଏକ ଦୃଶ୍ୟମାନ ରୂପ ।

୧୯୬୮ ମସିହାରେ ଇଂଲଣ୍ଡର 'ସଟରଡ଼େ ରେଭ୍ୟୁ' (Saturday Review) ପତ୍ରିକାରେ ପ୍ରକାଶିତ ଆର୍କିବାଲ୍‌ଡ଼ ମ୍ୟାକଲିସ (Arckibald Macleish)ଙ୍କ କବିତାରେ ମଧ୍ୟ ଅତିବାସ୍ତବବାଦୀ ଚିନ୍ତାଧାରା ପ୍ରକଟିତ—

"କେମିତି କେଜାଣି ମୋର ସ୍ୱପ୍ନ ରାଜ୍ୟରେ କା କା ରବ କରୁଥିବା କାଉ-ଗୁଡ଼ାକ ପଶି ଆସିଛନ୍ତି । ସେମାନେ ମତେ ଘେରଯାଇ କା କା ରବ ଗୁଞ୍ଜିଛନ୍ତି । ଗୋଟିଏ ଅପଶକୁନର ଗର୍ଜନରେ ପୃଥିବୀସାରା କମ୍ପି ଉଠୁଛି । ବଗିଚା ସାରାଟି ରକ୍ତ ଭଳି ଲୁଣି ଓ ମୃତ୍ୟୁ ଭଳି ଥଣ୍ଡା ହୋଇଯାଇଛି (୪) ।" କବିତାଟିରେ କେବଳ ସ୍ୱପ୍ନ ନୁହେଁ, ଦିନର ଆଲୁଅରେ ମଧ୍ୟ ମୃତ୍ୟୁ ଚେତନା ସଂକେମିତ । ଶିଶିରବିନ୍ଦୁ ଉପରେ କଳାରକ୍ତ ମଖା ପକ୍ଷୀ ପରିର ସ୍ଥିତି ମଧ୍ୟରେ ଏହା ସୂଚିତ । ଏହି କବିତାରେ କଳ୍ପନା ବା ଆଦର୍ଶର ସଂପୃକ୍ତି ନାହିଁ । ଅଛି କେବଳ ଅବଚେତନ ମନର ନିରାଭରଣ ପ୍ରତିଛବି । ସ୍ୱପ୍ନରେ ପରିଦୃଷ୍ଟ କୁଆଗୁଡ଼ିକ ଅପଶକୁନର ପ୍ରତୀକ । ବ୍ୟକ୍ତିର ଅବଚେତନ ଚିତ୍ତ ଏହି ଅପଶକୁନର ପ୍ରଭାବରେ କଳୁଷିତ ।

## ବଙ୍ଗଳା ଓ ହିନ୍ଦୀ କବିତାରେ ଅତିବାସ୍ତବବାଦୀ ଚେତନା

ପାଶ୍ଚାତ୍ୟ କାବ୍ୟ ପରମ୍ପରାର ଅତି-ବାସ୍ତବବାଦୀ ଚେତନା କାଳକ୍ରମେ ଭାରତୀୟ କାବ୍ୟ ଚେତନାରେ ପ୍ରତିଫଳିତ । ଭାରତୀୟ ଅତି-ବାସ୍ତବବାଦୀ କବିତା-ଗୁଡ଼ିକରେ ପାଶ୍ଚାତ୍ୟ କାବ୍ୟ ଢାଞ୍ଚାରେ ଅବଚେତନ ଚିତ୍ତର ବିଶ୍ଳେଷଣ ସଂଘଟିତ । ଦୃଷ୍ଟାନ୍ତ ସ୍ୱରୂପ ବଙ୍ଗୀୟ କବି ଜୀବନାନନ୍ଦ ଦାସଙ୍କ 'ଘୋଡ଼ା' କବିତାଟିକୁ ଆଲୋଚନା କରାଯାଇ ପାରେ । ବ୍ୟକ୍ତି ଚେତନାର ଗତିଶୀଳତାକୁ ଏଠାରେ ଘୋଡ଼ା ପ୍ରତୀକ ମାଧ୍ୟମରେ ପ୍ରକାଶ କରାଯାଇଛି । ଚେତନାର ଏହି ଗତିଶୀଳତା ପ୍ରସ୍ତର ଯୁଗରୁ ସାଂପ୍ରତିକ ଯୁଗଚେତନା ପର୍ଯ୍ୟନ୍ତ ପ୍ରବାହିତ । ଅସ୍ତାବଲ ଧା ଂପ୍ରତିକ ପୃଥିବୀର ପ୍ରତୀକ । ପୃଥିବୀର ଡ଼ାଇନୋମର ଆଲୋକରେ ଆଦିମ ଜୈବିକ ସ୍ମୃତି, ସାଂପ୍ରତିକ ବ୍ୟକ୍ତିସତ୍ତ୍ୱର ଅବଚେତନ ସତ୍ତ୍ୱରେ ଅବତୀର୍ଣ୍ଣ । ଘୋଡ଼ାର ଘାସ ଚରିବାର ଦୃଶ୍ୟ ମଧ୍ୟରେ ଜୈବିକ କ୍ଷୁଧାର ଉଦ୍‌ବେଳନ ସୂଚିତ । ଏହି ଆଦିମ ଯୌନକ୍ଷୁଧା କବିତାର ପରବର୍ତ୍ତୀ ପର୍ଯ୍ୟାୟରେ ମୃତ୍ୟୁ ଚେତନାରେ ରୂପାନ୍ତରିତ । କାରଖାନାର ଇସ୍ପାତ କଳର ଗର୍ଜନରେ କେଉଁ ଏକ ବିପନ୍ନ ଇଲିକାର ବେଦନାକ୍ତ ଶବ୍ଦ ଓ ରେସ୍ତୋରାଁର ଗ୍ଲାସ କପ୍‌ର ହିମାଛନ୍ନତା ମଧ୍ୟରେ ଏହି ମୃତ୍ୟୁଚେତନା ପ୍ରତିଫଳିତ (୫) ।

ହିନ୍ଦୀ ସାହିତ୍ୟର କବି ଧୂମିଲ (ସୁଦାମା ପାଣ୍ଡେୟ)ଙ୍କ କବିତାରେ ମଧ୍ୟ ଅତି-ବାସ୍ତବବାଦୀ ଚେତନା ଅଭିବ୍ୟକ୍ତ । ଧୂମିଲଙ୍କ ଭାଷାରେ—ବ୍ୟକ୍ତିର ଚେତନସତ୍ତ୍ୱଠାରୁ ତା'ର ଅବଚେତନ ସତ୍ତ୍ୱା ସଂପୂର୍ଣ୍ଣ ଭିନ୍ନଧର୍ମୀ । ଏହି ଚେତନ ଓ ଅବଚେତନ ସତ୍ତ୍ୱାର ଲୁଚକାଳି ଖେଳ ମଧ୍ୟରେ ବ୍ୟକ୍ତି ଚରିତ୍ରର ଦ୍ୱୈତ-ସ୍ୱରୂପ ପ୍ରତିଫଳିତ । ସାମାଜିକ ଜୀବନର ଶୋଭାଯାତ୍ରା ମଧ୍ୟରେ ପରିଦୃଷ୍ଟ ସହଜ, ସୁନ୍ଦର ବ୍ୟକ୍ତିତ୍ୱର ନଗ୍ନରୂପ ବଡ଼ ଭୟଙ୍କର । ଏହି ନଗ୍ନ ରୂପ ହିଁ ତା'ର ଅବଚେତନ ଚିତ୍ତର ଯଥାର୍ଥ ପ୍ରତିରୂପ । ଜୀବନର କୋଳାହଳ ପରିବର୍ତ୍ତେ ସେଠାରେ ପ୍ରାଗୈତିହାସିକ ନିର୍ଜନତାର ଏକଛତ୍ର ରାଜତ୍ୱ । ସେହି ନିର୍ଜନତା ମଧ୍ୟରେ ଆଦିମ ପଶୁତ୍ୱର ସଂକ୍ରମଣ । ସାରା ସହର ସତେ ଅବା ତା'ର ଗର୍ଜନରେ ପ୍ରକମ୍ପିତ (୬) । ଅତିବାସ୍ତବବାଦୀ କବି ମୁଖ୍ୟତଃ ଅବଚେତନ ଚିତ୍ତର ସ୍ୱରୂପ ଉନ୍ମୋଚନ କରିଥିଲେ ମଧ୍ୟ ଅବଚେତନ ସହି ଚେତନ ସତ୍ତ୍ୱର କାବ୍ୟିକ ଯୋଗସୂତ୍ର ସୃଷ୍ଟି ପାଇଁ ଆଲୋଚ୍ୟ କବିତାଗୁଡ଼ିକରେ ଉଦ୍ୟମ କରାଯାଇଛି । ଏହା ମାଧ୍ୟମରେ ତହିଁରେ ବାସ୍ତବବାଦୀ ଯୁଗ ଚେତନାର ସଂକେତ ପ୍ରକଟିତ ହୋଇଛି ।

## ଅତି-ବାସ୍ତବବାଦ ଓ ଓଡ଼ିଆ କାବ୍ୟ-ଚେତନା

ବିଂଶ ଶତାବ୍ଦୀର ପଞ୍ଚମ-ଷଷ୍ଠ ଦଶନ୍ଧି ବେଳକୁ ଓଡ଼ିଆ କାବ୍ୟ-ଚେତନାରେ ଅତି-ବାସ୍ତବବାଦୀ ଧାରାର ପ୍ରତିଫଳନ ଉଲ୍ଲେଖନୀୟ । କବି ରାଉତରାୟଙ୍କ ହିଗତ(୩)

କବିତାରେ ଏହି ପରୀକ୍ଷା ଓ ପ୍ରୟୋଗର ଆଦ୍ୟ-ଉନ୍ମେଷ ଘଟିଥିଲା । ନିଦ୍ରାଚରଣ (Somnambulism) ମାଧ୍ୟମରେ ଅବଚେତନ ତତ୍ତ୍ୱ ବିଶ୍ଳେଷଣ ଶଂସିତ କବିତାର ବୈଶିଷ୍ଟ୍ୟ । ଜଣେ ଲୋକ ରାତ୍ରିର ନିଦ୍ରାବସ୍ଥାରେ ଉଠି ପଡ଼ି ଅବଚେତନ ମନର କେଉଁ ଏକ ଭଙ୍ଗା ଛୁଣ୍ଡା ଚିନ୍ତାର ସୂତା ଖିଅକୁ ଯୋଡ଼ିବା ପାଇଁ ଖାଲି ଖମା ନମାଣ୍ଡ ଚାଲେ । ଏହି ପରି ଏକ ବ୍ୟକ୍ତି ଚରିତ୍ର ରାଜେନ୍ଦ୍ରସିଂହଙ୍କ ସ୍ୱଗତ(୩) କବିତାର ଉପଜୀବ୍ୟ—

"ନିଦ୍ରାରେ ଚାଲିବା ଚାଲି କିପରି ଚାଲିବା ?)
କାନ୍ଥ ବାଡ଼େ ଛୁଇଁ ପଛେ ପଛେ
ଅନେକ ସ୍ମୃତି ଆଉ ବିସ୍ମୃତିର ପାହାଚେ ପାହାଚେ (୭) ।

କାନ୍ଥ ବାଡ଼ରେ ପ୍ରତିଫଳିତ ଛାୟା ଉଦ୍ଦେଶ୍ୟରେ ଏ ପଶ୍ଚାଦ୍‌ଧାବନ ଆପାତତଃ ଦୁର୍ବୋଧ ଭଳି ପ୍ରତୀତ ହୁଏ । କିନ୍ତୁ ଏହି କାନ୍ଥ, ବାଡ଼ରେ ପ୍ରତିଫଳିତ ଛାୟା, ଅବଚେତନ ମନର ସ୍ମାରକ । ସେ ଛାୟାର ପ୍ରତିଲୋମ ଯାହା ମଧ୍ୟରେ ସ୍ମୃତି ଓ ବିସ୍ମୃତି, ବହୁ ଘଟଣାର ସମାବେଶ । କାଳର ଏ ପଶ୍ଚାତ୍ ଗତି, ଏଠାରେ ରୋମାଣ୍ଟିକ ଚେତନାର ପରିଚାୟକ ନୁହେଁ, ରୋମାଣ୍ଟିକ ଚେତନା, ଏକ ସଚେତ ତତ୍ତ୍ୱର ସ୍ମୃତିଚାରଣ ଉପରେ ଆଧାରିତ । କିନ୍ତୁ ଅତି-ବାସ୍ତବବାଦର ଅବଚେତନ ବିଶ୍ଳେଷଣ ମଧ୍ୟରେ ସ୍ମୃତି ଓ ବିସ୍ମୃତିର ସମାନ୍ତରାଳ ସଂଚରଣ ସଂଘଟିତ । ମନୋବୈଜ୍ଞାନିକ ଫ୍ରଏଡଙ୍କ ମତରେ, ସଚେତନ ତତ୍ତ୍ୱର ବିସ୍ମୃତି ବିଷୟ ଅବଚେତନ ଅବସ୍ଥାରେ ଜାଗରୁକ ଥାଏ । ସୁତରାଂ ଅବଚେତନ ସ୍ତରର ଚେତନା ପ୍ରତିମୂର୍ତ୍ତିତ ହୋଇଛି ଏକ ଅନ୍ଧକାରଗ୍ରସ୍ତ ସିଡ଼ିର ପାହାଚରେ ତଳରୁ ତଳକୁ. ଯେଉଁଠାରେ ବହୁ ମୃତ ପାଦଚିହ୍ନର ସଂକେତ ବିଦ୍ୟମାନ—

"ଏ ଅନ୍ଧାର ସିଡ଼ି ଦେଇ, ବହୁ ମୃତ ପାଦଚିହ୍ନ ମେଲେ
ବହୁ ଖୁଣୀ, ସନ୍ନ୍ୟାସୀ, ପକେଟମାରୁରେ
କିମ୍ବା କେଉଁ ଆତ୍ମଘାତୀର
ଘୂମନ୍ତ କଙ୍କାଳେ (୮) ।"

'ଖୁଣୀ', 'ସନ୍ନ୍ୟାସୀ' ଓ 'ପକେଟମାରୁ' ଆଦି ଶବ୍ଦଗୁଡ଼ିକ ମାନବର ଅସତ୍ ପ୍ରବୃତ୍ତି ସମୂହର ପରିଚାୟକ । ଏହି ଅସତ୍ ପ୍ରବୃତ୍ତି ମଧ୍ୟରେ ମୃତ୍ୟୁ ଚେତନା ସମାନ୍ତରାଳ ଭାବେ ସଂକ୍ରମିତ । ଏକ ଆତ୍ମଘାତୀର ଅମୁକ୍ତ ଆତ୍ମାର ଘୂର୍ଣ୍ଣିଳ କଙ୍କାଳ ପ୍ରତୀକ ମାଧ୍ୟମରେ ଏହା ସୂଚିତ । କାବ୍ୟ-ନାୟକ ଏହି ଖୁଣୀ, ସନ୍ନ୍ୟାସୀ, ପକେଟମାରୁ ତଥା କଙ୍କାଳର ପରିଚୟ ଜାଣିବାପାଇଁ ଉନ୍ମୁଖ—

'ପଶୁରିବା ପରିଚୟ
ମନେ ପକାଇବା
କେବେ ଦେଖା
ହୋଇଛୁ କି ନାହିଁ ।' (୯)

କିନ୍ତୁ ପରମୁହୂର୍ତ୍ତିରେ ଏହି ପରିଚୟ୍ଯଜିଜ୍ଞାସା ନିରର୍ଥକ ପ୍ରତିପାଦିତ ହୋଇଛି । କାରଣ ସେଇ ମୃତ୍ୟୁ ଚେତନାର ସଂଚରଣ ମଧ୍ୟରେ ନାୟକର ନିଜର ବିଭିନ୍ନ ମୁହୂର୍ତ୍ତିର ପ୍ରତିକୃତି ସହିତ ମିଳିତ ହେବାର ସମ୍ଭାବନା ରହିଛି । ଅବଚେତନ ଚିତ୍ତର ଅନ୍ଧାର କୋଣରେ ଛପି ରହିଥିବା ମୃତ୍ୟୁ ପ୍ରବୃତ୍ତିର ମୂର୍ତ୍ତିମନ୍ତ ବ୍ୟକ୍ତିତ୍ୱ ସହ ସତେ ଅବା ତା'ର ସାକ୍ଷାତକାର ଘଟିବ । ଜୀବନର ବହୁ ଖଣ୍ଡିତ ମୁହୂର୍ତ୍ତିରେ ସେ ଭୋଗିଥିବା ମୃତ୍ୟୁ-ବିଗ୍ରହର ସ୍ୱରୂପ କେବଳ ତା'ର ସାମୂହିକ ଅବଚେତନ (Collective unconscious) ମଧ୍ୟରେ ସଂରକ୍ଷିତ ହୋଇନାହିଁ, ବ୍ୟକ୍ତିଗତ ଅବଚେତନ (Personal unconscious)ରେ ମଧ୍ୟ ସଞ୍ଚିତ ହୋଇଛି । ସୁତରାଂ ସେ ଖୁଣ୍ଟୀ, ସରୀସୃପ, ପକେଟମାରୁ ଓ ଆତ୍ମଘାତୀ କଙ୍କାଳ ଭିତରେ ନିଜର ପ୍ରତିକୃତି ସନ୍ଦର୍ଶନ କରିଛି—

"× × କିମ୍ବା ସେମାନଙ୍କ ଭିତରେ
ଖୋଜି ପାଇବା ନିଜ ପ୍ରତିକୃତି
ନାନା ମୁହୂର୍ତ୍ତିର ଆରଶିରେ ।" (୧୦)

କବିତାର ପ୍ରଥମ ଦୁଇଟି ସ୍ତବକ ଭଳି ତୃତୀୟ ସ୍ତବକରେ ମଧ୍ୟ ମୃତ୍ୟୁ ଚେତନା ସଂଚରିତ-ତାହା ସେହି ନିଦ୍ରାଚରଣ (Somnambulism) ମଧ୍ୟରେ ଅଭିବ୍ୟକ୍ତ—

"ନିଦ୍ରାରେ ଚାଲିବା ଚାଲି (କିପରି ଚାଲିବା ?)/ଚାଲିଛି ପଛେ ପଛେ
ନିଜକୁ ଦେଖିବା ଚାଲି ନାନା ମୃତ ଘଟନାର କାଟେ/ନାନା ମୁହୂର୍ତ୍ତିର ବିମ୍ବେ ।" (୧୧)

ଜୀବନର ବିଭିନ୍ନ ମୁହୂର୍ତ୍ତିର ପରିଛବି ସମୟର ଦର୍ପଣ ମଧ୍ୟରେ ଯେପରି ପ୍ରତିଫଳିତ, ସେହି ପ୍ରତିଫଳନ ମଧ୍ୟରେ ଅତୀତ କାଳର ବହୁ ଉତ୍ଥାନ-ପତନ, ଯାତ୍ରାପଥର କ୍ଳାନ୍ତି, କଙ୍କରିଳ ଅନୁଭୂତି ସଂଚିତ । ନିଦ୍ରାଚରଣ ମଧ୍ୟରେ ଅତୀତର ବିସ୍ମୃତ ସତ୍ତ୍ୱସହ ପରିଚୟ ସଂଘଟିତ ।

ମନୁଷ୍ୟର ଅବଚେତନ ମନଟି ହେଉଛି ଏକ ଫଟୋଗ୍ରାଫ ଫିଲ୍ମର କଳା ବାଲୁ ବାଲୁ ପ୍ରତିଚିତ୍ର (negative) ଭଳି । ମାତ୍ର ସେହି ଅସ୍ୱଚ୍ଛ ଫିଲ୍ମରେ ଲୁଚି-

ରହିଥାଏ ଜୀବନ୍ତ ମଣିଷର ବିଧି-ବିଧାନ—ମୁକ୍ତ ପ୍ରକୃତ ସ୍ୱରୂପ । ଜୀବନର ଯାତ୍ରା କାଳରେ ଅତୀତର ଅତୀତତର ଘଟଣାର ତିକ୍ତ ମଧୁର ସ୍ମୃତି ତଥା ପ୍ରତିସ୍ମୃତି ଅବଚେତନ ତଳରେ ଲୁଚିରହେ । ବ୍ୟକ୍ତିର ଜୀବନ-ଯାତ୍ରା ଏଠାରେ ଏକାନ୍ତ ନିଷ୍ପ୍ରାଣ । ସହରର 'ମିଞ୍ଜି ମିଞ୍ଜି କରୁଥିବା ବତାଶୁମୂ', ଅନାମଧେୟ ଗଳିର 'ଅମୂହାଁ ସୁଡ଼ଙ୍ଗ' ଓ 'ଭଙ୍ଗା ବାରଣ୍ଡାର ନିର୍ଜନ ସିଡ଼ି' ଆଦି ପ୍ରତୀକ ଗୁଚ୍ଛ ମାଧ୍ୟମରେ ଏହି କ୍ଳାନ୍ତ ତଥା ନିଃସଙ୍ଗ ମାନସିକ ଚେତନା ସୂଚିତ (୧୨) ।

ଗୁରୁପ୍ରସାଦଙ୍କ କବିତାରେ ଯେଉଁ ଅତି-ବାସ୍ତବବାଦୀ ପରୀକ୍ଷା-ନିରୀକ୍ଷା ଆରମ୍ଭ ହୋଇଥିଲା, ରମାକାନ୍ତ ରଥ, ସୌଭାଗ୍ୟ ମିଶ୍ର ପ୍ରମୁଖଙ୍କ କବିତାରେ ତା'ର ବିକାଶ ଓ ଉତ୍ତରଣ ଉଲ୍ଲେଖନୀୟ ।

ରମାକାନ୍ତ ରଥଙ୍କ କବିତାରେ ସ୍ୱପ୍ନ ବିଶ୍ଳେଷଣ (dream analysis) ମାଧ୍ୟମରେ ଅତିବାସ୍ତବବାଦୀ ଚିନ୍ତାଧାରା ପ୍ରକଟିତ । ସ୍ୱପ୍ନ ହେଉଛି, ନିଦ୍ରାବସ୍ଥାର ଏକ ବିଶିଷ୍ଟ ଅନୁଭୂତି । ସେହି ଅନୁଭୂତି ମଧ୍ୟରେ ଏପରି ବିଷୟବସ୍ତୁର ସମାଗମ ହୁଏ, ଯାହାର ଅବବୋଧ ଅନେକ ସ୍ଥଳରେ କଷ୍ଟସାଧ୍ୟ । ସ୍ୱପ୍ନର ଜଗତ ଅସରନ୍ତି । ତାହା ଅବଚେତନ ମନରେ ଅଙ୍କା ଯାଇଥିବା ଅଗଣିତ ଅନୁଭୂତିର ତିକ୍ତ ମଧୁର ସ୍ମୃତିରେ ରଞ୍ଜିତ ଚିତ୍ର ଗ୍ୟାଲେରୀ ପରି । ସୁପ୍ତିର ଗଭୀର ଆସ୍ତରଣ ମଧ୍ୟରେ ଚେତନାବୋଧ ନିଷ୍କ୍ରିୟ ଥିଲାବେଳେ ଅବଚେତନ ମନର ଚିତ୍ର ଗ୍ୟାଲେରୀର ଚିତ୍ରମାଳା କେବେ କେବେ ଖୋଲି ଯାଇଥାଏ । ରମାକାନ୍ତ ରଥଙ୍କ 'ଗୋଟିଏ ସ୍ୱପ୍ନ' କବିତାରେ ସ୍ୱପ୍ନ ମାଧ୍ୟମରେ ଏକ ଆତ୍ମଘାତୀ ମନୋଭାବ ସୂଚିତ । କେତେକ ପରମ୍ପରା ଅନୁଗାମୀ ପ୍ରତୀକ ଓ ଚିତ୍ରକଳ୍ପ ମାଧ୍ୟମରେ କବିତାର ମୂଳ ବକ୍ତବ୍ୟ ଅଭିବ୍ୟକ୍ତ । ବକ୍ତବ୍ୟ, ସ୍ୱପ୍ନକୁ କେନ୍ଦ୍ର କରି ବିବର୍ତ୍ତିତ ହୋଇଥିଲେ ମଧ୍ୟ, ରୋମାଣ୍ଟିକ୍ ନୁହେଁ, ପକ୍ଷାନ୍ତରେ ଉଭୟ ସମାଜ ତଥା ସ୍ୱକୀୟ ଜୀବନାନୁଭବ ପ୍ରତି ଦୃଷ୍ଟିଭଙ୍ଗୀ ଏଠାରେ ବିଦ୍ରୂପାତ୍ମକ—

"ମୁଁ ସ୍ୱପ୍ନ ଦେଖୁଛି ଏକ ତିନି ତାଲା କୋଠାର ଉପରୁ
ଲମ୍ଫ ଦେଇ ମୁଁ କରୁଛି ନିଜ ହାତେ
ମରିବା ପ୍ରୟାସ,
କାଲେ ମୁଁ କରିବ ଭୟ ଏଥି ଲାଗି ଦ୍ରଷ୍ଟା ତିନି ଜଣ
କୋଠାପାଖେ ଛିଡ଼ା ହୋଇ କରୁଥିଲେ ଦୁଷ୍ଟ ଉପହାସ ।" (୧୩)

ଜୀବନ ପ୍ରତି ତୀବ୍ର ବିତୃଷ୍ଣାବୋଧରୁ ନାୟକର ଏହି ଆତ୍ମହତ୍ୟା ପ୍ରବୃତ୍ତି ଉଦ୍‌ଭୂତ । ଏହାସହ ସମାନ୍ତରାଳ ଭାବେ ସଂଯୁକ୍ତ ହୋଇଛି ବିକୃତ ପରିହାସ (black

humour) । କୋଠା ପାଖରେ ଛିଡ଼ା ହୋଇ ବିଦ୍ରୂପ କରୁଥିବା ଦେଖଣାହାରିମାନଙ୍କ ମନୋଭାବ ମଧ୍ୟରେ ଶ୍ରଦ୍ଧା ଓ ସମ୍ବେଦନାଶୂନ୍ୟ ଆଧୁନିକ ମଣିଷର ନିଷ୍ଠୁରଣ ହୃଦୟବୃତ୍ତି ପ୍ରତିଫଳିତ ।

କବିତାର ଦ୍ୱିତୀୟ ସ୍ତବକରେ ଅନ୍ୟଏକ ପ୍ରତୀକ ମାଧ୍ୟମରେ ନାୟକର ମୃତ୍ୟୁ ପ୍ରବୃତ୍ତି ବର୍ତ୍ତମାନ—

"ତା'ପରେ ମୁଁ ଅନୁଭବ କରୁଥିଲି ମୁଁ ନୁହେଁ ଜୀବିତ ।
ନିର୍ଜନ ସଡ଼କେ ଏକ ଦ୍ରୁତଗାମୀ ରେଲଗାଡ଼ି ଯାଏ,
ରେଲଗାଡ଼ି ପଛେ ପଛେ ଛୁଟିଲି ମୁଁ ଦ୍ରୁତ ପଦକ୍ଷେପେ
କିଛି କ୍ଷଣ ପରେ ତା'ର ସତ୍ତା ଆଉ ନଥିଲା କୌଣସିଠାଏ ।" (୧୪)

'ଦ୍ରୁତଗାମୀ ରେଲଗାଡ଼ି', ଏଠାରେ ଚଳମାନ ସମସ୍ତ ଚେତନାର ପ୍ରତୀକ । କିନ୍ତୁ ନାୟକର ଅବଚେତନ ସ୍ତରରେ ଜୀବନୀ ଶକ୍ତି କ୍ରମଶଃ କ୍ଷୟମାଣ । ଦ୍ରୁତଗାମୀ ରେଲଗାଡ଼ିର ନିଶ୍ଚିହ୍ନ ସତ୍ତା ମଧ୍ୟରେ ଏହା ସୂଚିତ ।

ନାୟକର ମୃତ୍ୟୁ ପ୍ରବୃତ୍ତି ପ୍ରତି ସମାଜ ଉଦାସୀନ । ଅବଚେତନ ସ୍ତରରେ ଚେତନ-ପୃଥିବୀର ଏହି ଏହି ଔଦାସିନ୍ୟ ଗୁମ୍ଫିତ । ନାୟକର ଆତ୍ମହତ୍ୟା, ତା'ର ପରିପାର୍ଶ୍ୱସ୍ଥ ବ୍ୟକ୍ତିମାନଙ୍କ ପାଇଁ ଏକ ମାମୁଲି ଘଟଣା । ସୁତରାଂ ଅବଚେତନ ମନର ସ୍ୱପ୍ନାବେଶ ମଧ୍ୟରେ ନାୟକ ଦେଖେ—

"ସ୍ନାନରତ ଲୋକ କେତେ ଜଣ
ତା'ଭିତରୁ
ଜଣେ ପଚାରୁଛି ମାମୁଲି ଭାଷାରେ
ଭଲ ଅଛ
ତମେ କିଆଁ
ଆତ୍ମହତ୍ୟା କରିଲ କହତ ?" (୧୫)

ନାୟକର ମୃତ୍ୟୁ ଶାରୀରିକ ନୁହେଁ, ଆତ୍ମିକ; ତା'ର ଜୀବନ, ଦୁଃଖ, କ୍ଲେଶ ଓ ଯନ୍ତ୍ରଣା ଦାୟକ । ଚେତନ-ସତ୍ତାରେ ତା'ର ଜୀବନ ବାଞ୍ଛା ଅସପନ୍ନ, ମାତ୍ର ଅବଚେତନ ସ୍ତରରେ, ମୃତ୍ୟୁ ବାଞ୍ଛା ଗଭୀର । ଏଣୁ କବିତାଟିରେ ଏକ ପକ୍ଷରେ ଚେତନ ସ୍ତରର ପାର୍ଥିବ ଜୀବନ କାମନା, ଅନ୍ୟ ପକ୍ଷରେ ଅବଚେତନ ସ୍ତରର ମୃତ୍ୟୁ ଭାବନା ଯୁଗପତ୍‌ ପ୍ରତିଫଳିତ । ଚେତନ-ସ୍ତରରେ ତା'ର ଶରୀର-ପ୍ରୀତି ପ୍ରବଳ । ମୃତ୍ୟୁଠାରୁ ଜୀବନ ତା'ପାଇଁ ଶ୍ରେୟସ୍କର । ମୃତ୍ୟୁ ପ୍ରତି ଭୟବୋଧ ବିପୁଳ (୧୬) । ତଥାପି ଆତ୍ମହତ୍ୟା

ପ୍ରବୃତ୍ତିରୁ ନିଜକୁ ମୁକ୍ତ ରଖିବା ଅସମ୍ଭବ । ସାମାଜିକ ପରିବେଶ ମଧ୍ୟରେ ପ୍ରତିବେଶୀ-ମାନଙ୍କର ନିଷ୍ଠୁରତା ଏକାନ୍ତ ଅମାନବିକ । କବିତାର ଶେଷ ପର୍ଯ୍ୟାୟରେ ଏହି ଚିନ୍ତାଧାରା ପ୍ରତିଫଳିତ—

"× × ମତେ ହିଁ ଦେଖାଇ କହେ, "ଏଇ ଅଟେ ରମାକାନ୍ତ ରଥ
ନିଜ ହାତେ ମାରିଅଛି ମୂଲ୍ୟବାନ ଜୀବନ ତାହାର"
ମୁଁ କହି ପାରୁନି କିଛି ଯେ ଦେଖୁଛି, ସେ ହସୁଛି ସ୍ମିତ !
ଭଲ ଅଛ ? ତମେ କିଆଁ ଆତ୍ମହତ୍ୟା ଜଣିଲ କହତ ?" (୧୭)

'ନାୟକର ଆତ୍ମିକ ମୃତ୍ୟୁ, ତା'ର ତଥାକଥିତ ଆତ୍ମୀୟ ସ୍ୱଜନ ତଥା ବନ୍ଧୁପରିଜନ-ମାନଙ୍କ ଓଠରେ ସ୍ମିତହାସ୍ୟ ଉଦ୍ରେକ କରୁଛି । ଏହି ସ୍ମିତ ହାସ୍ୟ ମଧ୍ୟରେ ନିଷ୍ଠୁରତାର ଆଭାସ ଅନାୟାସଲକ୍ଷ୍ୟ । ସମାଜର ଏହି ହୃଦୟହୀନତା ଓ ବ୍ୟକ୍ତିଗତ ଜୀବନର ବିଫଳ-ତାର ପ୍ରତିକ୍ରିୟାସ୍ୱରୂପ ନାୟକର ଅବଚେତନ ଚିତ୍ତର ମୃତ୍ୟୁ ପ୍ରବୃତ୍ତି ଅନୁପ୍ରଣୋଦିତ ।

ରମାକାନ୍ତ ରଥଙ୍କ 'ଖସିପଡ଼ ମୋ କୋଳକୁ' କବିତାଟିରେ ମଧ୍ୟ ନାୟକର ବ୍ୟର୍ଥତାବୋଧ ଅନୁରୂପ ଭାବେ ଗଭୀର । କବିତାର ପ୍ରାରମ୍ଭରୁ ଯୂଇଫୁଲ ବିମଣ୍ଡିତା ନାୟିକାର ଜୁଡ଼ା ପ୍ରତି ନାୟକର ଆସକ୍ତି ରୋମାଣ୍ଟିକ ଚେତନାକୁ ଉଦ୍ଦୀପ୍ତ କରୁଥିବା ଭଳି ମନେହୁଏ (୧୮) । କିନ୍ତୁ ଏହି ଯୂଇଫୁଲ ମଣ୍ଡିତା ନାୟିକାର ସ୍ଥିତି 'ହାଡ ଓ ପାଉଁଶଙ୍କର ଉଦ୍‌ଭ୍ରାନ୍ତ ଜାହାଜ'ରେ ବିପନ୍ନ । 'ହାଡ ଓ ପାଉଁଶର ଜାହାଜ' ଏଠାରେ ମୃତ୍ୟୁ ଚେତନାର ଦ୍ୟୋତକ । ନାୟକ, ସେହି ମୃତ୍ୟୁମୁଖୀ ପରିବେଶ ମଧ୍ୟରୁ ନାୟିକାକୁ ଉଦ୍ଧାର କରିବା ପାଇଁ ବଦ୍ଧପରିକର, ମାତ୍ର ନାୟକର ଅବଚେତନ ଏକାନ୍ତ ଶୋକାକୁଳ । ତା'ର ବିଛଣାର ସଫା ଗୁଦରେ ନାୟିକାକୁ ମିଳନ ପାଇଁ ଆହ୍ୱାନ ଦେଉଥିଲେ ମଧ୍ୟ, ନାୟକର ପରିପାର୍ଶ୍ୱ ଏକାନ୍ତ ବିପର୍ଯ୍ୟସ୍ତ । ହଳଦୀ ବସନ୍ତ ଅଥବା କୋଇଲିର କାକଳିରେ ନାୟକର ଜୀବନ ମୁଖରିତ ନୁହେଁ । ହଂସ ବା ସାରସର କୂଜନ ତା ପାଇଁ ବିଡ଼ମ୍ବିତ । ମ୍ୟାକ୍‌ନିସ୍‌ଙ୍କ କବିତାର ନାୟକ ପରି (୧୮ କ) କୁଆପଲଙ୍କର ମେଳଣ ରମାକାନ୍ତଙ୍କ ନାୟକ-ଜୀବନର ଏକ ଅନୁଭୂତ ସତ୍ୟ । ଜୀବନର ଏହି ବିଡ଼ମ୍ବନା ସତ୍ତ୍ୱେ ନାୟିକାକୁ ସେ ତା'ର ଶୟନ କକ୍ଷରେ ସ୍ୱାଗତ କରିବା ପାଇଁ ପ୍ରତୀକ୍ଷମାଣ । କିନ୍ତୁ ନାୟକର ଶୟନ କକ୍ଷ ମଧ୍ୟ ଅସଂଖ୍ୟ ମୂଷାଙ୍କ ଶବରେ ପରିପୂର୍ଣ୍ଣ (୧୯) । ଶୟନ କକ୍ଷର ଏହି ମଲା ମୂଷା ପ୍ରତୀକଗୁଡ଼ିକ ମଧ୍ୟରେ ମୃତ୍ୟୁ ଚେତନା ପରିସ୍ଫୁଟ । ଉଭୟ ନାୟକ ଓ ନାୟିକା—ଏହି ମୃତ୍ୟୁବୋଧରୁ ଉତ୍ତୀର୍ଣ୍ଣ ହେବା ପାଇଁ ଆକୁଳ । ସେମାନଙ୍କ ଜୀବନର କୋଠରି, ପର୍ଦ୍ଦା, ସଡ଼ା ଦୁର୍ଗନ୍ଧରୁ ମୁକ୍ତ ହେବ । ପ୍ରକୋଷ୍ଠର ଚନ୍ଦନ ସୁରଭି ସେମାନଙ୍କୁ ବିମୋହିତ କରିବ । କୁଆପଲଙ୍କର କର୍କଶ କା କା ରବ ପରିବର୍ତ୍ତେ ହଳଦୀବସନ୍ତର କୂଜନ ନିନାଦିତ ହେବ ।

କିନ୍ତୁ ନାୟକର ବ୍ୟର୍ଥତାବୋଧ ଏତେ ଗଭୀର ଯେ ତା'ର ସ୍ୱପ୍ନରେ ମଧ୍ୟ ଜୀବନଧର୍ମୀ ପ୍ରାଣପ୍ରାଚୁର୍ଯ୍ୟ ଅନନୁଭୂତ । ନାୟିକା ସହ ଅବଚେତନ ସ୍ତରରେ ତା'ର ମିଳନସ୍ଥଳୀ ସେଇ ଭଙ୍ଗାରୁଜା ଅନ୍ଧକାରଗ୍ରସ୍ତ ପରିବେଶ—

"× × ଆହୁରି ଦେଖିଛୁ ଯେ ହସି ହସି ଧାଉଁଥିବ
ତମେ ଓ ତମର
ପଛେ ପଛେ ମୁଁ ଧାଇଁବି, ଆମେ ଦୁହେଁ
ଦୁଲଦାଲ କରି
ଅନ୍ଧାର କୂଅର ଭଙ୍ଗା ଚୌତରାରେ ପଡ଼ିବା × × (୨୦)"

'ଅନ୍ଧାର କୂଅର ଭଙ୍ଗା ଚୌତରା', ନାୟକର ଦଗ୍ଧମୃତ ଜୀବନାନୁଭୂତିର ଏକ ଦୃଶ୍ୟମାନ ରୂପ । ଜୀବନର ବ୍ୟର୍ଥତା ଓ ବିଫଳତା ସମ୍ପର୍କିତ ସତ୍ୟ-ପ୍ରେକ୍ଷଣ, 'ଖସି ପଡ଼ ମୋ କୋଳକୁ' କବିତାର ପ୍ରତିପାଦ୍ୟ ବକ୍ତବ୍ୟ ।

'ବାଘ ଶିକାର' କବିତାର ଅବଚେତନ ସ୍ତର ବିଶ୍ଳେଷଣ ଅପେକ୍ଷାକୃତ ଜଟିଳ । ବାଘ ଶିକାର ପାଇଁ ନାୟକ ଏଠାରେ ଉନ୍ମୁଖ । 'ବାଘ' ପ୍ରତୀକ ଶାସିତ କବିତାରେ ବ୍ୟକ୍ତିର ଅଭୀପ୍‌ସିତ ଲକ୍ଷ୍ୟର ଦ୍ୟୋତକ । ଏହି ଅଭୀପ୍‌ସିତ ଲକ୍ଷ୍ୟ ହାସଲ ଦିଗରେ ସେ ଗଲାଦିଗର୍ମ ହୋଇ ଗତିଶୀଳ । ଜୀବନର ଯାତ୍ରାପଥରେ ବହୁ ଭିନ୍ନ ସଫଳତା ସେ ଲାଭ କରିଛି । ଏ ସବୁ ସତ୍ତ୍ୱେ ଏକ ଅପୂର୍ଣ୍ଣତାବୋଧରେ ଅବଚେତନ ମନ ଆଚ୍ଛନ୍ନ । ଶେଷରେ ଏଇ ଅପୂର୍ଣ୍ଣତାକୁ ସାଥିରେ ନେଇ ତା'ର ମୃତ୍ୟୁ ଓ ଶ୍ମଶାନ-ଯାତ୍ରା ଯାବତ୍‌ଜୀବନ ଚେତନାଲୋକରେ ବାଘ ଅଦୃଶ୍ୟ ତଥା ଅନୁପଲବ୍‌ଧ (୨୧) ।

ଅଥଚ ଅବଚେତନ ସ୍ତରରେ ବାଘ ସହ ନାୟକର ସମ୍ପର୍କ ନିବିଡ଼ । ତା'ର ଅନ୍ତର୍ଲୋକରେ ବ୍ୟାଘ୍ରବତ୍ ବହୁ ହିଂସ୍ରପ୍ରବୃତ୍ତି ବିଦ୍ୟମାନ । ନାୟକ ସେଇ ପ୍ରବୃତ୍ତିର ଉଦ୍‌ଗମନ ମାଧ୍ୟମରେ ବାଘକୁ ବଶୀଭୂତ କରିବାକୁ କାମନା କରେ । କିନ୍ତୁ ସେ ପ୍ରବୃତ୍ତି ଅନାୟତ୍ତ । ତାହାକୁ ବନ୍ଦ କରିବାକୁ ଯାଇ, ତା'ର ଅନ୍ତର୍ଲୋକ କ୍ଷତାକ୍ତ । ନାୟକର ଅବଚେତନ ସ୍ତରରେ ଉଭୟ ଯୌନପ୍ରବୃତ୍ତି (Sex Instinct) ଓ ମୃତ୍ୟୁ ପ୍ରବୃତ୍ତି (Death Instinct) ବାଘ ପ୍ରତୀକକୁ କେନ୍ଦ୍ରକରି ବିବର୍ତ୍ତିତ—

"ଆମର ଅଗଣା ଯାଏ ମୃତାଙ୍କର ସିଲହଟ ଓ
ସେମାନଙ୍କ ଗୁଳିରେ ଛୁ ଇଟର
ହାଙ୍ଗୁଳା ପିଠିରେ ଖଟ ଯୋଉଁଥାନ୍ତି ଅନ୍ୟାନ୍ୟ ଯୁବତୀ
ଆମେ ଦେଖିନାହୁଁ ବାଘ; ଦେଖି ନାହୁଁ କୌଣସି ହୀରୋକ

ତଥାପି ବିଶ୍ୱାସ କରୁଁ, ଶବଦ ଦ୍ୱାରା ଏ ବାଘ ଓ
ସ୍ତ୍ରୀ ଲୋକ ନିର୍ମିତ ।
ଆମେ •ବ ଶବ୍ଦର ଅଂଶ, ଆମେ ତେଣୁ ବାଘ ଓ ସ୍ତ୍ରୀଲୋକ ।
ଆମେ ସେ ଲମ୍ଫର କ୍ଷୁଧା, ସେ ମୃତ୍ୟୁର ଅସହାୟ ହାତ
ରାତ୍ରିର ଅନ୍ଧାର ଆମେ, ଜଙ୍ଗଲର ଦୋଷରା ସ୍ୱଭାବ,
ଆମେ ସେ ଶୁଖିଲା କାନ୍ଧ ଛିନ୍ ଭିନ୍ ଜଙ୍ଘର ନିର୍ମୋକ (୨୨) ।"

ନାୟକର ମନର ଅଳିନ୍ଦରେ ମୃତ୍ୟୁ ଚେତନା ଓ ଯୌନଚେତନା ଯୁଗପତ୍ ସଂକ୍ରମିତ । ଅଗଣାର ମୃଷାଙ୍କ ସିଲହଟ ଓ ଫୁଙ୍ଗୁଳା ପିଠିରେ ଖଟ୍‌ପୋଇଁ ଥିବା ଯୁବତୀ ପଂକ୍ତି ଦୁଇଟି ଯଥାକ୍ରମେ ମୃତ୍ୟୁ ଓ ମୈଥୁନ-ସଂପର୍କିତ କାମନାର ବାହକ । ନାୟକର ବହୁ ଭିନ୍ନ ଅଭୀପ୍‌ସା ମଧ୍ୟରୁ ନାରୀ ସଂସର୍ଗ ବାସନା ଅନ୍ୟତମ । ନାରୀ ଓ ବାଘ ଗୋଟିଏ ସୂତ୍ରରେ ଗ୍ରଥିତ । ନାୟକର ଉଦଗ୍ର ଜୈବିକ ଅଭୀପ୍‌ସାର ଉଦ୍‌ବେଲନ ଏହି ପ୍ରତୀକ ମାଧ୍ୟମରେ ସୂଚିତ । ସୃଷ୍ଟିର କେଉଁ ଅନାଦି ଅତୀତରୁ ଏହି ଜୈବିକ କାମନା ପ୍ରବାହିତ । ସେହି କ୍ରମପ୍ରବାହ ସହ ନାୟକର ବ୍ୟକ୍ତିସତ୍ତା ମଧ୍ୟ ଜଡ଼ିତ । ନାୟକର ଚେତନାରେ ଦୁଇଟି ମୌଳିକ ଚିତ୍ରକଳ୍ପ (Primordial Image) ବିଦ୍ୟମାନ । ସେଥି ମଧ୍ୟରୁ ଗୋଟିଏ ଆନିମସ୍ (ପୁରୁଷସତ୍ତା) ଓ ଅନ୍ୟଟି ଆନିମା (ନାରୀସତ୍ତା) । 'ଆମେ ବି ଶବ୍‌ଦର ଅଂଶ/ଆମେ ତେଣୁ ବାଘ ଓ ସ୍ତ୍ରୀ ଲୋକ' ପଂକ୍ତିରେ ଏହା ପ୍ରମୂର୍ତ୍ତ । ଉଦ୍ଧୃତ ପଂକ୍ତିର 'ଶବ୍‌ଦ'—ଏଠାରେ ନିଖିଳ ସୃଷ୍ଟିସତ୍ତା । ବ୍ୟକ୍ତିର ଅବଚେତନ ବିଶ୍ୱରେ ଥାନାଟସ୍ (ମୃତ୍ୟୁ ପ୍ରବୃତ୍ତି)ର ପ୍ରାଦୁର୍ଭାବ ପ୍ରବଳ । ବହିର୍ବିଶ୍ୱର ସୁପ୍ତ ଏରସ (ଜୀବନଧର୍ମୀ ପ୍ରବୃତ୍ତି) ସେଠାରେ ନିଷ୍ପ୍ରଭ । 'ରାତ୍ରିର ଅନ୍ଧାର' ଓ 'ଛିନ୍‌ଭିନ୍ ଜଙ୍ଘର ନିର୍ମୋକ' ଅଂଶରେ ଏହି ମୃତ୍ୟୁବୋଧର ସୂଚନା ପ୍ରଦତ୍ତ । ନାୟକର ଅବଚେତନ ଚିତ୍ତର ବିଭିନ୍ନ ଭାବନା, ଭିନ୍ନ ଭିନ୍ନ ଅନୁଷଙ୍ଗ ମାଧ୍ୟମରେ ଆଲୋଚ୍ୟ କବିତାଟିରେ ଉନ୍ମୋଚିତ—

"ହଠାତ୍ ରାତିବେଶି ହେଲା ଓ ମୁଁ ସାମାନ୍ୟ ଘୁମାଇ ଦେଖିଲି
ସ୍ୱପ୍ନ ଯେ ଗଲିଛି ଜିପ୍ ଘୋଡା ନାଲ ମୋଡାଣି ଉପରେ
ବ୍ରେକ୍‌ର ଧକ୍‌କାରେ ଉଠି ଗଲୁଁ ତ ମୁଁ ଠିକ୍ ସେହିପରି
ମୋଡାଣି ଉପରେ ଆମେ ସତେ କ'ଣ ସ୍ୱପ୍ନ ଥିଲା ତାହା
ମୋ ଚାହାଁ ଯୁବତୀମାନେ ମଲ୍ଲ ମଲ୍ଲ କଣ୍ଠା ଯା'ନ୍ତି ମତେ
ଗୃହଆଡ଼ ବନ୍ଦ ଏବଂ ଗାଢ଼ କୁହୁଡ଼ିର ଧୂଆଁ
ମଟରର କାଚଟାଙ୍କେ, ଆସ୍ତେ ଆସ୍ତେ କାଲୁ କାଲୁ ହସେ (୨୩) ।"

‘ଜିପ୍‌ର ଗତି’, ‘ବ୍ରେକ୍’, ‘ଦଗ୍ଧା ଯୁବତୀ’, ‘ମଟର କାଚ’ ଓ ‘କୁହୁଡ଼ିଧୂଆଁ’ ଆଦି ଏଠାରେ ଏକ ଏକ ଅନୁଷଙ୍ଗ, ଯାହା ମାଧ୍ୟମରେ ନାୟକର ମଗ୍ନଚୈତନ୍ୟ ଉଦ୍‌ବୋଧିତ । ନାୟକର ଚେତନସତ୍ତା ବହୁ ଅପୂର୍ଣ୍ଣତା ଓ ଅପ୍ରାପ୍ତିର ବେଦନାରେ ବିକ୍ଷୁବ୍ଧ । ଏଣୁ ଅବଚେତନ ସ୍ତରରେ ପର୍ଯ୍ୟନ୍ତ ଅନ୍ୱେଷଣର ଅନୁଭୂତି ଉଦ୍‌ବେଳିତ, କିନ୍ତୁ ଅବଚେତନ ସ୍ତରରେ ମଧ୍ୟ ଚେତନ ସ୍ତରର ଶେଷହୀନ ଅପୂର୍ଣ୍ଣତା ସଂକ୍ରମିତ । ଏଣୁ ଜିପ୍‌ର ତୀବ୍ର ଗତିବେଗରେ ଇଚ୍ଛା ଉଲ୍ଲସିତ ହୋଇ ପଡୁଥିବା ବେଳେ ବ୍ରେକ୍‌ର ଧକ୍‌କାରେ ନାୟକର ସୁଖ ସ୍ୱପ୍ନ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଏ । ଜୀବନର ପ୍ରଲମ୍ବିତ ଗତି-ପଥ କେବଳ କୁହୁଡ଼ି ଭଳି ଧୂମ୍ରାଚ୍ଛନ୍ନ ହୋଇପଡ଼େ । ନାୟକର ପରିଚିତ ତରୁଣୀ-ମାନଙ୍କର ମୃତ୍ୟୁ ସ୍ୱରୂପ ମଧ୍ୟରେ, ମୃତ୍ୟୁର ବିଷଣ୍ଣତା ମୂର୍ତ୍ତିମନ୍ତ ହୁଏ । ତଥାପି ନାୟକ ଜୀବନର ଅଭିପ୍ସିତ ଲକ୍ଷ୍ୟ ହାସଲ ଦିଗରୁ ଅନଢ଼ୁଅଛି । ସେହି ଲକ୍ଷ୍ୟ ହେଉଛି ବାଘ, ନାୟକର ଅପୂର୍ଣ୍ଣ ଅଭିପ୍ସାର ପ୍ରତୀକ । କିନ୍ତୁ ନାୟକର ଜୀବନରେ ବାଘ ଶିକାର ଏକ ବ୍ୟର୍ଥ ପ୍ରୟାସ । ଏଣୁ ଅବଚେତନର ଅନ୍ଧକାର ମଧ୍ୟରେ ସେ ଊର୍ଦ୍ଧ୍ୱଶ୍ୱାସରେ ଅଗ୍ରଗାମୀ ହେବା ବେଳେ ନିଜର ଛାୟା ସହ ସଂଘର୍ଷରତ । ‘ବାଘ’ ନିରନ୍ତର ଅରଣ୍ୟ ମଧ୍ୟରେ ଅନ୍ତର୍ହିତ—

“× × × ହାଏ ହାଏ ପବନ ଗ୍ରନ୍ଥିର
ଅଁଳିଲାଣି ଫୁରୁ ଫୁରୁ କରି ଆମ ଅଠାଦିଆ ବାଳ,
ଆଖିର ପତାକୁ ଜାଳି, ଗୁଣିଆଡ଼େ ଚର୍ଚ୍ଚିଗ୍ଧ କାନ୍ଥରେ,
ଆମେ ଯେବେ ଦୌଡ଼ିଲୁଁ ଅନ୍ଧାରରେ ଛନ୍ଦି ହୋଇ ନିଜର ତନ୍ତୁରେ
ବାଘ ଆଡ଼େ, ବାଘ ଗାଲ୍ଲି ହଜି ଜଙ୍ଗଲରେ (୨୪) ।”

ନାୟକର ମଥାରେ କୃତ୍ରିମ କେଶବିନ୍ୟାସ, ପବନର ପ୍ରବାହରେ ତାହା ବିପର୍ଯ୍ୟସ୍ତ । ନାୟକ ଏଠାରେ କେବଳ ସୌକୁମାର୍ଯ୍ୟ-ବିହୀନ ନୁହେଁ, ଅଧିକନ୍ତୁ ଆତ୍ମ-ଶକ୍ତି ଶୂନ୍ୟ ମଧ୍ୟ । ଏଣୁ ସେ ବାଘ ଶିକାର ପାଇଁ ଅସମର୍ଥ । ବାଘ ଜଙ୍ଗଲରେ ଅନ୍ତର୍ହିତ । ମନୋବୈଜ୍ଞାନିକ ଫ୍ରଏଡ଼ଙ୍କ ଭାଷାରେ—ମନର ଏକ ଦଶମାଂଶ ମାତ୍ର ଚେତନ ଅବସ୍ଥାରେ ପ୍ରକଟିତ । ଅବଶିଷ୍ଟାଂଶ ଅବଚେତନର ଅତଳଗହ୍ୱରରେ ନିମଜ୍ଜିତ । ଅବଚେତନର ଏ ଗଭୀରତା ‘ଜଙ୍ଗଲ’ ପ୍ରତୀକ ମାଧ୍ୟମରେ ପ୍ରକଟିତ ।

ଜୀବନର ଅଭିପ୍ସିତ ଲକ୍ଷ୍ୟ ହାସଲର ଅପୂର୍ଣ୍ଣତା ନାୟକକୁ ଜୈବିକ କାମନାର ପରିପୂରଣ ପାଇଁ ଅଧିକ ଉନ୍ମତ୍ତ କରିବା ଭଳି ମନେହୁଏ । ଏହି ଜୈବିକ କାମନାର ଅପୂର୍ତ୍ତି ଜନିତ ଦୁଶ୍ଚିନ୍ତା ମଧ୍ୟରେ ନାୟକ ମାନସିକ ବିକାରଗ୍ରସ୍ତ । ତା’ର କୁତ୍ସିତ ଯୌନାତ୍ମକ ପ୍ରୟାସ ମଧ୍ୟରେ ଏହା ସୂଚିତ (୨୫) ।

ନାୟକ ଭଳି ନାୟିକା ମଧ୍ୟ ଜୈବିକ ବାସନାର ବଳୟରେ ଆବଦ୍ଧ । ନାୟିକା ରୁଗ୍‌ଣା । ସେ ଚିକିତ୍ସାଳୟର ଏକ ରୋଗିଣୀ । ତା'ର ମୁଖର ମାଂସ-ପେଶୀରେ ତୀବ୍ର ଯନ୍ତ୍ରଣା । ବକ୍ଷରେ ହିଂସ୍ର, ଦନ୍ତ ଚିହ୍ନ । କିନ୍ତୁ ବେଳେହୁଏ ଏହି ତୀବ୍ର ଯନ୍ତ୍ରଣା ଓ କ୍ଷତଚିହ୍ନ ହିଁ ନାୟିକାର ସ୍ୱାଗତଯୋଗ୍ୟ । ଅନ୍ତର୍ଲୋକର ଅବଚେତନ ସ୍ତରରେ ଏହି ଜୈବିକ କାମନାର ପରିତୃପ୍ତି ପ୍ରସୂତ ଯନ୍ତ୍ରଣା ଆମନ୍ତ୍ରିତ । ଏଠାରେ ନାୟିକାର ଯୌନ-ଉଦ୍ଦୀପକ ପ୍ରତୀକଟି ହେଉଛି ବାଘ । ନାୟିକାର ଦେହର ମହମ-ବତୀରେ କାମନାର ଅଗ୍ନିଶିଖାର ପ୍ରଜ୍ୱଳନ । କିନ୍ତୁ ଅଭୀପ୍‌ସା ଅପରିପୂର୍ଣ୍ଣ । କାରଣ କାମନାର ପ୍ରଶମନ ପରିବର୍ତ୍ତେ, ତା'ର ଉତ୍ତରୋତ୍ତର ଉଦ୍‌ବେଳନ ମଧ୍ୟରେ ନାୟିକା ଏକ ଶେଷହୀନ ଅଶାନ୍ତି ଓ ଅତୃପ୍ତି ବୋଧରେ ଦଗ୍‌ଧୀଭୂତ । କାମନାର ହିଂସ୍ର ବ୍ୟାଘ୍ର ଦ୍ୱାରା ତା'ର ଶରୀର ବଶୀଭୂତ, ଶିକାର ପାଇଁ ଉଦ୍ଦିଷ୍ଟ ବାଘ, ଅବଲୀଳା କ୍ରମେ ଶିକାରୀରେ ରୂପାନ୍ତରିତ ।

ଅନ୍ୟ ପକ୍ଷରେ ନାୟକ ମଧ୍ୟ ଶିକାରୀ ବାଘଟିର କବଳରେ ପୀଡ଼ିତ । ତା'ର ଜୀବନରେ କାମନାର ନିତ୍ୟନୈମିତ୍ତିକ ଅଗ୍ନିସ୍ନାନ । ଐହିକ ଜୀବନର ବାସନାର ଅଗ୍ନି-କୁଣ୍ଡରେ ତା'ର ପୂର୍ଣ୍ଣାହୁତି । ନାୟକ, ସମଗ୍ର ଜୀବନ ଏଇ କାମନା କବଳରୁ ମୁକ୍ତି ପାଇଁ ପ୍ରଚେଷ୍ଟା କରେ । କିନ୍ତୁ ଶେଷ ପର୍ଯ୍ୟନ୍ତ ତା'ର ପରିତ୍ରାଣ ସମ୍ଭବ ହୁଏ ନାହିଁ । ଅବ-ଚେତନ ସ୍ତରରେ ବାଘ ଶିକାର ପାଇଁ ସମସ୍ତ ସତର୍କତା ସତ୍ତ୍ୱେ ଜୀବନର ଖଡ଼ ଗୋହାଳି ଭିତରକୁ ଅନାୟାସରେ ବାଘ ଅନୁପ୍ରବେଶ କରେ (୨୬) ।

ବସ୍ତୁତଃ 'ବାଘ ଶିକାର'ର କାବ୍ୟ ନାୟକ ଓ କାବ୍ୟ-ନାୟିକା ଉଭୟ, ସମଗ୍ର ଜୀବନ ନିଜ ନିଜ ଅଭୀପ୍‌ସାର ପରିପୂରଣ ପାଇଁ କ୍ରିୟାଶୀଳ । 'ବାଘ ଶିକାର'ର 'ବାଘ' ଏପରି ଲକ୍ଷ୍ୟର ପ୍ରତୀକ, ଯାହା ଜୀବନର ବିଭିନ୍ନ ଅବସ୍ଥାରେ ସମାନ୍ତରାଳ ଭାବେ ଆକର୍ଷଣୀୟ । ଅନ୍ୟ କଥାରେ କହିଲେ, ତାହା ବ୍ୟକ୍ତିର ପାର୍ଥିବ ଅଭୀପ୍‌ସାର ଚରମ ବିନ୍ଦୁର ପ୍ରତୀକ । ମାତ୍ର ବ୍ୟକ୍ତି ଜୀବନର ଅପରିପୂର୍ଣ୍ଣତା, କଳୁଷତା ତଥା ସୀମିତତା ଏତେ ଗଭୀର ଯେ ଜୀବନକାଳ ମଧ୍ୟରେ ସେହି ଅଭୀପ୍‌ସିତ ଲକ୍ଷ୍ୟରେ ସେ ଅନୁପନୀତ । ସେଇ ଅପୂର୍ଣ୍ଣତା ପ୍ରସୂତ କ୍ଳାନ୍ତିରେ ସେ ଅବସନ୍ନ (୨୭) ।

ସୌଭାଗ୍ୟ ମିଶ୍ରଙ୍କ 'ମହମବତୀ' କବିତାରେ 'ମହମବତୀ' ନାୟକର ଦୈହିକ ସ୍ଥିତିର ପ୍ରତୀକ—ଯାହା ନିତ୍ୟନୈମିତ୍ତିକ କ୍ଷୟମାଣ । ଦେହର କ୍ଷୟମାଣ ସ୍ୱରୂପ ମଧ୍ୟରେ ନାୟକ ନିଜର ଅନ୍ତଃସତ୍ତା ସହିତ ଅଧିକରୁ ଅଧିକତର ପରିଚିତ—

"ତେଣୁ ଆଜି ଶବ ପରି ଶେତା କାଗଜର କପାଳରେ
ଦେହର ମହମବତୀ ତରଳାଇ ମୁଁ ନିଜକୁ ପଢିବି (୨୮) ।"

ନାୟକର ଅନ୍ତଃସତ୍ତା ଏଠାରେ ଏକାନ୍ତ ଦୟନୀୟ । କାରଣ ନାୟକର ଅନ୍ତର୍ଲୋକ ଆତ୍ମପ୍ରକଟିତ ହେବାର ପୃଷ୍ଠପଟ ହେଉଛି, ନିର୍ଜୀବ, ନିଷ୍ପ୍ରାଣ ମୃତପିଣ୍ଡବତ୍ କପାଳ । ମସ୍ତିଷ୍କର ଅବଚେତନ ସ୍ତରରେ ତା'ର ସ୍ଥିତି ଅତ୍ୟନ୍ତ ବେଦନା ବିଦଗ୍ଧ, ଅବଚେତନ ବିଶ୍ଳେଷଣର ସ୍ଥାନ ଏକ ନିରୁଦ୍ଧ କୋଠରୀ । ସମସ୍ତ ଘଡି-ବାରଟା । ଏହି ଭଳି ଏକ ନିରିଡ଼, ନିର୍ଜନ କକ୍ଷ ଭିତରେ, ନାୟକ ଅନ୍ତଃସତ୍ତାର ସ୍ୱରୂପ ପ୍ରଦର୍ଶନ ପାଇଁ ଉନ୍ମୁଖ—

"ଘଣ୍ଟାରେ ବାରଟି କାନ୍ଥ ମୋ କୋଠରୀ ବନ୍ଦ କରିଦେଲା
ଭିତରେ ମୁଁ ସ୍ୱଇଚ୍ଛାରେ ଖୁର୍ଜି ଦେଇ ନିଜକୁ (୨୯) ।"

ନିଶାର୍ଦ୍ଧର ସାନ୍ଦ୍ରତମ ମୁହୂର୍ତ୍ତଟି କାବ୍ୟ-ନାୟକ ପାଇଁ କିଭଳି ଶୋକାପ୍ଲୁତ, ତାହା 'ଘଣ୍ଟାର ବାରଟି କାନ୍ଥ' ମଧ୍ୟରେ ସୂଚିତ । ଏହିଭଳି ଏକ ବେଦନାବିଦଗ୍ଧ ସ୍ଥିତି ମଧ୍ୟରେ ନାୟକର ଅବଚେତନ ଚିତ୍ତର ଦୃଶ୍ୟ ଉନ୍ମୋଚିତ । ଅବଚେତନର ଦୃଶ୍ୟମାଳା ମଧ୍ୟରେ ସଜ୍ଜିତ ହୋଇଛି ଏକ ନାରୀ ମୂର୍ତ୍ତି । ଚେତନସତ୍ତାରେ ପରିଚିତ ପୂର୍ବରୁ କେଉଁ ଅନାଦି, ଅନନ୍ତ କାଳରୁ ନାୟକର ସାମୂହିକ ଅବଚେତନ (Collective unconscious)ରେ ଏହି ନାରୀସତ୍ତାଟି ବିଦ୍ୟମାନ । ଅବଚେତନ ସ୍ତରରେ ଏହି ନାରୀ ସଂସର୍ଗର ବାସନା ପ୍ରବଳ । ତା'ର ଜୀବନ କୋମଳ, ସୁକୁମାର ଅନୁଭୂତିରେ ଚଳ ଚଳ, ପଶ୍ଚାତ୍ତରେ କର୍କଶ, କଠିନ ଅଭିଜ୍ଞତାର ଉପଲବ୍ଧିରେ ରୁକ୍ଷ ଓ କଙ୍କରିଳ ମଧ୍ୟ । ନାୟକର ଚେତନସତ୍ତା ନିରୁଦ୍ ବିଗ୍ନ, ସମୃଦ୍ଧ ସାମାଜିକ ସ୍ଥିତିରେ ମହାସ୍ଥାନ, କିନ୍ତୁ ଅବଚେତନ ଏକାନ୍ତ ଦୁଃଖଦ ଅନୁଭୂତିରେ ବିଷାଦଗ୍ରସ୍ତ—ଏହି ବିଷାଦ ଉଭୟ ଜୈବିକ କାମନାର ଅପ୍ରାପ୍ତି ଓ ମୃତ୍ୟୁ ଚେତନାର ତୀବ୍ରତାର ବଳୟରୁ ପ୍ରସୂତ । ନାୟିକାକୁ ଆୟତ୍ତ କରିବାର ଏକ ସର୍ବଗ୍ରାସୀ କାମନା ତା'ର ଅନ୍ତରରେ ଅନ୍ତଃସ୍ଥିତ । ଅଥଚ ସେ ଭୀରୁ, ନାୟିକାର ଦାୟିତ୍ୱ ଗ୍ରହଣ କରିବା ପାଇଁ ଅସମର୍ଥ । ଏଣୁ ନାୟକ ଓ ନାୟିକା, ଅନ୍ତର୍ଚେତନାରେ ସ୍ୱପ୍ନମୁଗ୍ଧ ପ୍ରଣୟର ବାସନାରେ ବନ୍ଧୀର ହୁଅନ୍ତି, ସେମାନେ ପରସ୍ପରଠାରୁ ବିଚ୍ଛିନ୍ନ । ଏହି ବିଚ୍ଛିନ୍ନତାବୋଧ ମଧ୍ୟରେ ନାୟକର ସ୍ଥିତି ମ୍ରିୟମାଣ ।

ସୌଭାଗ୍ୟ ମିଶ୍ରଙ୍କ 'ଶିକାର' କବିତାର ନାୟକ ଜୀବନର ଅସଂଖ୍ୟ ଘଟଣା ପ୍ରବାହର ଅନ୍ତିମ ତଥା ସାର୍ଥକ ସଂଜ୍ଞାର ଉପଲବ୍ଧି ପାଇଁ ଅନୁସନ୍ଧାନରତ । 'ମହାମବନ୍ତ' କବିତା ପରି 'ଶିକାର' କବିତାର ପରିବେଶ ମଧ୍ୟ ରାତ୍ରିର ନିରନ୍ଧ୍ର ଅନ୍ଧାର । ଏହି ନିରବଚ୍ଛିନ୍ନ ଅନ୍ଧକାର ମଧ୍ୟରେ ନାୟକର ମୃଗୟା ପ୍ରବୃତ୍ତି ଉଦ୍ ବେଳିତ—

"କାଲି ରାତି ସାଢ଼େ ଗୋଟେ ବେଳେ ମୁଁ ବାହାରିପାରେ
ଶିକାରରେ, ଜପ୍ ଧରି ନିଶମୋଡ଼ି ତା' ଆଖିର

ହ୍ରଦ କୂଳେ କୂଳେ କୋଉ ଅରଣ୍ୟକୁ ପାହାଡ଼କୁ
ବିପଦ ଆସିଲେ ଆସେ ମଇଁଷି ଯୁଥରେ (୩୦) ।"

ନାୟିକାର ଆଖିର ହ୍ରଦରୁ ଦୂର ଅରଣ୍ୟ, ପର୍ବତକୁ ଯାତ୍ରା ଆପାତତଃ ଏକ ରୋମାଣ୍ଟିକ ଦୃଷ୍ଟିଭଙ୍ଗୀର ପରିପ୍ରକାଶକ । କିନ୍ତୁ ରୋମାଞ୍ଚ ଓ ଶିହରଣ ଏଠାରେ କ୍ଷଣସ୍ଥାୟୀ । କାରଣ ଏହି ଉଦ୍ଦାମ ଦୂରଗାମୀ ଯାତ୍ରାର ଶେଷପରିଣତି ସଂପର୍କରେ ନାୟକ ସଚେତନ । ଜୀବନର ଗତିପଥରେ, ବହୁଭିନ୍ନ ଅନୁଭୂତି ହାସଲ କରିବା ପାଇଁ ନାୟକ ଅଗ୍ରଗାମୀ ହେବା ବେଳେ, ମୃତ୍ୟୁର ସମ୍ମୁଖୀନ ହେବା ବିଚିତ୍ର ଅଥବା ଅସ୍ୱାଭାବିକ ନୁହେଁ, ତଥାପି ତା'ର ଅବଚେତନ ଚିତ୍ତରେ ବହୁପାର୍ଶ୍ୱିକ ଜୀବନାନୁଭୂତିକୁ ଆୟତ୍ତ କରିବାପାଇଁ ଅଭୀପ୍ସା ଅବାରିତ । ଏଣୁ 'ଶିକାର' କବିତାର 'ପ୍ରମତ୍ତ ଶିକାରୀ' ହେଉଛି ସ୍ୱୟଂକାବ୍ୟନାୟକ, ଯିଏ—

"ନଦୀରେ ପହଁରିପାରେ, ପାହାଡ଼ ଚଢ଼ିପାରେ ନା ସେ ଯାଏ
ଅନ୍ୟ ବହୁ ବିଦାୟର ଫ୍ରେମ୍‌ରେ ବାନ୍ଧିବ
ନିଜ ଦର୍ପୀ ଶିକାରର ଫଟୋଗ୍ରାଫ ଶିକାରୀ ଠାଣିରେ (୩୧) ।"

ନଦୀରେ ସନ୍ତରଣ ତଥା ପର୍ବତ ଆରୋହଣ ନାୟକର ଅଲଭ୍ୟ ଲାଭର ଅଭିଳାଷର ପ୍ରତୀକ । ରୋମାଣ୍ଟିକ କାବ୍ୟ-ନାୟକ ଭଳି ଏହି ଅଭିଳାଷର ଅପ୍ରାପ୍ତିରେ ସେ ବେଦନା ବିଧୂର ନୁହେଁ, ପକ୍ଷାନ୍ତରରେ ତା'ର ଅବଚେତନ ଚିତ୍ତ ଏକାନ୍ତ ଗର୍ବିତ । ଜୀବନର ପରିବ୍ୟାପ୍ତ କ୍ୟାନଭାସରେ ସଂଘଟିତ ଘଟଣା ସମୂହ ନିର୍ଶ୍ଚିହ୍ନ ହୋଇଯିବା ପୂର୍ବରୁ ନାୟକ ନିଜ ଅବଚେତନର କ୍ୟାମେରା ରିଲ୍‌ରେ ତାହାକୁ ଆୟତ୍ତ କରନେବା ପାଇଁ ଅଙ୍ଗୀକାରବଦ୍ଧ ।

ଅତିବାସ୍ତବବାଦୀ କାବ୍ୟ ଚେତନା ବର୍ଣ୍ଣନାତ୍ମକ ହେବା ପରିବର୍ତ୍ତେ ବ୍ୟଞ୍ଜନାତ୍ମକ । ଏହାର ସାମଗ୍ରିକ ଆବେଦନ ପ୍ରତୀକଧର୍ମୀ । ବ୍ୟକ୍ତିର ପୂର୍ଣ୍ଣାଙ୍ଗ ଜୀବନର ଚିତ୍ର ପରିବର୍ତ୍ତେ ତହିଁରେ ଅବଚେତନ ଚିତ୍ତର ଖଣ୍ଡିତ ଚିତ୍ରମାଳା ସଂଯୋଜିତ ହୁଏ । ଅବଚେତନ ମନର ବିକ୍ଷିପ୍ତ ଚିନ୍ତାରାଶି ବିଭିନ୍ନ ଅନୁସଙ୍ଗ ମାଧ୍ୟମରେ କାବ୍ୟାୟିତ କରାଯାଏ । ଏହି ଅନୁସଙ୍ଗ ଗୁଡ଼ିକ ଏକାନ୍ତ ବ୍ୟକ୍ତିଗତ ହୋଇଥିବାରୁ ଆପାତତଃ ଦୁର୍ବୋଧ ମନେହୋଇଥାନ୍ତି । ବୌଦ୍ଧିକତାର କଷଟି ପଥରରେ ଏହାର ପ୍ରତୀକ ତଥା ଚିତ୍ରକଳ୍ପ ଗୁଡ଼ିକୁ ଚିହ୍ନିନେବାକୁ ପଡ଼ିଥାଏ । ଏହି ଚିହ୍ନିବା ଦୃଷ୍ଟିର ପାର୍ଥକ୍ୟବୋଧ ହେତୁ ଅର୍ଥ-ଅର୍ଥାନ୍ତର ମଧ୍ୟ ବ୍ୟକ୍ତିର ସ୍ୱତନ୍ତ୍ର ଚିନ୍ତାମାନସ ଯୋଗୁ ସମ୍ଭବପର ହୁଏ ।

## ପାଦଟୀକା

(୧)—"The main themes of surrealist poetry are love, revolt, the marvellous, freedom, the exaltation of desire, black-humour and the universe of sub-unscious thought."

Andre Breten—First Manifesto-1924-quoted from-Princeton Encyclopaedia of Poetry and Poetics-Page 682

(୨)—ଭିଜେଲାର ସୂକ୍ତି-କାବ୍ୟସ୍ଥିତ

(୩)—"Sand falls into the boiling rivers
through the telescopes' mouths
And forms clear drops of acid
with petals of whirling flame
Heraldic animals wade through
the asphyxia of planets,
Butterflies burst from their skins
and grow long tongues like plants,
The plants play games.
with a suit of mail like cloud."
(In Defence of Humanism—David Gascoyne)

(୪)—"The jungle of the jeering crows
has somehow crossed into my dream
to scream and circle there. I seem
in sleep to understand the crows:
Evil in the world, they scream
something on the garden path
salt as blood and cold as death
has fallen from the air, the dream."
(Black Humor—The Wild Old Wicked Man and Other Poems—Archibald Macleish)

(୫)—" × × ପ୍ରସ୍ତର ଯୁଗର ସବ୍ ଘୋଡ଼ା ଯେନ୍ ଏଖେନଓ ଘାସେର ଲୋଭେ
ଚରେ ପୃଥିବୀର କମାକାର ଡାଇନୋମର ପରେ ।
ଆସ୍ତାବଲେର ଘ୍ରାନ ଭେସେ ଏସେ ଭିଡ଼ ରାତ୍ରିର ହାଓୟାୟ × × ×
ବିପନ୍ନ ଗଡେର ଶବ୍ଦ ଝାଡ଼ ପଡ଼େ ଇସ୍ପାତେର୍ କଲେ
ଚାୟେର ପେୟାଲା × × × ×
ଘୁମ ହୟେ ନଡେ ଗେଲ ଐ ପାଶେର ରେସ୍ତୋରାଁତେ ।"
—ଘୋଡ଼ା—ଜୀବନାନନ୍ଦ ଦାସେର ଶ୍ରେଷ୍ଠ କବିତା-୨ୟୁଦ୍ଧରେ-ତୃତୀୟ ସଂସ୍କରଣ-ପୃ ୧୧୦

(୬)—"ଲୋ ସୁହ ରହା ତୁମ୍ହାରା ଚେହେରା
ସୁହ ଜୁଲୁସ୍ କେ ପିଛେ ଗିର୍ ପଡ଼ାଥା
ଇସବକ୍ତ ଇତ୍ନା କାଫି ହୈ
ବହ ବହୁତ ପହଲେ କା ବାତ ହୈ
ଆଦମ ପଶୁତା ସେ ଝଡ଼ଥି
ଔର ସାରା ନଗର ସୈନିକ୍ ପଡ଼ ତାଥା × × × ।"
—କବିତା-ଧୂମିଲ-ଆଧୁନିକ କାବ୍ୟ ସଂଗ୍ରହ—ପୃ ୨୦୧

(୭)—ସ୍ୱଗତ (୩)-୧୯୫୮—ସଚ୍ଚିରାଉତରାୟ ଗ୍ରନ୍ଥାବଳୀ-ପୃ ୫୨୨
(୮)—ତତ୍ରୈବ
(୯)—ତତ୍ରୈବ
(୧୦)—ତତ୍ରୈବ-ପୃ ୫୨୩
(୧୧)—ତତ୍ରୈବ

(୧୨)—"ସହରର ମିଞ୍ଜି ମିଞ୍ଜି କରାସିନୀ ବତୀ ଖୁମ୍ବେ, ଖୁମ୍ବେ
ଅବା କେଉଁ ଅମୁହାଁ ସୁଡଙ୍ଗେ
ଅବା କଣ୍ଟିହ୍ଣ ଗଳରେ,
ନିଜକୁ ଦେଖିବା ସେଇ ଭଙ୍ଗା ବାରଣ୍ଡାର
ନିର୍ଜନ ସିଢ଼ିରେ × × ×"
ସ୍ୱଗତ (୩)-ସ୍ୱଗତ-ସ: ରା: ଗ୍ର:-ପୃ ୫୨୩

(୧୩)—ଗୋଟିଏ ସ୍ୱପ୍ନ-କେତେ ଦିନର -ପୃ ୬—ରମାକାନ୍ତ ରଥ
(୧୪)—ତତ୍ରୈବ
(୧୫)—ତତ୍ରୈବ

(୧୬)—"× × × ମୁଁ ଅଣ ଭଲ ପାଏ,
ଶରୀରକୁ, ଜୀବନ ଯେ ମୃତ୍ୟୁଠାରୁ ଭଲ
ଏ ଧାରଣା ବାରମ୍ବାର ଭସ୍ମୀଭୂତ ମୋ ମନତଳେ ଛୁଏଁ।"
ଗୋଟିଏ ସ୍ୱପ୍ନ—କେତେ ଦିନର-ପୃ ୬

(୧୭)—ତଦୈବ

(୧୮)—"ଖସି ପଡ଼ ମୋ କୋଳକୁ ଯେ ହେତୁ ମୁଁ ସ୍ୱପ୍ନ ଦେଖିଛ ଯେ
ତମ ମୁହଁ ପର ଯାହା ମୁହଁ ସେହି ଜଣକ ପ୍ରେମରେ
ମୁଁ ପଡ଼ିବ ଏବଂ ତମେ ଯୂଇଫୁଲ ଖଞ୍ଜୁଥିବାବେଳେ
ତମର ଜୁଡ଼ାରେ ମୁଁ ଦେଖିବ ସ୍ୱପ୍ନ × ×"
(ଖସିପଡ଼ ମୋ କୋଳକୁ—ଅନେକ କୋଠରୀ-ପୃ ୫୦)

(୧୮କ) Black Humor-The Wild Old Wicked Man And Other Poems—Archibald-Macleish.

(୧୯)—"ଅଶାନ୍ତି କୁଆଙ୍କ ପଲ ଉଡ଼ୁଛନ୍ତି, ତମେ କିନ୍ତୁ ଆସ
ବିବ୍ରତ ନ ହୋଇ। ବନ୍ଧୁବନ୍ଧଲ ପଡ଼ୁଛନ୍ତି ମୋର କୋଠରୀରେ
ବହୁତ ମୃତାଙ୍କ ଶବ, ଦୁହେଁ ମିଶି ବଗିଚ୍ଛ ଆଡ଼କୁ
ଫିଙ୍ଗି ଦେବା।"-(ଖସିପଡ଼ ମୋ କୋଳକୁ-ଅନେକ କୋଠରୀ-ପୃ-୪୬)

(୨୦)—ତଦୈବ।

(୨୧)—"× × ମୁଁ ହାସ୍ୟ ମୋହର ଛିପ୍ରଖଣ୍ଡ ଗ୍ଲେଟ ଗ୍ଲେଟ ଆଖି ଯୋଗୁଁ
ତାକୁ ଦେଖି ପାରିବନି ଆଜୀବନ ଅପେକ୍ଷା ଉତ୍ତରେ।
ବାଦ ମଧ ଦେଖିବନି ମତେ, କେଉଁ ଏକ ଧୂସର ଗ୍ରୀଷ୍ମର
ଲୋକାରଣ୍ୟ ହାଓ୍ୱାତଳେ ଶୋଇଥିବ ଅସମର୍ଥ ହୋଇ × ×"
(ବାଘ ଶିକାର-ଅନେକ କୋଠରୀ-ପୃ ୧୬)

(୨୨)—ବାଘ ଶିକାର—ଅନେକ କୋଠରୀ-ପୃ ୬

(୨୩)—ତଦୈବ

(୨୪)—ତଦୈବ

(୨୫)—"ମୁଁ କପର ବନ୍ଧିଥାନ୍ତି ଯେ ବଜୁଲୀ ଲିଭିବା ଉତ୍ତାରୁ
ବାଥରୁମ୍ ଅନ୍ଧାରରେ ଅଙ୍ଗଠାରୁ ଆପେ ହୁଗଲ। × ×

ବାଥରୁମ୍ ଦର୍ଜା ପାଖେ ତମେ କ'ଣ ଭଣ୍ଡୁଥିଲ ଯେବେ
ମୁଁ ମୋର କମିଜ୍ ଭାଙ୍ଗ ଦାଗ ଦାଗ ନଷ୍ଟ କରୁଥିଲି ।"
(ବାଘ ଶିକାର-ଅନେକ କୋଠରୀ-ପୃ ୮)

(୨୬)—" × × ଝଡ଼ ଗୋଟାଳରେ ବାଘ, ରହସ୍ୟର ଆକସ୍ମିକତାରେ
ଅସଂଖ୍ୟ ସିପାହୀଙ୍କର ପ୍ଲାଟୁନକୁ ଭାଙ୍ଗି ସେ ନିଶ୍ଚିତ
ସେ ସ୍ୱପ୍ନରେ ଯାହା ଫୁଟେ ବନା କଢ଼ି ବନା ଉଦ୍ୟାନରେ ।"
(ବାଘ ଶିକାର-ଅନେକ କୋଠରୀ-ପୃ ୧୫)

(୨୭)—"ତମେ ଯାହା ଖୋଜୁଥିଲ ତା' ପିଛରେ ଦୌଡ଼ିବାର ଫଳ
ଏ ମୋର କପାଳେ ଖାଲି ଅବସନ୍ନ ହତାଶାର ଝାଳ ।" (ତତ୍ରୈବ-ପୃ ୧୩)

(୨୮)—ସପ୍ତମବର୍ଷ-(୧୯୬୭)—ମଧ୍ୟପଦଲୋପୀ-ପୃ-୧୧

(୨୯)—ତତ୍ରୈବ

(୩୦)/(୩୧)—ତତ୍ରୈବ

## ପରିଶିଷ୍ଟ—(୬)

# ଉତ୍ତର-ସ୍ୱାଧୀନତା ଓଡ଼ିଆ କବିତାରେ ବାସ୍ତବବାଦୀ ଚେତନା

ପ୍ରାକ-ସ୍ୱାଧୀନତା ପରି ଉତ୍ତର-ସ୍ୱାଧୀନତାର ଓଡ଼ିଆ କବିତାରେ ବାସ୍ତବବାଦୀ ଚେତନା ସମାନ୍ତରାଳ ଭାବେ ପ୍ରତିଫଳିତ। କେତେକ ଉଲ୍ଲେଖନୀୟ ପରିବର୍ତ୍ତନ ସତ୍ତ୍ୱେ ଏହାର ମୌଳିକ ଭାବଧାରାରେ ନିବିଡ଼ ଯୋଗସୂତ୍ର ବିଦ୍ୟମାନ। ହତାଶା, ନୈରାଶ୍ୟ, ବ୍ୟଥା, ବେଦନାର ବିମର୍ଷ ବିଷାଦ ମଧ୍ୟରେ ଉଭୟ ପ୍ରୟୋଗବାଦୀ ଓ ପ୍ରଗତିବାଦୀ କବିତାର ଅନ୍ତଃସ୍ୱର ଆବର୍ତ୍ତିତ। ପ୍ରାକ୍-ସ୍ୱାଧୀନତାର କାବ୍ୟ ଚେତନା ପରି ଏହାର ପାର୍ଶ୍ୱ ଦ୍ୱିବିଧ—ଏକ ପକ୍ଷରେ ତା'ର ବ୍ୟକ୍ତି, ଅନ୍ୟ ପକ୍ଷରେ ସମାଜ। ଏକ ପକ୍ଷରେ ରାଷ୍ଟ୍ର, ଅନ୍ୟ ପକ୍ଷରେ ନାଗରିକ। ଗୋଟିଏ କକ୍ଷରେ ଅବହେଳିତ ବର୍ଗ, ଅନ୍ୟ କକ୍ଷରେ ପୁଞ୍ଜିବାଦୀ ଗୋଷ୍ଠୀ। ଏହି ଦ୍ୱିବିଧ ଶ୍ରେଣୀର ଦ୍ୱନ୍ଦ୍ୱ, ସଂଘର୍ଷ ପ୍ରଚୁର। ବାସ୍ତବବାଦୀ କବିତା ଉଭୟ ପକ୍ଷର ଅନ୍ତଃରୂପ-ପ୍ରକାଶକ। ବ୍ୟକ୍ତି ଓ ସମାଜର ବ୍ୟବଚ୍ଛେଦ ମଧ୍ୟରେ ଜୀବନ ପ୍ରତି ତା'ର ଦୃଷ୍ଟି ଯେଉଁଭଳି ଶ୍ଳେଷାତ୍ମକ, ସେହିଭଳି ଧର୍ଷକ୍। ପ୍ରାକ୍-ସ୍ୱାଧୀନତାର ଅଧିକାଂଶ କବି ଏହି ସମୟରେ ସାଧନାରତ। ବହୁ ନୂତନ ଶିଳ୍ପୀମାନଙ୍କର ସ୍ୱାକ୍ଷରରେ ମଧ୍ୟ ଏହି ପର୍ଯ୍ୟାୟର ସୃଷ୍ଟି ଧାରା ଋଦ୍ଧିମନ୍ତ।

ଉତ୍ତର-ସ୍ୱାଧୀନତାର ଓଡ଼ିଆ କାବ୍ୟ ଜଗତରେ କବି ରାଜେନ୍ଦ୍ରଙ୍କର ସାଧନା ସ୍ମରଣୀୟ। 'କବିତା ୧୯୬୧', 'କବିତା ୧୯୭୪', 'କବିତା ୧୯୮୩' ଓ 'କବିତା ୧୯୮୫' ଆଦି ସଂକଳନ ମାଧ୍ୟମରେ ତାଙ୍କର ସୃଷ୍ଟି ପ୍ରତିଭା ଉତ୍ତର-ସ୍ୱାଧୀନତାରେ ପ୍ରକାଶିତ। ଏହି କବିତା ସଂକଳନ ସମୂହରେ ଉଭୟ ସମାଜବାଦୀ ତଥା ବ୍ୟକ୍ତିବାଦୀ ଚେତନା ପ୍ରକଟିତ। ବୈକଳ୍ପିକ ପରିସରରେ ତାଙ୍କର କାବ୍ୟ-ନାୟକର ସତ୍ତା ଦ୍ୱିଧାବିଭକ୍ତ। ବ୍ୟକ୍ତିଚେତନା ଦ୍ୱିବିଧ—'ସିଏ ଶୁକ/ସିଏ ପରୀକ୍ଷିତ/ମୋତେ ମୁହିଁ/ପଠାଏ ଖବର/ମୁଁ ଦିଏ ଉତ୍ତର/ଯାହା ହୁଏ/ଖାଲି ଏକ ପ୍ରଶ୍ନ' (୧)। ବ୍ୟକ୍ତିଚେତନା ମଧ୍ୟରେ ଯେଉଁ ପ୍ରଶ୍ନାବର୍ତ୍ତ ବିଘୂର୍ଣ୍ଣିତ, ତାହା ସତେ ଅବା ଅସମାଧିତ। 'କବିତା ୧୯୬୧'ର କାବ୍ୟ ନାୟକ ଏହିଭଳି ଆତ୍ମାନ୍ୱେଷା ମଧ୍ୟରେ ହୋଇଥିଲା—'ଖଂଡ଼ ଖଂଡ଼/ବହୁଧା ବିଭକ୍ତ' (୨)। ଚେତନା ଏକ ଉତ୍ତରିତ ସ୍ତରରେ ହିଁ ଶତଧା ବିଦୀର୍ଣ୍ଣ ହୁଏ। ପ୍ରତି ମୁହୂର୍ତ୍ତରେ ସତ୍ତାର ସ୍ୱରୂପ ପରିବର୍ତ୍ତିତ ହେଉଥାଏ। କେଉଁ ଏକ ନିରୁଦ୍ଦିଷ୍ଟ ଯାତ୍ରୀ

ପରି ଲକ୍ଷ୍ୟସ୍ଥାନ ତା'ର ଜୀବନ । ବିଶ୍ୱ ଏକ ଖଣ୍ଡିତ ଦର୍ପଣ । ପ୍ରତିଛବି ତା'ର ବିକଳାଙ୍ଗ । ସଂସାରକୁ ସେ ଚିହ୍ନେ, ଏଇ ବିକଳାଙ୍ଗ ପରିଧିରେ । ଏକାନ୍ତ ଅସହାୟ ଭାବେ ଏଇ ପରିସ୍ଥିତି ନିକଟରେ ନିଜକୁ ସମର୍ପଣ କରି ଦିଏ ସେ । ଏହି ଅସହାୟ ଅନ୍ତଃସ୍ୱରର ଆବିଷ୍କର୍ତ୍ତା ସ୍ୱୟଂ କାବ୍ୟ-ନାୟକ । ସେ ଅମୃତର ସ୍ୱପ୍ନ ଦେଖେ । ବାସ୍ତବ ଦୁନିଆରେ ତା'କୁ ମିଳେ କେବଳ ମୃତ୍ୟୁ । ସମଗ୍ର ପରିବେଶ ବିଷାକ୍ତ—'ଦକ୍ଷିଣ ମୃରତି ଆହା ମାତୃ ସ୍ତନମାନ/କେବଳ ବିଷରେ ଭରି/ଗରଳ ଯେ ଫଳମୂଳ/ଖାଦ୍ୟ ଓ ପାଣିରେ/ବିଷାକ୍ତ ପବନ/ବିଷ ଚୁମ୍ବନରେ' (୩) । ଏହି ବିଷାକ୍ତ ପରିବେଶ ମଧ୍ୟରେ କାବ୍ୟ-ନାୟକ ନିଜ ସହ କପଟପଶା ଖେଳେ । ନିଜକୁ ହରାଇ ନିଜେ ହୁଏ ନିର୍ବାସିତ । ଇଚ୍ଛା-ଅନିଚ୍ଛାର କୁମ୍ଭାର ଚକରେ ଘୂରୁଥିବା ଏକ ଅନିମାନ୍ତୁ ପରି ସମୟର ହୁଏ କ୍ରୀତଦାସ ।

୧୯୭୧ ଠାରୁ ୮୭ ପର୍ଯ୍ୟନ୍ତ ରାଉତରାୟଙ୍କ କବିମାନସ ଏକ ମିଶ୍ରିତ କାବ୍ୟ-ପ୍ରକ୍ରିୟା ମଧ୍ୟଦେଇ ଗତିଶୀଳ । ବ୍ୟକ୍ତିର ଆତ୍ମନିର୍ବାସିତ ଅନ୍ତଃସତ୍ତା ଏଠାରେ ଯେଉଁଭଳି ରୂପାୟିତ, ସମାଜ ପାଇଁ ବ୍ୟକ୍ତିର ଆତ୍ମୋତ୍ସର୍ଗ ସେହିଭଳି ଦ୍ୱିଧାମୁକ୍ତ କଣ୍ଠରେ ଉଚ୍ଚାରିତ । ସର୍ବୋପରି ବ୍ୟକ୍ତିର ଗୌଣ ମନୋଭାବ ତଥା ସମାଜର ଅଧୋପତନ ପ୍ରତି କବିଙ୍କର ଦୃଷ୍ଟି ଏଠାରେ ଶ୍ଳେଷଶାଣିତ । 'ଓଡ଼ିଶା' (କବିତା ୧୯୭୧) କବିତାରେ ଓଡ଼ିଶାବାସୀଙ୍କ ଗୌଣ ମନୋଭାବର ଏକ ବ୍ୟଙ୍ଗାତ୍ମକ ଚିତ୍ର ଉପସ୍ଥାପିତ—

"ମୁଁ ଜଣେ ଓଡ଼ିଆ, ଶତକଡ଼ା ଅନେଶୋଡ଼ ଭାଗ ।
ତେଣୁ ଏଠି ହୋଇ ପାରେ ଅକ୍ଳେଶରେ ଠିଆ
ନିଜ ଗୋଡ଼େ ମୁଁ ଏକ ଗୋଡ଼ିଆ,
ନିଜସ୍ୱ ମାଟିରେ × × (୪)"

ମେହେନତ କରି ଓଡ଼ିଶାବାସୀ ଓଡ଼ିଆ କହେ । ବିଚ୍ଛିନ୍ନାଞ୍ଚଳ ସମୃଦ୍ଧି ପାଇଁ ଛଳନାରେ ଅଶ୍ରୁପାତ କରେ । ଲୋକ ଗଳ୍ପର ଶୃଗାଳ ପରି ଏକ ପାଦରେ ଠିଆ ହୋଇ ତପସ୍ୟାର ପ୍ରତାରଣା କରେ । ଅପର ପାଦ ଊର୍ଦ୍ଧ୍ୱକୁ ଟେକି ତ୍ରିଲୋକ ଭିକ୍ଷା ମାଗିବାର ମୂର୍ଖତା ମଧ୍ୟ ଆଚରଣ କରେ । ସ୍ୱପ୍ନ ତା'ର କ୍ରମଶଃ ପ୍ରଲମ୍ବିତ ହେଉଥାଏ । 'ବଢୁଥାଏ ଉଇହୁଙ୍କା ପରି' । ତଥାପି ଭୟବୋଧରେ ଆଚ୍ଛନ୍ନ ହେବା ତା'ର ଭବିତବ୍ୟ । ଏଣୁ 'ଅଜାଣତେ ଛାଙ୍କି ହୋଇ ପଡ଼େ ସିଏ ଭୟଙ୍କର ଶ୍ୱାପଦର କାଢ଼ରେ (୫) ।'

ଅହେତୁକ ଭୟବୋଧ ହେତୁ ଓଡ଼ିଶାର ଉନ୍ନତି ପାଇଁ ବାସ୍ତବତଃ ସେ ଅକ୍ଷମ । କର୍ମବୀର ନୁହେଁ, ସେ ବାକ୍ୟବୀର । ଓଡ଼ିଆ ସାଙ୍ଗେ ଇଂରାଜୀ ମିଶାଇ କଥା

କହେ । ପୁଣି 'ସଙ୍ଗେ ସଙ୍ଗେ କରେ ତା ତର୍ଜମା/ ଓଡ଼ିଆରେ/ କହେ ଗୃହେଁ କ୍ଷମା' (୭) । ନିଜକୁ ଖାଣ୍ଟି ଓଡ଼ିଆ ରୂପେ ପ୍ରତିପାଦିତ କରିବାର ଏହି ଅପଚେଷ୍ଟା ପ୍ରତି କବିଙ୍କର ଦୃଷ୍ଟି ବିଦ୍ରୂପାତ୍ମକ ।

ଆନ୍ତର୍ଜାତୀୟ ତଥା ଜାତୀୟ ଜୀବନରେ କେତେକ ବାସ୍ତବ ଘଟଣା ଏହି ସମୟରେ ସୀତାକାନ୍ତଙ୍କ କୃତିରେ ପ୍ରତିବିମ୍ବିତ । ସେଗୁଡ଼ିକ ମଧ୍ୟରୁ 'ମୁଜିବୁର ରହମାନ', 'ସ୍ୱେତ୍‌ନାଗ' ଓ 'ନାଗଭୂଷଣ' ଆଦି କବିତା ଉଲ୍ଲେଖନୀୟ । 'ସ୍ୱେତନାଗ' ଢାକା ମହିଳା କଲେଜର ଛାତ୍ରୀ । ନିଜ ବକ୍ଷରେ ମାଇନ ଖଞ୍ଜି ପଶ୍ଚିମ ପାକ୍ ବାହିନୀର ଏକ ପ୍ୟାଟନ ଟ୍ୟାଙ୍କକୁ ଲମ୍ଫ ଦେବାର ଦୁର୍ବାର ସାହସ ପ୍ରଦର୍ଶନ କ୍ଷେତ୍ରରେ ବିଶ୍ୱ ଇତିହାସରେ ସେ ସ୍ମରଣୀୟା । ବଙ୍ଗଳା ଦେଶ ଗଠନର ସେ ଏକ ଦୃପ୍ତ ଶହୀଦ ନୁହେଁ ଯେ କବିଙ୍କ ଭାଷାରେ ସେ ସ୍ୱୟଂ ମହତ୍ତର, ବୃହତ୍ତର ବାଙ୍ଲାଦେଶ' (୭) । ମୁଜିବୁର ସେହିପରି ଜଣେ ବ୍ୟକ୍ତି ବିଶେଷ ମାତ୍ର ନୁହନ୍ତି, ବଙ୍ଗଳାଦେଶର ସଂଗ୍ରାମୀ ଜନସମାଜର ସେ ଏକ ପ୍ରତିରୂପ । 'ନାଗଭୂଷଣ' କବିତାରେ ଭାରତର ନକସଲପନ୍ଥୀ ନେତା 'ନାଗଭୂଷଣ' ଏକ ମହାବିପ୍ଳବୀ ଯାହାର କ୍ରୋଧାଗ୍ନିରେ ଅସଂଖ୍ୟ ଶତ୍ରୁଶିବିର ଭସ୍ମୀଭୂତ ହୋଇଯାଏ । 'ନାଗଭୂଷଣ' ଏଠାରେ ଚିରନ୍ତନ କାଳର ବାହକ, ଏକ ଯୁଗନ୍ଧର ।

ଏହା ବ୍ୟତୀତ ଉତ୍ତର-ସତୁରୀର କାବ୍ୟ ଚେତନାରେ ନିର୍ବାଚନ ସର୍ବସ୍ୱ ରାଜନୀତିର ବ୍ୟର୍ଥତା ('ନିର୍ବାଚନ-କବିତା ୧୯୭୧' 'ପ୍ରତିଶ୍ରୁତି', 'ଅଙ୍ଗାର'—କବିତା ୧୯୮୩) ତଥା ଧର୍ମାନୁଷ୍ଠାନର ଶଠତା (ପ୍ରଶ୍ନବାଚୀ ସାପର ଫଣାରେ କବିତା ୧୯୮୩) ଆଦି ପ୍ରସଙ୍ଗ ଉତ୍ଥାପିତ । ଏହି ସବୁ କବିତା ଶାଶ୍ୱତ ନହେଲେ ମଧ୍ୟ ସମକାଳୀନ ଯୁଗ ସମସ୍ୟା ପ୍ରତି ବିଶ୍ୱସ୍ତତା ପୋଷଣ କରିଥିବା ଅନସ୍ୱୀକାର୍ଯ୍ୟ ।

ଏଠାରେ ଉଲ୍ଲେଖନୀୟ ଯେ ଉତ୍ତର-ସତୁରୀରେ କବି ସୀତାକାନ୍ତ ମହାପାତ୍ରଙ୍କ ଦୃଷ୍ଟିରେ ବିଗଳିତ ସମାଜ ଚେତନା ଉପରେ କେନ୍ଦ୍ରୀଭୂତ । କିନ୍ତୁ ପ୍ରଗତିବାଦୀ କବିତାର ସ୍ଲୋଗାନଧର୍ମୀ ସ୍ୱର ପରିବର୍ତ୍ତେ ଶାନ୍ତ ଓ ସମାହିତ ଭାବରେ କାବ୍ୟ-ବକ୍ତବ୍ୟ ଉପସ୍ଥାପିତ । ଏଣୁ କବିତାର କଳାତ୍ମକ ମୂଲ୍ୟ ଖଣ୍ଡିତ ହେବାର ସମ୍ଭାବନା ଉପୁଜି ନାହିଁ । ସମକାଳୀନ ସମାଜର ଚିତ୍ର ଅଙ୍କନ ବେଳେ ଅବହେଳିତ ସମାଜର ଦୁଃଖ ଓ ବେଦନା ସାର୍ବଜନୀନ ଭାବ ରୂପରେ ସମାସୀନ । ନିର୍ବାଚନ କୈନ୍ଦ୍ରିକ ରାଜନୀତିକୁ ବ୍ୟଙ୍ଗ କରିବ ବେଳେ ଦେଶ ଓ ଇତିହାସର ଊର୍ଦ୍ଧ୍ୱରେ ଅବହେଳିତ ବର୍ଗ ଅଭିଷିକ୍ତ । 'ଆରଦୃଶ୍ୟ' ଯଶୋଦାଙ୍କ ବିଶ୍ୱ ରୂପ ଦର୍ଶନର ରହସ୍ୟମୟ ପ୍ରହେଳିକା ଅଥବା ଜୀବନ ସୌନ୍ଦର୍ଯ୍ୟର ଶେଷହୀନ ଲିପିକା ମାତ୍ର ନୁହେଁ, ତାହା ଦୁଃଖ ଓ ବେଦନାରେ ବଳୁସ ଅବହେଳିତ

ସମାଜର ବାସ୍ତବ ପ୍ରତିରୂପ ମଧ୍ୟ । ସୀତାକାନ୍ତଙ୍କ ଅବହେଳିତ ବ୍ୟକ୍ତିସତ୍ତ୍ୱର ଗୋଟିଏ ପାଦ କ୍ଷୁଧାର୍ତ୍ତ ଜୀବନ-ଭୂମି ଉପରେ ଅବସ୍ଥାପିତ । ଆଉଟି ଆତ୍ମାର ପବିତ୍ର ଭାବନାରେ ସମାବିଷ୍ଟ । ଅନ୍ତର ଭିତରେ ତା'ର ଜୀବନର ସତ୍ତ୍ୱ ଚିନ୍ତା ଦିଗରେ ସମର୍ପିତ । ଏଣୁ ବୁଦ୍ଧିଜୀବୀ ସମାଜରେ 'ବିବିଧ କୌଶଳର ଯନ୍ତ୍ରୀ', 'ପୋଷ୍ଟର, ପ୍ରତୀକ, ପ୍ରତିଶ୍ରୁତି, ହ୍ୟାଣ୍ଡବିଲ' କିଛି ତାକୁ ଛୁଇଁ ପାରେନି । ସବୁ ସାମ୍ରାଜ୍ୟର ଉଦୟ ଓ ଅସ୍ତ ପରେ ତା'ର ଦୁଃଖ ବଞ୍ଚିରହେ । ଦୁଃଖ ଭିତରେ ଜୀବନ ସହ ସଂଗ୍ରାମ କରିବା ହିଁ ସାଧାରଣ ଜନତାର ଲକ୍ଷ୍ୟ । କ୍ଷମତା ରାଜନୀତିର ଛକାପଞ୍ଝାରେ ପ୍ରତିବନ୍ଧି ନିର୍ବାଚନର ଯନ୍ତ୍ରଣା ତାକୁ ବହନ କରିବାକୁ ପଡ଼େ- 'ଡମେ ଶ୍ୱେତ କାଗଜଟି ଅନ୍ଧାର ବାକ୍ସ ଗର୍ଭରେ ପକାଅ/ବାଛିବାର ସେଇ ଯନ୍ତ୍ରଣା ! (୮) ।

ସାଂପ୍ରତିକ କାଳର ବିଜ୍ଞାନପ୍ରୀତି ଧର୍ମୀ ସିଦ୍ଧାନ୍ତ ଗୋପନୀୟ ନୁହେଁ, ଉନ୍ମୁକ୍ତ । ତଥା-କଥିତ ପ୍ରଗତିଶୀଳ ସମାଜର ଆବଶ୍ୟକତା—ଶସ୍ତା ପ୍ଲାଷ୍ଟିକ, ଶସ୍ତା ନାଇଲନ । କୃତ୍ରିମ ସଭ୍ୟତାର ବିଳାସ ମଧ୍ୟରେ ଜନତା ଜନାର୍ଦ୍ଦନର ବେଦନା ଅପରସୀମା । 'ଆରଦ୍ଧୃଶ୍ୟ' ବ୍ୟକ୍ତିଗତ ଯନ୍ତ୍ରଣାର ପଣାଧାରି ଛକରୁ ସାର୍ବଜନୀନ, ବ୍ୟକ୍ତିତ୍ୱର ଶେଷ ଚେତନାର ଏକ ଦିଗ୍‌ବାରେଣୀ । 'କାହାକୁ ପୁଛିବା କୁହ'ରେ କ୍ରମଶଃ ଏହା ଅଧିକ ତୀକ୍ଷ୍ଣ ଓ ସଂହତ ! କବି ଜୀବନର ଉତ୍ତରଣ କାଳରେ ସୀତାକାନ୍ତ ସାଧାରଣ ଜନ ଜୀବନ ଉପରେ କାବ୍ୟ ବକ୍ତବ୍ୟକୁ କେନ୍ଦ୍ରୀଭୂତ କରିଛନ୍ତି । 'କୃଷକ', 'ଦୁର୍ଭିକ୍ଷ, ଓ 'ପେଭ୍‌ମେଣ୍ଟର ପିତାମହ' ଆଦି କବିତା ଏହାର ଦୃଷ୍ଟାନ୍ତ ।

ସାମ୍ରାଜ୍ୟବାଦ ହେଉ ଅଥବା ସାମ୍ୟବାଦ ହେଉ, ଏହାର ଉତ୍‌ଥାନ ଓ ପତନ ସହ ଅବହେଳିତ ସମାଜର ସମ୍ପର୍କ କ୍ଷୀଣ । ଇତିହାସର ଆଟୋପ, ଆଡ଼ମ୍ବର ତା' ପାଇଁ ଅର୍ଥହୀନ । ସମରବ୍ୟାପୃତ ନରପତି, ଶାସକ ଓ ତାଙ୍କର ସୈନ୍ୟ ବର୍ଗ ସାମ୍ରାଜ୍ୟ, କ୍ଷମତା ଓ ପ୍ରତିପତ୍ତି ବିସ୍ତାରରେ ବ୍ୟାପୃତ ଥିବା ବେଳେ, କୃଷକ ତା'ର ଚିରନ୍ତନ ଯନ୍ତ୍ରଣାର ପରିଧିରେ ଜର୍ଜ୍ଜରିତ—'ତୋର କ'ଣ ଯାଏ ଅସେ/ଏ ସବୁ ଇତିହାସରେ/ ତୁ ତ ସବୁକାଳେ/ଛିଡ଼ାହେବୁ/ନଙ୍ଗଳା ଖରାରେ/ଲଙ୍ଗଳ-ଠିଙ୍କା ମାଟି/ଶୁଖୁଥିବୁ ଆଁ କରି ସୂର୍ଯ୍ୟ ଆଡ଼େ (୯) ।'

ଭାରତୀୟ ସଂସ୍କୃତି ମଣିଷ ଭିତରେ ଦେବତାର ଦର୍ଶନ କରେ । ଏହି ଦେବୋପମ ଅମୃତର ଶିଶୁ ଆଜି ନଖ-ଦନ୍ତ ସଂଗ୍ରାମରେ ଲିପ୍ତ—'ବଳ ପାଇଁ/ଭୋଗ ପାଇଁ/ଭାଗ ପାଇଁ/ହାତ ପାତିଛନ୍ତି/ହଣାହଣି ହେଉଛନ୍ତି/ଘରେ/ବାହାରେ/ମସ୍‌ଜିଦ୍‌ରେ/ ମନ୍ଦିରରେ/ ସଭାରେ/ ସମିତିରେ/ ଅଫିସରେ/ ଶ୍ମଶାନରେ/ ଅପନ୍ତରାରେ/ ଗଣ୍ଠିର ବିଲରେ (୧୦) ।'

ପ୍ରଚଳିତ ସାମାଜିକ ସ୍ଥିତିରୁ ମୁକ୍ତି ପାଇଁ ପ୍ରଚେଷ୍ଟା କ୍ଷୀଣ । କ୍ଷୋଭରେ, କ୍ରୋଧରେ, ଅଭିମାନରେ ନିଦ୍ରାଗତ ମନୁର ସନ୍ତାନ । ଅମୃତସ୍ୟ ପୁତ୍ର ଅନୁତ୍ତରଣଶୀଳ । ଭୂମି ଶୂନ୍ୟଗର୍ଭା । ଆକାଶ ମେଘଶୂନ୍ୟ । ପୃଥିବୀ ମରୁମୟ । ସମସ୍ତ ଶୋକାର୍ତ୍ତ । ଯନ୍ତ୍ରଣା ଲାଞ୍ଛନା ଓ ପ୍ରତାରଣାର ଶରଶଯ୍ୟାରେ ଶାୟିତ ପିତାମହ— ବଂଶ ଶତାବ୍ଦୀର ଅକାଳ ବାର୍ଦ୍ଧକ୍ୟ ଗ୍ରସ୍ତ କିଶୋର । ପିତାମହ ସୁଲଭ ପ୍ରଜ୍ଞା ପ୍ରାପ୍ତି ପୂର୍ବରୁ ନିଷ୍ଠୁର ସମାଜ ସମର୍ପି ଦେଇଛି ତାକୁ ମୃତ୍ୟୁର ହଳାହଳ ।

ରାଷ୍ଟ୍ର ଓ ସମାଜ ନିକଟରେ ବ୍ୟକ୍ତିସତ୍ତା ଏକାନ୍ତ ନଗଣ୍ୟ, ତୁଚ୍ଛ । ରାଷ୍ଟ୍ର ଓ ସମାଜ ପାଇଁ ବ୍ୟକ୍ତିର ଜନ୍ମ, ଜୀବନ ଓ ମୃତ୍ୟୁ ନିରର୍ଥକ—ଏକ ସାଧାରଣ ଘଟଣା । ସେ କେବଳ ବ୍ୟକ୍ତିକୁ ସଂଖ୍ୟାୟିତ କରିବ, ଜନଗଣନା ପ୍ରକ୍ରିୟାରେ । ରାଷ୍ଟ୍ର ମହାସିନ୍ଧୁ । ସମାଜ ମହାଗଣକ । ବ୍ୟକ୍ତି ବୁନ୍ଦାଏ ଜଳ, ତୁଚ୍ଛ ସଂଖ୍ୟାଟିଏ ମାତ୍ର । ପ୍ରତିବାଦଶୂନ୍ୟ ତା'ର ବ୍ୟକ୍ତିତ୍ୱ । 'କ୍ଷୁଧା, ତୃଷା, ଭୟ, ଆଶଙ୍କାରେ ମ୍ରିୟମାଣ ସତ୍ତା । କୋଲୁଆ ଭୟରେ ଥରେ/ଗୁଡ଼ତଳେ ଦଳା' । ତେଣୁ ତାର 'ମୁଁତ୍ୱ' ଅସହାୟ ଭାବେ ରାଷ୍ଟ୍ର ନିକଟରେ ଆତ୍ମସମର୍ପଣ କରେ—'ହେ ଐତିହାସିକ/ଆଉ ଅର୍ଥନୀତି ବିଶାରଦ/ମୋ ନମ୍ବରଂପ୍ଲେଟ ଆଣ/ମୋ ବେକରେ ବାନ୍ଧିଦଅ/ଏବେ ମୋତେ ସଂଖ୍ୟାୟିତ କର/ତମର ମହାସିନ୍ଧୁରେ ହେ ମହାଗଣକ/ମୁଁ ଯେ ଖାଲି ଏକ ବିନ୍ଦୁ ଜଳ (୧୧) ।

କାବ୍ୟ ଚେତନାର ଆରମ୍ଭରୁ ଉତ୍ତରଣ ପର୍ଯ୍ୟନ୍ତ ସମାକାନ୍ତ ରଥ ମୁଖ୍ୟତଃ ବ୍ୟକ୍ତିବାଦୀ । ପ୍ରାକ୍-ସବୁଜ ପରି ଉତ୍ତର ସବୁଜର କାବ୍ୟ ଦିଗନ୍ତରେ ସେ ମୂଲ୍ୟବୋଧର ଅବକ୍ଷୟ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ବ୍ୟକ୍ତି ଏଠାରେ ରାଷ୍ଟ୍ର ଅଥବା ସାମାଜିକ କର୍ତ୍ତୃତ୍ୱର ଶିକାର ନୁହେଁ, ସ୍ୱକୀୟ ବିଡ଼ମ୍ବନାର ପରିଧିରେ ସେ ଆହତ । ସମୀମତା ତା'ର ବ୍ୟାପକ । ଅସ୍ତିତ୍ୱ ତା'ର ନେତିବାଦୀ । ରୁଦ୍ଧ କୋହ ପ୍ରକାଶନ ପାଇଁ ଅସମର୍ଥ ତା'ର ବ୍ୟକ୍ତିସତ୍ତା । ସେ ପୁଣି ସାଧାରଣ ବ୍ୟକ୍ତିବିଶେଷ ନୁହେଁ, ସେ ଏକ ସୁଲତାନ । ଅସମର୍ଥ ପୁରୁଷ ପାଇଁ ସମର୍ଥ ପଦବୀ ହିଁ ଏକ ଆତଙ୍କ । ତା'ର ପରିପାର୍ଶ୍ୱ ଜଳଶୂନ୍ୟ । ରାଜ୍ୟବାସୀ କଙ୍କାଳରେ ପରିଣତ—'ଶୁଖିଲା କୂଅକୁ/ଗରୁ ବାଲିଟି ଧରି ଯିବା ଲୋକଙ୍କର/କୁଢ଼ କୁଢ଼ କଙ୍କାଳରେ ପରିପୂର୍ଣ୍ଣ ଏ ମରୁଭୂମିରେ/ଜଣେ ମାତ୍ର ଲୋକ ଅଛି/ସୁଲତାନ/ସେ କାନ୍ଦିବ ନାହିଁ/ଅସଂଖ୍ୟ ବ୍ୟାକୁଳ ଲୋକ/ଡାକୁଥିଲା ବେଳେ/ତା ରାଜ୍ୟର ପାଚେରି ବାହାରେ (୧୨)' ।

କେହି କେହି ସମାଲୋଚକ ଏହି ସୁଲତାନଙ୍କୁ ଟି. ଏସ୍. ଏଲିୟଟଙ୍କ କୈବର୍ତ୍ତରାଜ (Fisher King)ଙ୍କ ସହ ତୁଳନା କରିଥାନ୍ତି (୧୩) । କିନ୍ତୁ ମନେହୁଏ

ରମାକାନ୍ତଙ୍କ 'ସୁଲତାନ' ଏଲିସ୍ତଟଙ୍କ କୈବର୍ତ୍ତରାଜାଙ୍କ ପରି କୌଣସି ବୀର ପୁରୁଷଙ୍କୁ ପ୍ରତୀକ୍ଷା କରନ୍ତି ନାହିଁ । ତାଙ୍କର ଆଶା ଶେଷପ୍ରାୟ । ଜୀବନ ଏକ ଦୁରନ୍ତ ମରୁ ପ୍ରଦେଶ । ପ୍ରତ୍ୟେକ ମୁହୂର୍ତ୍ତ ଛଦ୍ମବେଶ ରୁକ୍ଷ, କର୍କଶ ଖରାରେ । ଜୀବନର ସବୁ ଦ୍ୱାର ରୁଦ୍ଧ, ସବୁ ପଥ ଦୁର୍ଗମ । ଅପନ୍ତରା ଜୀବନ ଭୂମିରେ ବାସ୍ତବ ଖାଲି ରକ୍ତପାତ । ଭୀଷଣ ସଂଗ୍ରାମର ସମ୍ମୁଖୀନ ହେବା ହିଁ ବ୍ୟକ୍ତିର ଭବିତବ୍ୟ । ରମାକାନ୍ତଙ୍କ କାବ୍ୟ ଚେତନାରେ ପ୍ରେମ ଦେହକୈନ୍ଦ୍ରିକ । ନାୟକ-ନାୟିକାଙ୍କ ମିଳନ ସମାଜରେ କେବଳ ଭୂକମ୍ପ ଜଗାଏ ନାହିଁ, ଜୀବନକୁ ରଙ୍ଗହୀନ ମଧ୍ୟ କରିଦିଏ । ପ୍ରେମ ଏଠାରେ ସମ୍ଭୋଗରେ ସୀମାବଦ୍ଧ । ନାରୀଟିର ନାରୀତ୍ୱ ବିଜ୍ଞାପନଧର୍ମୀ । କୋମଳା କିଶୋରୀର କଷ୍ଟାପତ୍ତି ଯୌବନରେ ପଣ୍ୟଧର୍ମୀ । ଆତ୍ମା ବର୍ଜିତ ସମ୍ଭୋଗର ଶଯ୍ୟାଚାଦର ନିକଟରେ । ତା'ର ସ୍ୱର ନାୟକର ନିଶ୍ଚିନ୍ତ ହୃଦକୁ ନଷ୍ଟଭ୍ରଷ୍ଟ କରିଦିଏ । ସ୍ୱପ୍ନକୁ କରେ ଚୂର୍ଣ୍ଣବିଚୂର୍ଣ୍ଣ—'ବାରମ୍ବାର ମୋହର ସ୍ୱପ୍ନକୁ/ପ୍ରବେଶ କରି ସେ ନାଇଁ'ଷିଙ୍ଗ ଥିଲି ବିଶ୍ୱର ହୃଦକୁ/ତା ଆତ୍ମାରେ ଗଦାଗଦା ବିଜ୍ଞାପନ କେତେ ଜିନିଷର (୧୪) ।'

ଅଭିଶାପଗ୍ରସ୍ତ ରୁଗ୍ଣ ନାୟକ । ସେହି ରୁଗ୍ଣତାରେ ସମ୍ଭବତଃ ନାୟିକାର ଆତ୍ମା ଆକ୍ରାନ୍ତ । ସମ୍ପର୍କର ସ୍ରୋତ ବିଚ୍ଛିନ୍ନ ଧାରାରେ ପ୍ରବାହିତ । ଅତୀତ ପାଂଶୁଳ । ଭବିଷ୍ୟତ ପାଣ୍ଡୁର । ସ୍ୱାର୍ଥପ୍ରଣୋଦିତ ଜୀବନବୋଧ । ଆତ୍ମୋତ୍ସର୍ଗ ପରିବର୍ତ୍ତେ ଆତ୍ମ-ସଙ୍କୋଚନ ମଧ୍ୟରେ ପ୍ରଶସ୍ତ ବିଜୃମ୍ଭିତ । ନାୟକ ଏଭଳି ନିଃସଙ୍ଗ ଯେ ପ୍ରେତଟିଏ ତା ଦୁଆର ଠକ୍ ଠକ୍ କଲେ ମଧ୍ୟ ସେ ଖୁସି ହୁଏ । କାରଣ ଜୀବନ୍ତ ମଣିଷଟିଏର ନିର୍ମଳ ସାନ୍ନିଧ୍ୟ ତା' ପାଇଁ ସୁଦୂର ପରାହତ । ପଳାତକ ଅସ୍ତିତ୍ୱ ତା'ର 'ଆଲିଙ୍ଗନ କରି ଶାନ୍ତ ହୁଏ ଦୋଦୋ ଚହ୍ଲା ଏକ ଛାୟା ମୂର୍ତ୍ତିକୁ' । ଦଳକା ଆୟୁଷ ତା'ର ଗଡ଼ାଣି ରାସ୍ତାର ଏକ ଗ୍ରନ୍ଥିକ ବନ୍ଧନ ଗାଡ଼ି ପରି । ତା'ର ସକଳ ଆଶା ଓ ସ୍ୱପ୍ନ ଆସନ୍ନ ମୃତ୍ୟୁର ଗଭୀର ଗର୍ତ୍ତ ପାଇଁ ପ୍ରତୀକ୍ଷମାଣ ।

ଆଧୁନିକ କବିତାରେ ବ୍ୟକ୍ତିର ଦୁଃଖବୋଧ ତା'ର ଦ୍ୱୈତ ବ୍ୟକ୍ତିତ୍ୱର ପରିଣତି । ନିଜକୁ ସରଳ ଭାବରେ ସମାଜ ନିକଟରେ ସେ ପ୍ରକାଶ କରିପାରେ ନାହିଁ । ସମାଜର ନିଷ୍ଠୁରତା ହେତୁ ବ୍ୟକ୍ତିତ୍ୱ ବରଂ ଅଧିକ ଜଟିଳ ହୋଇପଡ଼େ । ଅଭ୍ୟାସଗତ ପ୍ରତାରଣାବଶତଃ ତା'ର ଅନ୍ତଃସତ୍ତା ମଧ୍ୟ ପ୍ରତାରିତ ହୁଏ । ନିଜର ସ୍ୱରୂପ ନିଜ ପାଖରେ ହୁଏ ଶତଧା ବିଚ୍ଛିନ୍ନ । ଗୋଟିଏ ନୁହେଁ ଅନେକ ପ୍ରକାରର ମୁଖା ଲଗାଇ ସେ ଆତ୍ମପ୍ରକାଶ କରେ । ରାଜେନ୍ଦ୍ର କିଶୋର ପଣ୍ଡାଙ୍କ କବିତାରେ ବ୍ୟକ୍ତିର ଏହି ଛଳନାପୂର୍ଣ୍ଣ ସ୍ୱରୂପ ଉଦ୍‌ଘାଟିତ —'ଏମିତି ସମସ୍ତ ଆସିଲି । ମୁଖାଲେଡ଼ା ହେଲି/ଖାଲି ସହରରେ ନୁହେଁ/ଗାଆଁରେ

ଗାଆଁରେ···/ଖାଲି ବାହାରେ ନୁହେଁ/ଘର ଭିତରେ/ଖାଲି ଅନ୍ୟର ସାମନାରେ ନୁହେଁ/ନିଜ ସମକ୍ଷରେ/ଖାଲି ଗୋଟାଏ ମୁଖା ନୁହେଁ/ଜଣେ ପ୍ରତି ହଜାର ହଜାର ମୁଖା (୧୬) ।'

ବ୍ୟକ୍ତି ନିଜର ପ୍ରକୃତ ପରିଚୟ ବିସ୍ମୃତ । ରାଜନୀତି, ସମାଜ, ସଂସ୍କୃତି ସମେତ ସମଗ୍ର ପରିବେଶ ଆତ୍ମକେନ୍ଦ୍ରିକ । ଏଭଳି ସନ୍ଦିଗ୍ଧ ତା'ର ସ୍ୱରୂପ ଯେ ମଣିଷର ସତ୍ ସ୍ୱରୂପକୁ ମଧ୍ୟ ସେ ଅସତ୍ୟ ମଣେ । ଏହି ଅବିଶ୍ୱାସବୋଧ ହେତୁ ତା'ର ହୃଦୟରୁ ଈଶ୍ୱରଙ୍କର ସତ୍ତା ଅବଲୁପ୍ତ । ସ୍ୱାର୍ଥପରତା ତା'ର ପ୍ରବଳ । ଆବଶ୍ୟକ ହେଲେ— 'ପ୍ରିୟତମାୟ ବି ଯାହା । ଈଶ୍ୱର ବି ସୁସ୍ୱାଦୁ ଆହାର (୧୭) ।'

ତଥାପି ପୃଥିବୀ ତା'ର ଆପଣା ଗତିରେ ବଞ୍ଚିରହେ । ରାଜନୀତିର ବାଦାନୀ ଖେଳ, ଉପରି କର୍ତ୍ତାଙ୍କର କ୍ଷମତା ଜନିତ ଆସ୍ଫାଳନ, ପ୍ରତିବେଶୀର କପଟ ଈର୍ଷା, ଜିଘାଂସା ଆହତ କଲେ ମଧ୍ୟ ଜୀବନକୁ ଗ୍ରହଣ କରେ କବି—'ଘୃଣାର ଚରମ ସୋପାନରେ/ ଭଲ ପାଏ ତାକୁ ମୁଁ ଭଲପାଏ (୧୭ କ) ।' ମୁକୁଳି ପାରେ ନାହିଁ ପାର୍ଥିବ ବନ୍ଧନରୁ । ଶ୍ୟାମଳ ପୃଥିବୀର ମାଧ୍ୟାକର୍ଷଣ ନିଜେ ରହିଯାଏ ଆକର୍ଷିତ ହୋଇ—"× × ଈର୍ଷା ଜିଘାଂସା/ମତେ କେବେ ଅଧାଫେଣ କରିଛି/କେବେ ଆହତ/ଗ୍ରହଣ କରିଛି ସବୁ କିଛି/ଶ୍ୟାମଳା ପୃଥିବୀର ମାଧ୍ୟାକର୍ଷଣରେ ନିଜେ ରହିଯାଏ ମୁଁ ମାଧ୍ୟାକର୍ଷଣ ହୋଇ (୧୭ ଖ) ।'

ଦୀପକ ମିଶ୍ର, ହରିହର ମିଶ୍ର ଓ ନୃସିଂହ କୁମାର ରଥ ପ୍ରମୁଖଙ୍କ କବିତାରେ ଅନୁରୂପ ଭାବେ ଜୀବନର ମୂଲ୍ୟବୋଧ ଗତ ଅବକ୍ଷୟ ପ୍ରତି ଶ୍ଳେଷ ପ୍ରଖର । ଦୀପକ ମିଶ୍ରଙ୍କ କାବ୍ୟ-ନାୟକ ଜଳ ଦର୍ପଣରେ ନିଜ ଛବି ଦେଖି ନାର୍ସିସସ୍ ପରି ଆତ୍ମବିଭୋର ହୁଏ ନାହିଁ । ବରଂ ନିଜକୁ ବିଦ୍ରୂପ କରେ ନିଜର ନକ୍ସାରେ—'ମୁଁ ନିଜେ ନିଜକୁ ଦେଖେ/ ଚମତ୍କାର ପାଣି ଆଇନାରେ/ନିଜକୁ ବିଦ୍ରୂପ କରେ/ନିଜ ଛବି ନିଜର ନକ୍ସାରେ (୧୮) ।'

ହରିହର ମିଶ୍ରଙ୍କ କବିତାରେ ମଣିଷ ଆତ୍ମାରଅନ୍ଧାର ଏକ ମାଛି । ଉଜ୍ଜ୍ୱଳ ଆଲୋକ ଭିତରେ ମଧ୍ୟ ନିଜକୁ ଚିହ୍ନିବା ସମ୍ଭବ ନୁହେଁ । ନିଜକୁ ସେ ଦେଖେ, ନିଜଠାରୁ ଭିନ୍ନ ଏକ ଅନ୍ୟ ଲୋକ ଭଳି । ତା'ର ବାହ୍ୟରୂପ ପୂରାପୂରି ନକଲି । ନକଲି ଦାନ୍ତ ଓ କୃତ୍ରିମ କେଶରେ ସୁସଜ୍ଜିତ ବେଶଭୂଷା ମଧ୍ୟରେ, କୌଣସି ମନୋଭାବ ସୁସ୍ପଷ୍ଟ । ମୁର୍ଦ୍ଦାରଟିଏ ସେ । ଆପଣା ଚତାକୁ ପ୍ରଦକ୍ଷିଣ କରିବାର ମନ୍ତ୍ରଣା ପୁଣି ତାକୁ ସହିବାକୁ ପଡ଼େ । ଚତାଗ୍ନି ଜଳୁଥାଏ ତା'ର ତଥାକଥିତ ଜୀବନ୍ତ ମୂର୍ତ୍ତିର ପରିସରରେ । ଦର୍ପଣ

ଦେଖି ନିଜ ସହ ସେ ବାକ୍ୟାଳାପ କରିବାକୁ ଚେଷ୍ଟା କରେ—ଦର୍ପଣ ସହିତ ଶିଖିଥିବା ଶ୍ଳୋକ ବିନିମୟ କରୁଚି/ସେଉଁଠୁ ଗୁଣ୍ଡିତ ବାକ୍ୟ/ସେଠୁ ଧରିବାକୁ ଚେଷ୍ଟା କରୁଚି/ଶବ୍ଦ ଘୁଞ୍ଚିଯାଉଚି ଦୂରକୁ (୧୯)। ତା'ପରେ ଯନ୍ତ୍ରଣାରେ ଛଟପଟ ହୋଇ ପାଟି ପାକୁ ପାକୁ କରୁଥିବା ମାଛ ଭଳି ତା'ର ଅବସ୍ଥା। ଦୁଇଟି ସତ୍ତାରେ ସେ ଅବସ୍ଥିତ। ସାମାଜିକ ପରିମଣ୍ଡଳରେ ସେ ସ୍ଥିର। ଅନ୍ତଃସତ୍ତାରେ ନିଶ୍ଚିତ ଅସ୍ଥିର।

ବ୍ୟକ୍ତି ଆର୍ଥିକ ଓ ମାନସିକ—ଉଭୟ ଦିଗରୁ ନିଃସ୍ୱ। ହରିହର ମିଶ୍ର କୁହନ୍ତି, ନିକଟ ଭବିଷ୍ୟତରେ ବ୍ୟକ୍ତିର ଆର୍ଥିକ ଦୁରବସ୍ଥା ସୁଧୁରିବାର ସମ୍ଭାବନା କ୍ଷୀଣ। ଯୁଦ୍ଧ, ମଡ଼କ, ମହାମାରୀରୁ ମୁକୁଳିବାର ଉପାୟ କାହିଁ ଦିଶୁନାହିଁ। ଆଧୁନିକ କବି ମୃତ୍ୟୁକୁ ବହୁଭିନ୍ନ ଭାବରେ ଭେଟନ୍ତି। ସଂଶୟ, ଅବିଶ୍ୱାସ ବେଳେ ବେଳେ ମୃତ୍ୟୁଠାରୁ ଅଧିକ ପୀଡ଼ା ଦିଏ। ନୃସିଂହ କୁମାର ରଥ 'ଉତ୍କଣ୍ଠାର ମୃତ୍ୟୁ'ରେ ଶୂନ୍ୟତାର ଯନ୍ତ୍ରଣା ଅନୁଭବ କରିଛନ୍ତି—ଚରମ ବ୍ୟସ୍ତତା ମଧ୍ୟରେ ସବୁର ଆକୁଳ ତଳେ/ଅତିରିକ୍ତ ନିର୍ଘଟ ଶୂନ୍ୟତା (୨୦)। ଜୀବନ, ମୃତ୍ୟୁଠାରୁ ଭୟାବହ। ସ୍ୱପ୍ନର ସହରଠାରୁ ବାସ୍ତବ ସହର ସଂପୂର୍ଣ୍ଣ ଭିନ୍ନଧର୍ମୀ। 'ସମୟ ସମୟାନ୍ତର'ର 'ସହର' କବିତାରେ ସେ ପୁଣି ଥରେ ଏହି ସତ୍ୟରେ ଉପନୀତ। ଜୀବନର ନଗ୍ନ ବାସ୍ତବ ସତ୍ୟ ସନ୍ଦର୍ଶନରେ କବି-ଆତ୍ମା ନୈରାଶ୍ୟବିଜଡ଼ିତ।

ସୌଭାଗ୍ୟ କୁମାର ମିଶ୍ରଙ୍କ କବିତାରେ ସମଗ୍ର ଜୀବନକୁ ଆକ୍ରାନ୍ତ କରିଛି ମୃତ୍ୟୁ। ଅନ୍ଧ ମହୁମାଛି ପରି ଜୀବନର ମଧୁକୋଷରୁ ମଧୁ ସଞ୍ଚୟ କରିବା ବେଳେ ମୃତ୍ୟୁ ତାକୁ ଅଗ୍ନିନିଜ ଆକ୍ରୋଶ କରେ। 'ଝିଟିପିଟି' ରୂପକ ଛଳରେ ଏହି ମୃତ୍ୟୁବୋଧ ପ୍ରକଟିତ। ପୋକ ଯୋକ, ପତଙ୍ଗ ସବୁ କିଛି ସେ ଉଦରସାତ କରିଦିଏ। ଚକ୍ରସ୍ତ ପରି ଅବଶେଷରେ ଘୋଷଣା କରେ, ଏମାନେ ସମସ୍ତେ ଥିଲେ ରୋଗଗ୍ରସ୍ତ—ତା'ପରେ ତୀକ୍ଷ୍ଣ ଦୃଷ୍ଟି/ଝିଟିପିଟି ସ୍ୱଚ୍ଛନ୍ଦେ/ଉଦରସ୍ଥ କରି ଦେ କେ/ବେକାର ପତଙ୍ଗ/ଝିଟିପିଟି ଭାବେ ସ୍ୱଚ୍ଛନ୍ଦେ/କହେ ବୋଧହୁଏ ଡାକ୍ତରଙ୍କ ପରି/ଯାତ୍ରା ହେଉ ଭଲହେଲା/ଏମାନେ ଭଲ ହୋଇଗଲେ/ସେ ରୋଗରୁ' (୨୧)। କିନ୍ତୁ ରୋଗ ସେମାନଙ୍କର କ'ଣ ? ଝିଟିପିଟିର ଉତ୍ତରମଧ୍ୟ ଦେଇଆସେ। ରୋଗଟିର ନିରାକରଣ ପୂର୍ବରୁ ତା'କୁ ଭଲ ଭାବେ ସେ ଚିହ୍ନି ସାରିଥାଏ। ରୋଗଟି ହେଉଚି—'ଶୋଷଣ ଓ ଭୟଙ୍କର ଜୀବନ, ଜୀବନ'। ଜୀବନ ଭୟଙ୍କର। କୁତ୍ସିତ। ଏହି ଭୟଙ୍କର, କୁତ୍ସିତ ଜୀବନକୁ ମଧୁସିକ୍ତ କରିବା ପରିବର୍ତ୍ତେ, ମୃତ୍ୟୁ ସହ ମୁକାବିଲା କରି ନପାରି ତାହା ହାର ମାନିଯାଏ। ଆମର ପରିଦୃଷ୍ଟ ଛଟା ଅନୁଭୂତ ଜୀବନକୁ ଘାରିଥାଏ ମୃତ୍ୟୁ। ପ୍ରଯୋଗବାଦୀ ହେଉ ଅଥବା ପ୍ରଗତିବାଦୀ ହେଉ, ସବୁଠାରେ ଜୀବନ-ପାତ୍ରରେ ଛିଦ୍ର ସୃଷ୍ଟି କରିଥାଏ ମରଣ/ଈଶ୍ୱର ଏହି ମୃତ୍ୟୁ କବଳରୁ

ତା'ଙ୍କୁ ଉଦ୍ଧାର ଅବା କରିପାରନ୍ତେ । ରାଜେନ୍ଦ୍ର ପଣ୍ଡାଙ୍କ କବିତାରୁ ଜଣାଯାଇଥିଲା ମଣିଷର ଅବିଶ୍ୱାସର ପରିଧିରେ ଈଶ୍ୱର-ସତ୍ତା ବିଲୀନ ହୋଇଛି । ରମାକାନ୍ତ ରଥଙ୍କ ସ୍ପୃତଚାରୀ କାରୁ ଆଭରଣ ବିମୁଖ ଈଶ୍ୱରଙ୍କର ସ୍ଥିତି ପ୍ରତି ସନ୍ଦେହ ପ୍ରକାଶ କରିଛନ୍ତି । ସୌଭାଗ୍ୟ ସେହି ଧାରାରେ ଈଶ୍ୱରଙ୍କର ଅଘଟନ ଘଟନ ପଟୀୟସୀ ଶକ୍ତିକୁ ବ୍ୟଙ୍ଗ କରିଛନ୍ତି । କବିତାଟିର ନାମ 'ଶଶିଦେଇ କାନ୍ଦ' । ପୌରାଣିକ ଗଜ ଉଦ୍ଧାରଣ ଉପାଖ୍ୟାନ ମାଧ୍ୟମରେ ଈଶ୍ୱରଙ୍କର ଅଖଣ୍ଡ ଶକ୍ତି ପ୍ରତି କବି ଆକ୍ଷେପ କରିଛନ୍ତି— 'ଈଶ୍ୱର/ଆପଣ ଯା'ନ୍ତୁ/ହାତୀକି ଧରିଛି କୁମ୍ଭୀର' (୨୨) । ହାତୀକୁ କୁମ୍ଭୀର ଆକ୍ରମଣ କଲାବେଳେ ଈଶ୍ୱର ନୀରବରେ ଫେରି ଆସିବା ଆବଶ୍ୟକ । କାରଣ ସେଠାରେ ତାଙ୍କର କୌଣସି ସାରତ୍ତ୍ୱବ୍ୟଞ୍ଜକ ଭୂମିକା ନାହିଁ । ଈଶ୍ୱର ଗୌଣ, ବ୍ୟକ୍ତି ନଗଣ୍ୟ । ସାମାଜିକ ସ୍ଥିତି ସାରସାମ୍ୟବିହୀନ ।

ସାମାଜିକ ସାମ୍ୟର ପ୍ରତିଷ୍ଠା ପାଇଁ ପ୍ରଗତିବାଦୀ କବିତାରେ ଆଶାବାଦର ସ୍ୱର ଅପେକ୍ଷାକୃତ ବଳିଷ୍ଠ । ପ୍ରାକ-ସ୍ୱାଧୀନ କାଳର ଦୁଇ ବିଶିଷ୍ଟ ପ୍ରଗତିବାଦୀ କବି ରବି ସିଂହ ଓ ରଘୁନାଥ ଦାସ (ଜନ୍ମାୟୁ) ଉତ୍ତର-ସ୍ୱାଧୀନ କାଳରେ ମଧ୍ୟ କ୍ରିୟାଶୀଳ । ରବି ସିଂହଙ୍କର 'ବଡ଼', 'ସର୍ବହରା', 'ଦୁର୍ଗମ ଗିରି', ରଘୁନାଥ ଦାସଙ୍କର 'ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା' ତଥା 'ପୁନଶ୍ଚ' ଆଦି ସଂକଳନ ପ୍ରଗତିବାଦୀ କାବ୍ୟ ଚେତନାକୁ ନେଇ ସମୃଦ୍ଧ । ରବି ସିଂହ ସ୍ୱାଧୀନତା ପରବର୍ତ୍ତୀ କାଳର ରାଜନୀତି ମୂଲ୍ୟବୋଧ ବିରୋଧରେ ମୁଖ୍ୟତଃ ସ୍ୱର ଉତ୍ତୋଳନ କରିଛନ୍ତି । ଜନ୍ମ-ମୃତ୍ୟୁର ବିବର୍ତ୍ତନ ମଧ୍ୟରେ ମଣିଷର ଗଢ଼ି ଉଠିବା ଦ୍ୱାରା ତା'ର ସୂଚନା ଦେଇଛନ୍ତି । ଅବହେଳିତ ସମାଜର ଭସ୍ମ ସ୍ତୂପ ମଧ୍ୟରୁ 'ପାଉଁଶର ପଦାବଳୀ' ଶୁଣାଇଛନ୍ତି । ରଘୁନାଥ ଦାସଙ୍କ 'କବିଙ୍କର କବିତା', 'ଅନ୍ଧ ଗଳିର ଗାଥା' ଜନତାର ଇସ୍ତାହାର, ରାହୁଗ୍ରାସ ଓ 'ନାଗଭୂଷଣ' ଆଦି କବିତାରେ ସାମାଜିକ ବିପ୍ଳବର ସଂକେତ ପ୍ରକଟିତ । ରଘୁନାଥଙ୍କ ଭାଷାରେ ସମାଜବାଦର ଦୁହା ଢୋଲ ପରି ଫମ୍ପା । ଏଣୁ ଅର୍ଥହୀନ ଅଙ୍ଗୀକାର ମଧ୍ୟରେ ରାଜନୈତିକ ସୀମା ସରହଦ ସଂକୁଚିତ । କବିତାରେ ନୈରାଶ୍ୟର ଶିଶିର ସମସ୍ତ ସମସ୍ତରେ ଅଗ୍ନିର ସ୍ଫୁଲିଙ୍ଗ ଭଳି ପ୍ରଜ୍ୱଳିତ । ପୌରାଣିକ ଉପାଖ୍ୟାନ ମାଧ୍ୟମରେ କବି ସାମାଜିକ ଜୀବନର ବୈଷମ୍ୟ ଓ ତା'ର ସମ୍ଭାବ୍ୟ ପ୍ରତିକାରର ସୂଚନା ଦେଇଛନ୍ତି । ଏକ ଆଶାବାଦୀ ତଥା ସ୍ୱାବଲମ୍ବନଶୀଳ ସମାଜଗଠନର ଗୁରୁଦାୟିତ୍ୱ ବହନ କ୍ଷେତ୍ରରେ ଏହି କବିତାଗୁଡ଼ିକ ଉଲ୍ଲେଖନୀୟ । ଏହି ପରିପ୍ରେକ୍ଷୀରେ ତାଙ୍କର 'ଦକ୍ଷ ଯଜ୍ଞ' କବିତାଟି ସ୍ମରଣୀୟ । ପୁରାଣର 'ଦକ୍ଷ' ଏଠାରେ ପୁଞ୍ଜିବାଦୀ ସଭ୍ୟତାର ଆଡ଼ମ୍ବରର ତଥା ଅହଙ୍କାରର ପ୍ରତିଭୂ । ଏହି ଅହଙ୍କାର ନିକଟରେ ଶିବ ଓ ସତୀଙ୍କର ସମ୍ମାନ ଭୂଲୁଣ୍ଠିତ ।

ପତିଙ୍କର ଅପମାନ ହେତୁ ସତୀଙ୍କର ଦେହ ତ୍ୟାଗ କବିଙ୍କର ଅସହ୍ୟ । ଏଣୁ କବି ଯୋଗେଶ୍ୱର ଶିବଙ୍କୁ ଜାଗ୍ରତ ହେବା ପାଇଁ ଆହ୍ୱାନ ଦେଇଛନ୍ତି—'ଜାଗରେ ଜାଗ ଯୋଗେଶ୍ୱର/ସତୀର ଶବ ସ୍କନ୍ଧେ ତୋଳ/ତ୍ରିଶୂଳେ ଭରି ଶକ୍ତି ତୋର/ଚରଣେ ଛୁଟା ତାଣ୍ଡବର ଧ୍ୱଂସରୋଳ (୨୩)' ।

ଏହି ଧ୍ୱଂସ ଓ ତାଣ୍ଡବ ମଧ୍ୟରେ ଅବହେଳିତ ସମାଜ ତା'ର ନ୍ୟାଯ୍ୟ ଦାବୀ ହାସଲ କରି ପାରିବ । କାରଣ ଜୀଇଁବା ହିଁ ସାଧାରଣର ଜୀବନଧର୍ମ । ପୁଞ୍ଜିପତିର ଅଳିନ୍ଦରେ, ଶଯ୍ୟାଗାରରେ ଅଥବା ଯେ କୌଣସି ସ୍ଥାନରେ ଖାଦ୍ୟ ସଞ୍ଚିତ ଥାଉ ନା କାହିଁକି ତହିଁରେ ନିକ୍ଷେପିତ ସଂପ୍ରଦାୟ ତା'ର ଅଧିକାର ସାବ୍ୟସ୍ତ କରିବ । ସ୍ୱାଧୀନତାର ଦୀର୍ଘ ବୃଦ୍ଧି ଦଶନ୍ଧି ମଧ୍ୟରେ ଦାରିଦ୍ର୍ୟର ସୀମାରେଖା ତଳେ ନିପୀଡ଼ିତ ସାଧାରଣ ମଣିଷର ଦୁଃଖ ଦୁର୍ଦ୍ଦଶା ନିର୍ବାପିତ ହୋଇନାହିଁ । କବି ରାଉତରାୟ 'ସାହସ୍ପର୍ଶ' (କବିତା ୧୯୮୩) ଓ 'କ୍ଷୁଧା' (ଦିଗନ୍ତ-ଜାନୁଆରୀ-ମାର୍ଚ୍ଚ ୧୯ ୯)ରେ ସେଥିପାଇଁ ଅବହେଳିତ ସମାଜର ସର୍ବନିମ୍ନ ଆବଶ୍ୟକତାର ପରିପୂରଣ ପାଇଁ ଆହ୍ୱାନ ଦେଇଛନ୍ତି । ପ୍ରସନ୍ନ ପାଟଶାଣୀ 'ଅଗ୍ନିଯୁଗରେ 'କୃଷକ'ର ଆଖିରେ ଏକ ନୂତନ ସକାଳର ଉଦୟ ଉତ୍ସବ ଲକ୍ଷ୍ୟ କରିଛନ୍ତି—ସମୁଦ୍ରର ନୂଆର ଭିତରେ ପୁଞ୍ଜିବାଦୀ ବଣିକର ଡଙ୍ଗା ନିଶ୍ଚିହ୍ନ ହୋଇଛି । ମଣିଷ ହୋଇଛି ଈଶ୍ୱରଙ୍କଠାରୁ ଗରୀୟାନ । କାରଣ ନୂତନ ଯୁଗର ସେ ସ୍ରଷ୍ଟା ।

ଯଦୁନାଥ ଦାସ ମହାପାତ୍ର 'ସାର୍ଥକ କବିତା'ରେ ଯେଉଁ ବାସ୍ତବବାଦୀ ଚିନ୍ତା ପ୍ରକାଶ କରିଥିଲେ ଉତ୍ତର-ସତୁରୀର 'ମେଘବର୍ଣ୍ଣୀ'ରେ ତାହା ଅଧିକ ସନ୍ନିବିଷ୍ଟଭାବେ ଆତ୍ମ-ପ୍ରକାଶ କରିଛି । 'ସାର୍ଥକ କବିତା'ରେ ସମରସଂଘାତମୁକ୍ତ ବିଶ୍ୱମୈତ୍ରୀ ପ୍ରତିଷ୍ଠା ଥିଲା ତାଙ୍କର କାମ୍ୟ—'ବିଶ୍ୱର ନାଗରିକ/ଆହେ ବନ୍ଧୁ/ତୁମେ ଆସ/ହାତରେ ମିଳାଅ ହାତ/ଆମ ଛନ୍ଦେ/ଦିଅ ତୁମେ ତାଳ/ନିର୍ଭୀକ ଉଦାର ହୋଇ/ଏ ବିଶ୍ୱର ଯୁଦ୍ଧଭୟ ନାଶି/ଉପରକୁ ଟେକ ଆଜି/ଶକ୍ତ ହାତେ/ଶାନ୍ତିର ମଶାଲ (୨୪)' ।

'ମେଘବର୍ଣ୍ଣୀ'ରେ ଏହି ମୈତ୍ରୀବୋଧ ଯୁଗଚେତନାର ବିବର୍ତ୍ତନ ସହ ଅଧିକ ବିକଶିତ । 'ଶାନ୍ତ ହୁଅ ଏ ପୃଥିବୀ', 'ରିକ୍‌ସାବାଲା', 'ଶ୍ରମିକ', 'ସର୍ବହରା', 'ବନରୁ ସହରେ' ଆଦି କବିତାରେ ରାଜନୀତି, ସଂସ୍କୃତି ତଥା ସର୍ବହରା ଗୋଷ୍ଠୀର ସମସ୍ୟା, ସଂକଟ ଆଲୋଚିତ । 'ଶାନ୍ତ ହୁଅ ଏ ପୃଥିବୀ'ରେ ସମକାଳୀନ ରାଜନୀତିକ ଚେତନା ପ୍ରତି ବ୍ୟଙ୍ଗ ପ୍ରକଟିତ । ରାଜନୀତିର ସ୍ୱୈରାଚାରରେ ପୃଥିବୀ ଅଶାନ୍ତ । ତା'ର ଘୋଡା-ଦୌଡ଼ରେ ବସୁନ୍ଧରା ଛତାକ୍ତ—'ରାଜନୀତି ଘୋଡ଼ା ଛୁଟେ/ସବାରକୁ ଭ୍ରୂକ୍ଷେପ ନକରି/

ଭ୍ରୂକ୍ଷେପ ନ କରି ପୁଣି/ତଳେ ଥିବା/ସବୁଜ ଘାସକୁ/ଘାସରଜନନୀ ମାଟି/ ଗର୍ଭେ ତା'ର ପ୍ରସବବେଦନା/ଘୋଡ଼ା କ'ଣ ବୁଝିପାରେ/ସେ ମାଟିର ଜୀବନ ଯନ୍ତ୍ରଣା (୨୫)?' ମାନବ-ସମାଜର ସଂହତ ବିକାଶ ଓ ସୁରକ୍ଷା ପାଇଁ ରାଜନୀତିର ଅଭ୍ୟୁଦୟ । କିନ୍ତୁ ସାଂପ୍ରତିକ କାଳରେ ବ୍ୟକ୍ତିକୁ କବଳିତ କରିଛି ରାଜନୀତି । ରିକ୍ସାବାଲା, ଶ୍ରମିକ, ସର୍ବହରାର ସଙ୍କଟ ବଢ଼ିଛି । ଜୀବନଧାରଣର ମାନ ହ୍ରାସ ପାଇଛି । 'ରିକ୍ସାବାଲା' କବିତାରେ କବି ସେଲିମ ଖାଁ ରିକ୍ସାବାଲାର ଦୁଃଖ, ଯନ୍ତ୍ରଣା ପ୍ରତି ବୁଦ୍ଧିଜୀବୀ ସମାଜକୁ ସଚେତନ କରାଇଛନ୍ତି । 'ସର୍ବହରା'ରେ ସୌଦାଗରୀ ପୁଞ୍ଜିପତି ସମାଜର ସ୍ଥିତିକୁ ବିଦ୍ରୂପ କରିଛନ୍ତି । ଆଲୋକମାଳିନୀ ନଗର ସଭ୍ୟତା ଉଚ୍ଚବର୍ଗର ଶ୍ଲାଘ୍ୟ ହୋଇପାରେ, କିନ୍ତୁ ଅବହେଳିତ ସମାଜର ଦୁଃଖ, ଦୈନ୍ୟ ତହିଁରେ ଅଧିକତର ପରିସ୍ଫୁଟ ହୁଏ । ଏଣୁ ଅନ୍ଧାର ତା' ପାଇଁ ବରଣୀୟ, ଆଲୋକ ହଳାହଳ—'ଆଲୋକ ଅନେକ ଏଠି ରାତି ସବୁ/ଦିନ ପରି ଦିଶେ/ ମୁଁ କିନ୍ତୁ ଜନ୍ମର ଆଜି/ଏଇପରି ଆଲୋକର ବିଷେ (୨୫କ) ।'

'ମନକନ୍ୟା'ରେ ଯୁଦ୍ଧକ୍ଲିଷ୍ଟ ସାଂପ୍ରତିକ ବିଶ୍ୱର ବାସ୍ତବ ଚିତ୍ର ପରିପ୍ରେକ୍ଷୀରେ ଶ୍ରୀ ଦାସ ମହାପାତ୍ର ସମାଜକୁ ଚେତାବନୀ ଶୁଣାଇଛନ୍ତି । ଅନ୍ୟାୟ, ଅନାଚାର, ଲୁଣ୍ଠନ, ଧର୍ଷଣ ଓ ହତ୍ୟା ଆଦି ଅମାନବିକ କ୍ରିୟା-କଳାପ ଭିତରେ ସମାଜ ଏକ ଆରଣ୍ୟକ ସଭ୍ୟତାରେ ଉପନୀତ । ଏଣୁ ସଂଘର୍ଷ ଏଠାରେ ଅନିବାର୍ଯ୍ୟ । ଏହି ସଂଘର୍ଷ ସମ୍ଭବତଃ ବିଶ୍ୱର ଶେଷ ସଂଘର୍ଷ; କାରଣ ସେତେବେଳେ ଧାରାବିବରଣୀ ଦେବା ପାଇଁ ସଞ୍ଜୟଟିଏ ବି/ମିଳିବ ନାହିଁ/ଆମେ ତମେ ମଧ୍ୟ/ଯୁଦ୍ଧଠାରୁ ନିରାପଦ ଦୂରତ୍ୱରେ/ରହି ପାରିବ ନାହିଁ/ସମାଜର ଅରଣ୍ୟକୁ/ଜାଳିଦେବା ପାଇଁ/ଏ ଯୁଦ୍ଧ ଲାଗିବ ହିଁ ଲାଗିବ' (୨୬) ଏହା ବ୍ୟତୀତ ସତୀପ୍ରଥା ବିରୋଧରେ 'ସତୀ' କବିତାରେ କବି ସ୍ୱର ଉତ୍ତୋଳନ କରିଛନ୍ତି । ସ୍ୱାଧୀନତାର ଦୀର୍ଘ ଚାରି ଦଶନ୍ଧି ପରେ ମଧ୍ୟ ଏହି କୁସଂସ୍କାର ରାଜସ୍ଥାନର ଅଷ୍ଟାଦଶୀ ରୂପ କଁଓ୍ୱାରକୁ ଜୀବନ୍ତ ଦଗ୍ଧ କରିଥିବାରୁ ସେ କ୍ଷୋଭ ପ୍ରକାଶ କରିଛନ୍ତି । ଦଙ୍ଗାଗ୍ରସ୍ତ ମାଟିଆ ବୁରୁଜରେ ରାଉତରାୟ ଯେଉଁ ଚନ୍ଦ୍ରୋଦୟର ପରିକଳ୍ପନା କରିଥିଲେ (୨୬ କ) ଯଦୁନାଥ ଦାସମହାପାତ୍ର ସେଠାରେ ଦେଖିଛନ୍ତି ବାସ୍ତବ ଜୀବନର ନିଷ୍ଠୁର ଚିତ୍ର । ଶିଳ୍ପ ସଭ୍ୟତାର ସଂକ୍ରମଣ ଫଳରେ ସେଠାରେ ମୁକ୍ତ ଜୀବନ ଖଣ୍ଡିତ ହୋଇଛି । ପାରିବାରିକତା ବଳ-ବିତ୍ତର ହୋଇଛି । ପ୍ରେମ ହୋଇଛି ନିରର୍ଥକ । ଜୀବନ ଲକ୍ଷ୍ୟଭ୍ରଷ୍ଟ । ସ୍ୱାଧୀନତା ପରବର୍ତ୍ତୀ କାଳର ଜନଜୀବନର ଚିତ୍ର ଉତ୍ତର-ସବୁଜରେ ଯଦୁନାଥଙ୍କ କାବ୍ୟ ଜଗତକୁ ଦେଇଛି ଏକ ବାସ୍ତବଧର୍ମୀ ଆବେଦନ । ମୁଖ୍ୟତଃ ଏଇ ଆବେଦନ ପ୍ରଗତିବାଦୀ ସ୍ରୋତରେ ସଞ୍ଚାଳିତ ।

କବି ସୌଭାଗ୍ୟ ବାଣିକ ବ୍ୟକ୍ତିର ଅନ୍ତଃକରଣର ଧର୍ମୀମତାକୁ ହୃଦ୍ୟାସ୍ପ କାବ୍ୟ ଜଗତରେ ଉଦ୍‌ଘାଟନ କରିଛନ୍ତି । ନାନାବିଧ ପୂଜାପାଠ,ଆଧ୍ୟାତ୍ମିକ ସାଧନା ଓ ଶୁଦ୍ଧ ଆଚରଣଗତ ଅଭ୍ୟାସ ସତ୍ତ୍ୱେ ଅବଚେତନର ସମ୍ପୃତାନର ଅନୁପ୍ରବେଶ ଏକ ଅନିବାର୍ଯ୍ୟ ପରିଣତି । ଧର୍ମୀୟ ମୂଲ୍ୟବୋଧକୁ ଏହି ଅଧର୍ମ କଳଙ୍କିତ କରେ । 'ଉରୁଭଙ୍ଗ' କବିତାର ବକ୍ତବ୍ୟ ଏହା ଉପରେ ଆଧାରିତ—'ସବୁ ଚେଷ୍ଟା ସତ୍ତ୍ୱେ/ଧର୍ମ ପାରିଲିନି ନାଶି/ ଛପିଯାଇ ତା'ଭିତରେ/ତୁମକୁ ହିଁ ଲୁଆଁ ବୁଲିଇଲି' (୨୭) ବସ୍ତୁତଃ ବ୍ୟକ୍ତିର ଅସମର୍ଥ ଆତ୍ମସତ୍ତା 'ଉରୁଭଙ୍ଗ'ର ମର୍ମବାଣୀ । ବାରମ୍ବାର ଧର୍ମ ଯୁଦ୍ଧ, ବାରମ୍ବାର ଉରୁଭଙ୍ଗ ସତ୍ତ୍ୱେ ବାସ୍ତବ ଚେତନାର ସର୍ବକାଳୀନ ସଞ୍ଚରଣ ଭଙ୍ଗିରେ ଗୁମ୍ଫିତ । 'ଶରଶଯ୍ୟା' କବିତାରେ ଭୀଷ୍ମ ଚରିତ୍ର ଏକ ଅପାରଂପରିକ ସ୍ୱରରେ ଚିତ୍ରିତ । ବ୍ରହ୍ମଚର୍ଯ୍ୟ ତଥା ଐଶ୍ୱର୍ଯ୍ୟବିହୀନ ଜୀବନଚର୍ଯ୍ୟାର ଅନ୍ତରାଳରେ ଭୀଷ୍ମର ଅବଚେତନରେ ଦେବବ୍ରତ ନିତ୍ୟ ଜାଗ୍ରତ । ଏଣୁ ଜୀବନର ଶେଷ ମୂହୂର୍ତ୍ତରେ, ଶରଶଯ୍ୟାର ନିଃସଙ୍ଗ ବେଦନାରେ ପିତାମହ ଭୀଷ୍ମ ଏହି ନିରାଭରଣ ସତ୍ୟପାଠ କରନ୍ତି—'ଶୃଙ୍ଗରାଜ ପରି ମହାନ ହୋଇ/ ସ୍ତୂପ ସ୍ତୂପ ବରଫ ତଳେ/ଦେବବ୍ରତକୁ ପୋତିଦେଇ ଥିଲି/ଦେବବ୍ରତ କିନ୍ତୁ ମଲନାହିଁ/ ତାକୁ ମାରି ପାରିଲିନି (୨୮) ।' ଅଟଳ ପ୍ରତିଜ୍ଞାବଦ୍ଧ ଭୀଷ୍ମ ଶୃଙ୍ଗରାଜ ଭଳି ନିଜର ଉନ୍ନତ ମସ୍ତକକୁ ଅବନ୍ୟୋଃପାୟ ହୋଇ ଅବନତ କରନ୍ତି । ଜୀବନ ଏକ ଶେଷହୀନ ଶୂନ୍ୟତାରେ ହିଁ ଏ ସମାପିତ ।

ପ୍ରତ୍ୟେକ ବ୍ୟକ୍ତି ଅନ୍ତରରେ ଦ୍ୱିବିଧ ସତ୍ତା ବର୍ତ୍ତମାନ । ଗୋଟିଏ ଭୀଷ୍ମ, ଅପରଟି ଦେବବ୍ରତ । ଯନ୍ତ୍ରଣାର ଶରଶଯ୍ୟାରେ ଭୀଷ୍ମଙ୍କର ନିଷ୍କପଟ ସତ୍ୟପାଠ ମଧ୍ୟରେ ବ୍ୟକ୍ତି ଜୀବନର ବ୍ୟର୍ଥତା ଓ ବିଷାଦ ପ୍ରକଟିତ ।

ଶିଳ୍ପ ସଭ୍ୟତାର ସଂକ୍ରମଣ ମଧ୍ୟରେ ବ୍ୟକ୍ତି ଏକ ଚରମ ଶୂନ୍ୟତାବୋଧରେ ଗ୍ରସ୍ତ । ଚିରନ୍ତନ ପ୍ରେମବୋଧ ଅସ୍ତମିତ । ମୃତ୍ୟୁଞ୍ଜୟୀ ଜୀବନବୋଧ ମୃତ୍ୟୁର କବଳିତ । ହିଂସା-ଦ୍ୱେଷ ମଧ୍ୟରେ ଅମୃତର ଶିଶୁ ଅଳ୍ପାୟୁ । ଚିନ୍ତାମଣି ବେହେରାଙ୍କ 'ହିଂସର୍ଗାଢ଼' କବିତାରେ ଏହା ଅଭିବ୍ୟକ୍ତ । ଅତୀତର ରୋମାଞ୍ଚକର ପ୍ରେମବୋଧ ଅପମୃତ୍ୟୁ ଲଭିଛି । ମୃତ୍ୟୁ ହାତରୁ ସାଂପ୍ରତିକ ଶିଳ୍ପସଭ୍ୟତାର ଅବା ମୁକ୍ତି କାହିଁ ? ଶିଳ୍ପୀଙ୍କ ଭାଷାରେ— 'ମୃତ ଆଜି ଅଳକାର ଯକ୍ଷ/ହିଂସ୍ର ଆଜି ଛିନ୍ନପକ୍ଷ/କଂକ୍ରିଟର କୋଠା ପଡ଼େ ଭଜି (୨୯) ।'

ପ୍ରସନ୍ନ କୁମାର ମିଶ୍ର ଏଇ ଅବକ୍ଷୟକୁ ଲକ୍ଷ୍ୟ କରିଛନ୍ତି ତାଙ୍କର, 'ପୃଥିବୀରେ ଦୁଃସମୟ'ରେ । ବ୍ୟକ୍ତିବିଶେଷର ବିପର୍ଯ୍ୟୟ ମଧ୍ୟରୁ କବିତାଟିର ଅଯୁମାରମ୍ଭ । ସ୍ୱାମୀ

ଦୁର୍ନୀତିଗ୍ରସ୍ତ ଜାଣି ମଧ୍ୟ ପତ୍ନୀ ତାଙ୍କ ଆୟର ସୂତ୍ର ସନ୍ଧାନପାଇଁ ବ୍ୟଗ୍ର ନୁହେଁ କାରଣ ତାଙ୍କୁ ଅପବ୍ୟୟ କରିବାକୁ ପ୍ରଚୁର ସମୟ ମିଳୁଛି । ପାଦରେ କ୍ରିମ ବୋଳିବା ଛଡ଼ା ଅନ୍ୟ କିଛି ଆଖିବୁଜିଆ କାମ ହାତରେ ନାହିଁ । ଏଣୁ ପତିଙ୍କର ଅସତ୍ ଉପାୟରେ ଅର୍ଥ ଉପାର୍ଜନ ପ୍ରତି ଦୃଷ୍ଟି ନ ଦେବା ତାଙ୍କ ପକ୍ଷରେ ବିଜ୍ଞତାର ପରିଚାୟକ ।

କେବଳ ବ୍ୟକ୍ତିବିଶେଷର ଜୀବନ-ବୃତ୍ତ ନୁହେଁ, ଗାଁ, ଦେଶ, ନଗର ତଥା ରାଜ୍ୟସମେତ ସମଗ୍ର ପୃଥିବୀକୁ ଆକ୍ରାନ୍ତ କରିଛି ଦୁଃସମୟ । ବ୍ୟକ୍ତିବିଶେଷ ଭାବେ ଅତି କ'ଣ ସାଧାରଣ ମଣିଷଟିଏର ? ତା' ପାଇଁ ବରଂ ଏହା ସୁସମୟ—'ତୁମ ଲାଗି/ଉକ୍ତ ଉପାର୍ଜନ କରିଛି ସୁସମୟ/ଖାଇଲେ ପୃଥିବୀକୁ ଖାଉ ଦୁଃସମୟ (୩୦) ।'

ଦୁର୍ଗାଚରଣ କୁଅଁରଙ୍କ 'ଏଇ ଦେଶ' ରାଷ୍ଟ୍ରୀୟ ଅଧୋଗତିର ଏକ ମାନଚିତ୍ର । ଭାରତବର୍ଷର ଇତିହାସ ନିଷ୍ଠୁର ବିଦ୍ରୂପର ଶିକାର । ମଣିଷ କେବଳ ଶ୍ରମିକ ନୁହେଁ, ସେ କ୍ରୀତଦାସ । ସମାଜରେ ତାର ସ୍ଥିତି ନଗଣ୍ୟ, ହେୟ । ଅନାହାର ଓ ଅର୍ଦ୍ଧାହାରରେ ସେ ମୁମୂର୍ଷୁ/ ପଣ୍ୟବାହୀ ଜାହାଜରେ ଦାଦନ ଶ୍ରମିକ ରୂପେ ତାକୁ ରପ୍ତାନି କରାଯାଏ ।

ଜାତିର ତଥାକଥିତ ପ୍ରଗତି ପ୍ରତି ଏମାନେ ଯେପରି ଏକ ଏକ ମୂର୍ତ୍ତିମନ୍ତ ବିଦ୍ରୂପ—'ଏ ଦେଶର ଇତିହାସ ଓ ପ୍ରଗତିର/ଏମାନେ ଯେପରି ଏକ ମୂର୍ତ୍ତିମନ୍ତ ବିଦ୍ରୂପ/ଜାତୀୟ ଜୀବନର ଏହି ଭାରସାମ୍ୟହୀନତା ଯୋଗୁ (୩୦କ) ।'

ସମସ୍ତ ରଙ୍ଗହୀନ, ବିପର୍ଯ୍ୟସ୍ତ । ତଥାପି ବ୍ୟକ୍ତିସତ୍ତା ଅହଂମନସ୍କ । ବୃହତ୍ତର ଜୀବନ ପଥରେ ଯାତ୍ରା କରିବା ପାଇଁ ପ୍ରବଣତା ସୀମାହୀନ । କିନ୍ତୁ ଇତିହାସ ଗଠନର ଗୁରୁଦାୟିତ୍ୱ ବହନ କରିବା କ୍ଷେତ୍ରରେ ସମାଜ ବିଫଳ । ସୁରେଶ ପରିଡ଼ାଙ୍କ 'ଗଣ-ତନ୍ତ୍ରର କବିତା'ରେ ଗଣତନ୍ତ୍ର ଶାସନର ବିଫଳତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶିତ । ନେତୃବର୍ଗଙ୍କ ଆଖିରେ ଗଣତନ୍ତ୍ର ସ୍ୱପ୍ନର ଗୋଲାପ ପରି ଫୁଲି ଉଠିବା ବେଳେ, ସାଧାରଣ ଜନତା ଗୋଲାପ ତଳର କଣ୍ଟାରେ କ୍ଷତାକ୍ତ । କବିଙ୍କ ଭାଷାରେ ଗଣତନ୍ତ୍ରର ଜାଗ୍ରତ ପ୍ରହରୀ ବୋଲାଉଥିବା ନେତୃବୃନ୍ଦ ଏକ ଏକ ବ୍ରୁମେଲ । ଅଷ୍ଟାଦଶ ଶତାବ୍ଦୀର ଶେଷ ତଥା ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ପ୍ରିନ୍ସ ଅଫ ୱେଲସ୍‌ଙ୍କ ବନ୍ଧୁ ବ୍ରୁମେଲ ଥିଲେ ପୃଥିବୀର ଜଣେ ଜଣାଶୁଣା ବିଳାସପ୍ରିୟ ବ୍ୟକ୍ତିବିଶେଷ । ସାଂପେନରେ ଜୋତା ସଫା କରିବା ଥିଲା ତାଙ୍କର ଅଭ୍ୟାସ । ଆମର ନେତୃବର୍ଗ ଏହି ବ୍ରୁମେଲଙ୍କ ପରି ବିଳାସପ୍ରିୟ । ଦୁଃଖ ସହ ଏମାନଙ୍କର ପ୍ରତ୍ୟକ୍ଷ ସଂପର୍କ ଗୌଣ । ଗୁଳିରେ ରହି ଏମାନେ ଖଦିର କଠୋରତା ବଖାନ କରନ୍ତି । 'ଆଙ୍ଗୁଳାଏ ଲୁହ ଉପରେ/ଗଣତନ୍ତ୍ରର ଗୁଳି ପଡ଼ିଚି/ ବହୁତ କିଛି କହିବାର ଅଛି/ ସମ୍ରାଟଙ୍କ ମଥାରୁ ମୁକୁଟ/ହାତରୁ ଗ୍ଲବ୍‌ଜ/ ଛଡ଼ାଇ ଆଣିବାର ଅଛି (୩୧) ।

ଜୀବନର ସ୍ଥିତାବସ୍ଥା ବିରୋଧରେ ସଂଗ୍ରାମହିଁ ପ୍ରଗତିବାଦୀ କବିର ଲକ୍ଷ୍ୟ । ବାସ୍ତବବାଦୀ କବିମାନସ ନୀରବରେ ମୁଣ୍ଡ ଟୁଙ୍ଗାରିବା ଜୀବନର ଧର୍ମ ବୋଲି ଗ୍ରହଣ କରେ ନାହିଁ । ଯେଉଁଠାରେ ଅନ୍ୟାୟ, ଅନାଚାରକୁ ମୁଣ୍ଡ ପାତି ସହିବାକୁ ହୁଏ, ସେଠାରେ ନିଜକୁ ନିଜେ ସେ ବିଦ୍ରୂପ କରେ । କମଳାକାନ୍ତ ଲେଙ୍କାଙ୍କ 'କେମିତି ବଞ୍ଚିଚି ମୁଁ'ରେ ଏହି ବିଦ୍ରୂପର ସ୍ୱର ଉଚ୍ଚକିତ—'କିଏ କହିବ/ମୁଁ ବଞ୍ଚିଚି/ବଞ୍ଚିବାର ମାନେ ଯଦି/ପ୍ରତିକଥାରେ ମଥା ଟୁଙ୍ଗାରିବା ଓ ନିର୍ବିରୋଧେ/ସବୁ କିଛି ମାନିଯିବା/ ଚୁପ୍ ହେବା/ହସିଦେବା (୩୨), ତାହେଲେ ମୃତ୍ୟୁ ତା' ଅପେକ୍ଷା ଶ୍ରେୟସ୍କର । ଏଣୁ 'ଯିଏ ଯେଉଁଠି ଯେଉଁ ଅବସ୍ଥାରେ ଅଛ' 'ପ୍ରତିବାଦର ମନ୍ତ୍ର ପଢ଼' ବୋଲି କମଳାକାନ୍ତ ଆହ୍ୱାନ ଦିଅନ୍ତି ।

ଆଧୁନିକ ମଣିଷ କିନ୍ତୁ ଏଭଳି ଏକ ସମୟର ଶିକାର ଯେ ଅପମୃତ୍ୟୁର ପରିଧିରେ ତା'ର ଇହକାଳ ବନ୍ଦୀ । ଅମରେନ୍ଦ୍ର ଖଟୁଆଙ୍କ 'ଅପମୃତ୍ୟୁର ଜନ୍ମ ଦିବସ (୩୩)'ରେ ଜୀବନର ଏହି ଅସାମର୍ଥ୍ୟ, ନିଃସଙ୍ଗତା ଓ ଦୁର୍ବଳତା ପ୍ରକଟିତ । କାଳ ଅସହିଷ୍ଣୁ । ଅନ୍ତର୍ଲୋକ ବିଷାକ୍ତ ଗରଳରେ ପରିପୂର୍ଣ୍ଣ । ପରମାଣୁ ଯୁଦ୍ଧର ଆତଙ୍କରେ ସଚରାଚର ଭୟଭୀତ । ପତନର ଆଗ୍ନେୟଗିରିରୁ ଅଭିଶାପର ନିଆଁ ଉତ୍‌କୀର୍ଣ୍ଣ । ଧର୍ମ, ଗଣତନ୍ତ୍ର ଓ ଇତିହାସ ମିଥ୍ୟାଚାରରେ କଳଙ୍କିତ । ସକଳ ପ୍ରତାରଣା ଓ ଅବମୂଲ୍ୟାୟନ ମଧ୍ୟରେ ଅବହେଳିତ ସମାଜ ତଥାପି ଜୀବନଧାରଣ କରେ । ଜଗନ୍ନାଥ ପ୍ରସାଦ ଦାସଙ୍କ 'ବସ୍ତି' କବିତାରେ ଏହା ଅଭିବ୍ୟକ୍ତ—ପଞ୍ଚବର୍ଷ ଯୋଜନା ଓ ଇସ୍ତାହାର ସତ୍ତ୍ୱେ/ବସ୍ତି ତଥାପି ବଞ୍ଚି ରହିଥାଏ/ଗଳିମୁଣ୍ଡରେ ନିଶ୍ଚିନ୍ତରେ ଖେଳୁଥିବା ଶିଶୁଟି ଭଳି/ଯେ ଏ ପର୍ଯ୍ୟନ୍ତ/ଧର୍ମ, ଗଣତନ୍ତ୍ର ଅଥବା ଇତିହାସ ଦ୍ୱାରା/ସଂକ୍ରମିତ ହୋଇନାହିଁ (୩୪) ।' ଆର୍ଥିକ ଦାରିଦ୍ର୍ୟ ସତ୍ତ୍ୱେ ଅବହେଳିତ ବର୍ଗର ମାନସିକ ନିଷ୍ପାପତା ପ୍ରତି କବି-ଆତ୍ମାର ସମ୍ମାନବୋଧ ଏଠାରେ ସମର୍ପିତ ।

ମୁକ୍ତ ସ୍ୱାଧୀନ ରାଷ୍ଟ୍ରରେ ସକଳ ମାନସିକ ଐଶ୍ୱର୍ଯ୍ୟ ସତ୍ତ୍ୱେ ସର୍ବହରା ସମାଜ ନିପୀଡ଼ିତ । ସ୍ୱାଧୀନତା ପ୍ରାପ୍ତି ପାଇଁ ଆତ୍ମୋତ୍ସର୍ଗ ଥିଲା ଜାତିର ମନ୍ତ୍ର । ଏବେ ଆତ୍ମ-ତୃପ୍ତି ରକ୍ତଶୋଷଣ ହୋଇଚି ଜୀବନର ଧର୍ମ । ରାଧା ମୋହନ ଗଡ଼ନାୟକଙ୍କ 'ଫେରିଯାଅ କବିକୁଳ'ରେ ଏହି ହୀନଶୋଷଣ ପ୍ରବୃତ୍ତିର ସୂଚନା ଦେଇଛନ୍ତି—କିଏ କେତେ/ରକ୍ତ ସିନା/ଦେଇଥିଲେ/ଦେଶମୁକ୍ତି ପାଇଁ/ଅନ୍ୟରକ୍ତ ପିଇବାରେ 'ମତ୍ତ ସବୁ/ନିଜ ତୃପ୍ତି ପାଇଁ (୩୫)' । ଗଡ଼ନାୟକ ସ୍ୱାଧୀନତା ପରବର୍ତ୍ତୀ ରାଷ୍ଟ୍ରୀୟ ଅଧୋଗତି ପରିପ୍ରେକ୍ଷୀରେ ତୀବ୍ର ହତାଶା ଓ ନୈରାଶ୍ୟ ପ୍ରକାଶ କରିଛନ୍ତି ।

ବ୍ରଜନାଥ ରଥ ଜାତୀୟ ଜୀବନର ଅଧୋପତନ ପରିପ୍ରେକ୍ଷୀରେ ଶୁଣିଛନ୍ତି ଭାରତର ସାଂସ୍କୃତିକ ଆତ୍ମାର ଆର୍ତ୍ତନାଦ । ସଂସ୍କୃତିକୁ ସାକାର ରୂପ ସେ ଦେଇଛନ୍ତି । ଦେଖିଛନ୍ତି ତା'ର ମୂର୍ତ୍ତିରୂପ ନୂଆ ଦିଲ୍ଲୀର ରାଜପଥରେ, ଶତଦ୍ରୁ, ଯମୁନା, ଗଙ୍ଗା, ବ୍ରହ୍ମପୁତ୍ର, ମହାନଦୀ, ଗୋଦାବରୀ, କୃଷ୍ଣା, କାବେରୀ ତଟରେ । ଆସାମର ଚା ବଗିଚାରୁ ତାଳଚେର, ଝରିଆ ଓ ରାଣୀଗଞ୍ଜ କୋଇଲା ଖଣିରେ । ସହର ଉପକଣ୍ଠର କୁଲି ବସ୍ତିରେ । ମାନ୍ଦ୍ରାଜ, କୋଚିନ, କୁମ୍ଭ ମେଳା, ଶ୍ରୀରଙ୍ଗପଟ୍ଟମ, ବାଲିଆପାଳ ଓ ପଞ୍ଜାବରେ । କବିଙ୍କ ମନେହୋଇଚି—'ସେ ଗୋଟିଏ ରୂପ ନୁହେଁ/ସେ ଯେ ବହୁ ସମ୍ମିଳିତ ରୂପର ସମଷ୍ଟି/ସେ ଗୋଟିଏ ବ୍ୟକ୍ତି ନୁହେଁ/ତା' ଭିତରେ ଅସହାୟ/ବ୍ୟକ୍ତି କୋଟି କୋଟି/ନେଇଛନ୍ତି ମୂର୍ତ୍ତିମନ୍ତ ରୂପ (୩୬) !, ଅବସନ୍ନ, ମଳିନ ତା'ର ରୂପଶ୍ରୀ । ଉଦାସ ଆଖିରେ ଏକବିଂଶ ଶତାବ୍ଦୀର ଦ୍ୱାରକୁ ସେ ଯାତ୍ରାରତ । ରାଜନୈତିକ ନେତୃବୃନ୍ଦଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ଏକବିଂଶ ଶତାବ୍ଦୀର ସୁବର୍ଣ୍ଣ ନାମଫଳକ ପ୍ରତି ସେ ସ୍ୱୟଂ ଏକ ଉପହାସ ।

ଯୁଗ ଓ ଜୀବନ ଶ୍ମଶାନଗ୍ରସ୍ତ । ସରୋଜ ରଞ୍ଜନ ମହାନ୍ତି ଏଇ ବିବର୍ଣ୍ଣ ଭୂମିର ପୃଷ୍ଠପଟରେ ରଚନା କରିଛନ୍ତି 'ମଶାଣି ଭୂଇଁର କବିତା' । ସମଗ୍ର ସମୟକୁ ଆକ୍ରାନ୍ତ କରିଚି ଏକ ଅଗ୍ନିମୟ ଜ୍ୱାଳା । ମାଟି ଓ ଆକାଶ ପ୍ରଜ୍ୱଳିତ—'ଜଳୁଚି ଦେହ ମନ/ ସପନର ଲଳିତ ସାଧନା/ଅଙ୍ଗାରର ବନ୍ଧୁକ ଗୁଳିରେ ଝଙ୍କ/ମନର ଯେତେକ ମହକ/ ଯେତେ ଆଶା ଗତିଶିହରଣ (୩୭) । 'କ୍ଷମତା' ପ୍ରତିପତ୍ତି ଓ ସାମାଜିକ ସମ୍ମାନପାଇଁ ମାନବିକତା ସମର୍ପିତ । ବିକୃତି, ଶୋଷଣ, ସନ୍ତ୍ରାସ ଓ ଶୋଭାଯାତ୍ରା ମଧ୍ୟରେ ସମୟ ଅତିବାହିତ । ପ୍ରାପ୍ତିର କାମନାରେ ଜୀବନ ଖଣ୍ଡିତ, ଅଥବା, ଖଣ୍ଡିତ । କବି ସମକାଳୀନ ସମାଜର ବାସ୍ତବ ଚିତ୍ର କେବଳ ଅଙ୍କନ କରନ୍ତି ନାହିଁ ତା'ର ନିରାକରଣ ପାଇଁ ମଧ୍ୟ ଅଭିଳାଷ ପୋଷଣ କରନ୍ତି । ଏଣୁ ନିର୍ଯାତିତ ଶ୍ରମିକ ସମାଜର ଜୀବନ-କାଗଜ ଅହରହ ଲେଖି ପଡ଼ୁଥିବା ବ୍ୟଥା-ବେଦନାର କାଳିକୁ କବିଙ୍କର ଚେତନା ବ୍ଲଟିଂ କାଗଜ ହୋଇ ନିଃଶେଷିତ କରିବାକୁ ସ୍ୱୀକୃତ । କିନ୍ତୁ ବ୍ୟକ୍ତିବିଶେଷର ଉଦ୍ୟମ ଅଥବା ନିଷ୍ଠା ଏକ ବର୍ଗର ଦୁଃଖ ଓ ଯନ୍ତ୍ରଣାର ଅପସାରଣ ପାଇଁ ଯଥେଷ୍ଟ ନୁହେଁ । ବଣିକ ଧର୍ମୀ ସଭ୍ୟତାର ଲାଭଖୋର ବ୍ୟବସାୟୀ ମନୋଭାବ ହେତୁ ଜୀବନର ଛନ୍ଦ ଓ ଉତ୍ତାପ ଅପମୃତ—" × × ଆମେ ସବୁ ବ୍ୟବସାୟୀ/ଲାଭଖୋର ବ୍ୟବସାୟୀ ଆମେ/ଆମେ ସବୁ ଧପ୍‌ପାବାଜ/ଫାଙ୍କାବାଜ/ସମାଜ ଓ ଶାସନର ଚଳନ୍ତିପ୍ରତିମା/ପ୍ରତ୍ୟେକ କଥାକୁ ଯିଏ/ମୂଳଧନ-ଲାଭ କ୍ଷତି ଦର୍ଶନର ତରାଜୁରେ ତଉଲିବା ବିଦ୍ୟାରେ ଅଭିଜ୍ଞ (୩୮) ।'

ଚଳିତ ଦୁଇ ଦଶନ୍ଧିର ପ୍ରତିଷ୍ଠାପ୍ରାପ୍ତ କାବ୍ୟ-ସ୍ୱର ସ୍ରଷ୍ଟାମାନଙ୍କ ମଧ୍ୟରେ କବି ନୃସିଂହ ପ୍ରସାଦ ତ୍ରିପାଠୀ ଅନ୍ୟତମ । ତାଙ୍କର 'ପୂର୍ବାଦ୍ରିଗ', 'ବୃକ୍ଷାମଣୀ', 'ହେ ଈଶ୍ୱର

ଈଠ' ଓ 'ଜନ୍ତ୍ରିତ ସନ୍ନ୍ୟାସ' ଉଭୟ ବ୍ୟକ୍ତିଚେତନା ଓ ସମାଜ ଚେତନାର ସମ୍ମିଳିତ ଅଭିବ୍ୟକ୍ତି । ବ୍ୟକ୍ତିସତ୍ତାର ଚିନ୍ତାଗତ ସସୀମତା, ଯୋଜନାବଦ୍ଧ ଜୀବନଧାରା ମଧ୍ୟରେ ଚରମ ସ୍ୱାଗ୍ୟସ୍ୱାନତା ଏବଂ ସଙ୍କଳନର କବିତାଗୁଚ୍ଛରେ ସୂଚିତ । ବ୍ୟକ୍ତି କବି ଶ୍ରୀ ତ୍ରିପାଠୀଙ୍କ ଭାଷାରେ ପ୍ରତିବାଦବହ୍ନିର ଏକ ମେଷଶାବକ । ଅଭିଳାଷର ମାୟାଶୀ ତାଙ୍କୁ ବଶୀଭୂତ କରିଛି । କବି ଅନୁଭବ କରିଛନ୍ତି—'ସବୁ ଯେମିତି/ଏଇ ହେବ ଶେଷ/ ସୂର୍ଯ୍ୟର ପ୍ରତ୍ୟୟକୁ/କିଣିନେବ ପଶ୍ଚିମ ବତାସ (୩୯) ।'

ଜୀବନର ପରିସୀମାଶାଳେ କବିଚେତନା ନିତ୍ୟନୈମିତ୍ତ ପୂର୍ବଦିଗ ପାଇଁ ପ୍ରତୀକ୍ଷାରତ । କିନ୍ତୁ ପୂର୍ବଦିଗ କାହିଁ ସ୍ଥିର, ଅଚଞ୍ଚଳ ନୁହେଁ । ହାତ ବଢ଼େଇବା କ୍ଷଣି ଦୂରକୁ ଘୁଞ୍ଚିଯାଏ । ସମଗ୍ର ଜୀବନ ହୋଇଯାଏ ଏକ ଅନ୍ତରାଳର ଦୃଶ୍ୟ । କବି 'ବୁଝାମଣା'ର ପ୍ରୟାସ କରେ । ଜୀବନ ସହ ସାଲିସ କରିବାପାଇଁ ତା'ର ପ୍ରଚେଷ୍ଟା ରହିଥାଏ । କିନ୍ତୁ ସେ ଦ୍ୱୈତ ବ୍ୟକ୍ତିତ୍ୱଧାରୀ । ଅନ୍ତରରେ ଅସଂଖ୍ୟ ବାସନା, ଯାହା ସଦା ଅପରିତୃପ୍ତ । ପ୍ରତିକୂଳ ଅନୁଭୂତିର ବିସ୍ଫୋରଣରେ ତା'ର ତ୍ୱକ୍, ମାଂସ, ରକ୍ତ, ଶିରା, ଧମନୀ ବିଦୀର୍ଣ୍ଣ—'× × × ଅଗଣିତ ଜୀବନର ଅତୃପ୍ତ ବାସନାର/ଇଚ୍ଛା କାହିଁ/ଚେଷ୍ଟା ସହ ହୁ ହୁ ବଢିଗଲେ/ଦୁଃଖର ଭଣ୍ଡାର। × × ସେ ବିସ୍ଫୋରଣରେ/ମୋର ମାଂସ/ହାଡ଼/ଖଣ୍ଡ ଖଣ୍ଡ ହୋଇଯାଏ/ରକ୍ତ ବି ହାଲିଆ ହୁଏ ବଞ୍ଚିବାର ପ୍ରୟାସରେ × (୪୦)'

ବ୍ୟକ୍ତି, ସାମାଜିକ ଅନୁବନ୍ଧନର କ୍ରୀତଦାସ । ଜଞ୍ଜାଳର ଜଙ୍ଗଲଗା ଜୀବନରେ ପୂର୍ଣ୍ଣତାର ଫଗୁ ଉତ୍ସବର ସନ୍ଧାନ ସେ କରେ । କିନ୍ତୁ ପୂର୍ଣ୍ଣତା ସମଗ୍ର ସମାଜର ବିକାଶ ପରିପ୍ରେକ୍ଷୀରେ ହୁଏ ଖଣ୍ଡିତ । ଏଣୁ 'ହେ ଈଶ୍ୱର ଈଠ' କବିତାରେ କବିଙ୍କର ଦୃଷ୍ଟି ସମଗ୍ର ସମାଜ ଉପରେ କେନ୍ଦ୍ରୀଭୂତ । ମାନବ ସମାଜର ଧ୍ୱଂସ ଲୀଳା କେବଳ ଦୁଇ ଦୁଇଟି ମହାସମର ମଧ୍ୟରେ ପ୍ରକଟିତ ନୁହେଁ । ସାମ୍ପ୍ରତିକ ବିଶ୍ୱର ତୀବ୍ର ମାରଣାସ୍ତ୍ର ପ୍ରତିଯୋଗିତା, ଶୀତଳ ଯୁଦ୍ଧ ଅଥବା ତୃତୀୟ ବିଶ୍ୱଯୁଦ୍ଧର ସମ୍ଭାବ୍ୟ ଆତଙ୍କ ମଧ୍ୟ ତାହା ନୁହେଁ । ନିତ୍ୟନୈମିତ୍ତ ଜୀବନ ଯୁଦ୍ଧରେ ତା'ର ଚେତନା ସ୍ୱାର୍ଥବିଜଡ଼ିତ । ଉଭୟ ପଲ୍ଲୀ ଓ ନଗର ସଭ୍ୟତାକୁ ଗ୍ରାସ କରିଚି ସ୍ୱାର୍ଥପରତାର ପ୍ଲେଗ୍ । ତା'ର ଶାଣିତ ଅସ୍ତ୍ରରେ ବଳି ହୋଇଥିବା କେତୋଟି ପ୍ରତିନିଧି ସ୍ଥାନୀୟ ଚରିତ୍ର ହେଉଛନ୍ତି—ଧନପତି ଦାସ, ମୁରଲୀ ସାହୁ, ମହନ ମିଶ୍ର ଓ ମୁଣ୍ଡୁର ମଲିକ । 'ହେ ଈଶ୍ୱର ଈଠ'ର ଈଶ୍ୱର, କେବଳ ପାଷାଣ ଦେବାଳୟର ଭଗବାନ ନୁହନ୍ତି, ପକ୍ଷାନ୍ତରେ ଅଗଣିତ ଗଣ ହୃଦୟର ଅନ୍ତର୍ଲୋକର ଦେବତ୍ୱ ଶକ୍ତିର ଉତ୍ଥାନ ପାଇଁ ଏହା ଏକ ଆହ୍ୱାନ । ଅବହେଳିତ ବର୍ଗର ବିଷାଦ ଓ ବେଦନାର ନିରାଭରଣ ଚିତ୍ର ପ୍ରକଟନ କ୍ଷେତ୍ରରେ ଆଲୋଚ୍ୟ ସଂକଳନଟିର ଭୂମିକା ଉଲ୍ଲେଖନୀୟ ।

'ନିର୍ଜିତ ସନ୍ନ୍ୟାସ' ବାସ୍ତବ ଓ ଚିରନ୍ତନର ଏକ ସମାନ୍ତରାଳ ପଦଯାତ୍ରା । କାବ୍ୟ-ନାୟକର ଅନ୍ତର୍ଲୋକରେ ଏକ ସନ୍ନ୍ୟାସୀର ଆତ୍ମା ନିର୍ଜିତ । ବହିଃସତ୍ତା ରୁଗ୍ଣ ସାମାଜିକଭାବରେ ଅବଦ୍ଧ । ଭୌତିକ ଐଶ୍ୱର୍ଯ୍ୟରେ ଅଳଂକୃତ ହେବାର ପ୍ରଚେଷ୍ଟା ଅପରିସୀମ । ସବୁଠାରୁ ଅଧିକ ଉଲ୍ଲେଖନୀୟ ବିଷୟ ହେଉଛି ଗୋଟିଏ ମନରେ ଏକାଧାରରେ ଅଜସ୍ର ପରସ୍ପର ବିପରୀତଧର୍ମୀ ଭାବନା ଏଠାରେ ଗୁମ୍ଫିତ । ଏହି ହେତୁ କାବ୍ୟନାୟକର ଆତ୍ମଶ୍ଳେଷ ଗଭୀରତମ । ଜୀବନର ଅନନ୍ତ ସୁଷମା ସତ୍ତ୍ୱେ ନରକାଭିସାର ଦୁର୍ନିବାର । ସ୍ୱକୀୟ ସ୍ଖଳିତ ଜୀବନବୋଧର ବଳୟରେ ସେ ଚିରକାଳ ଆବଦ୍ଧ—'ମୁଁ କ'ଣ ଖୋଜୁଛି ? ମୁକ୍ତି ? କାହାଠାରୁ ? କିଏ ମତେ ବାନ୍ଧୁଛି କି ? ନା ସ୍ୱପ୍ନର ଆଦେଶରେ/ମୁଁ ଚିରକାଳ ବନ୍ଦୀ (୪୧) ।'' କାବ୍ୟ-ନାୟକର ସ୍ୱପ୍ନ-ଚେତନା କର୍ଦ୍ଦମାକ୍ତ । ସେ ଏକ ସଙ୍କୀର୍ଣ୍ଣମନା ଆରଣ୍ୟକ । ସମୟର ଅବର୍ତ୍ତିତ ସ୍ରୋତରେ ସତ୍ତା ଓ ପ୍ରତି ସତ୍ତା ମଧ୍ୟରେ ତା'ର ସଙ୍ଘର୍ଷ ଅନିବାର୍ଯ୍ୟ ।

ଉତ୍ତର-ସବୁଜର କାବ୍ୟ-ଜଗତକୁ କବି ଗୁରୁପ୍ରସାଦ ମହାନ୍ତିଙ୍କ ପ୍ରତ୍ୟାବର୍ତ୍ତନ ଏକାନ୍ତ ସ୍ୱାଗତଯୋଗ୍ୟ । ଏହି ପ୍ରତ୍ୟାବର୍ତ୍ତିତ କାବ୍ୟ ସ୍ୱରର ସାକ୍ଷର ବହନ କରିଛନ୍ତି 'ହରେକୃଷ୍ଣ ଦାସ (୩) ଓ 'ହରେକୃଷ୍ଣ ଦାସ (୪)' । କବିତା ଦୁଇଟି 'ହରେକୃଷ୍ଣ ଦାସ (୧)' ଓ 'ହରେକୃଷ୍ଣ ଦାସ (୨)'ର ପୁନର୍ମୁଦ୍ରଣ ନୁହେଁ, ପକ୍ଷାନ୍ତରେ ପୂର୍ବବର୍ତ୍ତୀ କବିତା ସହ ସଂଶ୍ଳିଷ୍ଟ, ଦୁଇଟି ସ୍ୱତନ୍ତ୍ର ଭାବନାର ବିକାଶ । ହରେକୃଷ୍ଣ ଦାସ ୧/୨ ରେ କାବ୍ୟ-ନାୟକ ସ୍ୱୟଂ ଅବକ୍ଷୟର ଅଙ୍ଗୀଭୂତ ! ହରେକୃଷ୍ଣ ଦାସ (୩) ରେ ନାୟକ ସାମାଜିକ ବିଡ଼ମ୍ବନାର ଦର୍ଶକ । ଗାନ୍ଧୀ ଯୁଗର ସୁନିର୍ଦ୍ଦିଷ୍ଟ ଲକ୍ଷ୍ୟ ପ୍ରଣୋଦିତ ଜୀବନ-ସଂଗ୍ରାମ ସହ ସାମ୍ପ୍ରତିକ କାଳର ଆକ୍ରୋଶମୂଳକ ଶୋଭାଯାତ୍ରା/ଓ ଧର୍ମଘଟର ତୁଳନାତ୍ମକ ଶବ୍ଦ କବିତାଟିରେ ପ୍ରଦତ୍ତ—'ଇରମ ଓ ଇଞ୍ଜୁଡ଼ିରୁ/କେତେ ଜେଲ/ଫାଟକ ଭିତରୁ/ ସେମାନେ ଆସନ୍ତି ଫେରି/ଡଧାଡ ଖଦି କୁର୍ତ୍ତାରେ/ଗାନ୍ଧିଟୋପି/ଝୁଲି ବ୍ୟାଗ/ବାଡ଼ି ଧରି (୪୨)' ପ୍ରାକ୍ତନ ଆଧୁନିକ କାଳରେ ଉପଗତ । କିନ୍ତୁ ଲକ୍ଷ୍ୟ ପରିବର୍ତ୍ତିତ । କାରଣ 'ସେ ଯାତ୍ରା/ସେ ସ୍ଲୋଗାନରେ/ଥିଲା ଏକ ନିର୍ଦ୍ଦିକ ନିର୍ଣ୍ଣୟ/ଆଜିର ସ୍ଲୋଗାନ/ଆଉ ବକ୍ତୃତାର/ଉଲଗ୍ନ ଏ ନିଷ୍ଠୁର ଆକ୍ରୋଶ/ଭିଙ୍କାରର ଏହି କ୍ରୋଧ/ଏହି ଘୃଣା/ସମୟର ଏ ସନ୍ଧିରେ ତା'ର କେଉଁ ନିର୍ଦ୍ଦିଷ୍ଟ ନିର୍ଣ୍ଣୟ (୪୩) ?'

ନିର୍ଣ୍ଣୟହୀନ ଜୀବନର ବ୍ୟଥା ଓ ବିଷାଦ ହେତୁ ହରେକୃଷ୍ଣ ଦାସ ଅତୀତକୁ ଭୁଲେନିଁ । 'ଫୁଲ', 'ପକ୍ଷୀ', 'ହସ', ଗୀତ ଖୋଜେ । କିନ୍ତୁ ସମୟର ପ୍ରଲମ୍ବିତ ଧାରାରେ ଯାହା ତା'ର ଦୃଷ୍ଟି ପଥାରୂଢ ହୁଏ, ତାହା ସହ ସେ ଯେ ନିଜେ ସଂଶ୍ଳିଷ୍ଟ । ଏହି

ବକ୍ତବ୍ୟ 'ହରେକୃଷ୍ଣ ଦାସ (୪)'ରେ ପ୍ରକଟିତ । ଏଠାରେ ବକ୍ତବ୍ୟର ସେ ଅଂଶଭାକ୍ । ସେକ୍ସନ୍ ଅଫିସର, କ୍ଲାସ ଟୁ ଗେଜେଟେଡ୍ ହରେକୃଷ୍ଣ ଦାସ ଚରନ୍ତନ କାଳର ଧାରାରେ ଯାହାରତ ହେଲେ ମଧ୍ୟ ଶାଶ୍ୱତ ନୁହେଁ । ବୌଦ୍ଧ ଯୁଗରୁ ସାମ୍ପ୍ରତିକ ଯୁଗ ପର୍ଯ୍ୟନ୍ତ 'ସେହି ଚେଷ୍ଟା ଅବ୍ୟାହତ/ଆତ୍ ପ୍ରତିଷ୍ଠାର/ତଫାତ୍ ଏତିକି ଯାହା/ ଫେସନରେ/ପୋଷାକରେ (୪୪)।' ପାଠ୍ୟପୁସ୍ତକ ବ୍ୟତୀତ ଅନ୍ୟ ଇତିହାସ ସହ ତା'ର ସମ୍ପର୍କ କ୍ଷୀଣ । କବି ବ୍ୟଙ୍ଗ କରନ୍ତି ହରେକୃଷ୍ଣ ଦାସଙ୍କୁ—ହରେକୃଷ୍ଣଦାସ/ ବାରମ୍ବାର ଫେରୁଥାଉ/କୋର୍ଟ କଚେରୀକୁ/ମୃତ୍ୟୁହୀନ ମଣିଷର ସ୍ଥିରବିନ୍ଦୁ ହୋଇ'। ମୃତ୍ୟୁହୀନ ଏଇ ମଣିଷଟିର କ୍ଷୁଦ୍ରସତ୍ତା ଫାଇଲରେ ହିଁ ସୀମାବଦ୍ଧ । କ୍ଷୟମାଣ ଶତାବ୍ଦୀର ନାୟକ ସେ । ଦ୍ୱିଧାଗ୍ରସ୍ତ ତା'ର ଦୃଷ୍ଟିର ଦ୍ୟୁତି । ଆଖିରେ ଶାନ୍ତି ପାଇଁ ଅଜସ୍ର ପ୍ରଶ୍ନବାଚୀ । ଇତିହାସର ପରିବର୍ତ୍ତନ ଧାରାରେ ସଙ୍କୁଚିତ ଚରିତ୍ରଟି ସମ୍ପୂର୍ଣ୍ଣ ବାସ୍ତବଧର୍ମୀ ।

କବି ବ୍ରହ୍ମୋତ୍ରୀ ମହାନ୍ତିଙ୍କ ସ୍ୱୀକାରୋକ୍ତି ମୂଳକ କାବ୍ୟ ଜଗତରେ ପୁରୁଷ ପ୍ରଧାନ ସମାଜର ସ୍ୱୈରାଚାର ପ୍ରତି ଦୃଷ୍ଟି ନିବଦ୍ଧ । ପୁରୁଷର ପ୍ରତାରଣା ବିରୋଧରେ ତାଙ୍କ କାବ୍ୟ-ନାୟିକା ସ୍ୱର ଉତ୍ତୋଳନ କରେ—'ଭୟାନକ ଭୁଲ କରି/ଘରେ ଫେରି ଗଭୀର ରାତିରେ/ମୋତେ କିନ୍ତୁ କୁହ ତୁମେ/ମଦିରତରେ ରାମାୟଣ ବ୍ୟାଖ୍ୟା ଶୁଣୁଥିଲ (୪୫)' । ନାରୀ ବାସ୍ତବ ଜୀବନର ସତ୍ୟକୁ ସ୍ପଷ୍ଟ ଭାବେ ସ୍ୱୀକାର କରେ । ତା'ର ଜ୍ୟୋତିପୂର୍ଣ୍ଣ ତାରୁଣ୍ୟ ସଂପର୍କରେ ସଚେତନ ରହେ । ସମାନ୍ତରାଳ ଭାବେ ପୁରୁଷକୁ ମଧ୍ୟ ତା'ର ବିପର୍ଯ୍ୟୟ ସମ୍ପର୍କରେ ଚେତାବନୀ ଦିଏ । ମିଥ୍ୟା ଅହଂ ଓ ଆଭିଜାତ୍ୟ ତା'ର ତ୍ୟାଜ୍ୟ । ସତ୍ୟକୁ ସ୍ୱୀକୃତ ଦେବା ପାଇଁ ସେ ବଦ୍ଧପରିକର । 'ଅବତରଣ'ର କାବ୍ୟ-ବକ୍ତବ୍ୟରୁ ଏହାର ଅଗ୍ରମାରମ୍ଭ । ଦୃଷ୍ଟିର ଦ୍ୟୁତିରେ ଏହାର ବିକାଶ ଓ ଉତ୍ତରଣ । ବ୍ରହ୍ମୋତ୍ରୀଙ୍କର କାବ୍ୟ-ଚେତନା ନଗର ସଭ୍ୟତାର ଅବକ୍ଷୟ ପ୍ରତି ମଧ୍ୟ କ୍ଷୁବ୍ଧ । 'ଜନନୀ ଓ ସଜନୀ' କବିତାରେ ଏହାର ପ୍ରତିଫଳନ ଲକ୍ଷ୍ୟ କରାଯାଏ—'ନାରୀ/ମୁଁ/ ବାଧୁଛି ଚେଣ୍ଡୁ/ଆଭିଜାତ୍ୟ/ସଭ୍ୟତାର ନାମେ/ଏ ଯେଉଁ ଗ୍ଳାନି ନୀତି/ସମାଜରେ/ ଘୃଣ୍ୟ ବ୍ୟଭିଚାର (୪୬) ।' କବି ନାରୀ । ସମାଜର ଅବମୂଲ୍ୟାୟନରେ ମେ ବ୍ୟଥିତ ହେଲେ ମଧ୍ୟ, ଅବକ୍ଷୟକୁ ସହାନୁଭୂତିର ସହ ବିଚାର କରିବା ତାଙ୍କର ଧର୍ମ । ସମାଜର ଭିନ୍ନ ଭିନ୍ନ ସ୍ତରରୁ ସେ ଚରିତ୍ର ଆହରଣ କରିଛନ୍ତି । ଔପନ୍ୟାସିକ ପ୍ରିୟନାଥ, ହିପ୍ପୀ ସୌମେନ୍ଦ୍ର, କବି ଶୁଭକାନ୍ତ, ଅବସରପ୍ରାପ୍ତ କର୍ମଚାରୀ ସଚ୍ଚିଦାବାବୁ ସତ୍ତୋପରି ତାଙ୍କର ବାସ୍ତବଜୀବନ ସଚେତନ କାବ୍ୟ ନାୟିକା, ସାମ୍ପ୍ରତିକ କାଳର ଏକ ଏକ ପ୍ରତିଭୂ । ବ୍ରହ୍ମୋତ୍ରୀ ଏବେ ଏକ ଆଧ୍ୟାତ୍ମିକ ଜଗତରେ ଧ୍ୟାନସ୍ଥ । ଏଣୁ ଜୀବନର ବାସ୍ତବ ସମସ୍ୟା ସଙ୍କଟ ସମ୍ପର୍କରେ ତାଙ୍କର ଲେଖନୀ ସ୍ୱାଭାବିକ ଭାବେ ମନ୍ଥର ।

ପ୍ରତିଭା ଶତପଥୀଙ୍କ 'ନିମୃତ ବସୁଧା' ଓ 'ନମିଷେ ଅକ୍ଷର'ରେ ମୁଖ୍ୟତଃ ଏକ ରହସ୍ୟବାଦୀ କାବ୍ୟ-ଭାବନା ପ୍ରକଟିତ ହୋଇଥିଲେ ମଧ୍ୟ ଗ୍ରନ୍ଥ ସମସ୍ତରେ କେତେକ ବାସ୍ତବଧର୍ମୀ ଚରିତ୍ର ସୃଷ୍ଟି କ୍ଷେତ୍ରରେ ସେ ସ୍ମରଣୀୟା । ଜୀବନ-ସଂଗ୍ରାମରେ ତାଙ୍କର ନାୟିକା ଅହରହ ଦ୍ୱନ୍ଦ୍ୱର ସମ୍ମୁଖୀନ/ଅନ୍ତଃସତ୍ତ୍ୱାରେ ଏକ କୋମଳତା ବଜାୟ ରଖିବା ମୁହୂର୍ତ୍ତର ସେ ସନ୍ଧାନ କରେ । ବହିଃସତ୍ତ୍ୱା ସାମାଜିକ ବିଡ଼ମ୍ବନାକୁ ଅନିଚ୍ଛାସତ୍ତ୍ୱେ ସ୍ୱୀକାର କରିବାକୁ ବାଧ୍ୟ ହୁଏ । ସମାଜର ଅସଂଖ୍ୟ ଈର୍ଷାତୁର ଆଖି ଓ ସ୍ୱାର୍ଥ ପ୍ରଣୋଦିତ ସମସ୍ତ ଚେତନା ମଧ୍ୟରେ ଦେହ, ମନ ତୀବ୍ର ବ୍ୟର୍ଥତାବୋଧରେ ସଂକ୍ରମିତ ହୋଇଯାଏ—'ଅସଂଖ୍ୟ ଈର୍ଷାତୁର ଆଖି/ସ୍ୱାର୍ଥପ୍ରଣୋଦିତ ବନ୍ଧୁ/ଆତ୍ମୀୟ ଘାତକ ହୁଏ ଅସତର୍କ ନିଦ୍ରା/ଜାଗରଣେ/ଦେହେ ମନେ/ଗ୍ରସିଯାଏ/ବ୍ୟର୍ଥତାର ଦଶସହସ୍ର ନାମ (୪୭) ।' ପ୍ରତାରଣାର ପରିଣତିରେ ପ୍ରତିଭାଙ୍କ କାବ୍ୟ-ନାୟିକା ତୀବ୍ର ହତାଶା ଓ ନୈରାଶ୍ୟର ସମ୍ମୁଖୀନ । ସେ ଉପଲବ୍ଧି କରେ—'ପୃଥିବୀରେ/ମଣିଷ ବଞ୍ଚିବା ଅତି/ଦୁରୂହ କଠିନ (୪୮) ।' ଜୀବନର ଏହି କଠୋର ସତ୍ୟୋପଲବ୍ଧି ହେତୁ ସେ ମ୍ଳାନ, ବିମର୍ଷ । ପ୍ରକୃତିଠାରୁ ସେ ବିଚ୍ଛିନ୍ନ । ରୁଦ୍ଧ କୋଠରୀରୁ 'ଦ୍ୱାଦଶୀର ଜହ୍ନ ତାକୁ ଦିଶେ 'ମଣିଷ ଖପୁରୀ' ଭଳି ବିବର୍ଣ୍ଣ । ନଗରସଭ୍ୟତାର ବୃତ୍ତରେ ତା'ର ସରଳ ଜୀବନଧାରା ଖଣ୍ଡିତ । ଚଳିବାପାଇଁ ମୁଖାଟିଏ ଆବଶ୍ୟକ । ପଡ଼ୋଶିନୀମାନଙ୍କ ଠାରୁ ତାକୁ ମିଳେ ପରିହାସମିଶ୍ର ଘୃଣାର ବ୍ୟଞ୍ଜନା । ନିଃସଙ୍ଗତା ତା'ର ପ୍ରାପ୍ତି । ନିଜ ପାଇଁ ବିପୁଳ ସାମ୍ରାଜ୍ୟଟିଏ ସେ ପରିକଳ୍ପନା କରେ । ତହିଁରେ ନକଲି ସାମ୍ରାଜ୍ଞୀ ସାଜେ ।

ପ୍ରତିଭାଙ୍କ କାବ୍ୟ-ନାୟିକା ସର୍ବାଂଶରେ ସ୍ୱକୀୟା ନୁହେଁ, ପରକୀୟା ମଧ୍ୟ ନୁହେଁ, ପ୍ରକୃତ ଭାବେ ସେ କେବଳ ନାରୀଟିଏ ମାତ୍ର । ସୀତା ଓ ଶକୁନ୍ତଳାଙ୍କ ପରି ସ୍ୱକୀୟାଙ୍କ ଠାରୁ ଆରମ୍ଭ କରି ରାଧାଙ୍କ ପରି ପରକୀୟାଙ୍କ ପର୍ଯ୍ୟନ୍ତ—ସମସ୍ତେ ତା'ର ଅନ୍ତରରେ ବିଦ୍ୟମାନ । ତା'ର ସ୍ଖଳନ ପରିସ୍ଥିତି ପ୍ରଣୋଦିତ । ନିମ୍ନ ମଧ୍ୟବିତ୍ତ ପରିବାରର ସ୍ୱଳ୍ପଶିକ୍ଷିତା କନ୍ୟା 'ସାବିତ୍ରୀ' ମାଧ୍ୟମରେ ଏହା ପ୍ରମାଣିତ । ବାପା କ୍ୟାନସର ରୋଗୀ । ଭାଇ ବେକାର । ସାବିତ୍ରୀ ପରିବାରର ଭରଣପୋଷଣ ପାଇଁ ବାଧ୍ୟତଃ ବାରାଙ୍ଗନା ସାଜେ । ସ୍ୱୀକାରୋକ୍ତି ତା'ର ବଡ଼ ନିଷ୍ଠୁର—'ସାବିତ୍ରୀ ମୋ ଶ୍ରଦ୍ଧା ନାମ/ଘୃଣାର ଶାଣିତ ଛୁରୀ/ଆତତାୟୀ/ନୂତନ ସମସ୍ୟା/ମଙ୍ଗଳ ତିଥି ପାଇଁ ହାଣ୍ଡି ନାହିଁ/ପାଟଛିଡି ନାହିଁ/ବାପା ମୋର କ୍ୟାନସର ରୋଗୀ/ଶିକ୍ଷିତ ବେକାର ଭାଇ (୪୯) ।' ନାରୀ ଜୀବନର ବହୁ ଭିନ୍ନ ଅନୁଭୂତିର ସ୍ୱରୂପ ପ୍ରତିଭାଙ୍କ ବାସ୍ତବଧର୍ମୀ କାବ୍ୟ ଜଗତର ଭୂଷଣ । ଏହି ଅସ୍ମିତାରମ୍ଭର ଉଚ୍ଚାରଣ ଅଭିଧାସୃଷ୍ଟ ଚିନ୍ତା ପରିବର୍ତ୍ତେ ବାସ୍ତବ ଜୀବନ-ବୋଧ ପରିପ୍ରେକ୍ଷୀରେ ଅଧିକ କ୍ରିୟାଶୀଳ ହେଲେ, ନାରୀ ଜୀବନର ଅନୁଭୂତି ଓ ଉପଲବ୍ଧି ଅଧିକ ସାର୍ଥକଭାବେ ଅଭିବ୍ୟକ୍ତି ଲାଭ କରି ପାରିବ ।

ଶକୁନ୍ତଳା ଦେବୀଙ୍କ କାବ୍ୟ ଚେତନା ସ୍ୱକୀୟ ଅସାମର୍ଥ୍ୟ ଜନିତ କ୍ଳାନ୍ତିରେ ଆଚ୍ଛନ୍ନ—'ଅପାରଗତା/ବିମର୍ଷ/ତଦ୍‌ଜନିତ କ୍ଳାନ୍ତି ଓ ଶୂନ୍ୟତା/ନିଜକୁ ଦଂଶନ କରେ (୫୦) ।' 'କାଟଫୁଲଣା'. 'ଭଙ୍ଗା ଗମ୍ବୁଜ' 'ବିପାଶ୍ରିତ ଲେଖଣୀ' ଓ 'ଅନନ୍ତ ଶୟନ' ସମେତ ଶକୁନ୍ତଳାଙ୍କର ସାମଗ୍ରିକ କାବ୍ୟମାନସ ଏକ ଅସ୍ୱସ୍ତିକର ଅତୃପ୍ତିବୋଧରେ ବିମର୍ଷ । ଜୀବନର ଆବଶ୍ୟକତା ସକଳର ଅପରିପୂର୍ଣ୍ଣତାରେ ତାଙ୍କର କାବ୍ୟ-ନାୟିକା ବେଦନା ବିଦଗ୍ଧ । ଆତ୍ମତୃପ୍ତି ସେ ପାଏ ନାହିଁ । ଅଥଚ ଆତ୍ମପ୍ରସାଦର ଛଳନା କରିବାକୁ ବାଧ୍ୟ ହୁଏ । ଅହରହ ଜୀବନ ସଂଗ୍ରାମର ବିନିମୟରେ ନିଃସହାୟା ନାରୀଟିକୁ ମିଳେ—ମାଟିର କଣ୍ଢେଇ ଓ ପ୍ଲାଷ୍ଟିକର ଖେଳନା । ତାହା ମଧ୍ୟ ସମୟର ପ୍ରବହମାନ ଧାରାରେ ରୂପ, ରଙ୍ଗ ହରାଇ ବିବର୍ଣ୍ଣ ହୋଇଯାଏ—'କେବେଠାରୁ ମାଟିର କଣ୍ଢେଇମାନ/ଭାଙ୍ଗି ରୁକ୍ଷ ମାଟି ତଳେ/ଶାମିଲ ହେଲେଣି/ପ୍ଲାଷ୍ଟିକର ଘୋଡ଼ା ହାତୀ/ଖଣ୍ଡ ଖଣ୍ଡ ହୋଇ ସବୁ/ନିଜର ସୌନ୍ଦର୍ଯ୍ୟ ସବୁ ହରେଇ ଦେଲେଣି (୫୧) ।'

ନାରୀ ଜୀବନରେ ସୁଖ ଓ ଆନନ୍ଦ ସାମୟିକ । ସମାଜ ଓ ସମୟର କଠୋର ଆଘାତରେ ଆଶାର ଫୁଲ ଭୂଲୁଣ୍ଠିତ । ପରିପାର୍ଶ୍ୱର ନଗର-ସଭ୍ୟତା ଅଶାନ୍ତିର ଅଗ୍ନିରେ ପ୍ରଜ୍ୱଳିତ । ପରିଣତ ବୟସ୍କ ସନ୍ତାନ ଦ୍ୱାରା ମାତୃତ୍ୱ ପ୍ରତ୍ୟାଖ୍ୟାତ । ପୁରୁଷପ୍ରଧାନ ସମାଜରେ ନାରୀତ୍ୱ ଅପମାନିତ । ବର୍ତ୍ତମାନ ତା'ର ଏକ ବିଷାଦପରିପୂର୍ଣ୍ଣ ସମୁଦ୍ର । ମୁହଁ ଶୁଖିଲା । ଆଖି ରକ୍ତହୀନ । ଶିଉଳିମଖା ଜୀବନରେ ସେ ଏକ ଦରମଲା ପୋକ ପରି ସ୍ଥବିର । ତଥାପି ନୀଡ଼ ହିଁ ତା'ର ବିଶ୍ୱ । ତା'ର ସଂକ୍ଷିପ୍ତ ପରିସରରୁ ମୁକ୍ତି ଅସମ୍ଭବ । ଏହା ହିଁ ଶକୁନ୍ତଳାଙ୍କ କାବ୍ୟ-ନାୟିକା ଜୀବନର ନିଷ୍ଠୁର ବାସ୍ତବ ସତ୍ୟ ।

ବ୍ରହ୍ମୋତ୍ରୀ, ତ୍ରିପାଠୀ ଓ ଶକୁନ୍ତଳାଙ୍କ ପରି ବିଜୟିନୀ ଦାସ ନାରୀ ଜୀବନର କେତେକ ଅନୁଭୂତ ସତ୍ୟକୁ କବିତାରେ ରୂପାୟିତ କରିଛନ୍ତି । ତାଙ୍କର 'ସୂର୍ଯ୍ୟୋଦୟ' ସଂକଳନର 'ଭୟ' କବିତାଟିକୁ ଏଠାରେ ପ୍ରସଙ୍ଗ କ୍ରମେ ଆଲୋଚନା କରାଯାଇପାରେ । ନାରୀ ସ୍ୱଭାବତଃ ନିଜର ମନୋଭାବନାକୁ ସ୍ପଷ୍ଟ ଭାବେ ବ୍ୟକ୍ତ କରିପାରେ ନାହିଁ । ଅପ୍ରିୟ ହେବାର ସମ୍ଭାବନାରେ ସତ କହିବାକୁ ତା'ର ଭୟ । ସାମାଜିକ ବିଶ୍ୱାସବୋଧ ହରାଇବା ଭୟରେ ପ୍ରେମ କରିବାକୁ ତା'ର ଭୟ । ପ୍ରେୟସୀର ସାହଚର୍ଯ୍ୟ ହରାଇବା ଆଶଙ୍କାର ଘୃଣା କରିବାକୁ ତା'ର ଭୟ । ସବୁଠାରୁ ବେଶୀ ଭୟ—ନିର୍ଭୀକ ଭାବରେ ବଞ୍ଚିବାକୁ—'ସତ କହିବାକୁ ଭୟ/କାଳେ କାହା ଅପ୍ରିୟ ହୋଇବ/ମିଛ କହିବାକୁ ଭୟ/କାଳେ କେବେ ଧରା ପଡ଼ିଯିବ/ପ୍ରେମ କରିବାକୁ ଭୟ/ବିଶ୍ୱାସ କାଳେ ହରାଇବ/ଘୃଣା କରିବାକୁ ଭୟ/କାଳେ ତା'ର ପ୍ରେମ ହରାଇବ/ସବୁଠାରୁ ବେଶୀ ଭୟ/ଭୟହୀନ ଭାବେ ବଞ୍ଚିବାରେ (୫୨) ।'

ବିଜୟିନୀଙ୍କ କାବ୍ୟ-ଚେତନାରେ ଉଭୟ ନାରୀ ଓ ପୁରୁଷ ଏକ ନେତିଧର୍ମୀ ଶୂନ୍ୟତାରେ ଆବଦ୍ଧ—ନାହିଁ ନାହିଁର ବିରାଟ ଶୂନ୍ୟତାରେ/ଝୁଲି ରହିଛି/ × × ଅସ୍ତିତ୍ୱ (୫୩) ।' ସଂକୀର୍ଣ୍ଣ ସମାଜର ସ୍ୱାର୍ଥାନ୍ଧ ମଣିଷ ସେ । ମିଛ ମାୟା ମୋହରେ ତା'ର ଶରଶଯ୍ୟା ରଚିତ । ଅହେତୁକ ଅହଙ୍କାର ତଥା ଚରମ ଅସହାୟତାର ରକ୍ତନଦୀରେ ସେ ସନ୍ତରଣରତ । ତଥାପି ଦୁଇଟି ନା'ରେ ପାଦ ଦେଇ ସେ ବଞ୍ଚେ । ଅନିଶ୍ଚିତତାର ବଳୟରେ ବନ୍ଦୀ ତା'ର ବ୍ୟକ୍ତିସତ୍ତା । ଖଣ୍ଡାଟିଏ ଝୁଲୁଚି ଅବା ମଥା ଉପରେ । ଆଉ ଟିକିକୁ ମୃତ୍ୟୁ ଆସି ତା'ର ହିଂସ୍ର ପଞ୍ଝାରେ ତାକୁ ଆଲିଙ୍ଗନ କରିବ—'ମୁଁ ତ ଦୁଇଟି ନାଆରେ ଗୋଡ ଦେଇଥିବା/ନିର୍ବୋଧ ମଣିଷଟିଏ/ଅନିଶ୍ଚିତତାର ଖଣ୍ଡା ଝୁଲୁଚି/ମୋ ମୁଣ୍ଡ ଉପରେ (୫୪) ।' ସକଳ ଅସହାୟତା ଓ ଅନିଶ୍ଚିତତା ଭିତରେ ବିଜୟିନୀଙ୍କ କବିତାର ବ୍ୟକ୍ତି ଚରିତ୍ରଟି ଆଗାମୀ କାଲିର ସୂର୍ଯ୍ୟୋଦୟକୁ ପ୍ରତୀକ୍ଷା କରେ । ବାସ୍ତବ ଜୀବନର ବ୍ୟଥା ଓ ବେଦନା ସତ୍ତ୍ୱେ ଏହି ଆଶାବାଦୀ ଦୃଷ୍ଟିଭଙ୍ଗୀ ତାଙ୍କ କବିତାର ଏକ ଉଲ୍ଲେଖନୀୟ ବୈଶିଷ୍ଟ୍ୟ ।

କବି ମମତା ଦାଶଙ୍କର ଦୃଷ୍ଟି ଜୀବନପ୍ରତି ବେଶ ବାସ୍ତବିକ୍, ଶ୍ଳେଷପୂର୍ଣ୍ଣ । ପ୍ରାଚୁର୍ଯ୍ୟପୂର୍ଣ୍ଣ ଜୀବନ ଭିତରେ ଅଭାବବୋଧ ପ୍ରତି ସେ ସଚେତନ । ଚାଉଳ, ଗ୍ୟାସ, ପାଉଡର, ପ୍ରୋଟିନ୍‌ଠାରୁ ଆରମ୍ଭ କରି ସମୟ ଓ ଭଲପାଇବା ପର୍ଯ୍ୟନ୍ତ ସବୁଥିରେ ଏ ଅଭାବ-ବୋଧ ସଞ୍ଚରିତ । ଏହି ଅଭାବବୋଧ ହେତୁ ତା'ର ସ୍ୱଭାବ ନଷ୍ଟ ହୁଏ । ପରିସ୍ଥିତିର ତାଡ଼ନାରେ ପାପରୁ ନିବୃତ୍ତି ଏବଂ ପୁଣ୍ୟ ସଞ୍ଚୟର ଅଭିନୟ ହିଁ ତା'ର ଜୀବନ ସତ୍ୟ । 'ବିଲେଇ' ରୂପକ ମାଧ୍ୟମରେ ବ୍ୟକ୍ତି ଜୀବନର ଏହି ବାସ୍ତବ ସତ୍ୟ ମମତାଙ୍କ ଦ୍ୱାରା ରୂପାୟିତ—'ଭଙ୍ଗା ମେରୁଦଣ୍ଡରେ/ଏବେ ସେ ପ୍ରାୟ ଯାଏ ନି କୁଆଡେ/ଅଇଁଠା ଭାତ/ମାଛ କଣ୍ଟା ଖାଇ/ଶୋଇରହେ/ପୁଣ୍ୟ କରେ (୫୫) ।' କ୍ଷୀର ଚୋରି କରି ପିଉଥିବା ଅଭିଯୋଗରେ ମାଲିକାଣୀ ବିଲେଇଟିର ମେରୁଦଣ୍ଡ ଭାଙ୍ଗି ଦେଇଛନ୍ତି । ପୁଣ୍ୟ ସଞ୍ଚୟ ବ୍ୟତୀତ ତା'ର ଗତ୍ୟନ୍ତର କାହିଁ ? 'ମାଲିକାଣୀ' ଆମର ସାମାଜିକ ଶାସନ ବ୍ୟବସ୍ଥାର ପ୍ରତୀକ । ପ୍ରତି ପଦପାତରେ ବ୍ୟକ୍ତିକୁ ସେ ନିୟନ୍ତ୍ରିତ କରେ ।

ବକ୍ତବ୍ୟ ପ୍ରକାଶନ କ୍ଷେତ୍ରରେ ମମତା ତାଙ୍କର ସମକାଳୀନ ନାରୀ-କବିମାନଙ୍କ ଅପେକ୍ଷା ଅଧିକ ଜଟିଳ । ତେବେ ଏହି ଜଟିଳ ଅଭିବ୍ୟକ୍ତି କୌଶଳ ରହସ୍ୟବାଦୀ କବିତା ରଚନା କ୍ଷେତ୍ରରେ ଅପେକ୍ଷାକୃତ ଅଧିକ ସଫଳ ହୋଇଥିବା ଭଳି ମନେହୁଏ ।

ବସ୍ତୁତଃ ଉତ୍ତର-ସବୁଜର ଓଡ଼ିଆ କାବ୍ୟ ଜଗତ ବାସ୍ତବ ଜୀବନର ରୂପାୟନ କ୍ଷେତ୍ରରେ ସ୍ୱକୀୟ ରୁଚିବୋଧ ଓ ସୃଜନଶୀଳତାର ପରିଚୟ ଦେଇପାରିଛି । ସାଂପ୍ରତିକ କାଳର ବହୁ ଭିନ୍ନ ଘଟଣା ଓ ଅନୁଭୂତିଚୟ ତହିଁରେ କାବ୍ୟିକ ଭାବରେ ସଜ୍ଜିତ । ଜାତୀୟ

ଜୀବନର ବାସ୍ତବ ଚିତ୍ର ସହିତ ବ୍ୟକ୍ତି ଚେତନାର ସ୍ୱରୂପ ଭଙ୍ଗୀରେ ବିଶ୍ୱସ୍ତତା ସହିତ ଉଦ୍‌ଘାଟିତ । ସ୍ୱାଧୀନତା ପରବର୍ତ୍ତୀ କାଳରେ ଅବହେଳିତ ସମାଜର ଉତ୍କଟ ଦାରିଦ୍ର୍ୟ, କ୍ଷମତା-ରାଜନୀତିର ପ୍ରତାରଣାପୂର୍ଣ୍ଣ ମନୋଭାବ ତଥା ପ୍ରତିଶ୍ରୁତିର ନିରର୍ଥକତା ପ୍ରତି କବିମାନସର ବିଦ୍ରୂପ ବିପୁଳ । ଏଣୁ ସ୍ୱାଧୀନତା ପୂର୍ବବର୍ତ୍ତୀ କାଳୀନ ପ୍ରଗତିବାଦୀ କବିତାର ଉତ୍ସାହ ଓ ଉଦ୍ଦୀପନା ଏହି କାଳରେ ସ୍ତିମିତ । ପକ୍ଷାନ୍ତରେ ଶିଳ୍ପ ସଭ୍ୟତାର କ୍ରମବିକାଶ ଫଳରେ ଗୋଷ୍ଠୀ ଜୀବନର ପାରସ୍ପରିକ ଆବଶ୍ୟକତା ଯନ୍ତ୍ର ଦ୍ୱାରା ସମାହିତ । ଏହି କାରଣରୁ ବିଚ୍ଛିନ୍ନତାବୋଧ ଅଧିକ ବଳବତ୍ତର । ପୁଣି ମାନବିକ ସମ୍ବେଦନାରହିତ ଯନ୍ତ୍ର ସଭ୍ୟତାର ବଳୟରେ ଶୃଙ୍ଖଳିତ ବ୍ୟକ୍ତିସତ୍ତା ଏକ ଚରମ ନିଃସଙ୍ଗତାବୋଧରେ ପୀଡ଼ିତ । ଶୂନ୍ୟତାବୋଧ ଅପରିସୀମ । ସାଂପ୍ରଦାୟିକ ବିଦ୍ୱେଷ ଓ ଧର୍ମୀୟ ସଙ୍କଟ ସମେତ ଅନ୍ତର୍ଲୋକର ଏହି ଅଶାନ୍ତ ଦିଗ୍‌ବଳୟ ପ୍ରତି କବିମାନସ ସଚେତନ । ବିଚ୍ଛିନ୍ନ, ବହୁଧା ବିଭକ୍ତ ଜୀବନ-ସତ୍ୟର ପ୍ରକଟନ ସମୟରେ ବକ୍ତବ୍ୟ କେତେକାଂଶରେ ଜଟିଳ ଓ ଆବେଦନ ଦୁର୍ବୋଧ ରୂପେ ଅଭିହିତ । ତେବେ ହତାଶା, ନୈରାଶ୍ୟ ତଥା କ୍ଳାନ୍ତି ଓ ବିଷାଦବୋଧ ମଧ୍ୟରେ ଜୀବନ ପ୍ରତି ଆଶା-ଆଶ୍ୱାସନା ଅନିବାରିତ । ଏଣୁ ବାସ୍ତବ ଜୀବନ-ସତ୍ୟର ଶାଶ୍ୱତ ବାର୍ତ୍ତା ଅନସ୍ୱୀକାର୍ଯ୍ୟ ।

## ପାଦଟୀକା

୧—କବିତା ୧୯୮୩—(ବ୍ରହ୍ମାଣ୍ଡଭୂଗୋଳ)-ପୃ-୩
୨—କବିତା ୧୯୭୧—(ପୁନର୍ଜନ୍ମ) ପୃ-୮
୩—କବିତା ୧୯୮୩—(ପିମ୍ପୁଡ଼ି-୨) ପୃ-୮୦
୪—କବିତା ୧୯୭୧—(ଓଡ଼ିଶା) ପୃ-୯
୫—ତଦୈବ—ପୃ-୧୦
୬—ତଦୈବ
୭—କବିତା ୧୯୭୧ (ସ୍ୱେସନାରୀ) ପୃ-୩୩
୮—ଶ୍ୱେତ ଗ୍ରହଣ କେନ୍ଦ୍ରରେ (ଆରଦୃଶ୍ୟ) ପୃ-୨୪
୯—କାହାକୁ ପୁଚ୍ଛିବା କୁହ (କୃଷକ) ପୃ-୧୨
୧୦—ଅନୁବର୍ତ୍ତି—ତଦୈବ ପୃ-୩୫
୧୧—ମୁଁ-ତଦୈବ ପୃ-୫୭
୧୨—ସପ୍ତମ ଋତୁ (ବର୍ଦ୍ଧାର କାସ୍ମାକଲ) ପୃ-୨୪-୨୫
୧୩—ମୃତ୍ୟୁଲୋକରେ ଋତୁ ସପ୍ତମ—ଦାଶରଥି ଦାସ ପୃ-୧୫
୧୪—ବିଚ୍ଛେଦର ଦୁଇଟି ମଧ୍ୟାନ୍ତର—ସପ୍ତମଋତୁ ପୃ-୧୦
୧୫—ଜନ ପାଇଁ ନାନାବାସ୍ନା (ଈଶ୍ୱର କେମିତି ମଲେ)-ପୃ-୬୧
୧୬—ଟପରୁ ପ୍ରଭୃ ଈଶ୍ୱର—ତଦୈବ ପୃ-୬୬
୧୭କ-ଯୋଛିଠି ବି ଠିଆ ହୁଏ (ତଦୈବ) ପୃ-୩୮
୧୭ଖ-ଶୈଳକଲ୍ଲ (ଜୀବନ ପ୍ରଭୃ) ପୃ-୬୦-୬୧
୧୮—ସପ୍ତଦ୍ୱୀପା ବସୁନ୍ଧରା - ଦୃଶ୍ୟାତୀତ ଶୂନ୍ୟତାରୁ ପୃ-୧୩
୧୯—ଝଙ୍କାର - ଅଗଷ୍ଟ ୧୯୮୮
୨୦—ଉତ୍କଣ୍ଠାର ମୃତ୍ୟୁ (ସହରରେ ସନ୍ଧ୍ୟା) ପୃ-୪୬
୨୧—ଅନ୍ଧ ମହୁମାଛି—ଜୀବନଚନ୍ଦ୍ରା ପୃ-୧୯
୨୨—ଶଶିଦେଇ କାନ୍ଦ—ତଦୈବ ପୃ-୨୧
୨୩—ପୁନଶ୍ଚ (ଯକ୍ଷ ଯକ୍ଷୀ) ପୃ-୪୬
୨୪—ସାର୍ଥକ କବିତା-ପୃ-୭
୨୫—ମେଘବର୍ଣ୍ଣୀ—ଶାନ୍ତନୁଥ ଏ ପୃଥିବୀ
୨୫କ-ସର୍ବହରା—ତଦୈବ ପୃ-୭୮
୨୬—ମନକାହ୍ୟା (ଶେଷଯୁଦ୍ଧ) ପୃ-୪୨

୨୭କ-ମାଟିଆ ବୁଢ଼ୁକର କଥା—ପାଣ୍ଡୁଲିପି-ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ ପୃ-୧୨୭
୨୭—ଉପସ୍ୱରଟି—(ଊରୁଭଙ୍ଗ) ପୃ-୮
୨୮—ଉପସ୍ୱରଟି (ଶରଶଯ୍ୟା) ପୃ-୬
୨୯—ଝଙ୍କାର—୧୯୭୯-ଏପ୍ରିଲ
୩୦—ଝଙ୍କାର—୧୯୮୭-ଏପ୍ରିଲ
୩୦କ- ଝଙ୍କାର (ଏ ଦେଶ)—ଡ଼ିସେମ୍ବର ୧୯୮୨
୩୧—ଝଙ୍କାର ସେପ୍ଟେମ୍ବର ୧୯୮୭
୩୨— ଗୀତ ଗା'ନାରେ ପକ୍ଷୀ—କେମିତି ବଞ୍ଚିଛି ମୁଁ-ପୃ-୬୬
୩୩ [illegible]ବ୍ଦକ ନୀରବତା—ଅପମୃତ୍ୟୁର ଜନ୍ମ ଦିବସ
୩୪—[illegible]ଙ୍କାର-୧୯୮୮ ଅକ୍ଟୋବର
୩୫—ଝଙ୍କାର-୧୯୮୭ ଅକ୍ଟୋବର
୩୬—ଝଙ୍କାର-୧୯୮୮ ଅକ୍ଟୋବର
୩୭—କାଗଜ ଡ଼ଙ୍ଗାର ଶୋକ—(ମଶାଣି ଭୂଇଁର କବିତା)-ପୃ-୧
୩୮—ପିରାମିଡ଼ର ଶବ—ତନ୍ନୈବ ପୃ-୧୪
୩୯—ନିଜେ ପ୍ରତିଧ୍ୱନି—ପୂର୍ବବିଦ ପୃ-୪୩
୪୦—ନିଜେ ନଦୀ ଓ ସକାଳ—ବୁଢ଼ୀମଣା-ପୃ-୧୯
୪୧—ସ୍ଥଳ ବିଶେଷ—ନିର୍ଦ୍ଦିଷ୍ଟ ସନ୍ନ୍ୟାସ
୪୨—ଝଙ୍କାର—ଏପ୍ରିଲ ୧୯୮୮
୪୩—ଝଙ୍କାର—ଅକ୍ଟୋବର ୧୯୮୮
୪୪—ତନ୍ନୈବ
୪୫—ପ୍ରତ୍ୟୟ—ଦୃଷ୍ଟିର ଦ୍ୟୁତି-ପୃ-୩
୪୬—ଜନନୀ ଓ ସ୍ୱଜନୀ—ଦୃଷ୍ଟିର ଦ୍ୟୁତି-ପୃ-୧୯
୪୭—କରଛଡ଼ା—ଶ୍ରଦ୍ଧ ସମସ୍ତ-ପୃ-୫୪
୪୮—ଶତାବ୍ଦୀର କନ୍ୟା—ତନ୍ନୈବ-ପୃ-୧୪
୪୯—ଧାବନୀ ଉବାଚ—ତନ୍ନୈବ ପୃ-୧୪
୫୦—ଭଙ୍ଗା ଦର୍ପଣ—ବିପର୍ଯ୍ୟସ୍ତ ଲେଖନୀ-ପୃ-୫୨
୫୧—ତେମ୍ବାଅଣି ଖାଲ ତୁମ ପାଇଁ—ଅକାଳ ବସନ୍ତ
୫୨—ଭୟ—ସୂର୍ଯ୍ୟୋଦୟ-ପୃ-୭୧
୫୩—ଶରଶଯ୍ୟା—ତନ୍ନୈବ-ପୃ-୬୩
୫୪—ଝଙ୍କାର (ଲୁଚକାଳି ଖେଳ)—ଜାନୁଆରୀ ୧୯୮୭
୫୫—ବିଲେଇ—ନୈମିଷାରଣ୍ୟ

## ସହାୟକ ଗ୍ରନ୍ଥସୂଚୀ

## ଇଂରାଜୀ


Abrams M. H. — A Glossary of Literary Terms, Macmillan Indian Press, Madras-600002—1973.

Becker George J. — Documents on Modern Literary, Realism, Princeton, 1963.

Butcher S. H. — Aristotle's Theory of Poetry and Fine Art, Kalyani Publishers, New Delhi, Ludhiana, 1978.

Bornecque J. H, Cogny — Realism and Naturalism—Paris, 1958.

Coudwell Christopher — Illusion and Reality—People's Publishers, New Delhi-12

Duranty Edmond — Realisme, Paris, July 1956

Drew Elizabeth — T. S. Eliot : The Design of his Poetry, Doba House, Delhi, 1976.

Elide M. — Myth and Reality Translated from French by Willard Trask, New York and Evanston, Harper and Roe Publishers, 1963.

Eliot J. S. — The use of poetry and the use of criticism, Feber and Feber Collected poems, London, 1944, Feber And Feber, 1969.

Grant Damin — Realism Methuen, London and New York, 1982.

Gray Martin — A Dictionary of Literary Terms, Longman York Press, 1984.

Gorky Maxim — Socialist Realism in Art and Literature, Progress Publishers, Mascow, 1957.

Jung C. G. — Collected works Vol. IX, part 1 The Archetype on Collective unconscious London, Routledge and Keganpaul, 1959.

Levin Harry — What is Realism ? Comparative Literature, 1951.

Lukacs Geory — The Meaning of Contemporary Realism 1958, Translated by J. and H, Mander, London, 1962.

Lewis C. D & L. A. G. Strong — A New Anthology of Modern Verse, Kegan Paul, 1947.

Lenin V. E. — The Socialist Revolution Progress Publishers, 1979.

Macdowall Arthur — Realism : A Study in Art and Thought, London, 1918.

Miller J. Hills — Poets of Reality, Cambridge Muss, 1965

Mohapatra Sitakanta — Barefoot into Reality. United Writers, Calcutta. 1978.

Marks Karl — Das Capital Progress Publishers—Moscow 1954.

Madhru Sayana — Sarva Darshna Sangraha
Edtd : Late Mahamahopadhyaya Vasudev Sastri : Government Oriental Series. Class A, No. 1

Macleish Archibald — Wild old wicked Man and other poems. Princeton, 1963

Mukherjee Meenakhi — Realism And Reality—The Novel And Society in India, Delhi Oxford University Press, 1985.

Novikov Vassily — Artistic Thruth And Dialectics of Creative Work. Progress Publishers Moscow, 1983.

Passmore, John — A Hundred Years of Philosophy, London, 1957, Penguin ed. Harmond Sworth, 1968.

Pollard Arthur — Satire—Methuen, London And NewYork 1985.

Radhakrishan S. — Indian Philosophy-Vol-I (Edtd. by H. D. Lewis)
Indian Edition—Tenth Impression 1977.

Roy A. — Realism in Modern Poetry,
Delhi Oxford University Press, 198

Stevens Wallace — Opus Posthumous, New York, 1957.

Spender Stephen — T. S. Eliot, William Collins Sons and Co. Ltd. Glasgow, 1975.

Solapinto V. D. — Crisis in English Poetry, Hutchinson & Company (Publishers) Ltd. 9—Fitzory Square, London, 1953.

Skelton Robin — Poetry of Thirties, Feber & Feber 1943.

Wellek Rene — The concept of Realism in Literary Scholarship, New Haven, 1963.

Wimsatt W. K. Brooks Cleanth — Literary Criticism, London, 1957.

Walt Whitman — The leaves of Grass Modern Library College Editions, Random House Modern Library, New York, 1965.

## ହିନ୍ଦୀ

ଗୁଲଟି ମଦନ — ସମକାଲୀନ୍ କବିତା କି ପରିପ୍ରେକ୍ଷା, ଅଜନ୍ତା ପ୍ରକାଶନ—ଆହ୍ଲାବାଦ-୯, ୧୯୬୭

ତିଓ୍ୱାରି ସନ୍ତୋଷ କୁମାର — ଛାୟାବାଦୀ କାବ୍ୟ କି ପ୍ରଗତିଶୀଳ ଚେତନା, ବିନୟ ଚରଣ ମାଥୁର ଏଣ୍ଡ ସନ୍ସ—ଦିଲ୍ଲୀ-୧୧-୧୧୦୦୦୧-୧୯୮୦

ତିଓ୍ୱାରି ବିଶ୍ୱନାଥ ପ୍ରସାଦ — ସମକାଳୀନ ହିନ୍ଦୀ କବିତା, ରାଜପାଲ ଏଣ୍ଡ ସନ୍ସ—ଦିଲ୍ଲୀ-୧୯୭୮

ପ୍ରେମଚନ୍ଦ ବିଜୟ ବର୍ଗୀୟ — ଆଧୁନିକ ହିନ୍ଦୀ କବିୟୋଁ କି ସାମାଜିକ ଦର୍ଶନ ଏସ୍ ଚାନ୍ଦ ଏଣ୍ଡ କମ୍ପାନି ଲିମିଟେଡ଼—ରାମନଗର-ନୂଆଦିଲ୍ଲୀ-୧୧୦୦୦୩-୧୯୮୧

ବଚ୍ଚନ ହରିବଂଶ ରାୟ — ଧାର୍ କେ ଇଧର ଉଧର ରାଜପାଲ ଏଣ୍ଡ ସନ୍ସ—ଦିଲ୍ଲୀ-୧୯୬୭

ଭଟ୍ଟନାଗର ରାମରତନ — ମୂଲ୍ୟ ଔର ମୂଲ୍ୟାଙ୍କନ୍, ଏସ୍ ଚାନ୍ଦ ଏଣ୍ଡ କମ୍ପାନି ଲିମିଟେଡ଼, ରାମ ନଗର, ନୂଆ ଦିଲ୍ଲୀ-୧୧୦୦୦୩-୧୯୫୭

ଭାସ୍କର ବିମଲ — ହିନ୍ଦୀ ମେ ସମସ୍ୟା ସାହିତ୍ୟ, ଭାରତୀୟ ଗ୍ରନ୍ଥ ନିକେତନ, ଦିଲ୍ଲୀ-୧୦୦୦୩୪-୧୯୭୯

ମୁକ୍ତିବୋଧ ଗଜାନନ ମାଧବ — ନୟି କବିତା କେ ଆତ୍ମ ସଂଘର୍ଷ ଭାରତୀୟ ଗ୍ରନ୍ଥ ନିକେତନ, ଦିଲ୍ଲୀ-୧୦୦୦୩୪,୧୯୮୧

ମିଶ୍ର ସୁଶୀଲ — ଦିନକର କ ସାହିତ୍ୟ ଦୃଷ୍ଟି, ରାମକୃଷ୍ଣ ପ୍ରକାଶନ, ୧୧-ଦରିୟାଗଞ୍ଜ-ଦିଲ୍ଲୀ

ରାଙ୍ଗେୟ ରାଘବ — କାବ୍ୟ ଯଥାର୍ଥ ଔର ପ୍ରଗତି, ରାଜକମଲ ପ୍ରକାଶନ, ଦିଲ୍ଲୀ-୧୯୮୨

ଶ୍ରୋତ୍ରିୟ ଶିବ ପ୍ରସାଦ — ସମୀକ୍ଷା କେ ନୟି ପ୍ରତିମାନ୍, କୃଷ୍ଣ ଚରଣ ଜୈନ ଏବଂ ସନ୍ତତି, ଦିଲ୍ଲୀ,୭-୧୯୭୯

ଶର୍ମା ଭଜନ୍ତରାମ — ମାର୍କସବାଦ ଔର ହିନ୍ଦୀ କବିତା, ଭାରତୀୟ ଗ୍ରନ୍ଥ-ନିକେତନ—ଦିଲ୍ଲୀ-୧୦୦୦୩୪

ସିହ୍ନା ମୋହିନୀକାନ୍ତ — କବିତା, ୧୦-ସାଗରଲେନ୍-କଲିକତା-୧୯୭୮

ଶୁକ୍ଳ ପର୍ଶୁରାମ — ଆଧୁନିକ ହିନ୍ଦୀ କାବ୍ୟ ମେଁ ଯଥାର୍ଥବାଦ, କୃଷ୍ଣଚରଣ ଜୈନ ଏବଂ ସନ୍ତତି—ଦିଲ୍ଲୀ-୭-୧୯୫୮

ଶର୍ମା ଜଗଦୀଶ ଦତ୍ତ — ପନ୍ଥ କାବ୍ୟ ମେଁ ସମାଜବାଦୀ ଚେତନା, ଭାରତୀୟ-ଗ୍ରନ୍ଥ ନିକେତନ,ଦିଲ୍ଲୀ ୧୦୦୦୩୪

ଆଧୁନିକ କବିତା ସଂଗ୍ରହ, ବିଶ୍ୱବିଦ୍ୟାଳୟ ପ୍ରକାଶନ, ବାରଣାସୀ—ଆଗ୍ରା-୧୯୮୫

## ବଙ୍ଗଳା

ଇସ୍‌ଲାମ ନଜରୁଲ୍ — ସଞ୍ଚିତା, ଡି. ଏମ୍. ଲାଇବ୍ରେରୀ, କଲିକତା-୭,୧୯୭୮

ଠାକୁର ରବୀନ୍ଦ୍ର ନାଥ — ସଞ୍ଚୟିତା, ବିଶ୍ୱଭାରତୀ ଗ୍ରନ୍ଥନ ବିଭାଗ ୧୯୫୦

ଦାସ ଜୀବନାନନ୍ଦ — ଜୀବନାନନ୍ଦ ଦାସେର୍ ଶ୍ରେଷ୍ଠ କବିତା-୧ମ/୨ୟ୍ ଭାଗ, ଦେ'ସ୍ ପବ୍ଲିସିଂ ହାଉସ, ୧୩ ବଙ୍କିମ ଚ୍ୟାଟାର୍ଜୀ ଷ୍ଟ୍ରିଟ, କଲିକତା-୭୦୦୦୭୩-୧୯୫୪

ଦେ ବିଷ୍ଣୁ — ବଛର ପଚିଶ, ବିଶ୍ୱବାଣୀ ପ୍ରକାଶନୀ, କଲିକତା-୭-୧୯୭୫

ବସୁ ଶୁଦ୍ଧସତ୍ତ୍ୱ — ଆଧୁନିକ ବାଙ୍ଗ୍‌ଲା କାବ୍ୟେର୍ ଗତି ଓ ପ୍ରକୃତି, ମଣ୍ଡଳ ବୁକ୍ ହାଉସ—ମହାତ୍ମା ଗାନ୍ଧୀ ରୋଡ, କଲିକତା-୯-୧୯୭୫

ବସୁ ବୁଦ୍ଧଦେବ — ଶୀତେର ପ୍ରାର୍ଥନା, ବସନ୍ତେର ଉତ୍ତର, (ବୁଦ୍ଧଦେବ ବସୁର ଶ୍ରେଷ୍ଠ କବିତା) ଦେ'ସ ପବ୍ଲିସିଂହାଉସ, ୧୩-ବଙ୍କିମ ଚାଟାର୍ଜୀ ଷ୍ଟ୍ରିଟ, କଲିକତା-୭୦୦୦୭୩-୧୯୬୧

ଭଟ୍ଟାଚାର୍ଯ୍ୟ ସୁକାନ୍ତ — ସୁକାନ୍ତ ସମଗ୍ର, ଦେ'ସ୍ ପବ୍ଲିଶିଂ ହାଉସ, ୧୩ ବଙ୍କିମ ଚାଟାର୍ଜୀ ଷ୍ଟ୍ରିଟ—କଲିକତା ୭୦୦୦୭୩-୧୯୬୭

ମିଶ୍ର ହର ପ୍ରସାଦ — କବିତାର ବିଚିତ୍ର କଥା, ଡି. ଏମ୍. ଲାଇବ୍ରେରୀ—କଲିକତା-୬-୧୯୬୮

ମୁଖୋପାଧ୍ୟାୟ ସୁଭାଷ — ସୁଭାଷ ମୁଖୋପାଧ୍ୟାୟର ଶ୍ରେଷ୍ଠ କବିତା, ଦେ'ସ୍ ପବ୍ଲିଶିଂ ହାଉସ, ୧୩ ବଙ୍କିମ ଚାଟାର୍ଜୀ ଷ୍ଟ୍ରିଟ, କଲିକତା-୭୦୦୦୭୩-୧୯୭୨-୨ୟ ସଂସ୍କରଣ

ମୁଖୋପାଧ୍ୟାୟ ବଳାଇ ଚାନ୍ଦ — (ବନଫୁଲ) ବନଫୁଲେର ବ୍ୟଙ୍ଗ କବିତା, ବେଙ୍ଗଲ-ପବ୍ଲିଶାର୍ସ ପ୍ରାଇଭେଟ ଲିମିଟେଡ଼—କଲିକତା-୧୬-୧୯୬୭

ରାୟ କାଳିଦାସ — ସାହିତ୍ୟ ପ୍ରସଙ୍ଗ ନାଲନା-୪୮-ଗଣେଶ ଚନ୍ଦ୍ର ଆଭିନ୍ୟୁ-କଲିକତା-୧୯୬୧

ସିକ୍‌ଦାର ଅଶ୍ରୁକୁମାର — ଆଧୁନିକ କବିତାର ଦିଗ୍‌ବଳୟ, ଅରୁଣା ପ୍ରକାଶନୀ, ୭ ଯୁଗୋଲ କିଶୋର ଲେନ୍ କଲିକତା-୯-୧୯୭୫

## ଓଡ଼ିଆ

କର ବିଶ୍ୱନାଥ — ସାହିତ୍ୟ ଦର୍ପଣ—ଓଡ଼ିଶା ସାହିତ୍ୟ ଏକାଡେ଼ମୀ, ୧୯୭୫

କର କରୁଣା କର — ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର-୧୯୬୯

ଗଡ଼ନାୟକ ରାଧାମୋହନ — ଗଡ଼ନାୟକ ଗ୍ରନ୍ଥାବଳୀ, ଗ୍ରନ୍ଥ ପ୍ରକାଶନୀ-୧୯୬୮

ତ୍ରିପାଠୀ କୃଷ୍ଣଚନ୍ଦ୍ର — କୃଷ୍ଣ ଚନ୍ଦ୍ର. ତ୍ରିପାଠୀ ଗ୍ରନ୍ଥାବଳୀ, ଫ୍ରେଣ୍ଡସ୍ ପବ୍ଲିଶାର୍ସ, ୧୯୬୯

ଦାସ ଜଗନ୍ନାଥ — ଶ୍ରୀମଦ୍ ଭାଗବତ, ଓଡ଼ିଶା ଜଗନ୍ନାଥ କମ୍ପାନୀ—ବାଲୁବଜାର କଟକ-୧୯୭୯

ଦାସ ଶିଶୁ ଶଙ୍କର — ଉଷାଭିଳାଷ ପ୍ରାଚୀ ଗ୍ରନ୍ଥାବଳୀ—ଉତ୍କଳ ବିଶ୍ୱବିଦ୍ୟାଳୟ

| | |
|---|---|
| ଦାସ ଗୋପବନ୍ଧୁ | ଗୋପବନ୍ଧୁ ରଚନାବଳୀ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର-୧୯୮୦ |
| ଦାସ ନୀଳକଣ୍ଠ | ନୀଳକଣ୍ଠ ଗ୍ରନ୍ଥାବଳୀ (୧ମ ଭାଗ), କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ-୧୯୬୩ |
| ଦେବୀ ବିଦ୍ୟୁତ୍‌ପ୍ରଭା | ସଞ୍ଚୟନ, ପ୍ରକାଶକ—ନିମାଇଁ ଚରଣ ଦାସ—କଟକ, ୧୯୫୭, |
| ଦାସ ତୁଳସୀ | ଅର୍ଘ୍ୟ ,ବିକାଶ ପ୍ରତିଷ୍ଠାନ—ଜୟପୁର-୧୯୭୬, |
| ଦାସ ଦାଶରଥି | ଆଧୁନିକ କାବ୍ୟଜିଜ୍ଞାସା ଓ ଚିତ୍ରକଳ୍ପ-୧୯୭୪ |
| | ମୃତ୍ୟୁ ଲୋକରେ ଋତୁ ସପ୍ତମ-୧୯୬୯, ଅଗ୍ରଦୂତ ପ୍ରକାଶନୀ |
| ଦାଶ କୁଞ୍ଜ ବିହାରୀ | କୁଞ୍ଜ ବିହାରୀ ସଂଚୟନ, ଦାସ ବ୍ରଦର୍ସ-୧୯୫୭ ବ୍ରହ୍ମପୁର—କଟକ—ସମ୍ବଲପୁର |
| ନାୟକ ବିନୋଦ | ସପ୍ତସ୍ୱପ, ଲାର୍କ ବୁକ୍ସ-୧୯୬୯ |
| ନାୟକ ଲକ୍ଷ୍ମୀଧର | ଖୋଲା ଝର୍କା, ପାର୍ଟି ବୁକ୍ସ, କିଶୋରୀ ଭବନ, ଜଟଣୀ, ପୁରୀ-୧୯୬୯ |
| ପଟ୍ଟନାୟକ ପ୍ରାଣନାଥ | ଆସନ୍ତା କାଲର ସାହିତ୍ୟ, ପ୍ରକାଶିକା—ଶ୍ରୀମତୀ ମଞ୍ଜରୀ ପଟ୍ଟନାୟକ—କସ୍‌ମସ ପ୍ରିଣ୍ଟର୍ସ ଏଣ୍ଡ ପବ୍ଲିଶାର୍ସ, ପ୍ର: ସ: ୧୯୭୦ |
| ପଟ୍ଟନାୟକ ବୈକୁଣ୍ଠନାଥ | ବୈକୁଣ୍ଠନାଥ ଗ୍ରନ୍ଥାବଳୀ ୧ମ ଭାଗ-୨ୟ ଭାଗ, ଉତ୍କଳ ସାହିତ୍ୟ ସମାଜ—ଶ୍ରୀରାମ ଚନ୍ଦ୍ର ଭବନ—କଟକ-୧୯୭୭ |
| ପଟ୍ଟନାୟକ ଅନନ୍ତ | ଶାନ୍ତ ଶିଖା-୧୯୫୨ ପ୍ରଗତି ପ୍ରକାଶନ—ନବଯୁଗ ଗ୍ରନ୍ଥାଳୟ, ବଜ୍ରକବାଟିରୋଡ଼, କଟକ |
| | ଅଲେଡ଼ାଲେଡା-୧୯୭୪, ଫ୍ରେଣ୍ଡସ ପବ୍ଲିଶର୍ସ-କଟକ |
| | କଅଁଳ-୨ୟ ସଂସ୍କରଣ, ୧୯୭୭, ପ୍ରଗତି ପ୍ରକାଶନ—ନବଯୁଗ ଗ୍ରନ୍ଥାଳୟ ବଜ୍ରକବାଟିରୋଡ, କଟକ |
| ପାଣିଗ୍ରାହୀ କାଳନ୍ଦୀ ଚରଣ | କାଳନ୍ଦୀ ରଚନାବଳୀ ୧ମ ଭାଗ-୨ୟ ଭାଗ, ନିଉ ଷ୍ଟୁଡେଣ୍ଟସ ଷ୍ଟୋର-୧୯୭୪ |
| ପଣ୍ଡା ବୈଷ୍ଣବ ଚରଣ | ସମାଜ ବିଜ୍ଞାନ—(ମୂଳ ରଚନା-ଜି. ଶାଖନାଜାରୋଭ, ୟୁ କ୍ରାସିନ୍, ଏ ବଚ୍‌କଗନ ବି ସୁଖଦେଇଭା) ମସ୍କୋ—ପ୍ରଗତି ପ୍ରକାଶନ-୧୯୭୯ |

ପଟ୍ଟନାୟକ ଗୁରୁ ଚରଣ — ନବ ମାନବର ସୃଷ୍ଟି, ଜେ ମହାପାତ୍ର ଏଣ୍ଡ କୋ-୧୯୬୧

ପଟ୍ଟନାୟକ ବିଭୂତି — ସାହିତ୍ୟର ସୂଚୀପତ୍ର—ନାଳନ୍ଦା ୧୯୭୭

ପଟ୍ଟନାୟକ ପ୍ରସନ୍ନ — ଆଧୁନିକ ଓଡ଼ିଆ କବିତାରେ ଶାସ୍ତ୍ରୀୟ ଚିନ୍ତାଧାରା, ଗ୍ରନ୍ଥ ପ୍ରକାଶନୀ-୧୯୮୪

ବଳ ନନ୍ଦ କିଶୋର — ନନ୍ଦକିଶୋର ଗ୍ରନ୍ଥାବଳୀ ୧ମ ସଂସ୍କରଣ-୧୯୫୫ ଗୋସ୍ୱାମୀ ପ୍ରେସ,କଟକ

ବେହେରା ଚନ୍ଦ୍ରମଣି — କାବ୍ୟ ଓ କଳାକାର, ଜଗନ୍ନାଥ ରଥ—ବିନୋଦ ବିହାରୀ– କଟକ-୨-୧୯୭୭

ବରାଳ ଅବନୀ—ଯଦୁନାଥ ଷଡ଼ଙ୍ଗୀ — ଲେନିନ କଳା ଓ ସାହିତ୍ୟ, ପ୍ରଗତି ପ୍ରକାଶନ, ନବଯୁଗ ଗ୍ରନ୍ଥାଳୟ, କଟକ-୧

ବରାଳ ଅବନୀ — ମାର୍କସବାଦୀ ସାହିତ୍ୟତତ୍ତ୍ୱ, ଜେ. ମହାପାତ୍ର ଏଣ୍ଡ କୋ. ୧୯୬୨

ଭଞ୍ଜ ଉପେନ୍ଦ୍ର — ଲାବଣ୍ୟବତୀ, ପ୍ରାଚୀ ଗ୍ରନ୍ଥମାଳା-୩-ଉତ୍କଳ ବିଶ୍ୱବିଦ୍ୟାଳୟ-୧୯୫୨

ମେହେର ଗଙ୍ଗାଧର — ଗଙ୍ଗାଧର ଗ୍ରନ୍ଥାବଳୀ, ପୁସ୍ତକ ଭଣ୍ଡାର—ବ୍ରହ୍ମପୁର-୧୯୭୭

ମହାପାତ୍ର ଲକ୍ଷ୍ମୀକାନ୍ତ — କାନ୍ତ ସାହିତ୍ୟ ମାଳା (୧ମ ଭାଗ), ଓଡ଼ିଶା ବୁକ୍ ଏମ୍ପୋରିୟମ, ୧୯୬୪

ମହାପାତ୍ର ଗୋଦାବରୀଶ — ଗୋଦାବରୀଶ ଲେଖାବଳୀ (୧ମ ଖଣ୍ଡ), କଟକ ଷ୍ଟୁଡେଣ୍ଟ ଷ୍ଟୋର ବାଲୁବଜାର—କଟକ-୨

ମାନସିଂହ ମାୟାଧର — ମାନସିଂହ ଗ୍ରନ୍ଥାବଳୀ—୧ମ ଭାଗ, ଗ୍ରନ୍ଥ ପ୍ରକାଶନୀ-୧୯୬୪

କମଳାୟନ ୧୯୪୭—ମାନସିଂହ ଗ୍ରନ୍ଥାବଳୀ ଗ୍ରନ୍ଥ ପ୍ରକାଶନୀ, କଟକ

ମହାନ୍ତି ଗୁରୁପ୍ରସାଦ — ନୂତନ କବିତା, ଜନଶକ୍ତି ପୁସ୍ତକାଳୟ, ୧୯୫୫

ସମୁଦ୍ରସ୍ନାନ, ଲର୍ଡ ବୁକ୍ସ, ୧୯୭୦

ମହାନ୍ତି ଶରତ କୁମାର — ଅସ୍ତିତ୍ୱବାଦର ମର୍ମକଥା, ଅଗ୍ରଦୂତ ୧୯୭୭

ମହାନ୍ତି ବଳରାମ — ଓଡ଼ିଶାର ରାଜନୀତିକ ଇତିହାସ, ରାଷ୍ଟ୍ରଭାଷା ସମବାୟ ପ୍ରକାଶନ, ରାଷ୍ଟ୍ରଭାଷା ରୋଡ଼, କଟକ-୧୯୭୯

| | |
|---|---|
| ମହାନ୍ତି ଯଜ୍ଞାନନ୍ଦ ମୋହନ ସଂପାଦିତ | ଆଧୁନିକ ଓଡ଼ିଆ କବିତା, ଜନଶକ୍ତି ପୁସ୍ତକାଳୟ—ବାଙ୍କାବଜାର—କଟକ-୧୯୬୮ |
| ମହାନ୍ତି ମଧୁସୂଦନ ସଂପାଦିତ | ଅଥର୍ବ ବେଦ, ଧର୍ମଗ୍ରନ୍ଥ ଷ୍ଟୋର-୧୯୮୨ |
| ମହାପାତ୍ର ନିତ୍ୟାନନ୍ଦ | ପାଞ୍ଚଜନ୍ୟ, ଭାରତୀ ଭବନ—ପୁରୀ-୧୯୪୭ |
| | କାଳରଙ୍ଗ, ପୋଥି ପୀଠ, ପୀଠାପୁର—କଟକ-୧୯୫୪ |
| ମିଶ୍ର ସୌଭାଗ୍ୟ କୁମାର | ମଧ୍ୟପଦଲୋପୀ—ଜଗନ୍ନାଥ ରଥ—ବିନୋଦ ବିହାରୀ-କଟକ-୨, ୧୯୭୧ |
| ମିଶ୍ର ଗୋପାଳ ଚନ୍ଦ୍ର | କପୋତ ଡ଼େଣାର ଗୁଇ, ଫ୍ରେଣ୍ଡ୍ସ ପବ୍ଲିଶାର୍ସ-୧୯୬୭ |
| | ଚଳିତ ଶତାବ୍ଦୀର ଭାରତୀୟ ସାହିତ୍ୟ ଯଶୋଧାରା—କଟକ-୧୯୭୪ |
| ମହାନ୍ତି ଜାନକୀବଲ୍ଲଭ | ଚର୍ଯ୍ୟିକ୍, ପ୍ରକାଶିକା—ପଦ୍ମାବତୀ ମହାନ୍ତି—ଟାଉନ୍-ପ୍ରେସ—ବାଲେଶ୍ୱର ୧୯୫୧ |
| | ବିଚାରବର୍ତ୍ତୀ, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ-୧୯୭୩ |
| ମହାପାତ୍ର ସୀତାକାନ୍ତ | ଦୀପ୍ତି ଓ ଦ୍ୟୁତି—ଗ୍ରନ୍ଥ ମନ୍ଦିର-୧୯୬୩ |
| | ଅଷ୍ଟପଦୀ—ଗ୍ରନ୍ଥ ମନ୍ଦିର-୧୯୬୭ |
| | ଶବ୍ଦର ଆକାଶ—କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର—କଟକ-୧୯୭୯ |
| | ଭିନ୍ନ ଆକାଶ ଭିନ୍ନ ଦୀପ୍ତି—ଅଗ୍ରଦୂତ, କଟକ-୨-୧୯୭୦ |
| ମିଶ୍ର ନରେନ୍ଦ୍ର ନାଥ | ଆଧୁନିକ ଓଡ଼ିଆ କାବ୍ୟଧାରା, ବିଶ୍ୱ ଭାରତୀ ଶାନ୍ତିନିକେତନ-୧୯୬୪ |
| | ଆଧୁନିକତା ଓ ଆଧୁନିକ ସାହିତ୍ୟ, ଫ୍ରେଣ୍ଡ୍ସ୍ ପବ୍ଲିଶାର୍ସ-୧୯୭୬ |
| ରାୟ ରାଧାନାଥ | ରାଧାନାଥ ଗ୍ରନ୍ଥାବଳୀ, ପୁସ୍ତକ ଭଣ୍ଡାର, ୨ୟ ସଂସ୍କରଣ, ୧୯୮୦ |
| ରାଓ ମଧୁସୂଦନ | ମଧୁସୂଦନ ଗ୍ରନ୍ଥାବଳୀ, ଗ୍ରନ୍ଥମନ୍ଦିର—ବିନୋଦ ବିହାରୀ—କଟକ-୨-ପୁନର୍ମୁଦ୍ରଣ-୧୯୮୩ |
| ରାଉତରାୟ ସଚ୍ଚି | ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ (୧ମ ଭାଗ), ଗ୍ରନ୍ଥ ମନ୍ଦିର, କବିତା-୧୯୬୯, ସାହିତ୍ୟର ବିଚାର ଓ ମୂଲ୍ୟବୋଧ—ଜେ. ମହାପାତ୍ର ଏଣ୍ଡ. କୋ.-୧୯୭୨ |

| | |
|---|---|
| ଷଣ୍ଢ ଅନୁଜା | ନୂତନ କବିତା, ଜନଶକ୍ତି ପୁସ୍ତକାଳୟ—ବାଙ୍କାବଜାର—କଟକ-୨-୧୯୫୫ |
| ରଥ ରମାକାନ୍ତ | କେତେ ଦିନର—ଲାର୍କ ବୁକ୍‌ସ—୧ମ ସଂ. ୧୯୬୨ |
| | ଅନେକ କୋଠରୀ—ଲାର୍କ ବୁକ୍‌ସ—୧ମ ସଂ. ୧୯୬୭ |
| | ସନ୍ଦିଗ୍ଧ ମୃଗୟା—ଲାର୍କ ବୁକ୍‌ସ-୧୯୭୧ |
| ରାଉତ ବେଣୁଧର | ପିଙ୍ଗଳାର ସୂର୍ଯ୍ୟ, ଫ୍ରେଣ୍ଡସ ପବ୍ଲିଶାର୍ସ—୧ମ ସଂ-୧୯୬୭ |
| ରାୟ ଅପୂର୍ବ ରଞ୍ଜନ | ଆଧୁନିକ ଓଡ଼ିଆ କବିତାର ଦିଗ୍‌ଦର୍ଶନ, ଫ୍ରେଣ୍ଡସ୍ ପବ୍ଲିଶାର୍ସ-୧୯୮୩ |
| ରଥ ପ୍ରଫୁଲ୍ଲ କୁମାର | ବାସ୍ତବବାଦ—ଭବାନୀ ଗଞ୍ଜ—ଯାଜପୁର-୧୯୬୩ |
| | ପ୍ରତୀକବାଦ—ବିଜୟ ବୁକ୍ ଷ୍ଟୋର—ବ୍ରହ୍ମପୁର-୧—୧୯୬୨ |
| ସେନାପତି ଫକୀର ମୋହନ | ଫକୀର ମୋହନ ଗ୍ରନ୍ଥାବଳୀ, ୧ମ ଭାଗ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର-୧୯୬୩ |
| ସାବତ୍‌ କୁନ୍ତଳା କୁମାରୀ | କୁନ୍ତଳା କୁମାରୀ ଗ୍ରନ୍ଥାବଳୀ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର—୧ମ. ସଂ. ୧୯୬୯ |
| ସାମନ୍ତରାୟ ନଟବର | ଓଡ଼ିଆ ସାହିତ୍ୟର ଇତିହାସ—୧୮୦୩-୧୯୨୦ |
| | ପ୍ରକାଶକ—ଶ୍ରୀ ପ୍ରଫୁଲ୍ଲ କୁମାର ଧଳ-୧୯୬୪ |
| | ଶ୍ରୀ ହୃଦାନନ୍ଦ ଭୋଳ—ଲାବଣ୍ୟଭବନ, ଭୁବନେଶ୍ୱର-୨ |
| ଶତପଥୀ ନିତ୍ୟାନନ୍ଦ | ସବୁଜରୁ ସାଂପ୍ରତିକ—ଗ୍ରନ୍ଥମନ୍ଦିର- ବିନୋଦ ବିହାରୀ—କଟକ-୨-୧୯୭୯ |
| ଶତପଥୀ ପ୍ରତିଭା | କଳ୍ପନାର ଅଭିଷେକ, ଓଡ଼ିଶା ବୁକ ଷ୍ଟୋର-୧୯୮୨— |
| ସିଂ ରବୀନ୍ଦ୍ର ନାଥ | ପିଥ ପ୍ରାନ୍ତର କବିତା—ଓଡ଼ିଶା ବୁକ୍ ଷ୍ଟୋର-୧୯୫୯ |
| | ତାଣ୍ଡବ—ସାହିତ୍ୟ ସଦନ, ଗୃହଲକ୍ଷ୍ମୀ ଗ୍ଳୈକ—କଟକ-୨—୧୯୬୧ |
| | ଭ୍ରୂକୁଟି—ସାଥୀମହଲ—ବିନୋଦବିହାରୀ-କଟକ-୧୯୬୩ |
| | ବହ୍ନିର୍ଣ୍ଣ—ସାହିତ୍ୟ ସଦନ, ଗୃହଲକ୍ଷ୍ମୀ-ଗ୍ଳୈକ—କଟକ-୨—୧୯୬୪ |

# ଅତିରିକ୍ତ ଗ୍ରନ୍ଥସୂଚୀ

ତ୍ରିପାଠୀ ନୃସିଂହ ପ୍ରସାଦ—ସ୍ଥବିରଭଗ, ଚୂଡ଼ାମଣି, ହେ ଈଶ୍ୱର ଉଠ, ନନ୍ଦିତ ସନ୍ନ୍ୟାସ
ଦାସ ମହାପାତ୍ର ଯଦୁନାଥ—ସାର୍ଥକ କବିତା, ମେଘବର୍ଣ୍ଣୀ, ମନକନ୍ୟା
ଦେବୀ ଶକୁନ୍ତଳା—ବିପର୍ଯ୍ୟସ୍ତ ଲେଝଣୀ, ଅନନ୍ତ ଶୟନ
ଦାସ ବିଜୟିନୀ—ସୂର୍ଯ୍ୟୋଦୟ
ଦାଶ ମମତା—ନୈମିଷାରଣ୍ୟ
ବାରିକ ସୌମ୍ୟେନ୍ଦ୍ର—ଉପଭାରତ
ପଣ୍ଡା ରାଜେନ୍ଦ୍ର କିଶୋର—ଶୈଳକଳ୍ପ, ନିଜପାଇଁ ନାନାବାୟା
ମହାପାତ୍ର ସୀତାକାନ୍ତ—ଆରଦୃଶ୍ୟ, କାହାକୁ ପୁଚ୍ଛିବା କୁହ
ମିଶ୍ର ଦୀପକ—ସପ୍ତଦୀପା ବସୁନ୍ଧରା
ମିଶ୍ର ସୌଭାଗ୍ୟ କୁମାର—ଅନ୍ଧ ମହୁମାଛି
ମହାନ୍ତି ବ୍ରହ୍ମୋତ୍ରୀ—ଦୃଷ୍ଟିର ଦ୍ୱୀପ
ମହାନ୍ତି ସରୋଜ ରଞ୍ଜନ—କାଗଜ ଡଙ୍ଗାର ଶୋକ
ରାଉତରାୟ ସଚ୍ଚି—କବିତା ୧୯୭୧, କବିତା ୧୯୮୩
ରଥ ରମାକାନ୍ତ—ସପ୍ତମ ଋତୁ
ରଥ ନୃସିଂହ କୁମାର—ଉତ୍କଣ୍ଠାର ମୃତ୍ୟୁ, ସମସ୍ତ ସମସ୍ତାନ୍ତର
ଲେଙ୍କା କମଳାକାନ୍ତ—ଶୀତ ଗା'ନାରେ ପକ୍ଷୀ
ଶତପଥୀ ପ୍ରତିଭା—ଶବ୍ଦ ସମସ୍ତ

## ପତ୍ର-ପତ୍ରିକା

Indian Literature, ମାର୍ଚ୍ଚ—ଏପ୍ରିଲ-୧୯୮୭

ଝଙ୍କାର, ଆସନ୍ତାକାଲି, ସମାବେଶ, ଡଗରର, ସହକାର, ଶଙ୍ଖ, ଇସ୍ତାହାର, ସୃଷ୍ଟି ଓ ସମୀକ୍ଷା

